# ରବୀନ୍ଦ୍ର



# ଜୀବନ କଥା

ମୂଳ ରଚନା— ଶ୍ରୀ ପ୍ରଭାତକୁମାର ମୁଖୋପାଧ୍ୟାୟ

ଭାଷାନ୍ତର— ଶ୍ରୀ [illegible] ମିଶ୍ର, ଏମ୍.ଏ.

ପ୍ରଥମ ପ୍ରକାଶ—(ଏକ ହଜାର)
ମେ' ସାତ—୧୯୭୧



ପ୍ରକାଶିକା—
ଶ୍ରୀମତୀ ସେବତୀ ଦେବୀ
ମଉଦା
କଟକ



ମୁଦ୍ରାକର—
ଶ୍ରୀ ରାଇମୋହନ ଦାସ
ଡଗର ପ୍ରେସ
କଟକ-୧



ପ୍ରାପ୍ତିସ୍ଥାନ—
ଶାନ୍ତିନିବାସ ବାଣୀମନ୍ଦର
କଟକ-୧



କଟକ ବୁକ୍ ଷ୍ଟଲ୍
କଟକ-୨



ପ୍ରକାଶ ବୁକ୍ ଷ୍ଟୋର
କଟକ-୩



କିତାବ ମହଲ
କଟକ-୩

ଆଠଟଙ୍କା
ବନ୍ଧେଇ-ନ' ଟଙ୍କା

...ଯାହାର ସ୍ମୃତି ଜୀବନର

ଯାତ୍ରା ପଥରେ ପାଥେୟ

ହୋଇ ରହିବ

ତାହାରି

ଉଦ୍ଦେଶ୍ୟରେ...

## ଅନୁଭବର କଥା—

୧୯୫୮ ଜୁଲାଇ ୬ ତାରିଖରେ ଶାନ୍ତିନିକେତନରେ ପହଞ୍ଚିଲି— ଓଡ଼ିଆ ଏମ୍. ଏ. ପଢ଼ିବା ପାଇଁ । ଶାନ୍ତିନିକେତନର ରୂପଶ୍ରୀ ପ୍ରଥମ ଦେଖାରେ ହତୋତ୍ସାହ ଆଣିଦେଲା । ସହରର ଧୂଳି ଧୂସରିତ, ଯାନବାହନ ପ୍ରପୀଡ଼ିତ ଅଞ୍ଚଳରେ ବହୁଦିନ ବାସ କରିବାରେ ଅଭ୍ୟସ୍ତ ଥିବାରୁ ଏ ହତୋତ୍ସାହ । କିନ୍ତୁ ଦିନ ଗଡ଼ିଯିବା ସଙ୍ଗେ ସଙ୍ଗେ ସ୍ଥାନ ପ୍ରତି ଏକ ମାୟା ଲାଗିଗଲା । ମାତ୍ର ଦୁଇ ତିନିମାସ ପରେ ପୂଜାବକାଶ । ଘରକୁ ଫେରିଲି ସତ; କିନ୍ତୁ ଶାନ୍ତିନିକେତନ ଟାଣିଲା । ଛୁଟି କଟିଲା 'ରବୀନ୍ଦ୍ର ଜୀବନ କଥା'ର ଅନୁବାଦରେ । ସେତେବେଳକୁ 'ରବୀନ୍ଦ୍ର ଜୀବନ କଥା'ର ବଙ୍ଗଳା ସଂସ୍କରଣ ପ୍ରକାଶ ପାଇ ନଥାଏ । ପ୍ରଭାତବାବୁଙ୍କର ଅନୁରୋଧ ଫଳରେ ପାଣ୍ଡୁଲିପିରୁ ହିଁ ଆରମ୍ଭ କରିଥିଲି ।

ଶାନ୍ତିନିକେତନରେ ଯୋଗ ଦେବା ବେଳେ ଦେଖିଲି ଯେ କବି କଳ୍ପନାର ବିଦ୍ୟାଳୟ ସ୍ୱପ୍ନରେ ହିଁ ପରିଣତ ହୋଇଛି । ଏହା ହୋଇଛି ଭାରତବର୍ଷର ଅନ୍ୟାନ୍ୟ ଯେ କୌଣସି ବିଶ୍ୱବିଦ୍ୟାଳୟ ପରି ଏକ ଅନୁଷ୍ଠାନ । ମାତ୍ର ତିନି ଚାରି ମାସ ରହଣି ପରେ, ଅର୍ଥାତ୍ ସେପ୍ଟେମ୍ବର୍-ଅକ୍ଟୋବର ମାସରେ ଶାନ୍ତିନିକେତନ ଆଶ୍ରମର ଛାତ୍ର ଛାତ୍ରୀମାନେ ଧର୍ମଘଟ କରିଥିଲେ ବିଦ୍ୟାଳୟର ଅଧ୍ୟକ୍ଷଙ୍କୁ କାର୍ଯ୍ୟରୁ ଅନ୍ତର କରିବା ପାଇଁ । କିଛିଦିନ ପୂର୍ବରୁ ଏହି ଆଶ୍ରମ ଛାତ୍ରମାନଙ୍କର ଦୁର୍ବ୍ୟବହାର ଫଳରେ ଜଣେ ଅଧ୍ୟାପକଙ୍କୁ ଆଶ୍ରମ ଛାଡ଼ିବାକୁ ପଡ଼ିଥିଲା । ପୂଜା ଛୁଟିର ଶାନ୍ତିନିକେତନ କହିଲେ, ନିର୍ଜନତାର ପ୍ରତୀକ । କିନ୍ତୁ ଛାତ୍ରମାନଙ୍କର ଉଗ୍ର-ରାଜନୀତି ଫଳରେ ଏକ ତିକ୍ତ ବାତାବରଣ ଓ ଆବହାଓ୍ୱା ସତ୍ତ୍ୱେ ଯେପରି ଆଶ୍ରମକୁ ବେଶ୍

ରହିଥାଏ । ଏହି ଅବସରରେ ରବୀନ୍ଦ୍ର ଜୀବନୀ ପଢ଼ିବା ଆରମ୍ଭ କରିଥିଲି । କାରଣ ଯେଉଁ ଅନୁଷ୍ଠାନ ରବୀନ୍ଦ୍ରନାଥଙ୍କର କର୍ମ ଓ ସାଧନାର ପୀଠସ୍ଥଳୀ ଥିଲା ତା'ର ବିବର୍ତ୍ତନର ଇତିହାସ ଜାଣିବା ପାଇଁ ଜୀବନୀ ପଢ଼ି ଚାଲିଲି । କଲିକତାରେ ଓଟେନ୍ ସାହେବଙ୍କୁ ମାଡ଼ ଦେଲାବେଳେ ଛାତ୍ରମାନଙ୍କ ପ୍ରତି ରବୀନ୍ଦ୍ରନାଥ ଯେଉଁ ବାଣୀ ପ୍ରଦାନ କରିଥିଲେ, ତାହାହିଁ ସ୍ୱତଃ ମନରେ ଜାଗ୍ରତ ହେଲା । ୧୯୪୦ ମସିହାରେ ବାଙ୍କୁଡ଼ାର କଲେଜ ଛାତ୍ରମାନଙ୍କୁ ଉଦ୍‌ବୋଧନ ଦେଇ କବି କହିଥିଲେ, 'ଯେଉଁମାନେ ଅକୁଣ୍ଠିତ ମନରେ ନିୟମ ଭାଙ୍ଗିବାକୁ ଚାହାନ୍ତି, ସେମାନେ କୌଣସିଦିନ ନିୟମ ଗଢ଼ି ପାରିବେ ନାହିଁ । ଏହି ଭାଙ୍ଗିବା ମନୋବୃତ୍ତି ସାଂଘାତିକ ଭାବରେ ବିସ୍ତାର ଲାଭ କରୁଛି ...ଦଳାଦଳି ଯୋଗୁଁ ଫାଟ ଦେଖା ଦେଇଛି ଆଶ୍ରୟ ସୌଧରେ ...ସଭା ଭାଙ୍ଗିବା, ଦଳ ଭାଙ୍ଗିବା, ସ୍କୁଲ ଭାଙ୍ଗିବା, ମୁଣ୍ଡ ଫଟାଇବା ସମସ୍ତ ଏହାର ଅନ୍ତର୍ଭୁକ୍ତ ।' ଆଜି ରବୀନ୍ଦ୍ରନାଥଙ୍କର ଉକ୍ତି ପ୍ରଣିଧାନଯୋଗ୍ୟ ନୁହେଁ କି ?

ଶାନ୍ତିନିକେତନରେ ଥିଲି ଦୁଇବର୍ଷରୁ କିଛି ଅଧିକ କାଳ । ଏହିପରି ଏକ ତିକ୍ତ ବାତାବରଣ ଭିତରେ ଶାନ୍ତିନିକେତନ ଛାଡ଼ି ଆସିଥିଲି । 'ରବୀନ୍ଦ୍ର ଜୀବନ କଥା'ର ଏହି ଓଡ଼ିଆ ଅନୁବାଦ ପ୍ରକାଶ ପାଉଥିବାବେଳେ, କବିଙ୍କର ଆଦର୍ଶ କ୍ରମଶଃ ତାଙ୍କରି ହାତ ତିଆରି ଅନୁଷ୍ଠାନରେ ଭାଙ୍ଗିପଡ଼ୁଥିବାର ଦେଖି ଦୁଃଖ ଲାଗୁଛି । ଯେଉଁଠି ଛାତ୍ର ଓ ଶିକ୍ଷକମାନଙ୍କ ମଧ୍ୟରେ ଏକ ନିବିଡ଼ ଓ ଅଚ୍ଛେଦ୍ୟ ସଂପର୍କ ଗଠନ କରିବା ପାଇଁ କବି ଏହି ବିଦ୍ୟାଳୟରେ ତାଙ୍କର ସମସ୍ତ ଶକ୍ତି ବିନିଯୋଗ କରିଥିଲେ, ସେଠି ଖଜୁରି କରୁଛି ଭେଦ, ବିଭେଦ ...ଇତ୍ୟାଦି । କବିଙ୍କ ବିଶ୍ୱମାନବର ମିଳନଭୂମି, ବିଶ୍ୱ ଆଦର୍ଶ ଓ ଧର୍ମର ସମନ୍ୱୟ କ୍ଷେତ୍ର ଶାନ୍ତିନିକେତନର ଏ ପରିବର୍ତ୍ତନ ଦୁଃଖ ଦେଉଛି । ବିଶ୍ୱବ୍ୟାପୀ ରବୀନ୍ଦ୍ର ଶତବାର୍ଷିକୀ ଉତ୍ସବ ପାଳିତ ହେଉଥିବାବେଳେ ମୋର ଅନ୍ତରକୁ ଏହିକଥା ହିଁ ବିଶେଷ ଆଘାତ ଦେଉଛି । ଧର୍ମ ନାମରେ, ଭାଷା ନାମରେ, ଆଦର୍ଶ ନାମରେ ଏ

ଦେଶରେ ସାମ୍ପ୍ରଦାୟିକତାର ଯେଉଁ ବିଷବୃକ୍ଷ ବଢ଼ି ଚାଲିଛି ତାହା କ'ଣ ଉତ୍ପାଟିତ ହୋଇ ପାରିବ ନାହିଁ ?

## ଅନୁବାଦ ସଂପର୍କରେ ପଦେ—

'ରବୀନ୍ଦ୍ର ଜୀବନ କଥା'ର ଲେଖକ ଶ୍ରୀଯୁକ୍ତ ପ୍ରଭାତ କୁମାର ମୁଖୋପାଧ୍ୟାୟ ରବୀନ୍ଦ୍ରନାଥଙ୍କର ସହକର୍ମୀ ଥିଲେ । ସେ କବିଙ୍କ ସହିତ ନିବିଡ଼ ସମ୍ପର୍କରେ ଆସିଥିବାରୁ କବି-ଜୀବନର ମହାନତା କଳନା କରିବା ତାଙ୍କ ପକ୍ଷରେ ହିଁ ସମ୍ଭବ । ପ୍ରଭାତବାବୁ ଓ ବିଶ୍ୱ-ଭାରତୀ କର୍ତ୍ତୃପକ୍ଷ ଏହି ଅନୁବାଦ ପ୍ରକାଶ କରିବାକୁ ସଦୟ ଅନୁମତି ଦେଇଥିବାରୁ ସେମାନଙ୍କ ନିକଟରେ ମୋର କୃତଜ୍ଞତା ପ୍ରକାଶ କରୁଛି ।

ଦୀର୍ଘ ଦୁଇବର୍ଷ ପରେ ଏହି ଗ୍ରନ୍ଥଟି ପ୍ରକାଶ ପାଉଛି । ଯେଉଁମାନେ ଅକୁଣ୍ଠ ଚିତ୍ତରେ ମୋତେ ଏହି କାର୍ଯ୍ୟରେ ସାହାଯ୍ୟ କରିଛନ୍ତି ସେ ସମସ୍ତଙ୍କୁ ଶ୍ରଦ୍ଧାର ସହିତ ସ୍ମରଣ କରୁଛି । ଅନୁବାଦ କରିବାକୁ ସସ୍ନେହ ନିର୍ଦ୍ଦେଶ ପାଇଥିଲି ମୋର ଅଧ୍ୟାପକ ଡକ୍ଟର କୁଞ୍ଜବିହାରୀ ଦାଶଙ୍କ ଠାରୁ । କେବଳ ସେତିକି ନୁହେଁ, ସେ ପରିଶ୍ରମ ସହକାରେ ପାଣ୍ଡୁଲିପିଟି ଆମୂଳଚୂଳ ପଢ଼ି ଆବଶ୍ୟକୀୟ ପରିବର୍ତ୍ତନ ଓ କରିବା ପାଇଁ ସୂଚନା ଦେଇଥିବାରୁ ତାଙ୍କ ନିକଟରେ ମୁଁ କୃତଜ୍ଞ । ଏହାଛଡ଼ା ବନ୍ଧୁ ଶ୍ରୀଯୁକ୍ତ ଅସିତ କବିଙ୍କଠାରୁ ମଧ୍ୟ ସାହାଯ୍ୟ ପାଇଛି । ତାଙ୍କୁ ମୋର ସଶ୍ରଦ୍ଧ ଧନ୍ୟବାଦ ଜଣାଉଛି । ବିଶ୍ୱଭାରତୀର ପ୍ରାକ୍ତନ ଛାତ୍ର ଓ ମୋର ବନ୍ଧୁ ଶ୍ରୀ ଉଦୟନାରାୟଣ ଜେନା ପ୍ରଚ୍ଛଦପଟଟି ଆଙ୍କି ଦେଇଥିବାରୁ ଧନ୍ୟବାଦ ଦେଉଛି ।

ଅନୁବାଦ କଲାବେଳେ ଗ୍ରନ୍ଥଟିକୁ ସମ୍ପୂର୍ଣ୍ଣ ଏକ ଓଡ଼ିଶୀ ସଂସ୍କରଣରେ ପରିଣତ କରିବା ପାଇଁ କେତେକ ସ୍ଥଳରେ ପରିବର୍ତ୍ତନ ପରିବର୍ଦ୍ଧନ କରିଛି—ଏଥିପାଇଁ ସାହାଯ୍ୟ ନେଇଛି ପ୍ରଭାତବାବୁଙ୍କ ରଚିତ ରବୀନ୍ଦ୍ର ଜୀବନୀରୁ (ଚାରିଖଣ୍ଡରେ ପ୍ରକାଶିତ) । ଏହା କରିଛି କେବଳ ଓଡ଼ିଶାର ପାଠକ ପାଠିକାମାନଙ୍କୁ ଆଖି ଆଗରେ ରଖି ।

ପାଣ୍ଡୁଲିପି ପ୍ରସ୍ତୁତ କରିବାରେ ସାହାଯ୍ୟ କରିଥିଲେ—ବିଶ୍ୱଭାରତୀର ଛାତ୍ରୀ ଶ୍ରୀମତୀ ବେଲାରାଣୀ ଚନ୍ଦ, ଶ୍ରୀମତୀ ବ୍ରତତୀ ମହାପାତ୍ର ଓ ମୋର ସ୍ନେହାସ୍ପଦ ଭଉଣୀ ଶ୍ରୀମତୀ ଅନ୍ନପୂର୍ଣ୍ଣା ଆଚାର୍ଯ୍ୟ ଓ ଶ୍ରୀମତୀ ବିଦ୍ୟୁତ୍ ଲତା ରଥ । ଏମାନଙ୍କୁ ମୋର ଶୁଭେଚ୍ଛା ଜଣାଉଛି ।

ନାନା ବାଧା ବିଘ୍ନ ସତ୍ତ୍ୱେ 'ରବୀନ୍ଦ୍ର ଜୀବନ କଥା' ପ୍ରକାଶ ପାଉଛି । ଏହି ଗ୍ରନ୍ଥ ପ୍ରକାଶନ ପାଇଁ 'ରବୀନ୍ଦ୍ରନାଥ ଠାକୁର ଜନ୍ମ-ଶତବାର୍ଷିକୀ କମିଟି, ଓଡ଼ିଶା' ଏକହଜାର ଟଙ୍କା ସାହାଯ୍ୟ କରିଥିବାରୁ ସେମାନଙ୍କ ନିକଟରେ ମୁଁ କୃତଜ୍ଞ । ଖୁବ୍ ଅଳ୍ପ ସମୟ ମଧ୍ୟରେ ଅକ୍ଳାନ୍ତ ପରିଶ୍ରମ କରି ଏହି ପୁସ୍ତକ ପ୍ରକାଶ କରିବାରେ ଡଗର ପ୍ରେସର କର୍ମଚାରୀବୃନ୍ଦ, ବିଶେଷ ଭାବରେ 'ଡଗର'ର ସହକାରୀ ସମ୍ପାଦକ ଶ୍ରୀଯୁକ୍ତ ରାମଚନ୍ଦ୍ର ମିଶ୍ର ଓ ମୁଦ୍ରା ସଂଶୋଧକ ଶ୍ରୀ କେଶବ ପ୍ରସାଦ ରଥଙ୍କ ସାହାଯ୍ୟ ଭୁଲି ପାରିବି ନାହିଁ ।

ଆଜି ବିନମ୍ର ଭାବରେ ଏତିକି ନିବେଦନ କରୁଛି ଯେ 'ରବୀନ୍ଦ୍ର ଜୀବନ କଥା' ଓଡ଼ିଶାବାସୀଙ୍କୁ କର୍ମମୟ ଜୀବନର ପ୍ରେରଣା ଦେଉ ।

ମେ' ମାସ—୧୯୬୧
କଟକ
ଶ୍ରୀ ଭାବଗ୍ରାହୀ ମିଶ୍ର

# ପ୍ରସ୍ତାବନା

ଆଜିକୁ ପ୍ରାୟ ଶହେବର୍ଷ ତଳେ ବଙ୍ଗଳା ଓ କଲିକତାର ଅବସ୍ଥା କଣ ଥିଲା ତାହା ବର୍ତ୍ତମାନର ଲୋକଙ୍କ ପକ୍ଷରେ କଳ୍ପନା କରିବା ଦୁରୂହ । କାରଣ ଯେଉଁ ପରିବର୍ତ୍ତନ ଦେଖାଦେଇଛି, ତାହା ଯଦି କେବଳ ବସ୍ତୁଗତ ହୋଇଥାଆନ୍ତା, ଅର୍ଥାତ୍ ଜୀବନ ଯାତ୍ରାର ସୁଖଦୁଃଖର ଉପକରଣ ମଧ୍ୟରେ ଯଦି ତାହାର ବିସ୍ତାର ସୀମିତ ହୋଇଥାନ୍ତା, ତେବେ ବୁଝିବା ଉପଲବ୍ଧି କରିହୁଅନ୍ତା । କିନ୍ତୁ ଅସଲ ପରିବର୍ତ୍ତନ ହୋଇଛି ବଙ୍ଗାଳୀର ମନରେ, ଏହାକୁ ଗୁଣଗତ ବିବର୍ତ୍ତନ କୁହାଯାଏ — କାଳସ୍ରୋତରେ ଏହିପରି ହୁଏ ।

ଇଂରେଜମାନେ ବଙ୍ଗଳାରେ ଆଧିପତ୍ୟ ବିସ୍ତାର କଲେ ପ୍ରାୟ ଆହୁରି ଶହେବର୍ଷ ପୂର୍ବରୁ । ଇଂରେଜଙ୍କର ସେହି ନାଗ-ଫାଶରୁ ମୁକ୍ତ ହେବାପାଇଁ ସ୍ୱାଧୀନତା ସଂଗ୍ରାମ ଆରମ୍ଭ ହୋଇ-ଥିଲା ଉତ୍ତର ଓ ମଧ୍ୟ ଭାରତରେ । ଇତିହାସରେ ଯାହା ଆଜି ପର୍ଯ୍ୟନ୍ତ ସିପାହୀ ବିଦ୍ରୋହ ନାମରେ ଅଭିହିତ ହେଉଥିଲା; ସେହି ନାମର ଅବସାନ ଖୁବ୍ ନିକଟରେ ହୋଇଛି । ବଙ୍ଗଳାରେ ମଧ୍ୟ ଏହି ସଂଗ୍ରାମର ତରଙ୍ଗ ପ୍ରବାହିତ ହୋଇଥିଲା । କିନ୍ତୁ ବଙ୍ଗାଳୀ-ମାନେ ସେପର୍ଯ୍ୟନ୍ତ ଇଂରେଜମାନଙ୍କ ନାଗଫାଶରୁ ମୁକ୍ତହେବାର କଳ୍ପନା କରିପାରି ନଥିଲେ । ସେଥିପାଇଁ ବଙ୍ଗାଳୀମାନଙ୍କର ସାମାଜିକ ଜୀବନରେ ଏତେବଡ଼ ବିପ୍ଳବର ରେଖାପାତ ସୃଷ୍ଟି ହୋଇ ନଥିଲା ।

କିନ୍ତୁ ଏହି ରାଜନୈତିକ ବିପ୍ଳବର ପ୍ରାୟ ଛଅଶ ବର୍ଷ ପୂର୍ବେ ବଙ୍ଗଳାର ସମାଜ ଓ ଧର୍ମଜୀବନରେ ମହା ବିପ୍ଳବ ଦେଖା ଦେଇଥିଲା, ରାମମୋହନ ରାୟଙ୍କ ନୂତନ ଧର୍ମପ୍ରଚାର ଫଳରେ ।

୧

ରବୀନ୍ଦ୍ରନାଥଙ୍କର ଜନ୍ମ ୧୮୬୧ ଖ୍ରୀଷ୍ଟାବ୍ଦରେ । ଏହାର ପୂର୍ବ ପାଞ୍ଚବର୍ଷକୁ ବଙ୍ଗଳା ସମାଜର ମାହେନ୍ଦ୍ରକ୍ଷଣ କୁହାଯାଇପାରେ । ଏହି ସମୟ ମଧ୍ୟରେ କଲିକତା ବିଶ୍ୱବିଦ୍ୟାଳୟ ସ୍ଥାପନ, ଦେବେନ୍ଦ୍ରନାଥଙ୍କର ବ୍ରାହ୍ମଧର୍ମ ପ୍ରଚାର, ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କର ବିଧବା ବିବାହ ଓ ସ୍ତ୍ରୀ ଶିକ୍ଷା ବିଷୟକ ଆନ୍ଦୋଳନ, ବଙ୍ଗଳାର ସାନ୍ତାଳ ବିଦ୍ରୋହ, ବଙ୍ଗ ସାହିତ୍ୟରେ ଈଶ୍ୱରଗୁପ୍ତଙ୍କର ତିରୋଭାବ, ମାଇକେଲ୍ ମଧୁସୂଦନ ଓ ଦୀନବନ୍ଧୁ ମିତ୍ରଙ୍କର ଆବିର୍ଭାବ, 'ସୋମପ୍ରକାଶ' ପତ୍ରିକାର ଅଭ୍ୟୁଦୟ, ଦେଶୀୟ ନାଟ୍ୟଶାଳା ସ୍ଥାପନ, ନାଟ୍ୟସାହିତ୍ୟ ଓ ଅଭିନୟ ଜରିଆରେ ଯୁଗୋଚିତ ପ୍ରତିଭାର ଆତ୍ମପ୍ରକାଶର ପ୍ରୟାସ—ଅତି ଗୁରୁତ୍ୱପୂର୍ଣ୍ଣ ଘଟଣାବଳୀ । ପ୍ରତ୍ୟେକ ଘଟଣା ବଙ୍ଗଳାକୁ ମଧ୍ୟଯୁଗୀୟ ମନୋଭାବରୁ ମୁକ୍ତ ହେବାରେ ସହାୟତା କରିଥିଲି । ଆଧୁନିକତାର ସୂତ୍ରପାତ ହେଲି ଏହି ସମୟରେ । ବଙ୍ଗଳାର ଏହି ନବଜନ୍ମର ପ୍ରତ୍ୟୁଷ କାଳରେ ରବୀନ୍ଦ୍ରନାଥଙ୍କର ଆବିର୍ଭାବ ।

ରବୀନ୍ଦ୍ରନାଥଙ୍କର ଜନ୍ମ ସମୟକୁ ଦେବେନ୍ଦ୍ରନାଥଙ୍କର ପରିବାର ପ୍ରାଚୀନ ହିନ୍ଦୁ ସମାଜର ପରମ୍ପରାରୁ ଅନେକ ପରିମାଣରେ ମୁକ୍ତ ହୋଇଥିଲେ । ଦେବେନ୍ଦ୍ରନାଥ ଯୌବନାବସ୍ଥାରେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । କଲିକତାର ବିଶିଷ୍ଟ ଧନୀ ଓ ଅଭିଜାତ ବଂଶର ଏକ ଯୁବକ ପକ୍ଷରେ ପ୍ରାଚୀନ ସମାଜର କୁସଂସ୍କାର ଭାଙ୍ଗି ବାହାରି ପଡ଼ିବା ଯେ କିପରି ନିଦାରୁଣ ପରୀକ୍ଷା, ତାହା ଆମର ଏହି ସଂସ୍କାରହୀନ ଯୁଗରେ କଳ୍ପନା କରିବା କଠିନ । କାରଣ ଆଜି ସମାଜରେ ଅନ୍ଧାନୁସରଣର ବିଷଦାନ୍ତ ଘରେ ଘରେ ଭାଙ୍ଗିଯାଇଛି ଓ ଦ୍ରୁତଗତିରେ ଭାଙ୍ଗିଯାଉଛି । ରବୀନ୍ଦ୍ରନାଥ କହିଛନ୍ତି "ମୋର ଜନ୍ମପୂର୍ବରୁ ଆମର ପରିବାର ବନ୍ଧାଘାଟର ବାହାରେ ସମାଜର ଲଙ୍ଗର ପକାଇ ସାରିଥିଲି ।" ବ୍ରାହ୍ମଧର୍ମ ଗ୍ରହଣ କରିବା ପରେ (୧୮୪୩) ଦେବେନ୍ଦ୍ରନାଥଙ୍କର ପରିବାରରେ ଯୁଗାନ୍ତର ଆସିଲି । ଆଚାର, ଅନୁଶାସନ,

ଧ୍ୟାକର୍ମ···ସମସ୍ତ ବିରଳ ହେଲା; ସେ ଯୁଗର ଧନୀ ହିନ୍ଦୁଘରେ ବାରମାସରେ ତେରପର୍ବ, ବହୁ ପୂଜା ଉତ୍ସବ; ସବୁ ବନ୍ଦକଲେ ଦେବେନ୍ଦ୍ରନାଥ । ରବୀନ୍ଦ୍ରନାଥ କହିଛନ୍ତି "ମୋର ଏ ବିଷୟ ସ୍ମୃତି ଶକ୍ତି ମଧ୍ୟରେ ନାହିଁ । ମୋର ଜନ୍ମ ସମୟକୁ ସବୁ ନୂତନ"। ଅର୍ଥାତ୍ ପ୍ରାୟ ପୂର୍ବ ସଂସ୍କାରହୀନ ପରିବେଶ ମଧ୍ୟରେ ରବୀନ୍ଦ୍ର-ନାଥଙ୍କର ଜନ୍ମ ।

ସେ ସମୟରେ ନୂତନ ଯୁଗ ବା ଆଧୁନିକତା କହିଲେ କଣ ବୁଝାଏ ତାର ଗୋଟିଏ ଦୁଇଟା ଉଦାହରଣ ଦେବା ଉଚିତ । ଆଦବ କାଇଦା ଓ ପୋଷାକ ପରିଛଦରେ ଠାକୁର ଘରର ପୁରୁଷ-ମାନେ ଥିଲେ ଅଧା ମୋଗଲ । କାରଣ ଊନବିଂଶ ଶତକର ମଧ୍ୟଭାଗ ପର୍ଯ୍ୟନ୍ତ ଏହା ଥିଲା ଆଭିଜାତ୍ୟର ଲକ୍ଷଣ । ଏହା ସଙ୍ଗେସଙ୍ଗେ ଇଉରୋପୀୟଙ୍କର ଆଧୁନିକତାର ନୂତନ ସାଜସରଞ୍ଜାମ ଆସି ସାରିଥିଲା । ଦେବେନ୍ଦ୍ରନାଥଙ୍କ ପିତା ଦ୍ୱାରକାନାଥ ଠାକୁର ଯେପରି ଧନୀ ଓ ମାନୀ ସେହିପରି ସୌଖୀନ ଓ ବିଳାସୀ ଥିଲେ । ତାଙ୍କ ସମୟରୁ ବିଲାତି ଛବି, ଇଟାଲୀୟ ପ୍ରସ୍ତର ମୂର୍ତ୍ତି, ବିଲାତି ଟେବୁଲ ଚୌକୀ, ସୋଫା, କାଉଚ ପ୍ରଭୃତି ଆମଦାନୀ ହେଲା । ଦେବେନ୍ଦ୍ର-ନାଥଙ୍କର ପୁତ୍ର ଓ ଜାମାତାମାନେ ଇଂରେଜ ମନୋଭାବରୁ ଯେ ସମ୍ପୂର୍ଣ୍ଣ ମୁକ୍ତ ଥିଲେ, ତାହା କୁହାଯାଇ ପାରିବ ନାହିଁ । ବିଲାତି ଅର୍ଗାନ୍, ପିଆନୋ, ଫ୍ଲୁଟ୍, ବେହେଲା ପ୍ରଭୃତିର ଚଳଣି ଆରମ୍ଭ ହୋଇଯାଇଥିଲା । ଆଦି ବ୍ରାହ୍ମସମାଜର ମନ୍ଦିରରେ ଏକାନ୍ତ ବିଲାତି ପାଇପ ଅର୍ଗାନ୍ ବ୍ୟବହୃତ ହେଉଥିଲା । ଏହି ଦେଶୀ ଓ ବିଦେଶୀ ସଂସ୍କୃତି ମଧ୍ୟରେ ରବୀନ୍ଦ୍ରନାଥଙ୍କର ଶିଶୁକାଳ ଅତିବାହିତ ହୋଇଥିଲା ।

ସତ୍ୟେନ୍ଦ୍ରନାଥ ଠାକୁର ବଙ୍ଗତଥା ଭାରତର ସର୍ବପ୍ରଥମ ଆଇ.ସି.ଏସ୍. । ବିଲାତରୁ ଫେରି ସେ ଅନେକ କିଛି ବିଲାତି ଆଦବ କାଇଦା ପ୍ରବର୍ତ୍ତନ କଲେ । ସେଥିମଧ୍ୟରୁ ଗୋଟିଏ ହେଉଛି ନାରୀ ସ୍ୱାଧୀନତା ଆନ୍ଦୋଳନ । ୧୮୬୭ ସାଲରେ କର୍ମସ୍ଥଳ ବମ୍ବେରୁ ଘରକୁ ଫେରିଲାବେଳେ ଘରର ବୋହୂଙ୍କୁ ମେମ୍‌ସାହେବପରି ସଦର ଦରଜାରେ ଓହ୍ଲାଇବାର ଦେଖି ସେଦିନ ଘରେ ଯେଉଁ

ଶୋକାଭିନୟ ହୋଇଥିଲା ତାହା ବର୍ଣ୍ଣନାତୀତ । ସତ୍ୟେନ୍ଦ୍ରନାଥଙ୍କ ପ୍ରଭାବ ଫଳରେ ଜ୍ୟୋତିରୀନ୍ଦ୍ରନାଥ ତାଙ୍କର ସ୍ତ୍ରୀଙ୍କୁ ଘୋଡ଼ାରେ ଚଢ଼ାଇ ଅନ୍ୟ ଏକ ଘୋଡ଼ାରେ ନିଜେ ଚଢ଼ି ପଡ଼ିଆରେ ସାନ୍ଧ୍ୟ ସମୀରଣ ସେବନ କରିବାକୁ ବାହାରି ପଡ଼ିଲେ । ଏହି କାଣ୍ଡ ଦେଖି ଘରେ ବାହାରେ ନାନା ବିରୋଧ ଦେଖାଦେଇଥିଲା । କାରଣ ଦିନେ ଏହି ଠାକୁର ଘରର ଝିଅ ବୋହୂମାନେ ପାଲିଙ୍କି ଚଢ଼ି ଗଙ୍ଗାସ୍ନାନକୁ ଯାଉଥିଲେ । ପାଲିଙ୍କି ସୁଦ୍ଧା ପାଣିରେ ବୁଡ଼ାଇ ଅଣା ଯାଉଥିଲା । ଘାଟରେ ଓହ୍ଲାଇ ଗାଧୋଇବାର ସାହସ ମଧ୍ୟ ନଥିଲା । ଏହିପରି ଭାବରେ ସମସ୍ତେ ପର୍ଦ୍ଦାନସୀନ ଥିଲେ । ଘର ଓ ବାହାର ଥିଲା, ଅମାବାସ୍ୟା ଓ ପୂର୍ଣ୍ଣିମା ପରି । ରବୀନ୍ଦ୍ରନାଥଙ୍କ କୈଶୋର ଓ ଯୌବନର ଅନେକ ସମୟ ଏହି ମଝିଆ ଭାଇ ସତ୍ୟେନ୍ଦ୍ରନାଥ ଓ ଜ୍ୟୋତିଭାଇଙ୍କ ସହ କଟିଥିଲା, ନୂତନ ବାତାବରଣ ଓ ନୂତନ ପରିବେଶ ମଧ୍ୟରେ ।

ସାହିତ୍ୟ କ୍ଷେତ୍ରରେ ପଥପ୍ରଦର୍ଶକ ରୂପେ ମାଇକେଲ୍ ମଧୁସୂଦନ, ଦୀନବନ୍ଧୁ ଓ ବଙ୍କିମଚନ୍ଦ୍ରଙ୍କର ଆବିର୍ଭାବ ରବୀନ୍ଦ୍ରନାଥଙ୍କର ବହୁପୂର୍ବରୁ । ମାଇକେଲ୍‌ଙ୍କର ଅମିତ୍ରାକ୍ଷର ଛନ୍ଦର ପ୍ରଚଳନ ବଙ୍ଗଳା କାବ୍ୟରେ ଯୁଗାନ୍ତର ଆଣିଥିଲା । ବଙ୍ଗଳା ଭାଷାରେ ଆସିଲା ନୂତନ ଶକ୍ତି, ଗତିରେ ସ୍ୱାଚ୍ଛନ୍ଦ୍ୟ ଓ ସାବଲୀଳତା । କେବଳ ଭାଷାରେ ନୁହେଁ, ଭାବ ରାଜ୍ୟରେ ଓ ଦୃଷ୍ଟିଭଙ୍ଗୀରେ ନୂତନ ବିପ୍ଳବ ଦେଖାଦେଲା । ଗଦ୍ୟ ନାଟକ ରଚନାରେ ଦୀନବନ୍ଧୁ ଖାଣ୍ଟି ଗାଉଁଲି ଭାଷାକୁ ଗ୍ରହଣ କଲେ । ଅର୍ଥାତ୍ ସାଧାରଣ ବଙ୍ଗାଳୀର କଥିତ ଭାଷା ନାଟକର ପାତ୍ର ପାତ୍ରୀ ମୁଖରେ ଶୋଭା ପାଇଲା । ନାଟକର ବିଷୟବସ୍ତୁ ଘରୋଇ ସୁଖଦୁଃଖର କାହାଣୀ ଓ ସମସ୍ୟାକୁ ନେଇ ଗଢ଼ିଉଠିଲା । ଏପର୍ଯ୍ୟନ୍ତ ଇଂରେଜ ନାଟକର ଅବଲମ୍ବନରେ ବା ପୌରାଣିକ ବିଷୟବସ୍ତୁକୁ ନେଇ ନାଟକ ରଚିତ ହେଉଥିଲା । ଦୀନବନ୍ଧୁଙ୍କର 'ନୀଳଦର୍ପଣ' ନାଟକ ସାହିତ୍ୟ ଓ ନାଟ୍ୟାଭିନୟ କ୍ଷେତ୍ରରେ ବିପ୍ଳବ ଆଣିଲା । ଏହି ସନ୍ଧିକ୍ଷଣରେ ବଙ୍କିମଚନ୍ଦ୍ରଙ୍କର ଆବିର୍ଭାବ । ତାଙ୍କର ଭାଷାରେ ଗାମ୍ଭୀର୍ଯ୍ୟ, ଆଖ୍ୟାନ ଓ ଚରିତ୍ର

ଚରଣରେ ଯେଉଁ ବୈଚିତ୍ର୍ୟ ପରିଲକ୍ଷିତ ହୁଏ, ତାହା ସମ୍ପୂର୍ଣ୍ଣ ଅପୂର୍ବ । ଆଧୁନିକ ଯୁଗରେ ବଙ୍ଗଳା ଭାଷା ସୃଷ୍ଟି ଓ ଗଢ଼ ପାଇଲା, ମଧୁସୂଦନଙ୍କ କାବ୍ୟ ଓ ବଙ୍କିମଚନ୍ଦ୍ରଙ୍କର ଉପନ୍ୟାସରେ— ଇଉରୋପୀୟ ଓ ଭାରତୀୟ ଦୁଇ ବିପରୀତ ଭାବଧାରାର ସମ୍ମିଶ୍ରଣ ହେଲା । ପରବର୍ତ୍ତୀକାଳରେ ରବୀନ୍ଦ୍ରନାଥଙ୍କର ରଚନାରେ ଏହି ଦୁଇଧାରାର ପରିପୂର୍ଣ୍ଣ ବିକାଶ ଦେଖାଯାଏ ।

(୨)

ରବୀନ୍ଦ୍ରନାଥ ତାଙ୍କର ଏକ ଉପନ୍ୟାସର ସୂଚନାରେ କହିଛନ୍ତି ଯେ, "ଆରମ୍ଭର ମଧ୍ଯ ଆରମ୍ଭ ଅଛି ।"

ଜଗନ୍ନାଥ କୁଶାରି ନାମକ ଜଣେ ବ୍ୟକ୍ତି ଆତ୍ମୀୟସ୍ୱଜନଙ୍କ ସହିତ ମନାନ୍ତର ହେବା ଯୋଗୁ ଯଶୋହରଖୁଲ୍ନା ଗ୍ରାମ ପରିତ୍ୟାଗ କଲେ । ସପରିବାରରେ ନୌକା ସାହାଯ୍ୟରେ ଆସି ପହଞ୍ଚିଲେ ଇଂରେଜ ସୌଦାଗରଙ୍କର ଗୋବିନ୍ଦପୁର ଗ୍ରାମରେ । ସେ ସମୟକୁ ଇଂରେଜ ବଣିକମାନେ କଲିକତାରେ ବାଣିଜ୍ୟ ବ୍ୟବସାୟ ଆରମ୍ଭ କରିଥାନ୍ତି ମାତ୍ର । ଜଗନ୍ନାଥ 'ଜେଲେମାଲୋ' ପ୍ରଭୃତି ଲୋକମାନଙ୍କ ସଙ୍ଗରେ ଏକ ପଲ୍ଲୀ ଗ୍ରାମରେ ବାସ କଲେ । ସେଠାରେ ବ୍ରାହ୍ମଣ ନଥିଲେ । ଏହି ଲୋକମାନେ ସେମାନଙ୍କ ମଧ୍ଯରେ ଜଣେ ବ୍ରାହ୍ମଣଙ୍କୁ ପାଇ ଖୁବ ଖୁସି ହେଲେ । ସେମାନେ କହିଲେ 'ଠାକୁର ମୋଶାୟ' (ମହୋଦୟ) ଆସିଛନ୍ତି । ସେ ସମୟରେ ବ୍ରାହ୍ମଣ-ମାନଙ୍କର ଯେଉଁ ପେଶା ହେଉନା କାହିଁକି, ସେମାନେ ଦେବତାପରି ସମ୍ମାନ ପାଉଥିଲେ । ମୁହେଁ ମୁହେଁ ଠାକୁର ଶବ୍ଦ ପ୍ରଚଳିତ ହେଲା । ଜଗନ୍ନାଥ ଇଂରେଜ ଜାହାଜବାଲମାନଙ୍କର ମାଲପତ୍ର ସରବରାହ କଲେ । ସେଠାରେ ମଧ୍ଯ ଲେଖାହେଲା 'ଜଗନ୍ନାଥ ଠାକୁର' । ଇଂରେଜୀରେ ଠାକୁର ହେଲା ଟେଗୋର୍—Tagore ବା Tagoure ଏହିପରି ଭାବରେ ଏମାନଙ୍କର ଅଭିନବ ପଦବୀ ପ୍ରଚଳିତ ହେଲା ।

ଏହି ବଂଶର ନୀଳମଣି ଠାକୁର ଇଷ୍ଟଇଣ୍ଡିଆ କମ୍ପାନୀ ଦେୱାନୀ ପାଇବାପରେ ଓଡ଼ିଶା କଲେକ୍ଟରେଟ୍‌ରେ ମୁନସୀର ହେଲେ ଓ ଖୁବ୍ ଧନ ଉପାର୍ଜନ କଲେ । ପରେ ଗଙ୍ଗା କୂଳରେ ପଥୁରିଆଘାଟ ପଲ୍ଲୀରେ ଘରଦ୍ୱାର କରିରହିଲେ । ଅର୍ଥ ସବୁଦିନେ ଅନର୍ଥର ମୂଳ । ଫଳରେ ଦର୍ପନାରାୟଣଙ୍କ ସଙ୍ଗରେ ବିବାଦ ଲାଗିଲା । ନୀଳମଣି ପଥୁରିଆଘାଟର ଘରଦ୍ୱାର ଓ ଜମିଜମା ଛାଡ଼ିଦେଇ ନଗଦ ଏକଲକ୍ଷ ଟଙ୍କାନେଇ ସେ ସ୍ଥାନ ତ୍ୟାଗକଲେ ।

କଲିକତାର ଚିତ୍‌ପୁର ରାସ୍ତାର ପୂର୍ବଦିଗରେ 'ଯୋଡ଼ାଶାଁକୋ' ନିକଟରେ ଜମି କିଣି ଘର ତିଆରି କଲେ । ଏହା ପ୍ରାୟ ୱାରେନ୍ ହେଷ୍ଟିଙ୍ଗସ୍‌ଙ୍କର ଶାସନକାଳର ଶେଷ ସମୟରେ (୧୭୮୪) । ସେତେବେଳେ ସେ ପଡ଼ାର ନାମ ଥିଲା ମେଛୁଆବଜାର— 'ଯୋଡ଼ାଶାଁକୋ' ନାମ ଦିଆହେଲା ବହୁତ ଦିନପରେ ।

ଏହି ବଂଶରେ ରବୀନ୍ଦ୍ରନାଥଙ୍କର ପିତାମହ ଦ୍ୱାରକାନାଥଙ୍କର ଜନ୍ମ । ଦ୍ୱାରକାନାଥଙ୍କଠାରୁ (୧୭୯୪—୧୮୪୬) 'ଯୋଡ଼ାଶାଁକୋ' ଠାକୁର ପରିବାରର ଧନ, ମାନ, ପ୍ରତିପତ୍ତି ବଢ଼ିବାକୁ ଲାଗିଲା । ଦ୍ୱାରକାନାଥ ସେ ସମୟରେ କଲିକତାରେ ଏକ ବଡ଼ ବ୍ୟବସାୟୀ ଥିଲେ । ବିଦ୍ୱାନ, ବୁଦ୍ଧିମାନ ଓ ଧନବାନ୍ ହିସାବରେ ତାଙ୍କର ଖୁବ୍ ନାମ ଥିଲା । ବଂଗାଳୀ, ଇଂରେଜୀ ବଣିକ ବା ରାଜପୁରୁଷ ତାଙ୍କୁ ଖୁବ୍ ଶ୍ରଦ୍ଧା କରୁଥିଲେ । ତାଙ୍କର ଉଦ୍ୟାନ ଭୋଜିର ନିମନ୍ତ୍ରଣ ପାଇବାକୁ ଉତ୍ସୁକ ଥିଲେ । ଏମାନଙ୍କ ପାଇଁ ଖାଇବା ପିଇବା ଓ ନାଚଗୀତର ଆୟୋଜନ ହେଉଥିଲା । ଦ୍ୱାରକାନାଥ ଯେପରି ଅର୍ଥ ଉପାର୍ଜନ କରୁଥିଲେ, ସେପରି ହାତଖୋଲି ଖର୍ଚ୍ଚ କରୁଥିଲେ । କଲିକତାର ବହୁ ଦେଶହିତକର କାର୍ଯ୍ୟରେ ଅକାତରରେ ଦାନ କରୁଥିଲେ । ବିଲାତ ଭ୍ରମଣ କାଳରେ ସେଠାରେ ତାଙ୍କର ଦାନ ଖଇରାତ୍ ଦେଖି ଇଂରେଜ ଲୋକେ ତାଙ୍କୁ 'ପ୍ରିନ୍‌ସ' ବୋଲି ଡାକୁଥିଲେ । ଦ୍ୱାରକାନାଥ ଥିଲେ ରାଜା ରାମମୋହନ ରାୟଙ୍କର ସମସାମୟିକ ଓ ବନ୍ଧୁ । କିନ୍ତୁ ସେ ବନ୍ଧୁତ୍ୱର ଖାତିରରେ ହିନ୍ଦୁ ଧର୍ମ ପରିତ୍ୟାଗ କରି ନଥିଲେ ଓ ଲୌକିକ ଧର୍ମର ଖାତିରରେ ବନ୍ଧୁଙ୍କର ବିରୋଧ ମଧ୍ୟ କରି ନଥିଲେ । ନିଜର ସୁବିଧା ପାଇଁ

ଲୋକାଗ୍ରର ଯେପରି ମାନୁଥିଲେ, ସାହେବିଆନା ସେହିପରି କରୁଥିଲେ ।

ରବୀନ୍ଦ୍ରନାଥଙ୍କର ପିତା ଏହି ଦ୍ୱାରକାନାଥଙ୍କର ପୁତ୍ର । ସେ ରାମମୋହନଙ୍କଠାରୁ ଧର୍ମ ଗ୍ର ଣ କରି ବ୍ରାହ୍ମଧର୍ମରେ ଦୀକ୍ଷିତ ହେଲେ (୧୮୪୩, ୨୧ ଡ଼ିସେମ୍ବର) । ଏ ଘଟଣାରେ ବିଷୟୀ ପିତା ଆଦୌ ଖୁସି ହୋଇ ନ ଥିଲେ । କିନ୍ତୁ ଦେବେନ୍ଦ୍ରନାଥ କୌଣସିମତେ ପୁରୁଣା ବିଶ୍ୱାସ ସହିତ ନିଜକୁ ଖାପ ଖୁଆଇ ପାରିଲେ ନାହିଁ । ଖୁବ୍ ଅଶାନ୍ତି ମଧ୍ୟରେ ଦେବେନ୍ଦ୍ରନାଥଙ୍କ ସମୟ ଅତି ାହିତ ହେଲା । କିନ୍ତୁ ଦିନେ ଉପନିଷଦର ଏକ ଛିନ୍ନ ପୃଷ୍ଠାରୁ ସେ ଏକ ମହାନ୍ ତଥ୍ୟ ପାଇଲେ—'ଈଶ୍ୱର ସମସ୍ତ ବିଷୟ ମଧ୍ୟରେ ବିଦ୍ୟମାନ୍, ସେ ଯାହା ଦେବେ ତାହା ଖୁସି ହୋଇ ଗ୍ରହଣ କର, ଅନ୍ୟ ଲୋକର ଧନରେ ଲୋଭ କରନାହିଁ ।' ଏହାହିଁ ହେଲା ତାଙ୍କ ଜୀବନର ମହାମନ୍ତ୍ର ।

ଏହିପରି ସମୟରେ ବିଲାତରେ ଦ୍ୱାରକାନାଥଙ୍କର ମୃତ୍ୟୁ ହେଲା । ବ୍ୟବସାୟ ବାଣିଜ୍ୟ ଓ ଜମିଦାରୀର ସମସ୍ତ ବୋଝ ଯୁବକ ଦେବେନ୍ଦ୍ରନାଥଙ୍କ ଉପରେ ପଡ଼ିଲା । ସଂପତ୍ତିବାଡ଼ି ବିକ୍ରୀ କରି ବ୍ୟବସାୟର ସମସ୍ତ ଋଣ ପରିଶୋଧ କଲେ । ଋଣମୁକ୍ତ ହେବା ତାଙ୍କର ସଙ୍କଳ୍ପ ଥିଲା । ତେଣୁ ଧନୀ ଆତ୍ମୀୟସ୍ୱଜନଙ୍କର ପରାମର୍ଶ ଗ୍ରହଣ କରି ମହାଜନମାନଙ୍କୁ ଫାଙ୍କି ଦେବାର ପ୍ରସ୍ତାବକୁ ସେ ଗ୍ରହଣ କରି ପାରିଲେ ନାହିଁ । ଋଣ ପରିଶୋଧ ଛଡ଼ା ପିତାଙ୍କର ପ୍ରତିଶ୍ରୁତି ଲକ୍ଷାଧିକ ଟଙ୍କାର ଗୃହା ବହୁବର୍ଷରେ ସେ ପରିଶୋଧ କଲେ । କାରଣ ଏହି ପ୍ରତିଶ୍ରୁତିକୁ ମଧ୍ୟ ସେ ପିତୃଋଣ ବୋଲି ଭାବୁଥିଲେ ।

ଦେବେନ୍ଦ୍ରନାଥଙ୍କ ସାଂସାରିକ ଓ ଆଧ୍ୟାତ୍ମିକ ଜୀବନସଂଗ୍ରାମର ଇତିହାସ ତାଙ୍କର ଆତ୍ମଚରିତରୁ ଜଣାଯାଏ । ବଙ୍ଗଳା ସାହିତ୍ୟରେ ଏହା ଏକ ଅପୂର୍ବ ଗ୍ରନ୍ଥ । ଏହାର ଭାଷା ଯେପରି ସମୃଦ୍ଧ, ଆନ୍ତରିକତା ସେହିପରି ସୁସ୍ପଷ୍ଟ । ଏହାଛଡ଼ା ଭାରତୀୟ ନାନାଶାସ୍ତ୍ରରୁ ଧର୍ମବିଶ୍ୱାସ ସମ୍ପର୍କରେ ନାନା ତଥ୍ୟ ସଂଗ୍ରହ କରି ବ୍ରାହ୍ମଧର୍ମ ନାମକ ଏକ ପୁସ୍ତକ ସଙ୍କଳନ କରିଥିଲେ । ଏହି ବ୍ରାହ୍ମଧର୍ମ ପୁସ୍ତକ ଖଣ୍ଡି ଯେ କେବଳ ହିନ୍ଦୁ ଧର୍ମ-ଚିନ୍ତାର ଉତ୍କୃଷ୍ଟ ସଙ୍କଳନ ତାହା ନୁହେଁ,

ବିଶ୍ୱଧର୍ମର ଭୂମିକା ରୂପେ ଏହାକୁ ଗ୍ରହଣ କରିବାରେ କାହାରି ବିରୋଧ ହୋଇ ନପାରେ ।

ପୌଷ ସାତ ହେଉଛି ଦେବେନ୍ଦ୍ରନାଥଙ୍କ ଜୀବନର ପୁଣ୍ୟ ଦିନ । ସେହିଦିନ ସେ ସତ୍ୟ ଧର୍ମ ଲାଭ କରିଥିଲେ ଓ ବ୍ରାହ୍ମଧର୍ମରେ ଦୀକ୍ଷିତ ହୋଇଥିଲେ । ରବୀନ୍ଦ୍ରନାଥଙ୍କ ଜୀବନରେ ସେ ଦିନଟି ମଧ୍ୟ ଖୁବ୍ ପବିତ୍ର—'ଜୀବନର ଶେଷ ସାତ ପୌଷ' ପର୍ଯ୍ୟନ୍ତ ସେ ଏହି ଦିନଟିକୁ ସ୍ମରଣ କରୁଥିଲେ । ବ୍ରାହ୍ମଧର୍ମ ଗ୍ରନ୍ଥଟି କବିଙ୍କର ଥିଲା ନିତ୍ୟସଙ୍ଗୀ—ସାଧକ ଜୀବନର ଆଶ୍ରୟ, ଆଧ୍ୟାତ୍ମଜୀବନର ଶକ୍ତି, ସମ୍ବଳ, ଆନନ୍ଦ ଓ କାର୍ଯ୍ୟ । ଦେବେନ୍ଦ୍ରନାଥଙ୍କ ପନ୍ଦରଟି ସନ୍ତାନ ମଧ୍ୟରେ ରବୀନ୍ଦ୍ରନାଥ ହେଉଛନ୍ତି ଚତୁର୍ଦ୍ଦଶ । ତାଙ୍କର ଜନ୍ମ (୧୮୬୧) ଯୋଡ଼ାଶାଙ୍କୋର ଗୃହରେ ଓ ତିରୋଭାବ ମଧ୍ୟ ସେହି ଘରେ । ୮୦ ବର୍ଷରୁ ଊର୍ଦ୍ଧ୍ୱ, ଏହି ଘର ସଙ୍ଗରେ ତାଙ୍କର ସମ୍ପର୍କ ଥିଲା । ବର୍ତ୍ତମାନ ସେ ଘରକୁ କବିଙ୍କର ଜନ୍ମଦିନ (୨୫ ବୈଶାଖ) ଓ ମୃତ୍ୟୁଦିନ (୨୨ ଶ୍ରାବଣ)ରେ ବଙ୍ଗାଳୀମାନେ ଦେଖିବାକୁ ଯାଆନ୍ତି ।

ରବୀନ୍ଦ୍ରନାଥଙ୍କ ଜନ୍ମସମୟକୁ ଦେବେନ୍ଦ୍ରନାଥଙ୍କର ବୟସ ୪୫ ବର୍ଷ । ତାଙ୍କର ଜ୍ୟେଷ୍ଠପୁତ୍ର ଦ୍ୱିଜେନ୍ଦ୍ରନାଥଙ୍କର ବୟସ ୨୧; ମଧ୍ୟମ ପୁତ୍ର ୧୯ ବର୍ଷୀୟ ଯୁବକ ସତ୍ୟେନ୍ଦ୍ରନାଥ ସିଭିଲ୍ ସର୍ଭିସ୍ ପରୀକ୍ଷା ଦେବାକୁ ବିଲାତ ଯାଇଥାନ୍ତି । ପରବର୍ତ୍ତୀ ସନ୍ତାନ ହେମେନ୍ଦ୍ରନାଥଙ୍କର ବୟସ ୧୬ ବର୍ଷ, ଜ୍ୟୋତିରୀନ୍ଦ୍ରନାଥଙ୍କର ବୟସ ୧୩ ବର୍ଷ । ଅନ୍ୟ ଭାଇମାନଙ୍କର କଥା କହିଲି ନାହିଁ । କାରଣ ଏହି ଚାରି ଜ୍ୟେଷ୍ଠଭାଇଙ୍କର ପ୍ରଭାବ ରବୀନ୍ଦ୍ରନାଥଙ୍କ ଉପରେ ଯଥେଷ୍ଟ ପଡ଼ିଥିଲା । ଦେବେନ୍ଦ୍ରନାଥଙ୍କ କନ୍ୟାମାନଙ୍କ ମଧ୍ୟରେ ଯେଉଁମାନଙ୍କର ବିବାହ ହୋଇଥିଲା ସେମାନେ ଘରେ ଥାଆନ୍ତି—ଜୋଇଁମାନେ ପ୍ରାୟ ଘରଜୁଆଁଇ । କାରଣ ପତିତ ପୀରାଲି ବ୍ରାହ୍ମଣ—ତା' ଛଡ଼ା ବ୍ରାହ୍ମ ପରିବାର । ସେହି ବଂଶରେ ବିବାହ କରି ହିନ୍ଦୁ ସମାଜରେ ଜୋଇଁମାନେ ସ୍ଥାନ ଓ ମାନ ହରାଇଥିଲେ । ତେଣୁ ଅନେକଙ୍କୁ ଧନୀ ଶ୍ୱଶୁର ଘରେ ଆଶ୍ରୟ ନେବାକୁ ହେଉଥିଲା । ଏହି ବନ୍ଧୁ ଆତ୍ମୀୟ କୁଟୁମ୍ବ ଆଶ୍ରିତ, ଦାସଦାସୀ

ପାଇକ, ହରକରା ପରିବେଷ୍ଟିତ ଏକ ବୃନିଆଦ ପରିବାର ମଧ୍ୟରେ ଆଉ ପାଞ୍ଚଜଣଙ୍କ ପରେ ରବୀନ୍ଦ୍ରନାଥଙ୍କ ଶିଶୁକାଳ କଟିଥିଲା ।

ଧନୀ ଗୃହର ଖିଆଲ ମୁତାବକ ଶିଶୁମାନଙ୍କର ଲାଳନ ପାଳନ ଭାର ଥିଲା ଗୃହକର୍ମୀମାନଙ୍କ ଉପରେ । ମାତା ସାରଦା ଦେବୀ ଏହି ବୃହତ୍ ପରିବାର କର୍ତ୍ତ୍ରୀ – ସଂସାର ନେଇ ସର୍ବଦା ବ୍ୟସ୍ତ, ଗୃହସ୍ୱାମୀ ବିଦେଶରେ । ପୁତ୍ରବଧୂ ଓ କନ୍ୟାମାନେ ନିଜ ନିଜର ପିଲାମାନଙ୍କୁ ନେଇ ବ୍ୟସ୍ତ । ଏହାଛଡ଼ା ସାରଦା ଦେବୀଙ୍କ ଶେଷ ସନ୍ତାନ ଭୂମିଷ୍ଠ ହେବା ପରେ ତାଙ୍କର ଶରୀର ଭାଙ୍ଗି ପଡ଼ିଲା । ସେ ଶିଶୁର ଅକାଳ ମୃତ୍ୟୁ ହେଲା । ଫଳରେ ରବୀନ୍ଦ୍ରନାଥ ମା, ଭଉଣୀ ବା ଭାଉଜମାନଙ୍କ ଯତ୍ନ ପାଇ ନ ଥିଲେ । ଭୃତ୍ୟମାନଙ୍କର ଅଯତ୍ନ ଓ ଅନାଦର ମଧ୍ୟରେ ବଢ଼ିବାକୁ ଲାଗିଲେ । ଘରେ ଅଟକ ରହୁଥିଲେ । ଝରକାର ତଳେ ପୋଖରୀ; ତା'ର ପୂର୍ବ କଡ଼ରେ ପାଚେରୀ କଡ଼ରେ ବଡ଼ ଏକ ବରଗଛ, ଦକ୍ଷିଣ ଭାଗରେ ନାରିକେଳ ଗଛର ଧାଡ଼ି । ଶୈଶବକାଳ କଟେ ଏହି ଛବିଳ ଦୃଶ୍ୟ ଦେଖି (ଡାକଘରରେ ଅମଳର ଦଶା) । ଘରୁ ବାହାରିବାକୁ ମନା । ଘୂରି ବୁଲିଲେ ଗୃହକର୍ମୀଙ୍କ କାମ ବଢ଼େ— ସେମାନେ ଶାସନ କରନ୍ତି ।

ନୀଳମଣି ଠାକୁର ଭାଇଙ୍କଠାରୁ ପୃଥକ୍ ହେବାପରେ 'ଯୋଡ଼ାସାଁକୋ'ରେ ଘର ତିଆରି କରିଥିଲେ । ଦ୍ୱାରକାନାଥ ପୈତୃକ ଘର ନିକଟରେ ଏକ ବିରାଟ ଅଟ୍ଟାଳିକା ନିର୍ମାଣ କଲେ । ସେଠାରେ ସାହେବ, ମେମ୍‌ମାନଙ୍କୁ ଖାଇବା ପିଇବାକୁ ଦେଉଥିଲେ । ସେହି ଘର ବହୁତ ଦିନ ପର୍ଯ୍ୟନ୍ତ ବଙ୍ଗଳାର ଶିଳ୍ପ ଓ କାରୁକଳା ଆନ୍ଦୋଳନର କେନ୍ଦ୍ରସ୍ଥଳ ଥିଲା । ସେଠାରେ ଗଗନେନ୍ଦ୍ରନାଥ ଓ ଅବନୀନ୍ଦ୍ରନାଥ ରହୁଥିଲେ । ବର୍ତ୍ତମାନ ସେ ଘରର ଚିହ୍ନ ନାହିଁ । ସେଠାରେ ହୋଇଛି ରବୀନ୍ଦ୍ର ଭାରତୀ । ଆବଶ୍ୟକାନୁଯାୟୀ ବହୁ ଘରଦ୍ୱାର ତିଆରି କଲେ । ଅନେକ ଘର—ନାନାପ୍ରକାର ଅଗଣା । ଛାତ ଉପରକୁ ଉଠିବାପାଇଁ ଓ ଓହ୍ଲାଇବା ପାଇଁ ନାନାରକମର ସିଡ଼ି । ସମସ୍ତ ଘରଟି ସତେ ଯେପରି ଏକ ବିରାଟ ଗୋଲକଧନ୍ଦା । ଶିଶୁ ନିକଟରେ ଏହି ଘରଦ୍ୱାର ସବୁ ଏକ ବିରାଟ ରହସ୍ୟ ଥିଲା । କଳ୍ପନାପ୍ରବଣ ବାଳକର ବିଶ୍ୱାସ ଶକ୍ତି ଅପରିସୀମ । ସାଥୀମାନଙ୍କ

ମଧ୍ୟରେ ରବୀନ୍ଦ୍ରନାଥଙ୍କ ଭଣଜା ସତ୍ୟପ୍ରସାଦ ତାଙ୍କଠାରୁ ବୟସରେ ଅଳ୍ପ ବଡ଼ । ସତ୍ୟପ୍ରସାଦ ଅଦ୍ଭୁତ କାହାଣୀ କହି ରବୀନ୍ଦ୍ରନାଥଙ୍କୁ ଚମତ୍କୃତ କରୁଥିଲେ । ସତ୍ୟପ୍ରସାଦଙ୍କର ଭଉଣୀ ଇରା ମଧ୍ୟ 'ରାଜାଘର'ର ରହସ୍ୟପୂର୍ଣ୍ଣ କଥାକହି ବାଳକ ରବୀନ୍ଦ୍ରନାଥଙ୍କୁ ବିସ୍ମୟାଭିଭୂତ କରିଦେଉଥିଲେ । ପରିଣତ ବୟସରେ 'ଶିଶୁ'ର ଉକ୍ତି ଛଳରେ ରବୀନ୍ଦ୍ରନାଥ ଲେଖିଥିଲେ—

ଆମାର ରାଜାର ବାଡ଼ି କୋଥାଏ କେଉ ଜାନେ ନା ସେ ତୋ
ସେ-ବାଡ଼ି କି ଥାକତ ଯଦି ଲୋକେ ଜାନତେ ପେତୋ ।

ଅନ୍ୟତ୍ର କବି କହିଛନ୍ତି—"ମୋର ମନେ ଅଛି ଦିନେ ଦିନେ ସକାଳେ ଅକାରଣରେ ଅକସ୍ମାତ ମନରେ ଏକ ଜୀବନାନନ୍ଦ ଜାଗ୍ରତ ହୋଇଥାଏ । ସେତେବେଳେ ପୃଥିବୀର ଗୂଢ଼ଆଡ଼ ରହସ୍ୟାଚ୍ଛନ୍ନ । ...ବାଡ଼ିରେ ଗୋଟିଏ କୋଦାଳ ନେଇ ପ୍ରତ୍ୟହ ମାଟି ଖୋଳୁଥାଏ, ଭାବୁଥାଏ କିଛି ଗୋଟାଏ ରହସ୍ୟ ଆବିଷ୍କୃତ ହେବ । ଦକ୍ଷିଣ ଦିଗର ବାରଣ୍ଡାରେ ମାଟି ଜମା କରି କେତଗୁଡ଼ିଏ ଲେଉଆ ମଞ୍ଜି ପୋତି ନିତି ପାଣି ଦେଉଥାଏ—ଭାବେ ଏହି ମଞ୍ଜି ଅଙ୍କୁରିତ ହେଲେ ଏକ ଆଶ୍ଚର୍ଯ୍ୟ ବ୍ୟାପାର ହେବ । ପୃଥିବୀର ସମସ୍ତ ରୂପ, ରସ, ଗନ୍ଧ, ସମସ୍ତ ଚଞ୍ଚଳତା,—ବଗିଚାର ନଡ଼ିଆଗଛ, ପୋଖରୀ କୂଳର ବରଗଛ, ଜଳ ଉପରର ଛାୟାଲୋକ, ରାସ୍ତାର ଶବ୍ଦ, ଚିଲର ଡାକ, ପ୍ରାତଃକାଳୀନ ବଗିଚାର ସୁଗନ୍ଧ, ଝଡ଼ବାଦଲ —ସମସ୍ତ ମିଶି ଏକ ବୃହତ୍ ଅର୍ଦ୍ଧ ପରିଚିତ ପ୍ରାଣୀ ନାନାରୂପରେ ମୋର ସାଥୀ ହୋଇଥାଏ ।"

ରବୀନ୍ଦ୍ରନାଥ ତାଙ୍କର ବୃଦ୍ଧ ବୟସର ଲେଖା 'ଛେଲେବେଲା' ପୁସ୍ତକରେ ନିଜର ବାଲ୍ୟ ଜୀବନର ଯେଉଁ ଛବି ଅଙ୍କନ କରିଅଛନ୍ତି ତା'ଠାରୁ ଅଧିକ ବର୍ଣ୍ଣନା ଏଠାରେ ନିଷ୍ପ୍ରୟୋଜନ, କାରଣ ସେ ବହି ବଙ୍ଗଳା, ହିନ୍ଦୀ ଓ ଇଂରାଜୀ ଅନୁବାଦ କରିଆରେ ଅନେକ ପଢ଼ିଥିବେ ବୋଲି ଆଶା କରେ । ସେଥିପାଇଁ ସେ ସବୁ ଘଟଣାର ପୁନରୁକ୍ତି ଏଠାରେ କରୁନାହିଁ ।

ଦେବେନ୍ଦ୍ରନାଥଙ୍କର ତୀକ୍ଷ୍ଣ ବିଷୟ ବୁଦ୍ଧି ଥିଲା । ଧୀରେ ଧୀରେ ମିତବ୍ୟୟ ଓ ସୁବୁଦ୍ଧି ବଳରେ ପୁନର୍ବାର ଧନସମ୍ପତ୍ତି ବୃଦ୍ଧି

କରି ପାରିଲେ । ଜମିଦାରୀର ଆୟ ପ୍ରଚୁର ଥିଲା । ତେଣୁ ଜୀବିକାର୍ଜନ ପାଇଁ ସଂଗ୍ରାମ କରିବା ଦରକାର ପଡ଼ିନାହିଁ ।

ଠାକୁର ଘରର ଆବହାୱା ସାହିତ୍ୟ ସଙ୍ଗୀତ, ଅଭିନୟ ଆଉ ଆନନ୍ଦ କୋଳାହଳରେ ଭରପୂର ଥିଲା । ସେ ସମୟରେ ବୟସ୍କ ଓ ପିଲାମାନଙ୍କ ମଧ୍ୟରେ ପ୍ରଚୁର ବ୍ୟବଧାନ ଥିଲା । ବୟସ୍କମାନଙ୍କର ବୈଠକରେ ପିଲାମାନଙ୍କର ପ୍ରବେଶାଧିକାର ନଥିଲା । କିନ୍ତୁ ଗାଉଣା ବାଜଣାର କୋଳାହଳ ପିଲାମାନଙ୍କ ନିକଟରେ ଅପରିଚିତ ନଥିଲା । ବଡ଼ଭାଇ ଦ୍ୱିଜେନ୍ଦ୍ରନାଥ ସେତେବେଳେ ସ୍ୱପ୍ନବିଳାସୀ କାବ୍ୟ ଲେଖୁଥିଲେ, ବନ୍ଧୁମାନଙ୍କ ଆଗରେ ପଢ଼ି ଶୁଣାଉଥିଲେ—ରବୀନ୍ଦ୍ରନାଥ କବାଟ ନିକଟରେ ଠିଆହୋଇ ସମସ୍ତ ଶୁଣୁଥିଲେ । ଶୁଣି ଶୁଣି କାବ୍ୟର ଅନେକାଂଶ ତାଙ୍କର ମୁଖସ୍ତ ହୋଇ ଯାଉଥିଲା । ତାଙ୍କର ଶୈଶବାବସ୍ଥାରେ ରଚିତ କାବ୍ୟରେ ସ୍ୱପ୍ନବିଳାସୀ ଭାବର ପ୍ରଭାବ ବେଶ ସ୍ପଷ୍ଟ ।

ଶୈଶବକାଳରୁ ରବୀନ୍ଦ୍ରନାଥଙ୍କର ମଧୁର କଣ୍ଠ ଥିଲା । ସେ କହିଛନ୍ତି—କେତେବେଳେ ଯେ ସେ ଗୀତ ଗାଇପାରୁ ନଥିଲେ, ତାହା ମନେ ନାହିଁ । ଦେବେନ୍ଦ୍ରନାଥଙ୍କର ପରମ ଭକ୍ତ ଶ୍ରୀକଣ୍ଠ ସିଂହ ବୀରଭୂମ ଜିଲ୍ଲା ରାୟପୁରର ବାସିନ୍ଦା, ଲର୍ଡ଼ ସତ୍ୟେନ୍ଦ୍ରପ୍ରସନ୍ନ ସିଂହଙ୍କର ବଡ଼ଭାଇ; କଲିକତା ଆସିଲେ ଦେବେନ୍ଦ୍ରନାଥଙ୍କ ଘରେ ରହୁଥିଲେ । ସେ ଥିଲେ ସଙ୍ଗୀତ ପାଗଳ, ସୁର ସେତାରଟର ବିହ୍ୱଳ—ମତ୍ତ । କବି ଲେଖିଛନ୍ତି, 'ସେ ଗୀତ ଶିଖାଉ ନଥିଲେ, ଗୀତ ଗାଉଥିଲେ, କେତେବେଳେ ଯେ' ଶିଖି ନଉଥିଲି ଜାଣି ପାରୁ ନଥିଲି' । ବିଷ୍ଣୁ ଚକ୍ରବର୍ତ୍ତୀ ଥିଲେ ଠାକୁର ପରିବାରର ଗାୟକ । ଶିଶୁମାନେ ଏହାଙ୍କ ପାଖରେ ସଙ୍ଗୀତ ଶିକ୍ଷାରେ ଖଡ଼ି ଛୁଇଁଥିଲେ । ସକାଳେ, ସନ୍ଧ୍ୟାରେ, ଉପାସନା ମନ୍ଦିରରେ ତାଙ୍କର ସଙ୍ଗୀତ ଶୁଣୁଥିଲେ । ରବୀନ୍ଦ୍ରନାଥ ବିଷ୍ଣୁଙ୍କ ସଙ୍ଗରେ ଅନ୍ୟମନସ୍କ ଭାବରେ ବ୍ରାହ୍ମ ସଙ୍ଗୀତ ଆବୃତ୍ତି କରୁଥିଲେ । ବଡ଼ ହେବା ପରେ ଠାକୁର ପରିବାରର ପୁଅଝିଅମାନଙ୍କୁ ଗୀତ ଶିଖାଇବା ପାଇଁ ଯଦୁ ଭଟ୍ଟ ଆସିଲେ । ସେ ଥିଲେ ଅସାମାନ୍ୟ ଓସ୍ତାଦ୍ । କିନ୍ତୁ ମନ ଦେଇ ଶିଖିବା ବା ଏକ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ଗୀତ ଶିଖିବାକୁ ରବୀନ୍ଦ୍ରନାଥ

ପସନ୍ଦ କରୁ ନଥିଲେ । ଇଚ୍ଛାନୁଯାୟୀ ଯେତେବେଳେ ଯାହା ମନ କରୁଥିଲେ ଶିଖୁଥିଲେ । ଦାସ ଦାସୀ, କର୍ମଚାରୀ, ଭିକାରୀ, ଯୋଗୀ ପ୍ରଭୃତି ଯେତେବେଳେ ଗୀତ ବୋଲନ୍ତି, ରବୀନ୍ଦ୍ରନାଥ ତାହା ଶିଖିପକାନ୍ତି । ଏହି ବିଚିତ୍ର ଗୀତ ଓ ସ୍ୱର ଶିଶୁ ରବୀନ୍ଦ୍ରନାଥଙ୍କ ମନରେ ଅପୂର୍ବ ଆନନ୍ଦ ଦାନ କରୁଥିଲା ।

ଯେଉଁ ଭୃତ୍ୟ ମହଲରେ ଶିଶୁମାନଙ୍କର ଦିନ କଟେ, ସେମାନଙ୍କ ମଧ୍ୟରେ ଜଣେ ଈଶ୍ୱର ବା ବ୍ରଜେଶ୍ୱର ନାମକ ଲୋକ ଥିଲା । ସେ ଗ୍ରାମର 'ଗୁରୁମଶାୟ' ନାମରେ ଖ୍ୟାତ ଥିଲା । ତା'ର ଉପରେ ଥିଲା ପିଲାମାନଙ୍କର ଦାୟିତ୍ୱ । ସେତେବେଳକୁ କଲିକତାରେ ବିଜୁଳିବତୀ ଅଜ୍ଞାତ, କିରାସିନର ବ୍ୟବହାର ଆରମ୍ଭ ହୋଇଥାଏ ମାତ୍ର । ଜଡ଼ାତେଲ ଦୀପର ଅସ୍ପଷ୍ଟ ଆଲୋକରେ ପିଲାମାନେ ବ୍ରଜେଶ୍ୱର ପାଖରେ ବସି ରାମାୟଣ ମହାଭାରତ ପାଠ ଶୁଣନ୍ତି । ରାତ୍ରି ଭୋଜନ ପରେ ଏକ ବଡ଼ ବିଛଣାରେ ପିଲାମାନେ ଶୋଇପଡ଼ନ୍ତି । ପୃଥକ୍ ଖଟରେ ଶୋଇବାର ବ୍ୟବସ୍ଥା ମଧ୍ୟ ନଥିଲା । ଘରର ଚାକରାଣୀମାନଙ୍କ ମଧ୍ୟରେ କେହିଜଣେ ପିଲାମାନଙ୍କ ପାଖରେ ବସି ଗଳ୍ପ ଶୁଣାଏ— କେଉଁ ଏକ ପକ୍ଷୀରାଜ ଘୋଡ଼ାରେ ଉଡ଼ିଚାଲିଛି ରାଜପୁତ୍ର । ପିଲାମାନେ ଗପ ଶୁଣୁ ଶୁଣୁ ଶୋଇ ପଡ଼ନ୍ତି ।

ଲେଖାପଢ଼ାର ଆରମ୍ଭ 'ବର୍ଣ୍ଣପରିଚୟ' ଜରିଆରେ । 'କରଖଲ' ପ୍ରଭୃତି ଉଚ୍ଚାରଣ ଶେଷ କରି ଯେଉଁଦିନ କବି 'ଜଲପଡ଼େ, ପାତା ନଡ଼େ' ପଢିଲେ, ତାଙ୍କର ମନେହେଲା ଯେପରି ସେ ଆଦି କବିଙ୍କର ଆଦି କବିତା ଶୁଣୁଛନ୍ତି । ପଢ଼ାବହି ବନ୍ଦକରି ମନେ ମନେ ଗୁଣୁ ଗୁଣୁ ହେବାକୁ ଲାଗିଲେ 'ଜଲପଡ଼େ, ପାତା ନଡ଼େ' ।

ମାଧବ ପଣ୍ଡିତଙ୍କ ପାଖରେ ପଢ଼ାଶୁଣା ଚାଲେ । କିନ୍ତୁ ଦିନେ ବଡ଼ ପିଲାମାନଙ୍କର ସ୍କୁଲଯିବା ଦେଖି ରବୀନ୍ଦ୍ରନାଥ ସ୍କୁଲ ଯିବାକୁ ଜିଦ କଲେ । ପଣ୍ଡିତ ମାଡ଼ ଦେଇ କହିଲେ, 'ଏଇନେ ଇସ୍କୁଲ ଯିବାପାଇଁ ଯେମିତି କାନ୍ଦୁଛୁ, ଇସ୍କୁଲ ନଯିବା ପାଇଁ ଅନେକ ବେଶୀ କାନ୍ଦିବାକୁ ପଡ଼ିବ ।' କବି ପରେ ଲେଖିଛନ୍ତି 'ଏତେବଡ଼

ଅବ୍ୟର୍ଥ ଭବିଷ୍ୟତ ବାଣୀ ଜୀବନରେ ଅନ୍ୟ କୌଣସି ଦିନ କର୍ଣ୍ଣ-
ଗୋଚର ହୋଇନାହିଁ ।'

ସେ ଯାହାହେଉ କଦାକଚିତ ଯୋଗୁଁ ଓରିଏଣ୍ଟେଲ
ବିଦ୍ୟାଳୟରେ ତାଙ୍କର ନାମ ଲେଖାହେଲା । କିନ୍ତୁ ସେଠାରେ
ବେଶୀଦିନ ପଢ଼ିନାହାନ୍ତି । ଅଭିଭାବକମାନେ ନର୍ମାଲ ସ୍କୁଲ୍‌କୁ
ପଠାଇଦେଲେ । ସେଠାରେ **ବିଲାତି** ସ୍କୁଲର ଅନୁକରଣରେ ପଢ଼ା
ଶୁଣା ହେଉଥାଏ । ଶିକ୍ଷା ସଙ୍ଗରେ 'ଆନନ୍ଦଲାଭ ତତ୍ତ୍ୱ' ଅନୁସାରେ
କ୍ଲାସ ଆରମ୍ଭ ହେବା ପୂର୍ବରୁ ସବୁ ପିଲାମାନେ ଗୋଟିଏ ଜାଗାରେ
ସମବେତ ହୋଇ ଏକ ଇଂରେଜ ସଙ୍ଗୀତ ଗାନ କରନ୍ତି । ସେହି
ଦୁର୍ବୋଧ ଇଂରାଜୀ ଗୀତର ଭାଷା ବଙ୍ଗାଳୀ ପିଲାଙ୍କ ଉଚ୍ଚାରଣରେ
କିପରି ବିକୃତ ରୂପ ନେଇଥିଲା ତାହା 'ଜୀବନ ସ୍ମୃତି'ର ପାଠକ
ମାନେ ଜାଣିଥିବେ । କବିଙ୍କ ମନରେ ନର୍ମାଲ ସ୍କୁଲର **ସ୍ମୃ**ତି ମଧ୍ୟ
ସୁଖପ୍ରଦ ନଥିଲା ।

( ୩ )

ଆଠବର୍ଷ ବୟସରେ ବାଳକ ରବୀନ୍ଦ୍ରନାଥ ସହର ତ୍ୟାଗ
କରି ସହର ତଳିଅଞ୍ଚଳକୁ ଯିବାର ସୁଯୋଗ ପାଇଲେ ।
ଯୋଡ଼ାସାଁକୋର ପ୍ରାଚୀର ଘେରା ଅଟ୍ଟାଳିକା ବାସିନ୍ଦା ସୁକୁମାର-
ମତି ବାଳକର ଜୀବନରେ ଏହି ଘଟଣାର ପ୍ରଭାବ ସାମାନ୍ୟ
ନୁହେଁ ।

କଲିକତାରେ ଘରେ ଘରେ ଡେଙ୍ଗୁଜ୍ୱର ହୋଇଥାଏ ।
ସେଥିପାଇଁ ଠାକୁର ପରିବାରର ସମସ୍ତେ ଗଙ୍ଗାକୂଳରେ ଥିବା
ପେନେଟି ବା ପାନିହାଟିର ଘରକୁ ଚାଲିଗଲେ । ଅଦୂରରେ ଗଙ୍ଗା
ନଦୀ, ଚାକରମାନଙ୍କର ଘର ସାମନାରେ ଏକ ପିଜୁଳିଗଛ, ତା'ର
ମଝିରେ ଦେଖାଯାଏ ଗଙ୍ଗାନଦୀରେ ପାଲଟେଣା ନୌକାର ଗତି ।
ଏହି ଛବି କବିଙ୍କର ହୃଦୟରେ ଉଜ୍ଜ୍ୱଳ ରୂପେ ପ୍ରତିଭାତ ହୋଇ-

ଥିଲା । ପରିଣତ ବୟସରେ ଏହାକୁ କବିତାରେ ରୂପାୟିତ କଲେ ରବୀନ୍ଦ୍ରନାଥ ।

ପେନଟିରୁ ସହରକୁ ଫେରିବା ପରେ ପୁଣି ପିଲମାନଙ୍କୁ ନର୍ମାଲ ସ୍କୁଲକୁ ଯିବାକୁ ପଡ଼େ । ସେହି ନୀରସ ପୁନରାବୃତ୍ତି ଆରମ୍ଭ ହୁଏ । ମାଧବ ପଣ୍ଡିତଙ୍କର ଭବିଷ୍ୟତବାଣୀ ସଫଳ ହୁଏ ଓ କବିଙ୍କର ସ୍କୁଲଉପରେ ବିତୃଷ୍ଣା ଜନ୍ମେ ।

ସ୍କୁଲ ପାଠପଢ଼ା ଛଡ଼ା, ପିଲମାନଙ୍କୁ ସର୍ବବିଦ୍ୟାବିଶାରଦ କରିବାର ଆୟୋଜନ ମଧ୍ୟ ଘରେ କମ୍ ହେଉ ନଥିଲା । ଏ ବିଷୟରେ ମଝିଆଁ ଭାଇ ହେମେନ୍ଦ୍ରନାଥ ଥିଲେ ଜଣେ ଉଦ୍‌ଯୋକ୍ତା । ବାଳକମାନଙ୍କର ନାନା ବିଷୟରେ ଜ୍ଞାନଲାଭ ଫଳରେ ସେମାନଙ୍କର ଚରିତ୍ରର 'ସର୍ବୋଦୟ' ହେବ ବୋଲି ତାଙ୍କର ଧାରଣା ଥିଲା । ତଥାପି ଏହିସବୁ ଶିକ୍ଷା ବଙ୍ଗଳା ମାଧ୍ୟରେ ହେଉଥିଲା ।

ସକାଳ ଉଠି ଏକ କଣା ପହେଲମାନ ପାଖରେ, ଲେଙ୍ଗୁଟି ମାରି, ଧୂଳମାଟି ବୋଳିହୋଇ କୁସ୍ତି ଶିଖିବାରେ ଦିନର ଆଦ୍ୟାରମ୍ଭ ହୁଏ । ତାପରେ ଗୃହ ଶିକ୍ଷକମାନଙ୍କ ପାଖରେ ନିୟମିତ ଭାବେ ବଙ୍ଗଳା, ଗଣିତ, ଇତିହାସ, ଭୂଗୋଳ ପଢ଼ା । ସ୍କୁଲରୁ ଫେରିବା ପରେ ଡ୍ରଇଂ ଶିକ୍ଷକଙ୍କ ପାଖରେ ଛବିଅଙ୍କା ଶିଖିବା, ତା'ପରେ ଖେଳ କସରତ, ସନ୍ଧ୍ୟାପରେ ଇଂରେଜୀ ପଢ଼ା । କିନ୍ତୁ ଠିକ୍ ସେତିକିବେଳେ ଆରମ୍ଭ ହୁଏ ପିଲମାନଙ୍କର ଢୁଳେଇବା । ବାରନ୍ଦାରେ ଢୋଳେଇ ଢୋଳେଇ ଯିବାର ଦେଖି ପିଲମାନଙ୍କୁ ବଡ଼ଭାଇ ଛୁଟି ଦେଇଦିଅନ୍ତି । ସଙ୍ଗେ ସଙ୍ଗେ ନିଦ ଭାଙ୍ଗିଯାଏ ଓ ବାଳକ ରବି ମାତୃଅଧିଷ୍ଠିତ ଅନ୍ତଃପୁରକୁ ଚାଲିଯାଆନ୍ତି ।

ରବିବାର ସକାଳେ ବିଜ୍ଞାନ ଶିକ୍ଷକ ଆସି ନାନା ଯନ୍ତ୍ର ସାହାଯ୍ୟରେ ବିଜ୍ଞାନ ପଢ଼ାନ୍ତି । ବାଳକ ରବୀନ୍ଦ୍ରନାଥଙ୍କର ଏଥିରେ ସବୁଠାରୁ ବେଶୀ ଉତ୍ସାହ । ବିଜ୍ଞାନ ପ୍ରତି ରବୀନ୍ଦ୍ରନାଥଙ୍କର ଯେଉଁ ଜୀବନବ୍ୟାପୀ ଅନୁରାଗ ତା'ର ଭିତ୍ତି ପତନ ହେଲା ଏହି ଭାବରେ । ବଙ୍ଗଳାରେ ଯେଉଁ ବହି ସବୁ ପଢ଼ାହେଉଥାଏ, ତାହା ମଧ୍ୟ ବିଜ୍ଞାନ ସମ୍ବନ୍ଧୀୟ । ଯଥା—ଗୃହପାଠ; ବସ୍ତୁବିଚାର, ପ୍ରାଣୀବୃତ୍ତାନ୍ତ ଇତ୍ୟାଦି । ବଙ୍ଗଳା ଭାଷା ଶିଖିବା ପାଇଁ ମେଘନାଦ ବଧ କାବ୍ୟ

ପାଠ୍ୟପୁସ୍ତକ ରୂପେ ନିର୍ବାଚିତ ହୋଇଥିଲା । ଭାଷା ଓ ବ୍ୟାକରଣ ଶିଖିବା ଉଦ୍ଦେଶ୍ୟରେ କାବ୍ୟକୁ ଏପରି ବ୍ୟବହାର କରିବାରେ ବାଳକ ରବୀନ୍ଦ୍ରନାଥଙ୍କର ମନ ବିଦ୍ରୋହୀ ହୋଇଉଠିଥିଲା । ଷୋଳବର୍ଷ ବୟସରେ 'ଭାରତୀ' ପତ୍ରିକାରେ (୧୮୭୭) 'ମେଘନାଦ ବଧ' କାବ୍ୟକୁ ତୀବ୍ର ଭାବରେ ଆକ୍ରମଣ କରି ଏକ ପ୍ରବନ୍ଧ ଲେଖିଥିଲେ । ସେ ରଚନା ଏପରି ଥିଲା ଯେ କବି ତାହା ପୁନର୍ବାର ମୁଦ୍ରିତ କରିନାହାନ୍ତି । କାବ୍ୟାନନ୍ଦକୁ ଶିକ୍ଷା ଓ ଶାସନ ଉଦ୍ଦେଶ୍ୟରେ ବ୍ୟବହାର କରାଯାଉଥିବାରୁ ଏହି ପ୍ରବନ୍ଧ ଥିଲା କବିଙ୍କର ପ୍ରତିକ୍ରିୟା ।

ନର୍ମାଲ ସ୍କୁଲରୁ ଆଣି ପିଲାମାନଙ୍କୁ 'ବେଙ୍ଗଲ ଏକାଡେମୀ' ନାମକ ଏକ ଇଂରେଜୀ ସ୍କୁଲରେ ନାମ ଲେଖାଇ ଦିଆଗଲା । ପିଲା-ମାନେ ଇଂରେଜୀଭାଷାରେ ଲେଖାପଢ଼ା କଥାବାର୍ତ୍ତା ଭଲରୂପେ କରି ପାରିବେ ବୋଲି ଏଠାରେ ନାମ ଲେଖାହେଲା । ଏହି ବିଦ୍ୟାଳୟର ଜଣେ ଛାତ୍ର ସଙ୍ଗେ କବିଙ୍କର ଖୁବ୍ ଘନିଷ୍ଠତା ଜନ୍ମିଲା । ସେ ବାଳକଟି ମ୍ୟାଜିକ୍ ଦେଖାଇ ପାରୁଥିଲା । କବି ତା'କୁ 'ଗଳ୍ପ ସଳ୍ପର' 'ମ୍ୟାଜିସିୟାନ' ଗଳ୍ପ ଜରିଆରେ ଅମର କରିଦେଇଛନ୍ତି । ଅବଶ୍ୟ 'ଜୀବନ ସ୍ମୃତି'ରେ ଯେପରି ଉଲ୍ଲେଖ ଥିଲା, ତାର ପରିବର୍ତ୍ତନ 'ମ୍ୟାଜିସିୟାନ'ରେ ଦେଖାଯାଏ ।

ସ୍କୁଲର ଧରାବନ୍ଧା ପାଠ୍ୟତାଲିକା ଛଡ଼ା ଅନ୍ୟ ପୁସ୍ତକ ପଢ଼ିବାରେ ବାଳକ ରବୀନ୍ଦ୍ରନାଥଙ୍କର ଝୁଙ୍କ୍ ଥିଲା ବେଶୀ । ଦ୍ୱିଜେନ୍ଦ୍ରନାଥଙ୍କ ଆଲମାରୀରେ ବହୁ ମୂଲ୍ୟବାନ ବହି ସଙ୍ଗରେ ଥିଲା, 'ଅବୋଧ ବନ୍ଧୁ' ଓ 'ବିବିଧାର୍ଥ ସଂଗ୍ରହ', ସାମୟିକ ପତ୍ରିକା ଓ ବୈଷ୍ଣବ ପଦାବଳୀ । 'ଅବୋଧବନ୍ଧୁ'ରେ ଫରାସୀ ଉପନ୍ୟାସ 'ପୌଲ ବର୍ଜିନିର'ର ଧାରାବାହିକ ଅନୁବାଦ ବାହାରୁଥାଏ—ପ୍ରଶାନ୍ତ ମହାସାଗରର ଏକ ଦ୍ୱୀପର ଦୁଇଟି ତରୁଣ ତରୁଣୀଙ୍କ ଜୀବନର କରୁଣ କାହାଣୀ । ପଢ଼ୁ ପଢ଼ୁ ରବୀନ୍ଦ୍ରନାଥଙ୍କର ମନରେ ବେଦନା ଜାତ ହୁଏ । ଏହି କାହାଣୀର ପ୍ରାକୃତିକ ବର୍ଣ୍ଣନାର ପ୍ରଭାବ କବିଙ୍କର କାବ୍ୟରଚନା 'ବନଫୁଲ'ରେ ସୁସ୍ପଷ୍ଟ ।

'ବିବିଧାର୍ଥ ସଂଗ୍ରହ' ସମ୍ପର୍କରେ କବି ନିଜେ ଲେଖିଛନ୍ତି, 'ସେହି ବଡ଼ ଚଉଖୁଣ୍ଟିଆ ବହିକୁ ନେଇ ଶୋଇବା ଘର ତକ୍ତପୋଷ ଉପରେ ଚିତ୍ ହୋଇ ଶୋଇ ନହାଁଲ ତିମି ମତ୍ସ୍ୟର ବିବରଣୀ, କାଜି ବିଚାରର କୌତୁକପ୍ରଦ ଗଳ୍ପ, କୃଷ୍ଣକୁମାରୀର ଉପନ୍ୟାସ ପଢ଼ିବାରେ ଛୁଟିଦିନର ମଧ୍ୟାହ୍ନ ଗୁଡ଼ିକ କଟିଛି ।'

'ଅବୋଧବନ୍ଧୁ'ରେ ବିହାରୀଲାଲ ଚକ୍ରବର୍ତ୍ତୀଙ୍କର କବିତା ପ୍ରକାଶିତ ହେଉଥାଏ । ବଙ୍ଗଳା ଭାଷାର ଏହି ସଂପୂର୍ଣ୍ଣ ନୂତନ ଧରଣର ରଚନାବଳୀ, ବାଳକ ରବୀନ୍ଦ୍ରନାଥଙ୍କୁ ବିଭୋଳ କରିଥିଲା; ଅଟ୍ଟାଳିକା ବାସଠାରୁ ବିହାରୀଲାଲ ବର୍ଣ୍ଣିତ 'ପଦ୍ମକୁଡ଼ିଆରେ, ସ୍ୱଚ୍ଛନ୍ଦେ ରାଜାଙ୍କପରି ଅଛି ନିଦ୍ରାଗତ' କଳ୍ପନାରେ ମନୋରମ ହୋଇ ଉଠିଥିଲା । ବିହାରୀଲାଲଙ୍କର ନିଃସର୍ଗ ଦର୍ଶନ, ବଙ୍ଗସୁନ୍ଦରୀ, ସୁରବାଳା କାବ୍ୟ, ଏହି 'ଅବୋଧବନ୍ଧୁ' ମାସିକ ପତ୍ରିକାରେ କବି ପ୍ରଥମେ ପଢ଼ିଥିଲେ ।

ଏ ମଧ୍ୟରେ ବଙ୍ଗଳା ଭାଷା ଓ ସାହିତ୍ୟରେ ଯୁଗାନ୍ତର ଆସିଲା—ବଙ୍କିମଚନ୍ଦ୍ରଙ୍କର ବଙ୍ଗ ଦର୍ଶନ (୧୮୭୨) ଜରିଆରେ । ସେତେବେଳକୁ ବାଳକ ରବୀନ୍ଦ୍ରନାଥଙ୍କର ବୟସ ଏଗାର ବର୍ଷ । କିନ୍ତୁ ଏହି ଅଳ୍ପବୟସରେ ସେ ବଙ୍ଗଦର୍ଶନ ପୂରାପୂରି ପଢ଼ିସାରି-ଥିଲେ । ସେତେବେଳେ ଖୁବ୍ କମ ପତ୍ରପତ୍ରିକା ଥିଲା । ଏସବୁ ସାମୟିକ ସାହିତ୍ୟ ଛଡ଼ା ବାଳକ ରବୀନ୍ଦ୍ରନାଥଙ୍କୁ ବେଶୀ ଆକର୍ଷିତ କରିଥିଲା, ବୈଷ୍ଣବ ପଦାବଳୀ ଓ ଗୀତଗୋବିନ୍ଦର ସୁଲଳିତ ଛନ୍ଦ ।

( ୪ )

ଆଦିବ୍ରାହ୍ମ ସମାଜରେ ଉପନୟନାଦିରେ ସଂସ୍କାର ପ୍ରଚଳିତ ଥିଲା । ଦେବେନ୍ଦ୍ରନାଥ ସେହି ସଂସ୍କାର ଅନୁଯାୟୀ ବଡ଼ିହିଅର ବଡ଼ ପୁଅ ସତ୍ୟପ୍ରସାଦ ଓ ନିଜର ପୁତ୍ର ସୋମେନ୍ଦ୍ରନାଥ ଓ ରବୀନ୍ଦ୍ର-

ନାଥଙ୍କର ଉପନୟନ କାର୍ଯ୍ୟ କରିଥିଲେ । ଏହି ଅନୁଷ୍ଠାନ ଯେତେ-ଦୂର ଅପୌତ୍ତଳିକ ଭାବେ ସମ୍ପନ୍ନ କରାଯିବାର କଥା, ତାହା ସେ କଲେ । ଏହା ପୂର୍ବରୁ ଅନ୍ୟାନ୍ୟ ପୁତ୍ରମାନଙ୍କର ଉପନୟନ ପ୍ରଚଳିତ ହିନ୍ଦୁରୀତିରେ ହୋଇଥିଲା ।

ଉପନୟନ ସମୟରେ (୧୮୭୩ ଫେବୃଆରୀ) ରବୀନ୍ଦ୍ର ନାଥଙ୍କର ବୟସ ଏଗାରବର୍ଷ ନଅମାସ । ଗାୟତ୍ରୀ ମନ୍ତ୍ର ବୁଝିବାର ବୟସ ହୋଇ ନଥିଲା, ତଥାପି ନୂଆ ବ୍ରାହ୍ମଣ ହେବା ପରେ ଗାୟତ୍ରୀ ମନ୍ତ୍ର ଜପକରିବାର ଗଭୀର ଆଗ୍ରହ ରବୀନ୍ଦ୍ରନାଥଙ୍କଠାରେ ଦେଖା ଦେଇଥିଲା । ଗାୟତ୍ରୀର ପ୍ରଭାବ ତାଙ୍କର ସମସ୍ତ ଜୀବନ ବ୍ୟାପୀ ଧର୍ମ ସାଧନା ସହିତ ଓତପ୍ରୋତ ଭାବରେ ଜଡ଼ିତ ଥିଲା । 'ମାନୁଷେର ଧର୍ମ' ଗ୍ରନ୍ଥର 'ମାନବ ସତ୍ୟ' ଭାଷଣରେ ଦେଖାଯାଏ ଯେ, ଜୀବନର ଶେଷ କାଳରେ ମଧ୍ୟ କବି ଏହିସମୟ କଥା ସ୍ମରଣ କରି କହିଛନ୍ତି, 'ସେତେବେଳକୁ ମୋର ବୟସ ୧୨ବର୍ଷ । ଏହି ମନ୍ତ୍ର ଚିନ୍ତାକରିବା ବେଳେ ମନେହୁଏ ଯେପରି ବିଶ୍ୱଭୁବନର ଅସ୍ତିତ୍ୱ ଓ ମୋର ଅସ୍ତିତ୍ୱ ଏକାତ୍ମକ । ··ଏହିପ୍ରକାର ଚିନ୍ତା ଫଳରେ ମନ ମଧ୍ୟରେ ଗୋଟିଏ ଜ୍ୟୋତି ଅନୁଭବ କଲି—ଏହା ସୁସ୍ପଷ୍ଟ ମନେ ଅଛି ।'

ନୂତନ ବ୍ରାହ୍ମଣ ହେବା ପରେ 'ମୁଣ୍ଡିତ ମସ୍ତକ'ରେ ଇଂରେଜୀ ସ୍କୁଲକୁ ଯିବେ କିପରି ? ମନ ଖୁବ୍ ଉଦ୍‌ବିଗ୍ନ । ଏପରି ସମୟରେ ତିନମହଲା କୋଠା ଉପରୁ ପିତାଙ୍କର ଡାକ ଆସିଲା । ପିତା ହିମାଳୟ ଭ୍ରମଣରେ ଯାଉଥାନ୍ତି । କବି ତାଙ୍କ ସଙ୍ଗରେ ଯିବାକୁ ଇଚ୍ଛାନ୍ତି କି ନାହିଁ ? କବି କହିଛନ୍ତି 'ଚାହେଁ', ଏହି କଥାଟା ଚିତ୍କାର କରି ଆକାଶ ଫଟାଇ କହିଦେଲେ ମନର ଭାବଟା ବୋଧହୁଏ ଠିକ୍ ପ୍ରକାଶ କରିପାରିଥାନ୍ତି । 'କେଉଁଠି ବେଙ୍ଗଲ ଏକାଡେମୀ ଓ କେଉଁଠି ହିମାଳୟ' !

ହିମାଳୟ ଯିବା ବାଟରେ ପିତାପୁତ୍ର କିଛିଦିନ ଶାନ୍ତି-ନିକେତନରେ ରହିଗଲେ । ୧୮୭୩ ମସିହାରେ ବୋଲପୁର ଏକ ନଗଣ୍ୟ ଗ୍ରାମ । ଷ୍ଟେସନଠାରୁ ଦେଡ଼ମାଇଲ ଦୂରରେ କୋଡ଼ିଏ ବିଘା ଜମି କିଣି ଦେବେନ୍ଦ୍ରନାଥ ଗୋଟିଏ ପକ୍‌କାଘର ତିଆରି

କରିଥିଲେ । ଘରର ନାମ ଦେଲେ ଶାନ୍ତିନିକେତନ । ଚାରିଆଡ଼େ ମରୁପ୍ରାନ୍ତର, ଗୋଟିଏ ଅସମ୍ପୂର୍ଣ୍ଣ ପୁଷ୍କରଣୀ । ଦୂରରେ ଭୁବନଡାଙ୍ଗା ଗ୍ରାମର ବନ୍ଧ, ତାଳବୃକ୍ଷରେ ପରିବେଷ୍ଟିତ—ବର୍ତ୍ତମାନ ସେ ତାଳଗଛ ଗୋଟିଏ ବି ନାହିଁ । ପରେ ଦେବେନ୍ଦ୍ରନାଥ ଏଠାରେ ଆଶ୍ରମ ଓ ମନ୍ଦିର ପ୍ରତିଷ୍ଠା କରିଥିଲେ । ଏଗାରବର୍ଷ ବୟସରେ (୧୮୭୩) ବୋଲପୁର—ଶାନ୍ତିନିକେତନ ସହିତ ରବୀନ୍ଦ୍ରନାଥଙ୍କର ଏହାହିଁ ପ୍ରଥମ ପରିଚୟ । ପିତାଙ୍କ ସହିତ ପରିଚୟ ହୋଇଥିଲା ଆହୁରି ଗଭୀର ଭାବରେ ।

ଦେବେଂଦ୍ରନାଥ କଲିକତାଠାରୁ ଦୂରରେ ରହୁଥିବାରୁ ପୁତ୍ର କନ୍ୟାମାନେ ପିତାଙ୍କର ସ୍ନେହରୁ ବଞ୍ଚିତ ଥିଲେ । ତାଛଡ଼ା ବର୍ତ୍ତମାନ ବାପମାଙ୍କ ସହିତ ପିଲାଙ୍କର ଯେଉଁ ସମ୍ପର୍କ, ସେ ସମୟରେ ସମ୍ଭ୍ରାନ୍ତ ପରିବାରରେ ସେପରି ସୁବିଧା ନଥିଲା । ପିତାପୁତ୍ର ମଧ୍ୟରେ ବେଶ ଦୂରତ୍ୱ ରହିଯାଉଥିଲା—ସେଠା ଥିଲା ସମ୍ଭ୍ରମର ଦୂରତ୍ୱ, ବଡ଼ ସାନ ମଧ୍ୟରେ ସ୍ୱାଭାବିକ ଦୂରତ୍ୱ । ବୋଲପୁରର ଖୋଲା ପ୍ରାନ୍ତରରେ ରବୀନ୍ଦ୍ରନାଥ ପ୍ରଥମଥର ପାଇଁ ପିତାଙ୍କର ସଙ୍ଗ ଲାଭକଲେ । ପିତାଙ୍କର ଟଙ୍କାପଇସା ରଖିବା, ହିସାବ ଲେଖିବା, ଘଣ୍ଟାରେ ଚାବି ଦେବା ପ୍ରଭୃତି ବହୁ କାମ ରବୀନ୍ଦ୍ରନାଥଙ୍କୁ କରିବାକୁ ପଡ଼ିଲା । ଏହାଛଡ଼ା ସ୍ୱାଧୀନ ଭାବରେ ବୁଲିବୁଲିବାକୁ ସୁବିଧା ପାଇଲେ ।

ଶାନ୍ତିନିକେତନର ଶାନ୍ତପରିବେଶ ବାଳକର କାବ୍ୟରଚନାରେ ସହାୟତା କଲା । ରବୀନ୍ଦ୍ରନାଥ କେତେବର୍ଷ ବୟସରେ କବିତା ଲେଖା ଆରମ୍ଭ କରିଥିଲେ, ତାହାର ଇତିହାସ ଉଦ୍ଧାର କରିବା କଠିନ । ଶାନ୍ତିନିକେତନର ଏକ ଶ୍ରେଷ୍ଠ ନଡ଼ିଆଗଛର ତଳେ ବସି ବାଳକ କବି 'ପୃଥ୍ୱୀରାଜ ପରାଜୟ' କାବ୍ୟନାଟିକା ଲେଖିଥିଲେ । 'ପୃଥ୍ୱୀରାଜ ପରାଜୟ' କାବ୍ୟର ପାଣ୍ଡୁଲିପି ମିଳେ ନାହିଁ, ମନେହୁଏ 'ରୁଦ୍ରଚଣ୍ଡ' କାବ୍ୟ ନାଟିକାହିଁ ଏହି ଗ୍ରନ୍ଥର ରୂପାନ୍ତର ।

ବୋଲପୁରରୁ ବାହାରି ବାଟରେ ସାହେବଗଞ୍ଜ, ଦାନାପୁର, ଏଲାହାବାଦ, କାନପୁର ପ୍ରଭୃତି ସ୍ଥାନରେ ଅବସ୍ଥାନ କରିଥିଲେ । ଶେଷରେ ପଞ୍ଜାବର ଅମୃତସର ସହରରେ ପହଞ୍ଚିଲେ । ଅମୃତସରରେ ଶିଖମାନଙ୍କର ବିଖ୍ୟାତ ସ୍ୱର୍ଣ୍ଣମନ୍ଦିରକୁ ପିତା ଓ ପୁତ୍ର ପ୍ରାୟ ବୁଲି

ଯାଆନ୍ତି । ମନଦେଇ ଗୀତ ଶୁଣନ୍ତି ଓ ଦେବେନ୍ଦ୍ରନାଥ ଖୁସି ହୋଇ ଗାୟକମାନଙ୍କୁ ପୁରସ୍କୃତ କରୁଥିବା କଥା କବିଙ୍କର ସ୍ପଷ୍ଟ ମନେ ଥିଲା । ଅମୃତସର ମନ୍ଦିରରେ 'ଗ୍ରନ୍ଥସାହେବ'ର ଅଖଣ୍ଡପାଠ ଓ ଭଜନ ପଢିବା ଦେଖି ପରବର୍ତ୍ତୀକାଳରେ ଦେବେନ୍ଦ୍ରନାଥ ଶାନ୍ତିନିକେତନ ମନ୍ଦିରରେ ପ୍ରାତଃ ଓ ସନ୍ଧ୍ୟାକାଳରେ ବ୍ରାହ୍ମଧର୍ମ ଗ୍ରନ୍ଥପାଠ, ବ୍ରାହ୍ମ ସଂଗୀତ ଗାନର ବ୍ୟବସ୍ଥା କରିଥିଲେ । ଏହି ପ୍ରଥା ବହୁକାଳ ପର୍ଯ୍ୟନ୍ତ ପ୍ରଚଳିତ ଥିଲା ।

ଅମୃତସରରୁ ଫେରି ପିତାପୁତ୍ର ଡେଲହାଉସି ପାହାଡ଼ର ବକ୍ରୋଟା ଶୈଳ ଶିଖରରେ କିଛିଦିନ ବାସକଲେ । ଦୂରରେ ବରଫାବୃତ ପାହାଡ଼, ଗୃହଦ୍ୱାରରେ ପାଇନ୍‌ବନ, ଗଭୀର ହ୍ରଦ, ସରୁପଥ—ଏହାରି ମଧ୍ୟରେ ବାଳକ ରବୀନ୍ଦ୍ରନାଥ ଘୁରି ବୁଲନ୍ତି ଏକା ଏକା—ସ୍ୱାଧୀନ ଭାବେ, ପିତା ଉଦ୍‌ବେଗ ଶୂନ୍ୟ । ବକ୍ରୋଟାର ଡାକବଙ୍ଗଳାରେ ଦେବେନ୍ଦ୍ରନାଥ ପୁଅକୁ ନିୟମିତ ପାଠ ଦିଅନ୍ତି—ସଂସ୍କୃତ, ଇଂରାଜୀ ଓ ଜ୍ୟୋତିଷ । ଇଂରେଜୀ ବହିରୁ ଜ୍ୟୋତିଷ ରହସ୍ୟ ସରଳ ଭାବରେ ବୁଝାଇ ଦିଅନ୍ତି । ଖୋଲା ଆକାଶ ତଳେ ବସି ନକ୍ଷତ୍ର ଚିହ୍ନାଇ ଦିଅନ୍ତି । ପିତାଙ୍କ ନିକଟରୁ ଯାହା ଶିଖନ୍ତି ତାହା ବଙ୍ଗଳାରେ ଲେଖି ରଖନ୍ତି । ଜ୍ୟୋତିଷ ପ୍ରତି ଯେଉଁ ଅନୁରାଗ ପିଲାଦିନରୁ ସୃଷ୍ଟି ହୋଇଥିଲା, ତାହା ଜୀବନର ଶେଷପର୍ଯ୍ୟନ୍ତ ଅକ୍ଷୁର୍ଣ୍ଣ ଥିଲା । ଆଧୁନିକ ଜ୍ୟୋତିଷ ସଂପର୍କରେ କବି କେତେ ବହି ପଢ଼ିଥିଲେ ତାହା କୁହାଯାଇ ପାରିବନି । ସେ ଯାହାହେଉ, ପିତାଙ୍କଠାରୁ ଶୁଣିଥିବା କଥା ଓ ଇଂରେଜୀ ବହିରୁ ପଢ଼ିଥିବା ଜ୍ୟୋତିଷ ସଂପର୍କରେ ରଚନାକୁ ମିଶାଇ, ତତ୍ତ୍ୱବୋଧିନୀ ପତ୍ରିକାରେ ଏକ ପ୍ରବନ୍ଧ ପ୍ରକାଶ କରିଥିଲେ । ବୋଧହୁଏ ଏହାହିଁ ରବୀନ୍ଦ୍ରନାଥଙ୍କର ପ୍ରଥମ ପ୍ରକାଶିତ ରଚନା । ଏହି ପ୍ରବନ୍ଧରେ ଅବଶ୍ୟ ଲେଖକର ନାମ ଦିଆଯାଇ ନ ଥିଲା । ହିମାଳୟରେ ଚାରିମାସ କଟାଇ ରବୀନ୍ଦ୍ରନାଥ ପିତାଙ୍କର ଜଣେ ଅନୁଚରଙ୍କ ସଙ୍ଗରେ ଘରକୁ ଫେରିଲେ । ଠିକ୍ ପୂର୍ବସ୍ଥାନକୁ ସେ ଫେରିଲେ ସେତିକି ନୁହେଁ; ଏତେଦିନ ପର୍ଯ୍ୟନ୍ତ ନିର୍ବାସିତ ହେବାପରେ ଦରକୁ ଫେରିଆସିଲେ । ଏଥର କିନ୍ତୁ ଭୃତ୍ୟ-ରାଜତ୍ୱ, 'ବାହାର ଦରେ' ତାଙ୍କର ଅଧିକାର

ନ ଥିଲ । ମା'ଙ୍କ ଘରର ଗପ ବୈଠକରେ ଏକ ବଡ଼ ଆସ୍ଥନ ଦଖଲ କଲେ । ସେ ସମୟରେ ସାନ ଭାଉଜଙ୍କ ଠାରୁ ପ୍ରଚୁର ସ୍ନେହ ଓ ଆଦର ପାଇଥିଲେ । ସେ ହେଉଛନ୍ତି ଜ୍ୟୋତିରିନ୍ଦ୍ରନାଥଙ୍କର ସ୍ତ୍ରୀ କାଦମ୍ବରୀ ଦେବୀ । ଏହାଙ୍କ ସଂପର୍କରେ ପରେ ବିସ୍ତୃତ ଉଲ୍ଲେଖ କରାହେବ ।

ଅଭିଭାବକମାନେ କେତେବେଳେ ହେଲେ ବିଦ୍ୟାଳୟ କଥା ଭୁଲନ୍ତି ନାହିଁ । ତେଣୁ ରବୀନ୍ଦ୍ରନାଥଙ୍କୁ ପୁନର୍ବାର 'ବେଙ୍ଗଲ ଏକାଡ଼େମୀ' ସ୍କୁଲକୁ ଯିବାକୁ ପଡ଼ିଲା । ସ୍କୁଲ ଘର ରବୀନ୍ଦ୍ରନାଥଙ୍କୁ ଜେଲଖାନା ପରି ମନେହେଲା । ମନରେ ନାନା ଆଶା, ଆକାଂକ୍ଷା ଓ ବାସନା, ଏଗାର ବର୍ଷ ବୟସରେ 'ଅଭିଲାଷ' କବିତାରେ ଏହି ମନୋଭାବ ପ୍ରକାଶିତ ହୁଏ । କବିତାଟି ୧୨୮୧ (ବଙ୍ଗାବ୍ଦ) ସାଲ ତତ୍ତ୍ୱବୋଧିନୀ ପତ୍ରିକାରେ ପ୍ରକାଶିତ ହୋଇଥିଲା । ଏଥର ମଧ୍ୟ ଲେଖକଙ୍କର ନାମ ନ ଥିଲା ।

ଏଣିକି ସ୍କୁଲକୁ ନ ଯିବା ରବୀନ୍ଦ୍ରନାଥଙ୍କର ଅଭ୍ୟାସରେ ପରିଣତ ହେଲା । ଶେଷରେ ସ୍କୁଲ ତ୍ୟାଗ କରି ଘରେ ପଢ଼ିବାର ବ୍ୟବସ୍ଥା ହେଲା । ଜ୍ଞାନଚନ୍ଦ୍ର ଭଟ୍ଟାଚାର୍ଯ୍ୟ ଗୃହ ଶିକ୍ଷକ ରୂପେ ନିଯୁକ୍ତ ପାଇଲେ । ଜ୍ଞାନଚନ୍ଦ୍ର ଥିଲେ ଅପୂର୍ବ ବୁଦ୍ଧିମାନ୍ । ତେଣୁ ବାଳକ ରବୀନ୍ଦ୍ରନାଥଙ୍କୁ ପଢ଼ାଇବାର ଅଭିନବ ପଦ୍ଧତି ବାହାର କଲେ । ମୂଳରୁ କାଳିଦାସଙ୍କର 'କୁମାରସମ୍ଭବ' ଓ ସେକ୍ସପିୟରଙ୍କର 'ମ୍ୟାକବେଥ୍' ନାଟକ ପଢ଼ାଇଲେ । ଏହି ଦୁଇ ଶ୍ରେଷ୍ଠ ସାହିତ୍ୟ ସୃଷ୍ଟି ବାଳକ କବି ରବୀନ୍ଦ୍ରଙ୍କ ମନରେ ଦୁଇ ଅପୂର୍ବ ଜଗତର ରେଖାପାତ କଲା । ଜ୍ଞାନଚନ୍ଦ୍ର କେବଳ ପଢ଼ାଇ ଦେଇ କ୍ଷାନ୍ତ ହେଲେ ନାହିଁ । ପଠିତ ଅଂଶଗୁଡ଼ିକୁ ବଙ୍ଗଳା କବିତାରେ ଅନୁବାଦ ନ କରିବା ପର୍ଯ୍ୟନ୍ତ ରବୀନ୍ଦ୍ରଙ୍କର ନିସ୍ତାର ନ ଥିଲା । ଏ ସବୁ ଅନୁବାଦ ମଧ୍ୟ କିଛି କିଛି ଭାରତୀ ପତ୍ରିକାରେ ଲେଖକଙ୍କର ନାମ ନ ଥାଇ ପ୍ରକାଶିତ ହୋଇଥିଲା । କବି ଜୀବନ ସ୍ମୃତିରେ କହିଛନ୍ତି— ରାମସର୍ବସ୍ୱ ପଣ୍ଡିତଙ୍କ ସହିତ ଯାଇ ବିଦ୍ୟାସାଗର ମହାଶୟଙ୍କୁ ମ୍ୟାକବେଥ୍‌ର ଅନୁବାଦ ଶୁଣାଇବାକୁ ପଡ଼ିଥିଲା । ଚାଲିବେଳେ

ଘୁଡ କମ୍ପୁଥାଏ, ତଥାପି ତ ଉତ୍ସାହ ଓ ଉଦ୍ଦୀପନା ସଞ୍ଚୟ କରି ଶୁଣାଇ ପାରିଥିଲି ।

ଏହି ବୟସରେ କବିଙ୍କର ନାମ ନ ଥିବା ଆହୁରି ଅନେକ ଲେଖା ଅଛି । ଜ୍ୟୋତିରିନ୍ଦ୍ରନାଥଙ୍କର 'ସରୋଜିନୀ' ନାଟକରେ 'ଜ୍ୱଲ ଜ୍ୱଲ ଚିତା ଦ୍ୱିଗୁଣ ଦ୍ୱିଗୁଣ', କବିତାଟି ରବୀନ୍ଦ୍ରନାଥଙ୍କର ।

ଛପା ଅକ୍ଷରରେ ଓ ସ୍ୱନାମରେ ପ୍ରକାଶିତ ପ୍ରଥମ କବିତା ହେଉଛି 'ହିନ୍ଦୁମେଳାର ଉପହାର ।' ଏହା ଦ୍ୱିଭାଷୀ 'ଅମୃତ-ବଜାର' ପତ୍ରିକାରେ ପ୍ରକାଶିତ ହୋଇଥିଲା । ସେତେବେଳକୁ ରବୀନ୍ଦ୍ରଙ୍କର ବୟସ ତେରବର୍ଷ ଆଠମାସ । ହିନ୍ଦୁମେଳାର ସଭା ଅପର ସର୍କୁଲାରରୋଡ଼ର ପାର୍ଶି ବଗିଚାରେ ବସିଥିଲା, ସଭାପତି ଥିଲେ ରାଜନାରାୟଣ ବସୁ । ଏହି କବିତାଟି ହେମଚନ୍ଦ୍ର ବନ୍ଦ୍ୟୋପାଧ୍ୟାୟଙ୍କର ଭାରତ ସଂଗୀତ 'ବାଜରେ ଶିଙ୍ଗା ବାଜ୍ଏଇ ରବେ'ର ଅନୁକରଣ ଓ ସେହି ଛନ୍ଦରେ ଲେଖା । ସେ ଯୁଗରେ ଭାରତସଂଗୀତ ଅନେକ ଶିକ୍ଷିତ ବଙ୍ଗାଳୀଙ୍କର କଣ୍ଠସ୍ଥ ଥିଲା ।

ହିମାଳୟରୁ ଫେରିଲା ପରେ ରବୀନ୍ଦ୍ରନାଥଙ୍କର ପ୍ରଥମ କାବ୍ୟ ଲିଖିତ ଓ ମୁଦ୍ରିତ ହେଲା । ସେ କାବ୍ୟର ନାମ 'ବନଫୁଲ' । 'ଜ୍ଞାନାଙ୍କୁର' ଓ 'ପ୍ରତିବିମ୍ବ' ମାସିକ ପତ୍ରିକାରେ ଏହି କାବ୍ୟ-ଉପନ୍ୟାସ ଧାରାବାହିକ ଭାବରେ ପ୍ରକାଶିତ ହେଉଥିଲା । ସେତେବେଳକୁ ରବୀନ୍ଦ୍ରଙ୍କର ବୟସ ତେରବର୍ଷ । ପରେ ବଡ଼ଭାଇ ସୋମେନ୍ଦ୍ରନାଥଙ୍କର 'ଅନ୍ଧ ପକ୍ଷପାତିତ୍ୱର ଉତ୍ସାହେ' ଗ୍ରନ୍ଥାକାରରେ ମୁଦ୍ରିତ ହେଲା । ଏହି ବହି ପୁନଃମୁଦ୍ରିତ ହୋଇନାହିଁ । କିନ୍ତୁ 'ରବୀନ୍ଦ୍ରରଚନାବଳୀ'ରେ ସନ୍ନିବେଶିତ ହୋଇଛି । 'ବନଫୁଲ' ଛଡ଼ା ଜ୍ଞାନାଙ୍କୁର ପତ୍ରିକାରେ ବାଳକ କବିଙ୍କର ଅନ୍ୟ 'କେତେଗୁଡ଼ିଏ ପଦ୍ୟ ପ୍ରଳାପ' ପ୍ରକାଶିତ ହୋଇଥିଲା । ଏହା ପ୍ରକୃତରେ ପ୍ରଳାପ ।

ଆୟଲୋ ପ୍ରମଦା ନିଠୁର ଲଲନେ
ବାର ବାର ବଲ କି ଆର ଚଲ !

ମରମେର ତଲେ ଲେଗେଛେ ଆଘାତ
ହୃଦୟ ପରାଣ ଉଠେଛେ ଜ୍ୱଲି ।

ତେରବର୍ଷ ବାଳକ ପକ୍ଷରେ ଏପରି କଥା କହିବା ଅସ୍ୱାଭାବିକ ହେଲେ ମଧ୍ୟ ରବୀନ୍ଦ୍ରନାଥଙ୍କ ପରି ଅସାଧାରଣ କଳ୍ପନା ପ୍ରବଣ ବାଳକ ପକ୍ଷରେ ଏହା ଅସମ୍ଭବ ନୁହେଁ ।

ଗଦ୍ୟ ଓ ପ୍ରବନ୍ଧ ରଚନାର ଆରମ୍ଭ ହୁଏ ଏହି ଜ୍ଞାନାଙ୍କୁର ପତ୍ରିକାରେ । ପ୍ରଥମ ପ୍ରବନ୍ଧଟି ଥିଲା ଏକ ସମାଲୋଚନାମୂଳକ ଲେଖା । ଭୁବନମୋହିନୀ ପ୍ରତିଭା, ଅବସର ସରୋଜିନୀ ଓ ଦୁଃଖସଙ୍ଗିନୀ ତିନୋଟି କାବ୍ୟର ଆଲୋଚନା ପ୍ରସଙ୍ଗରେ, ଖଣ୍ଡ-କାବ୍ୟ, ଗୀତିକାବ୍ୟ ଓ ମହାକାବ୍ୟର ଲକ୍ଷଣାଦି ବିସ୍ତୃତପୂର୍ବକ ବାଳକ ଲେଖକ ଗମ୍ଭୀର ଭାବେ ପ୍ରମାଣ କରିଥିଲେ ଯେ ଏହି କାବ୍ୟ ତିନୋଟିରେ ପ୍ରକୃତ ଗୀତିକାବ୍ୟର ଲକ୍ଷଣ ଓ କବି ପ୍ରତିଭା ପ୍ରକାଶ ପାଇନାହିଁ । ଏହି ରଚନା ପ୍ରକାଶିତ ହେବା ପରେ କବିଙ୍କୁ ସତ୍ୟପ୍ରସାଦ ଭୟ ଦେଖାଇ କହିଥିଲେ ଯେ ଜଣେ ବି. ଏ. ତାଙ୍କ ପ୍ରବନ୍ଧର ଉତ୍ତର ଲେଖିଛନ୍ତି । ଏହା ଶୁଣି ବାଳକ ରବୀନ୍ଦ୍ରନାଥ ଶଙ୍କିତ ହୋଇଥିଲେ ।

(୪)

ଘରେ ବିଶେଷ ପଢ଼ାପଢ଼ି ହେଲାନାହିଁ । ଜ୍ଞାନଚନ୍ଦ୍ର ଆଇନ ପଢ଼ିବାକୁ ଚାଲିଗଲେ । ପିଲାମାନଙ୍କୁ ସେଣ୍ଟଜେଭିୟରସ ସ୍କୁଲରେ ଭର୍ତ୍ତିକରି ଦିଆଗଲା । ସୁସଜ୍ଜିତ ଘୋଡ଼ାଗାଡ଼ିରେ ଚଢ଼ି ସମସ୍ତେ ସ୍କୁଲକୁ ଯାଆନ୍ତି । କିନ୍ତୁ ବାଳକ ରବୀନ୍ଦ୍ରନାଥ ନାନା କାରଣ ଦେଖାଇ ସ୍କୁଲକୁ ଯାଆନ୍ତି ନାହିଁ । ଏହି ଭାବରେ ଦିନ କଟେ । ଏହା ମଧ୍ୟରେ ଜନନୀ ସାରଦା ଦେବୀଙ୍କର ମୃତ୍ୟୁ ହୋଇଯାଇଥିଲା (୧୮୭୫ ମାର୍ଚ୍ଚ) । ସାରଦା ଦେବୀଙ୍କପରି ସୁଗୃହିଣୀ ଅଭାବରେ ଗୃହ ଲକ୍ଷ୍ମୀହୀନ ହେଲା । ଏହାପରେ ରବୀନ୍ଦ୍ରନାଥଙ୍କର ସ୍କୁଲ

ଯିବାରେ ଆନ୍ତର ଅବହେଳା ପ୍ରକାଶ ପାଇଲା । ମାତୃହରା ପିଲା ବୋଲି ଭଉଣୀ ଓ ଭାଉଜମାନଙ୍କ ଆଦରରେ ସ୍କୁଲ ନଯିବା ଅଭ୍ୟାସ କ୍ରମେ ବଢ଼ିବାକୁ ଲାଗିଲା । କବି ସ୍କୁଲ ନଯାଇ ମନମୁତାବକ ବଙ୍ଗଳା ବହି, ପତ୍ରିକା ଯାହା ପାଇଲେ ପଢ଼ିଲେ । ବିଶେଷତଃ ରୀତିମତ ପରିଶ୍ରମ କରି ବୈଷ୍ଣବ ପଦାବଳୀ ପଢ଼ିବାକୁ ଲାଗିଲେ । ବର୍ଷ ଶେଷରେ ରବୀନ୍ଦ୍ରନାଥ 'ପ୍ରମୋଶନ' ପାଇଲେ ନାହିଁ । ପ୍ରିପାତ୍ୱରେ ଏଣ୍ଟ୍ରାନ୍‌ସ କ୍ଲାସ ବା ଫିଫଥ୍ ଇୟର ପର୍ଯ୍ୟନ୍ତ ପଢ଼ିଥିଲେ । ବୋଧହୁଏ ପ୍ରମୋଶନ ନ ପାଇବାରୁ ସ୍କୁଲଯିବା ବନ୍ଦ ହେଲା ।

ସ୍କୁଲ ଛାଡ଼ିବା ପରେ ଘରେ ପଢ଼ାଶୁଣାର ବ୍ୟବସ୍ଥା ହେଲା । କିନ୍ତୁ ଧରାବନ୍ଧା ଶିକ୍ଷା ରବୀନ୍ଦ୍ରନାଥଙ୍କର ପସନ୍ଦ ହେଲାନାହିଁ । ସେ ଘରେ ନାନାରକମ ଆଲୋଚନା ଉତ୍ତେଜନାରେ ଭାଗ ନେଉଥିଲେ ଓ ଆପଣା ମନମୁତାବକ କବିତା ସଙ୍ଗୀତ ଲେଖୁଥିଲେ । ଉତ୍ତେଜନାର ଇନ୍ଧନ ଯୋଗାଇଲା 'ସଞ୍ଜୀବନୀ ସଭା ।' 'ହିନ୍ଦୁ ମେଳା'ର ଉତ୍ସବ ସେତେବେଳକୁ ପ୍ରତିବର୍ଷ ହେଉଥାଏ - ତାହା ଏକ ସାଂସ୍କୃତିକ ସମ୍ମେଳନ । ମେଳାର ଲୋକ ତ ଦେଶ ସ୍ୱାଧୀନ କରିପାରିବେ ନାହିଁ; ସେଥିପାଇଁ ଦରକାର ବିପ୍ଳବ । ଭିତରେ ଭିତରେ ବୈପ୍ଳବିକ କାର୍ଯ୍ୟ କରିବା ପାଇଁ ଗୁପ୍ତ ସମିତି ସ୍ଥାପିତ ହେଲା - ତାହାରି ନାମ 'ସଞ୍ଜୀବନୀ ସଭା' । ଜ୍ୟୋତିରୀନ୍ଦ୍ରନାଥ ଓ ରାଜନାରାୟଣ ବସୁ (୧) । ପ୍ରଭୃତି ଥିଲେ ଏହାର ବଡ଼ପଣ୍ଡା । ସେହି ସଭାରେ ନିଜ ରକ୍ତରେ ପ୍ରତିଜ୍ଞାପତ୍ର ସ୍ୱାକ୍ଷର କରିବାକୁ ପଡ଼ୁଥିଲା । ସାଙ୍କେତିକ ଭାଷା ବ୍ୟବହାର ହେଉଥିଲା—ଏହି ଭାଷାରେ ସଞ୍ଜୀବନୀ ସଭାକୁ କୁହାଯାଉଥିଲା 'ହାମ୍‌ଚୁ ପାମୁ ହାଫ୍' । ରବୀନ୍ଦ୍ରନାଥ ଲେଖିଛନ୍ତି 'ମୋ ପରି ଅର୍ବାଚୀନ ମଧ୍ୟ ଏହି ସଭାର ସଭ୍ୟ ଥିଲେ ।

---

୧ । କୃଷ୍ଣକୁମାର ମିତ୍ର 'ସଞ୍ଜିବନୀ' ନାମକ ସାପ୍ତାହିକ ପତ୍ରିକା ସମ୍ପାଦନା କରୁଥିଲେ । ସେ ହେଉଛନ୍ତି ରାଜନାରାୟଣ ବସୁଙ୍କର ଜାମାତା । ଅରବିନ୍ଦ ଓ ବାରୀନ୍ଦ୍ର ଘୋଷଙ୍କ ପିତା ଡକ୍ଟର. ଡ. ଘୋଷ ମଧ୍ୟ ରାଜନାରାୟଣଙ୍କ ଜାମାତା ।

ଦେହି ସଭାରେ ଆମ୍ଭେମାନେ ଏପରି ଏକ ପାଗଳାମିର ତପ୍ତ ଆବହାଓ୍ୱା ମଧ୍ୟରେ ଥିଲୁ ଯେ ଅହରହ ଉତ୍ସାହରେ ଆମେ ଯେପରି ଉଡ଼ି ବୁଲୁଥିଲୁ । ଆମର ଲଜ୍ଜା, ଭୟ, ସଙ୍କୋଚ କିଛି ନଥିଲା । ଏହି ସଭାରେ ଆମର ପ୍ରଧାନ କାମ ଥିଲା ଉତ୍ତେଜନା-ଅଗ୍ନି ପ୍ରଜ୍ୱଳିତ କରିବା ।' ବୋଧହୁଏ ଏହି ସଭାପାଇଁ ବାଳକ କବି—

'ଏକସୂତ୍ରେ ବାନ୍ଧିଅଛୁ ସହସ୍ରଟି ମନ—
ଏକ କାର୍ଯ୍ୟେ ସଁପିଅଛୁ ସହସ୍ର ଜୀବନ'
ଗୀତଟି ରଚନା କରିଥିଲେ ।

ହିନ୍ଦୁମେଳାର ଦଶମ ବାର୍ଷିକ ଉତ୍ସବରେ (୧୮୭୭ଇଷ୍ଟାବ୍ଦ) ବାଳକ ରବୀନ୍ଦ୍ରନାଥ ଏକ ଜ୍ୱାଳାମୟୀ କବିତା ପାଠ କଲେ । କିନ୍ତୁ ସେତେବେଳକୁ ଲର୍ଡ ଲିଟନଙ୍କର ଦେଶୀୟଭାଷା ସମ୍ପର୍କୀୟ ପ୍ରେସ ଆଇନ ବଳବତ୍ତର; ତେଣୁ କବିତାଟି କୌଣସି ସାମୟିକ ପତ୍ରିକାରେ ପ୍ରକାଶିତ ହୋଇନାହିଁ । କିଛି ଅଦଳବଦଳ କରି ତାହାକୁ ଜ୍ୟୋତିରୀନ୍ଦ୍ରନାଥଙ୍କର 'ସ୍ୱପ୍ନମୟୀ' ନାଟକରେ ମଧ୍ୟଯୁଗୀୟ ଏକ ବୀର ମୁଖରେ ପ୍ରକାଶ କରାଯାଇଥିଲା । ପଠାଣ ମୋଗଲ-ମାନଙ୍କ ବିରୁଦ୍ଧରେ ଆସ୍ଫାଳନ କଲେ ସେମାନେ ତ ଆଉ ପ୍ରଶ୍ନ କରିବାକୁ ନଥିଲେ ।

ତେଣୁ ଏହି ତରିକା ଜରିଆରେ ଯାହା ଖୁସି କୁହାଯାଇ ପାରୁଥିଲା ।

ରବୀନ୍ଦ୍ରନାଥ ଲେଖିଛନ୍ତି, 'ଦିଲ୍ଲୀ ଦରବାର ସମ୍ପର୍କରେ··· ଲର୍ଡ଼ ଲିଟନ୍‌ଙ୍କ ସମୟରେ ପଦ୍ୟ ଲେଖିଥିଲି ।·· ଇଂରେଜ ଗଭର୍ଣ୍ଣମେଣ୍ଟ ଋଷିଆକୁ ଭୟ କରୁଥିଲେ, କିନ୍ତୁ ଚଉଦ ପନ୍ଦର ବର୍ଷର ବାଳକ କବିଙ୍କର ଲେଖନୀକୁ ଭୟ କରୁ ନଥିଲେ ।'

ସେହିଦିନର ହିନ୍ଦୁମେଳାର ବାଳକମାନଙ୍କ ସହିତ ବଙ୍ଗର ଉଦୀୟମାନ କବି ନବୀନଚନ୍ଦ୍ର ସେନଙ୍କର ପରିଚୟ ହୋଇଥିଲା । ନବୀନଚନ୍ଦ୍ରଙ୍କର 'ପଲାଶୀର ଯୁଦ୍ଧ' ସଦ୍ୟ ପ୍ରକାଶିତ ହୋଇଥିଲା । (୧୮୭୬); ଶିକ୍ଷିତମାନଙ୍କ ମୁଖରେ ମୋହନଲାଲର ବୀରତ୍ୱବ୍ୟଞ୍ଜକ ଉକ୍ତି ପ୍ରାୟ ଶୁଣାଯାଉଥିଲା । ନବୀନଚନ୍ଦ୍ର ତାଙ୍କର ଆତ୍ମଜୀବନୀରେ

ରବୀନ୍ଦ୍ରନାଥଙ୍କ ସହିତ ଏହି ସାକ୍ଷାତ ସମ୍ପର୍କରେ ଅତି ସୁନ୍ଦର ବର୍ଣ୍ଣନା ଲିପିବଦ୍ଧ କରିଛନ୍ତି ।

( ୭ )

ସାହିତ୍ୟ ଓ କଳାସୃଷ୍ଟିର ନୈପୁଣ୍ୟ ଥିଲା ଠାକୁର ପରିବାର ଲୋକଙ୍କର ଜନ୍ମଗତ କ୍ଷମତା । ଦ୍ୱିଜେନ୍ଦ୍ରନାଥ ଓ ଜ୍ୟୋତିରୀନ୍ଦ୍ର ନାଥଙ୍କୁ କେନ୍ଦ୍ର କରି ଏକ ସାହିତ୍ୟ ଚକ୍ର ଗଢ଼ିଉଠିଥିଲା, ଏହା ସମ୍ବିଧାନ ସମ୍ମତ ସଭା ନୁହେଁ—ଏକ ମଜଲିଶ, ବୈଠକ । ଏହି ବୈଠକକୁ ଅକ୍ଷୟ ଚୌଧୁରୀ ଓ ବିହାରୀଲାଲ ଚକ୍ରବର୍ତ୍ତୀ ପ୍ରଭୃତି ଖ୍ୟାତନାମା ଲୋକ ଯେପରି ଆସୁଥିଲେ, ଅଖ୍ୟାତ ଓ ତୋଷାମଦ-କାରୀ ମାନେ ମଧ୍ୟ ସେପରି ଆସୁଥିଲେ । ଏହିମାନଙ୍କୁ ନେଇ ସଭା ଚାଲୁଥିଲା । ଅକ୍ଷୟଚନ୍ଦ୍ରଙ୍କ ନିକଟରୁ ସମସ୍ତେ ଇଂରେଜୀ ସାହିତ୍ୟର 'ଆଧୁନିକ' କବିମାନଙ୍କର କଥା ଶୁଣୁଥିଲେ—ଅର୍ଥାତ୍ ଗତ ଶତାବ୍ଦୀର ସପ୍ତମ ଦଶକରେ (୧୮୭୦) ପାଶ୍ଚାତ୍ୟ ସାହିତ୍ୟ ତାଲିକାରେ ଯେଉଁମାନେ ଆଧୁନିକ ଥିଲେ ।

ଅକ୍ଷୟଚନ୍ଦ୍ର ରବୀନ୍ଦ୍ରନାଥଙ୍କ ନିକଟରେ ପାଶ୍ଚାତ୍ୟ କାବ୍ୟ ବିଚାରର ଧାରା ବୁଝାଉଥିଲେ । ଇଂରେଜୀ ସମାଲୋଚନା ସାହିତ୍ୟ ଯେ ଏକ ବିରାଟ ବ୍ୟାପାର ଓ ତାର ବିଚାର ପଦ୍ଧତି ଯେ ବିଚିତ୍ର ଏହି ତତ୍ତ୍ୱ ବାଳକ ରବୀନ୍ଦ୍ରନାଥ ପ୍ରଥମଥର ପାଇଁ ଅକ୍ଷୟଚନ୍ଦ୍ରଙ୍କ ଠାରୁ ଜାଣିଥିଲେ । ଅକ୍ଷୟଚନ୍ଦ୍ରଙ୍କର 'ଉଦାସୀନୀ' କାବ୍ୟର ପ୍ରଭାବ ମଧ୍ୟ 'ବନଫୁଲ କାବ୍ୟ'ରେ ସ୍ପଷ୍ଟଭାବରେ ପ୍ରତିଭାତ ହୋଇଛି ।

ଏହା ମଧ୍ୟରେ ବନ୍ଧୁବର୍ଗମାନେ ଘରୁ ଏକ ମାସିକ ପତ୍ର ପ୍ରକାଶ କରିବା କଥା ସ୍ଥିର କଲେ । ଭାଇଭଉଣୀ ମିଶି ପରିବାର ମଧ୍ୟରେ ବହୁ ଲେଖକ । ବନ୍ଧୁବାନ୍ଧବମାନଙ୍କ ପାଖରୁ ମଧ୍ୟ ଲେଖା ଯୋଗାଡ଼ ହୋଇପାରିବ । ୧୨୮୪ (ବଙ୍ଗାବ୍ଦ) ସାଲରେ ବଙ୍ଗଳାରେ ଅଳ୍ପ କେତେଖଣ୍ଡ ମାତ୍ର ସାମୟିକ ପତ୍ରିକା ଥିଲା—ବଙ୍ଗଦର୍ଶନ ମାତ୍ର

ଗୃହବର୍ଷ ପ୍ରକାଶିତ ହୋଇ ବର୍ଷେ ବନ୍ଦ ଥିଲା — ନୂତନବର୍ଷ ଆରମ୍ଭରୁ ପୁଣି ପ୍ରକାଶିତ ହେଲା । କଲିକତାର 'ଆର୍ଯ୍ୟ ଦର୍ଶନ' ଓ ଢାକାର 'ବାନ୍ଧବ' ଛଡ଼ା ସେପରି ଉଚ୍ଚକୋଟୀର ସାହିତ୍ୟ ପତ୍ରିକା ନଥିଲା । ଶେଷରେ 'ଭାରତୀ' (୧୮୭୭) ନାମରେ ପତ୍ରିକାର ପ୍ରଥମ ସଂଖ୍ୟା ପ୍ରକାଶିତ ହେଲା । ଦ୍ୱିଜେନ୍ଦ୍ରନାଥ ହେଲେ ଏହାର ସମ୍ପାଦକ ।

ରବୀନ୍ଦ୍ରନାଥଙ୍କର ବୟସ ସେତେବେଳକୁ ଷୋଳବର୍ଷ । ନୂତନ ପତ୍ରିକାର ଆବିର୍ଭାବ ଫଳରେ ବାଳକ କବିଙ୍କର ଲେଖନୀରୁ ଅଜସ୍ର କବିତା ସ୍ଫୁରିତ ହେଲା । ଜ୍ଞାନାଙ୍କୁରରେ ଗଦ୍ୟରଚନାର ସୂତ୍ରପାତ ହେଲା । ସାହିତ୍ୟ ସମାଲୋଚନା ଜରିଆରେ ଭାରତୀରେ ମଧ୍ୟ ସମାଲୋଚନାତ୍ମକ ଲେଖାରୁ ଯେଉଁ ଗଦ୍ୟରଚନା ଆରମ୍ଭ ହେଲା । ସମାଲୋଚନାର ଲକ୍ଷ୍ୟସ୍ଥଳ ଥିଲା, ମାଇକେଲଙ୍କର ମେଘନାଦ ବଧ କାବ୍ୟ । ପ୍ରତିଭାର ଔଦ୍ଧତ୍ୟରେ ବିଗୁର ବୁଦ୍ଧି ଆବଦ୍ଧ । ତେଣୁ ମଧୁସୂଦନଙ୍କର ଅମର କାବ୍ୟ ଉପରେ ଆଲୋଚନା କରି ତରୁଣ ଲେଖକମାନେ ଖ୍ୟାତିଷ୍ଠାର୍ଜନର ସହଜ ପଥ ବାଛି ନେଇଥିଲେ । କବି ପରେ 'ଜୀବନ ସ୍ମୃତି' ଗ୍ରନ୍ଥରେ ଉକ୍ତ ସମାଲୋଚନା ଉପରେ ଏପରି ଏକ ଟିପ୍ପଣୀ ଦେଇଛନ୍ତି । ତା ଛଡ଼ା, 'ସାହିତ୍ୟ ସୃଷ୍ଟି' ପ୍ରବନ୍ଧର ଶେଷ ଭାଗରେ 'ମେଘନାଦ ବଧ କାବ୍ୟ' ସୃଷ୍ଟିର ହେତୁ ଓ ତାତ୍ପର୍ଯ୍ୟ ସମ୍ପର୍କରେ ଅପୂର୍ବ ଅନ୍ତର୍ଦୃଷ୍ଟି ସହ ବ୍ୟାଖ୍ୟା କରିଛନ୍ତି । ତଥାପି ଏକଥା ସ୍ୱୀକାର୍ଯ୍ୟ ଯେ 'ଭାରତୀ'ରେ ପ୍ରକାଶିତ ପ୍ରବନ୍ଧ ସମ୍ପର୍କରେ ଚିନ୍ତା କରିବାର ଅନେକ କିଛି ଅଛି । କେବଳ ଏକ ଖିଆଲରେ ଏହା ଲେଖା ହୋଇଥିଲେ ବି ପ୍ରବନ୍ଧଟିକୁ ସମ୍ପୂର୍ଣ୍ଣ ଉଡ଼ାଇଦେବା କଥା ନୁହେଁ ।

'ଭାରତୀ'ର ପ୍ରଥମ ସଂଖ୍ୟାରେ 'ଭିକାରୁଣୀ' ଗଳ୍ପଟି ପ୍ରକାଶିତ ହୋଇଥିଲା । ଗଳ୍ପ ହିସାବରେ ଏହା ତୁଚ୍ଛ, ତଥାପି ଛୋଟଗଳ୍ପର ଆଙ୍ଗିକ ବୀଜ ଏଥିରେ ଥିଲା । 'କରୁଣା' ଉପନ୍ୟାସ ମଧ୍ୟ ଆରମ୍ଭ ହୋଇଥିଲା । କିନ୍ତୁ ଶେଷ ହୋଇପାରିନି । ଉପନ୍ୟାସଟି ଏହି ସମୟର କବିମନର ଉଚ୍ଛ୍ୱାସପୂର୍ଣ୍ଣ କାବ୍ୟର ଅନୁରୂପ – ଗଳ୍ପାଂଶ ଅତି ତୁଚ୍ଛ । ରବୀନ୍ଦ୍ରନାଥଙ୍କର ଏଯାବତ୍ ରଚନା ଗ୍ରନ୍ଥଆକାରରେ ମୁଦ୍ରିତ

ହୋଇନାହିଁ । ତଥାପି ଚନ୍ଦ୍ରନାଥ ବସୁଙ୍କ ପରି ବିଖ୍ୟାତ ସମାଲୋଚକ 'କରୁଣା'ର ଗୁଣଗାନ କରିଥିଲେ ।

ଏହି ଷୋଳବର୍ଷ ବୟସର ଲେଖା 'ଭାନୁସିଂହ ଠାକୁରେର ପଦାବଲୀ' ଆଜି ମଧ୍ୟ ବଙ୍ଗାଳୀମାନେ ଗାନ କରନ୍ତି । ଏହା ବ୍ରଜ-ବୋଲି ଭାଷାରେ ଲିଖିତ । ଏହା ପୂର୍ବରୁ ବଙ୍କିମଚନ୍ଦ୍ର ପୋଥିଗତ ଏହି ଭାଷାର ପରୀକ୍ଷା ନିଜ ରଚନାରେ କରିଥିଲେ । କିନ୍ତୁ ରବୀନ୍ଦ୍ରନାଥ ଯେପରି ପୁରାପୁରି ବୈଷ୍ଣବ ପଦାବଲୀ ଢଙ୍ଗରେ ଲେଖିପାରିଲେ, ସେଥିରେ ଲୋକଙ୍କୁ ଠକି ଦିଆଯାଇ ପାରିବ । କବି ତାଙ୍କର ଜଣେ ବନ୍ଧୁଙ୍କୁ କହିଥିଲେ ଯେ, ଆଦିବ୍ରାହ୍ମ ସମାଜ ଲାଇବ୍ରେରୀରେ ଏହାର ପୋଥି ମିଳିବ । ବନ୍ଧୁ ମଧ୍ୟ ଏହା ବିଶ୍ୱାସ କରିଯାଇଥିଲେ ।

କବି ଜୀବନ ସ୍ମୃତିରେ ଲେଖିଛନ୍ତି, "ଦିନେ ମଧ୍ୟାହ୍ନରେ ଖୁବ୍ ଜୋରରେ ବର୍ଷା ହେଉଛି । ସେହି ବର୍ଷଣ ଦିନର ଛାୟା ଘନ ଅବକାଶର ଆନନ୍ଦରେ ଘରେ ଖଟଉପରେ ଶୋଇ ସ୍ଲେଟ ଉପରେ ଲେଖିଥିଲି, 'ଗହନ କୁସୁମ କୁଞ୍ଜ ମାଝେ' ।" ଏହି ଗୋଟିଏ ଲେଖାରୁ କବିଙ୍କର ନିଜଉପରେ ବିଶ୍ୱାସ ଆସିଲା । ଏହାପରେ ଗୋଟିକ ପରେ ଗୋଟିଏ ଅସଂଖ୍ୟ ଗୀତ ଲେଖିଥିଲେ ।

ପୂର୍ବରୁ କୁହାଯାଇଛି ଯେ ବୈଷ୍ଣବ କବିତା ପଢ଼ିବାକୁ କବିଙ୍କୁ ଖୁବ୍ ଭଲ ଲାଗୁଥିଲା । ପଦାବଳୀର ଭାଷା, ଛନ୍ଦ, ଭାବ, ରସ କବିଙ୍କୁ ମୁଗ୍ଧ କରୁଥିଲା । ଏକଥା ଲେଖିବା ନିଷ୍ପ୍ରୟୋଜନ ଯେ, ତାଙ୍କର କାବ୍ୟ ପାଠ କେବଳ କାବ୍ୟରସ ଉପଭୋଗରେ ସୀମିତ ଥିଲା; ବୈଷ୍ଣବ ତତ୍ତ୍ୱ ବୁଝିବାର ବୟସ ଓ ଆଗ୍ରହ ସେତେବେଳକୁ ହୋଇନ । ତାଙ୍କର ଅସଂଖ୍ୟ କବିତାରେ ବୈଷ୍ଣବୀୟ ଭାବ ଓ ଭାଷା ଏପରି ଭାବରେ ମିଶ୍ରିତ ଯେ ଲୋକେ ରବୀନ୍ଦ୍ରନାଥଙ୍କୁ ଭୁଲରେ ବୈଷ୍ଣବ ବୋଲି ଭାବୁଥିଲେ ।

'ଭାରତୀ'ରେ ପ୍ରକାଶିତ ବିବିଧ ରଚନାବଳୀ ମଧ୍ୟରେ 'କବି କାହାଣୀ' ନାମକ କାବ୍ୟ ନାଟିକା ଉଲ୍ଲେଖଯୋଗ୍ୟ । କାରଣ ଏହା ହେଉଛି ବାଳକ କବିଙ୍କର ପ୍ରଥମ ମୁଦ୍ରିତ ଗ୍ରନ୍ଥ । କିନ୍ତୁ କବି ଏହି

ଗ୍ରନ୍ଥକୁ ପୁନର୍ମୁଦ୍ରଣ କରିନାହାନ୍ତି । ପ୍ରାୟ ୬୦ ବର୍ଷ ପରେ 'ଅଚଳିତ' 'ରବୀନ୍ଦ୍ର ରଚନାବଳୀ'ର ପ୍ରଥମ ଖଣ୍ଡରେ ସ୍ଥାନ ପାଇଥିଲା ।

ଏହି କାବ୍ୟ ନାଟିକା ସମ୍ପର୍କରେ କବି କହିଥିଲେ 'ଯେଉଁ ବୟସରେ ଲେଖକ ଜଗତର ସମସ୍ତ ବିଷୟକୁ ବଡ଼ ବୋଲି ନଭାବି ନିଜର ଅପରିସ୍ଫୁଟ ଛାୟା ମୂର୍ତ୍ତିକୁ ଖୁବ ବଡ଼ ବୋଲି ଭାବେ, ସେହି ବୟସରେ ଏହା ଲେଖାହୋଇଥିଲା ।'

ସେ ଯୁଗରେ 'କବି କାହାଣୀ' ସମାଦର ପାଇଥିଲା । 'ବାନ୍ଧବ' ପତ୍ରିକାର ସମ୍ପାଦକ କାଳୀପ୍ରସନ୍ନ ଘୋଷଙ୍କ ପରି ବିଖ୍ୟାତ ସାହିତ୍ୟିକ ରବୀନ୍ଦ୍ରନାଥଙ୍କୁ ଉଦୟୋନ୍ମୁଖ କବି ଭାବରେ ଅଭ୍ୟର୍ଥନା କରିଥିଲେ ।

( ୬ )

ହିମାଳୟରୁ ଫେରିବା ପରେ ପାଞ୍ଚବର୍ଷ ବିତିଯାଇଛି । କବିଙ୍କୁ ଲେଖାପଢ଼ା ଶିଖାଇବାର ନାନା ପରୀକ୍ଷା ବ୍ୟର୍ଥ ହୋଇଛି । ସେତେବେଳକୁ ରବୀନ୍ଦ୍ରନାଥଙ୍କର ବୟସ ସତରବର୍ଷ— ଜଣେ ଯୁବକ । ଘର ଲୋକମାନେ ରବୀନ୍ଦ୍ରଙ୍କର ଭବିଷ୍ୟତ ସମ୍ପର୍କରେ ଉଦ୍‌ବିଗ୍ନ । ଶେଷରେ ବିଲାତ ପଠାଇ ବ୍ୟାରିଷ୍ଟର ପଢ଼ାଇବାର ସ୍ଥିର ହେଲା । ସେ ସମୟରେ ବଡ଼ଲୋକର ପିଲା ଲେଖାପଢ଼ା ନଶିଖିଲେ କିମ୍ବା ବିଶ୍ୱବିଦ୍ୟାଳୟ ପରୀକ୍ଷାରେ ଫେଲ ହେଲେ ତାଙ୍କୁ ବିଲାତ ପଠାଇ ଦିଆଯାଉଥିଲା । କୌଣସି ପ୍ରକାରେ ଲଣ୍ଡନ ସହରରେ କିଛି ଟଙ୍କା ପଇସା ଶ୍ରାଦ୍ଧ କରି, ଗୋଟିଏ ବ୍ୟାରିଷ୍ଟର ବାର୍‌ରେ ନାମ ଲେଖାଇ, ଇଂରେଜୀ ଖାନା ଖାଇ, ଆଦବ୍ କାଇଦା ଶିଖି ବ୍ୟାରିଷ୍ଟର ରୂପେ ଦେଶକୁ ଫେରୁଥିଲେ । କିନ୍ତୁ ରବୀନ୍ଦ୍ରଙ୍କର ଇଂରେଜୀ ମଧ୍ୟ ସେପରି ଆୟତ୍ତ ହୋଇନଥିଲା । ବିଲାତ ଯାଇ କଣ କରିବେ ? ତେଣୁ ଠିକ୍‌ହେଲା ଯେ, ବିଲାତ ଯିବା ପୂର୍ବରୁ ଅହମଦାବାଦରେ ସତ୍ୟେନ୍ଦ୍ରନାଥଙ୍କ ନିକଟରେ କିଛିଦିନ ରହି ଇଂରାଜୀ ଶିଖି ନେବେ ।

ଅହ୍‌ମଦାବାଦ ଶାହିବାଗ୍‌ରେ ଜଜ୍‌ ସାହେବଙ୍କର ପ୍ରକାଣ୍ଡ ଘର — ମୋଗଲ ଯୁଗର ଶ୍ରେଷ୍ଠ କାଠର ପ୍ରାସାଦ । ଘର ପାଖରେ ସାବରମତୀ ନଦୀ । ସତ୍ୟେନ୍ଦ୍ରନାଥ ଦ୍ୱିପ୍ରହରରେ ଅଦାଲତରେ ଥାଆନ୍ତି । ତାଙ୍କର ସ୍ତ୍ରୀ ଓ ପୁତ୍ର କନ୍ୟାମାନେ ବିଲାତରେ ଥାଆନ୍ତି । ଶାହିବାଗ୍‌ରେ ନିର୍ଜନ ଘରେ ରବୀନ୍ଦ୍ରନାଥଙ୍କର ଦିନ କଟେ, ଭାଇଙ୍କର ଲାଇବ୍ରେରିରେ । ଦିନସାରା ଇଂରାଜୀ ପଢ଼ନ୍ତି । ଅଭିଧାନ ସାହାଯ୍ୟରେ ବୁଝିବାକୁ ଚେଷ୍ଟା କରନ୍ତି । ଯାହା ବୁଝି ନପାରନ୍ତି, ତାହାର ଆନୁମାନିକ ଅର୍ଥ କରି ନିଅନ୍ତି ।

ପଢ଼ା ସଙ୍ଗେ ସଙ୍ଗେ 'ଭାରତୀ' ପାଇଁ ଗେଟେ, ଦାନ୍ତେ, ପେଟ୍ରାର୍କ ଓ ଇଂରେଜୀ କବିମାନଙ୍କ ସମ୍ପର୍କରେ ସମାଲୋଚନାତ୍ମକ ପ୍ରବନ୍ଧ ଲେଖୁଥାନ୍ତି । ସେଗୁଡ଼ିକ ମୌଳିକ ରଚନା ନୁହେଁ— ଇଂରେଜୀ ବହିରୁ ସଙ୍କଳନ ମାତ୍ର ।

ନିର୍ଜନ ଘରର ଛାତ ଉପରେ ଏକାକୀ ବୁଲନ୍ତି । ମନ ମଧ୍ୟରେ ଜାଗେ କବି କଳ୍ପନା—ଗୁଣୁଗୁଣୁ କରି ଗୀତ ବୋଲନ୍ତି; ସଙ୍ଗୀତ ରଚନା କରିଯାଆନ୍ତି ମନକୁମନ । ତାଙ୍କର ସ୍ୱରଚିତ ସ୍ୱରର ପ୍ରଥମ ଗୀତଗୁଚ୍ଛ ଏହିଠାରେ ହିଁ ଲେଖା । 'ନୀରବ ରଜନୀ ଦେଖ ମଗ୍ନ ଜୋଛନାରେ', 'ବଲିଓ ଆମାର ଗୋଲାପ ବାଲେ' ଓ ଅନ୍ୟାନ୍ୟ ସଙ୍ଗୀତ । କବିତା ଯାହା ଲେଖୁଥିଲେ ସେଥିମଧ୍ୟରେ ଇଂରାଜୀ, ସଂସ୍କୃତ ଓ ମରାଠୀରୁ ଅନୁବାଦ ବେଶୀ ଥିଲା ।

ଅହମଦାବାଦରେ ଏକାକୀ ଇଂରେଜୀ କଥାବାର୍ତ୍ତା କରି ହେଲାନି । ସେଥିପାଇଁ ସତ୍ୟେନ୍ଦ୍ରନାଥଙ୍କର ବନ୍ଧୁ ଆତ୍ମାରାମ ପାଣ୍ଡୁରଙ୍ଗଙ୍କର ଘରକୁ କବିଙ୍କୁ ପଠାଇ ଦିଆଗଲା । ଏହି ପାଣ୍ଡୁରଙ୍ଗ ପରିବାରର ଇଂରେଜୀ ଚଳଣି ଯୋଗୁ ଖୁବ ଖ୍ୟାତ ଥିଲା । ସେହି ପରିବାରର ଜଣେ 'ପଢ଼ାଶୁଣା ବାଲ ଝିଅ' ଆନା ତରଖଡ଼ 'ଝକଝକ କରି ମାଜି ଅଣିଥିଲା ତା'ର ଶିକ୍ଷା ବିଲାତରୁ' । ରବୀନ୍ଦ୍ରନାଥ ତାହାର ପାଖରେ ଇଂରେଜୀ ଶିକ୍ଷା ଓ ଚଳଣି ଅଭ୍ୟାସ କଲେ ଓ ନିଜେ ଯେ ଜଣେ କବି ଏହା ଭଦ୍ରଭଙ୍ଗୀରେ ଜଣାଇ ଦେଲେ । 'କବି କାହାଣୀ' ଅନୁବାଦ କରି ଶୁଣାଇଲେ । ଶୁଣୁଶୁଣୁ ଅନେକ ଅଂଶ ଝିଅଟିର ମୁଖସ୍ଥ ହୋଇଗଲା । କବି ପରିଣତ ବୟସରେ ଏହି କାବ୍ୟ ସମ୍ପର୍କରେ

ଯାହା ମତ ପୋଷଣ କରନ୍ତୁ ନା କାହିଁକି, ଅଠର ବର୍ଷ ବୟସରେ ଏହି କାବ୍ୟ ପ୍ରତି ତାଙ୍କର ଯଥେଷ୍ଟ ମାୟା ଥିଲା । ସୁଦର୍ଶନେ କବିଙ୍କ ପ୍ରତି ଆନା ଆକୃଷ୍ଟ ହୋଇ ପଡ଼ିଲେ । କବିଙ୍କୁ କହିଲେ 'ତୁମେ ମୋର ଗୋଟିଏ ଭଲ ନାଁ ଦିଅ' । କବି ତାହାର ନାମ ରଖିଥିଲେ 'ନଳିନୀ' । ଗୋଟିଏ କବିତାରେ ଏହି 'ନଳିନୀ' ନାମ ଲେଖିଦେଲେ — 'ଶୁଣ ନଳିନୀ, ଖୋଲ ଗୋ ଆଖି' । ଆନା କବିଙ୍କର ଗୀତ ପ୍ରାୟ ଶୁଣୁଥିଲେ । ସେହି ବଙ୍ଗଳା ଗୀତର ସ୍ୱର ଓ କବିଙ୍କର କଣ୍ଠସ୍ୱର ତାଙ୍କୁ ମୁଗ୍ଧ କରୁଥିଲା । ସେ କହିଥିଲେ 'ତୁମର ଗୀତ ଶୁଣିଲେ ବୋଧହୁଏ ମୁଁ ମୃତ୍ୟୁଦିନ ମଧ୍ୟ ପ୍ରାଣ ପାଇ ଚେଇଁ ଉଠି ପାରିବି ।'

ବୃଦ୍ଧ ବୟସରେ କବି କହିଥିଲେ "ସେ ଝିଅଟିକୁ ମୁଁ ଭୁଲିନାହିଁ କିମ୍ବା ତାର ଆକର୍ଷଣକୁ କୌଣସି ଶକ୍ତି ଲେଶବେଲ୍ ମାରି ଦେଇନାହିଁ । ମୋ ଜୀବନରେ ତାହା ପରେ ନାନା ଅଭିଜ୍ଞତାର ଆଲୋକଛାୟା ଆସିଛି । ବିଧାତା ନାନା ଅଘଟଣ ଘଟାଇଛନ୍ତି; କିନ୍ତୁ ମୁଁ ଗୌରବର ସହିତ କହିପାରେ ଯେ କୌଣସି ଝିଅର ଭଲ ପାଇବାକୁ ମୁଁ ଅବଜ୍ଞା ଚକ୍ଷୁରେ ଦେଖିନାହିଁ—ସେ ଭଲ ପାଇବା ଯେଉଁ ପ୍ରକାରର ହେଉ ନା କାହିଁକି ।"

'ଶୈଶବ ସଙ୍ଗୀତ' କାବ୍ୟର କେତୋଟି କବିତା ମଧ୍ୟରେ ଉଲ୍ଲିଖିତ କୈଶୋର ପ୍ରେମର ଆଭାସ ମିଳେ । କବି ଲେଖିଛନ୍ତି, 'ଜୀବନଯାତ୍ରାର ପଥରେ ଅଚିହ୍ନା ଜଗତରୁ ଅନେକ ଆସନ୍ତି, ହୃଦୟରେ ଆସନ ପାତି ଦିଅନ୍ତି । ନ ଡାକିଲେ ଆସନ୍ତି, କିନ୍ତୁ ଶେଷରେ ଡାକିଲେ ଆସନ୍ତି ନାହିଁ ।'

( ୮ )

ସତ୍ୟେନ୍ଦ୍ରନାଥ ଦୀର୍ଘ ଛୁଟି ନେଇ ବିଲାତ ଗଲେ । ଏହା ପୂର୍ବରୁ ତାଙ୍କର ସ୍ତ୍ରୀ ଜ୍ଞାନଦାନନ୍ଦିନୀ ଦେବୀ ପିଲା ଛୁଆଙ୍କୁ ନେଇ ବିଲାତରେ ଥିଲେ । ରବୀନ୍ଦ୍ରନାଥ ଭାଇଙ୍କ ସଙ୍ଗରେ ବିଲାତ ଗଲେ (୧୮୭୮ ସେପ୍ଟେମ୍ବର ୨୦ ତାରିଖ) । ତାହାଙ୍କ ଚଢ଼ିବାର ଅଭିଜ୍ଞତା ଏହି

ପ୍ରଥମଥର । ଇଟାଲୀ ବନ୍ଦରରେ ଓହ୍ଲାଇ ତାଙ୍ଗା ସେସୋନା ରାସ୍ତାରେ ଗୃଲିଲେ; ଆଲପ୍ସର୍ ସୁଡ଼ଙ୍ଗ ପାରହୋଇ ଫ୍ରାନ୍ସ ଭିତର ଦେଇ ପ୍ୟାରିସରେ ପହଞ୍ଚିଲେ । ସେତେବେଳକୁ ସେଠାରେ ବିରାଟ ଆନ୍ତର୍ଜାତିକ ପ୍ରଦର୍ଶନୀ ଗୃଲିଥାଏ । ଜର୍ମାନମାନେ ପରାଜିତ ହେବା ପରେ, ରାଜତନ୍ତ୍ର ଶାସନର ଅବସାନ ଘଟିଥାଏ । ଫ୍ରାନ୍ସ ନୂତନ ପ୍ରଜାତନ୍ତ୍ର ଶାସନାଧୀନ । ସେଥିପାଇଁ ସବୁ ଦେଶମାନଙ୍କୁ ଏହି ନବଜୀବନର ସୂଚନା ଦେବାପାଇଁ ପ୍ୟାରିସ ଉତ୍ସବକୁ ନିମନ୍ତ୍ରଣ କରାଯାଇଥାଏ । ରବୀନ୍ଦ୍ରନାଥ ପ୍ରଦର୍ଶନୀ ବୁଲି ଦେଖିଲେ ।

ଏହାପରେ ଇଂଲଣ୍ଡର ବ୍ରାଇଟନ୍‌ରେ ପହଞ୍ଚିଲେ । ସେଠାରେ ସତ୍ୟେନ୍ଦ୍ରନାଥଙ୍କର ପରିବାରବର୍ଗ ଥିଲେ । କଲିକତା ଛାଡ଼ିବାର ଛଅ, ସାତମାସ ପରେ ପ୍ରିୟଜନଙ୍କ ମୁହଁ ଦେଖିଲେ । ବିଶେଷତଃ ଶ୍ରେଷ୍ଠ ପୁତୁରା ସୁରେନ୍ ଓ ଝିଅଣ୍ଡୀ ଇନ୍ଦିରାକୁ ଦେଖି କବି ଖୁବ୍ ଖୁସି ହେଲେ ।

ରବୀନ୍ଦ୍ରନାଥ ବ୍ରାଇଟନ୍‌ର ଏକ ପବ୍ଲିକ ସ୍କୁଲରେ ନାମ ଲେଖାଇଲେ । ଏହି ପ୍ରିୟଦର୍ଶନ ଯୁବକଙ୍କ ସାଙ୍ଗରେ ଆଳାପ ପରିଚୟ ହେବାକୁ ସହରର ନରନାରୀଙ୍କୁ ବେଶୀ ସମୟ ଲାଗିଲା ନାହିଁ । ନାଚଗୀତର ଆୟୋଜନରେ କବି ନିମନ୍ତ୍ରିତ ହେଲେ । କିଛିଦିନ ଭିତରେ ବିଲାତି ନାଚଗୀତରେ ପାରଙ୍ଗମ ହୋଇଗଲେ । ଏହିପରି ଭାବରେ ବ୍ରାଇଟନରେ କିଛିଦିନ ସୁଖରେ କଟିଲା ।

ଏହି ସମୟରେ ଜଣେ ତାରକାନାଥ ପାଲିତ ସେଠାରେ ଆସି ପହଞ୍ଚିଲେ । ସେ ଥିଲେ ସତ୍ୟେନ୍ଦ୍ରନାଥଙ୍କର ବନ୍ଧୁ ଓ କଲିକତା ହାଇକୋର୍ଟର ଉଦୀୟମାନ ବାରିଷ୍ଟର । ନିଜ ପୁଅ ଲୋକେନ୍‌କୁ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ପଢ଼ାଇବାର ବ୍ୟବସ୍ଥା କରିବାକୁ ଆସିଥିଲେ । ରବୀନ୍ଦ୍ରଙ୍କୁ ମଫସଲର ପବ୍ଲିକ ସ୍କୁଲରେ ପଢ଼ୁଥିବାର ଓ ଭାଉଜଙ୍କର ପଣତ ଉହାଡ଼ରେ ଥିବାର ଦେଖି ସତ୍ୟେନ୍ଦ୍ରନାଥଙ୍କୁ କହିଲେ ଯେ ଏପରି ଭାବରେ ରହିଲେ କୌଣସି ଶିକ୍ଷା ସେ ପାଇପାରିବ ନାହିଁ । ତାଙ୍କରି ଆଗ୍ରହ ଫଳରେ ରବୀନ୍ଦ୍ର-ନାଥ ଲଣ୍ଡନ ବିଶ୍ୱବିଦ୍ୟାଳୟରେ ନାମ ଲେଖାଇଲେ । ସେ ଦେଶର

ପ୍ରଥା ମୁତାବକ ଜଣେ ଇଂରେଜୀ ଗୃହସ୍ଥ ଘରେ 'ପେଇଙ୍ଗ ଗେଷ୍ଟ' ହୋଇ ରହିଲେ ।

ଲଣ୍ଡନ ବିଶ୍ୱବିଦ୍ୟାଳୟରେ ଲୋକେନ୍‌ଙ୍କ ସହିତ ରବୀନ୍ଦ୍ରନାଥଙ୍କର ପରିଚୟ ହେଲା । ଯଥା ସମୟରେ ଲୋକେନ୍ ଭାରତୀୟ ସିଭିଲ ସର୍ଭିସ ପାଶ କରି ଦେଶକୁ ଫେରିଆସିଲେ । ଜୀବନର ଶେଷଦିନ ପର୍ଯ୍ୟନ୍ତ ଲୋକେନ୍ ରବୀନ୍ଦ୍ରନାଥଙ୍କର ଅକୃତ୍ରିମ ବନ୍ଧୁମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ । ରବୀନ୍ଦ୍ର-ସାହିତ୍ୟପ୍ରେମୀ ଓ ରବୀନ୍ଦ୍ରନାଥଙ୍କର ଏପରି ଅନୁରକ୍ତ ସୁହୃଦ ବୋଧହୁଏ ବିଲାତ-ଫେରନ୍ତା ଲୋକଙ୍କ ମଧ୍ୟରେ ସେ ସମୟରେ ଆଉ କେହି ନଥିଲେ ।

କଲେଜରେ ହେନେରୀ ମର୍ଲି ଇଂରାଜୀ ପଢ଼ାଉଥାନ୍ତି । ସେ ଥିଲେ ପାର୍ଲିମେଣ୍ଟ ଭାରତର ଏକଦା ସେକ୍ରେଟରୀ—ସାହିତ୍ୟିକ ଓ ରାଜନୀତିଜ୍ଞ ଜନ୍ ମର୍ଲିଙ୍କର ଭାଇ । ଅଧ୍ୟାପକ ମର୍ଲିଙ୍କର ପାଠପଢ଼ାର ପ୍ରଣାଳୀ, ସ୍ନେହ ଓ ଶାସନ ରବୀନ୍ଦ୍ରନାଥଙ୍କୁ ଖୁବ୍ ମୁଗ୍ଧ କରିଥିଲା । ବୃଦ୍ଧ ବୟସରେ କବି ଯେତେବେଳେ ବିଲାତ କଥା ବା ଶିକ୍ଷା ପ୍ରଣାଳୀ ସମ୍ପର୍କରେ ଆଲୋଚନା କରୁଥିଲେ, ସେତେବେଳେ ଉଚ୍ଛ୍ୱସିତ ହୋଇ ହେନେରୀ ମର୍ଲିଙ୍କ କଥା କହୁଥିଲେ । କିନ୍ତୁ ତାଙ୍କ ନିକଟରେ କବି ବୋଧହୁଏ ୩।୪ ମାସ ମାତ୍ର ପଢ଼ିଥିଲେ ।

ଲଣ୍ଡନରେ ରହିବା ବେଳେ ପାର୍ଲିମେଣ୍ଟରେ ଗ୍ଲାଡ଼ଷ୍ଟୋନଙ୍କର ଓଜସ୍ୱିନୀ ବକ୍ତୃତା ଶୁଣିଲେ ଓ ବୃଦ୍ଧ ବ୍ରାଇଟ୍‌ଙ୍କୁ ଗମ୍ଭୀର ଭାବରେ ବସିଥିବାର ଦେଖିଲେ । ବୃଦ୍ଧ ବ୍ରାଇଟ୍‌ଙ୍କର ସୌମ୍ୟ ମୂର୍ତ୍ତି ବଙ୍ଗାଳୀ ଯୁବକଙ୍କର ସଶ୍ରଦ୍ଧ ଦୃଷ୍ଟି ଆକର୍ଷଣ କଲା ।

ଲଣ୍ଡନରେ ରବୀନ୍ଦ୍ରନାଥ ଯେଉଁ ଭଦ୍ରଲୋକଙ୍କ ଘରେ ଥିଲେ ତାଙ୍କର ନାମ ସ୍କଟ୍ । ଅଳ୍ପଦିନ ମଧ୍ୟରେ ରବୀନ୍ଦ୍ରନାଥ ସ୍କଟ୍ ପରିବାରରେ ଖୁବ ଘନିଷ୍ଠ ହୋଇଗଲେ । ସେହି ପରିବାରର ଦୁଇଟି ଝିଅ (ଦୁଇ ଭଉଣୀ) କବିଙ୍କ ପ୍ରତି ଖୁବ ଆକୃଷ୍ଟ ହୋଇ-ଥିଲେ । 'ସନ୍ଧ୍ୟା ସଙ୍ଗୀତ'ର 'ଦୁଇଦିନ' କବିତାରେ ତାର ଇଙ୍ଗିତ ସ୍ପଷ୍ଟ । କବି ସ୍ୱୀକାର କରିଛନ୍ତି ଯେ, ଝିଅ ଦୁଇଟି ତାଙ୍କୁ ଭଲ ପାଉଥିଲେ । କିନ୍ତୁ ସେତେବେଳେ ତାଙ୍କର ସେ କଥା

ସ୍ୱୀକାର କରିବାର 'ସତ୍‌ ସାହସ' ନଥିଲା । ତରଣବର୍ଷ ବୟସରେ କବି ଯେତେବେଳେ ମାସକ ପାଇଁ ବିଲାତ ଯାଇଥିଲେ, ସେତେବେଳେ ଲଣ୍ଡନରେ ସ୍କଟ୍‌ଙ୍କ ଘରେ ସେହି ଦୁଇଭଉଣୀଙ୍କୁ ଖୋଜିବାକୁ ଯାଇଥିଲେ । କିନ୍ତୁ ସେତେବେଳକୁ କିଏ କେଉଁଠି ସ୍ଥିର ନାହିଁ ।

ଯାତ୍ରାପଥରେ ତଥା ବିଲାତରେ ପହଞ୍ଚି ଯେଉଁ ବିଚିତ୍ର ଅଭିଜ୍ଞତା ହୋଇଥିଲା ସେ ସମ୍ପର୍କରେ ନାନା ମତବ୍ୟକ୍ତ କରି 'ଭାରତୀ'କୁ ପତ୍ର ଲେଖିଥିଲେ । ସେଗୁଡ଼ିକ ସାହିତ୍ୟିକ ଡାଏରୀ କୁହାଯାଇପାରେ ଲେଖା ପତ୍ରାକାରରେ, ଯେପରି ପରବର୍ତ୍ତୀ ଲେଖା 'ଋଷିଆର ଚିଠି', 'ଜାଭା ଯାତ୍ରୀର ପତ୍ର' ପ୍ରଭୃତି । ଭାରତୀୟ-ମାନଙ୍କୁ ବିଲାତର ନାରୀ ସ୍ୱାଧୀନତା ସବୁଠାରୁ ବେଶୀ ବିଭ୍ରାନ୍ତ କରୁଥିଲା । ରବୀନ୍ଦ୍ରନାଥ ମଧ୍ୟ ଏଥିରେ ଯେ ମୁଗ୍ଧ ନ ହୋଇଥିଲେ ଏପରି ନୁହେଁ । କାରଣ ପତ୍ର ପ୍ରବନ୍ଧ ଗୁଡ଼ିକରେ ନାରୀସ୍ୱାଧୀନତା ଓ ନରନାରୀଙ୍କର ଅବାଧ ମିଳାମିଶା ସମ୍ପର୍କରେ ଅନୁକୂଳ ମତ ଅକୁଣ୍ଠିତ ଚିତ୍ତରେ ଲେଖିଥିଲେ । ଘରେ ଅଭିଭାବକମାନେ ବାଳକ କବିଙ୍କର ଏ ପ୍ରକାର ପ୍ରଗଲ୍‌ଭ ଉକ୍ତି ଓ ମତାମତ ପାଠ କରି ଚିନ୍ତାକୁଳ ହେଲେ । 'ଭାରତୀ'ର ପୃଷ୍ଠାରେ ତରୁଣ ରବୀନ୍ଦ୍ରଙ୍କର ମତାମତ ପ୍ରସଙ୍ଗରେ ପାଦଟୀକା ବା ସଂଯୋଜନା ରୂପେ ଜ୍ୟେଷ୍ଠଭ୍ରାତା ଦ୍ୱିଜେନ୍ଦ୍ରନାଥଙ୍କର ରକ୍ଷଣଶୀଳ ସମାଲୋଚନା ଏକତ୍ର ପ୍ରକାଶିତ ହେଉଥିଲା । ଏହା ଅଶୀବର୍ଷ ଆଗର ଲେଖା ହେଲେ ବି, ବର୍ତ୍ତମାନ ମଧ୍ୟ ପଢ଼ିବାକୁ ସୁଖପ୍ରଦ । ଶେଷରେ ଦେବେନ୍ଦ୍ରନାଥ ରବୀନ୍ଦ୍ରଙ୍କୁ ଦେଶକୁ ଫେରଆସିବାକୁ ନିର୍ଦ୍ଦେଶ ଦେଲେ ।

ଦେଢ଼ବର୍ଷ ବିଲାତରେ କଟାଇ, କୌଣସି ବିଦ୍ୟା ହାସଲ ନକରି, ଡ଼ିଗ୍ରୀଲାଭ ନକରି, ବ୍ୟାରିଷ୍ଟରୀ ପଢ଼ା ଶେଷ ନକରି ରବୀନ୍ଦ୍ରନାଥ ଦେଶକୁ ଫେରିଲେ । ସେତେବେଳକୁ ତାଙ୍କର ବୟସ ଉଣେଇଶ ବର୍ଷ । ବିଲାତରୁ ଫେରିବାର ଦେଢ଼ବର୍ଷ ପରେ 'ଭାରତୀ'ରେ ପ୍ରକାଶିତ ଚିଠିଗୁଡ଼ିକ 'ୟୁରୋପ' ପ୍ରବାସୀର ପତ୍ର' ନାମରେ ଗ୍ରନ୍ଥାକାରରେ ଛପାହେଲା । ସେହି ଗ୍ରନ୍ଥର ଭୂମିକାରେ

କବି ଲେଖିଥିଲେ, 'ଏହି ଗ୍ରନ୍ଥ ପଢ଼ି କାହାର କୌଣସି ଉପକାର ହେଉ ବା ନହେଉ, ଜଣେ ବଙ୍ଗାଳୀ ଇଂଲଣ୍ଡ ଗଲେ ସେଠାରେ କିପରି ଭାବରେ ତାହାର ମତାମତ ଗଠିତ ଓ ପରିବର୍ତ୍ତିତ ହୁଏ, ଏଥିରୁ ତା'ର ଇତିହାସ ମିଳିବ ।' ସାହିତ୍ୟ ଦିଗରୁ ଏହି ବହିର ଯଥେଷ୍ଟ ମୂଲ୍ୟ ଅଛି । ଖୁବ୍ ସମ୍ଭବ ରବୀନ୍ଦ୍ରନାଥ ପ୍ରଚଳିତ ଭାଷାରେ ଲେଖିବା ଏହା ପ୍ରଥମ । ବଙ୍ଗଳା ବ୍ୟବହାରିକ ଭାଷାର ସହଜ ପ୍ରକାଶ-ପଟୁତାର ପ୍ରମାଣ, ଏହି ଚିଠିଗୁଡ଼ିକରେ ଅଭ୍ରାନ୍ତ ରୂପେ ବିଦ୍ୟମାନ ।

(୯)

ରବୀନ୍ଦ୍ରନାଥ ବିଲାତ ଗଲାବେଳେ ଥିଲେ ଲଜ୍ଜାଶୀଳ; କିନ୍ତୁ ଫେରିଲାବେଳକୁ ଏକ ପ୍ରଗଲ୍‌ଭ ଯୁବକ । ଅହମଦାବାଦରେ ଛଅ-ସାତମାସ ରହିବା ପରେ ଯୋଡ଼ାସାଁକୋକୁ ଫେରିଲେ । ବିଦେଶ ଦେଶର ଜଳବାୟୁରେ ରବୀନ୍ଦ୍ରଙ୍କର ସ୍ୱାସ୍ଥ୍ୟ ସୁନ୍ଦର ଓ ଉଜ୍ଜ୍ୱଳତର ହୋଇଯାଇଥିଲା । ନିଜ ଲୋକଙ୍କ ଆଗରେ କଥାବାର୍ତ୍ତା କରିବାରେ, ମତବ୍ୟକ୍ତ କରିବାରେ ବା ବିଲାତି ଗୀତ ଶୁଣାଇବାରେ କୌଣସି ସଙ୍କୋଚ ନଥିଲା । ଘରକୁ ଫେରିଲା ପରେ ସବୁଠାରୁ ବେଶୀ ଆଦର ପାଇଲେ ଭାଉଜ କାଦମ୍ବରୀ ଦେବୀଙ୍କଠାରୁ । କାଦମ୍ବରୀ ଦେବୀ ଜ୍ୟୋତିରୀନ୍ଦ୍ରଙ୍କର ସ୍ତ୍ରୀ ଓ ବୋହୂ ହୋଇ ଏହି ପରିବାରକୁ ଆସିଲା ବେଳେ ରବୀନ୍ଦ୍ରନାଥ ଥିଲେ ପିଲା । କାଦମ୍ବରୀ ନିଃସନ୍ତାନ ଥିବାରୁ ତାଙ୍କର ମାତୃହୃଦୟର ସମସ୍ତ ସ୍ନେହ ପାଇଲେ ଦିଅର ରବୀନ୍ଦ୍ରନାଥ । ରବୀନ୍ଦ୍ରଙ୍କୁ ପାଇ ମହା ଖୁସିହେଲେ । ରବୀନ୍ଦ୍ରଙ୍କ ଜୀବନରେ ସେ ଥିଲେ କଲ୍ୟାଣୀ ଧ୍ରୁବତାରା ପରି ନିସ୍ପନ୍ଦ ଓ ନିର୍ନିମେଷ । ରବୀନ୍ଦ୍ର-ସାହିତ୍ୟର ବହୁ କବିତା ଓ ସଂଗୀତରେ ତାଙ୍କର ସ୍ମୃତି ସ୍ନିଗ୍ଧ ଉଜ୍ଜ୍ୱଳ ରୂପେ ପରିସ୍ଫୁଟ ।

ଘରକୁ ଫେରି ଦେଖିଲେ ପରିବାରରେ ସମସ୍ତେ ଚଳଚଞ୍ଚଳ । ଜ୍ୟୋତିରୀନ୍ଦ୍ରନାଥଙ୍କର 'ମାନମୟୀ' ନାଟକର ଅଭିନୟ ପାଇଁ

ଆୟୋଜନ ଚାଲିଛି । ଅକ୍ଷୟ ଚୌଧୁରୀ ଓ ଜ୍ୟୋତିରୀନ୍ଦ୍ରନାଥ ଦେଶୀ ଓ ବିଲାତି ସ୍ୱର ମନ୍ଥନ କରି ନୂତନ ସ୍ୱର ଯୋଜନାରେ ବ୍ୟସ୍ତ । ଏହି ସମୟରେ ପହଞ୍ଚିଲେ ରବୀନ୍ଦ୍ରନାଥ । ସଙ୍ଗେ ସଙ୍ଗେ ଗୋଟିଏ ସଂଗୀତ ଲେଖିଦେଲେ—'ଆୟ ତବେ ସହଚରୀ, ହାତେ ହାତେ ଧରି ଧରି' । ଏହି ଅଭିନୟରେ ରବୀନ୍ଦ୍ରନାଥ ମଦନ, ଜ୍ୟୋତିରୀନ୍ଦ୍ରନାଥ ଇନ୍ଦ୍ର ଓ କାଦମ୍ବରୀ ଦେବୀ ଉର୍ବଶୀ ଭୂମିକାରେ ଅଂଶ ଗ୍ରହଣ କରିଥିଲେ ।

ଏସବୁ ଉତ୍ତେଜନା ଭିତରେ ରବୀନ୍ଦ୍ରଙ୍କ ମନରେ ଶାନ୍ତି ନଥିଲା । ବିଲାତରେ କିଛି ନକରି, କିଛି ନହୋଇ ଫେରିଆସିବା ଯୋଗୁ ମନ ଅବସାଦଗ୍ରସ୍ତ । ସମସାମୟିକ ଏକ ପତ୍ରରେ ଲେଖି-ଥିଲେ, 'ବଙ୍ଗଦେଶକୁ ଫେରି ଆସିଲି । ସେହି ଆକାଶ, ସେହି ଚନ୍ଦ୍ର, ସେହି ଦକ୍ଷିଣା ମଳୟ, ସେହି ବିଜନ ସ୍ୱପ୍ନ, ଧୀରେ ଧୀରେ ଚାରି ଦିଗରେ ପ୍ରସାରିତ ସହସ୍ର ବନ୍ଧନ, ସୁଦୀର୍ଘ ଅବସର, କର୍ମହୀନ କଳ୍ପନା, ମନେ ମନେ ସୌନ୍ଦର୍ଯ୍ୟର ମରୀଚିକା ରଚନା, ନିଷ୍ଫଳ ଦୁରାଶା; ଅନ୍ତରର ନିଗୂଢ଼ ବେଦନା, ଆତ୍ମପୀଡ଼କ ଅଳସକବିତ୍ୱ—ଏହି ସମସ୍ତ ନାଗପାଶ ଦ୍ୱାରା ପରିବେଷ୍ଟିତ ହୋଇ ବସିଛି ।'

ବିଲାତରେ ଥିବା ସମୟରେ ଦୁଇଚାରିଟା କବିତା ଲେଖି ଥିଲେ ଓ 'ଭଗ୍ନ ହୃଦୟ' ନାମକ ଏକ କାବ୍ୟ ଆରମ୍ଭ କରିଥିଲେ । ଜାହାଜରେ ଫେରିବା ବେଳେ ଏହାର କିଛି ଅଂଶ ଲେଖିଥିଲେ, ବାକିତକ ଘରେ ଶେଷ କଲେ । ଏ ଲେଖାରେ ମନର ଆନନ୍ଦ ହେଉ ବା ବିଷାଦ ହେଉ ଉତ୍ତମ ରୂପେ ପ୍ରକାଶିତ ହୋଇଛି । ଏହା କାହାରି ତାଗିଦାରେ ଲେଖା ନୁହେଁ—ଆପଣା ମନର ସୌନ୍ଦର୍ଯ୍ୟ ମରୀଚିକା ବା ବିଜନ ସ୍ୱପ୍ନ ବା ଅଳସ କବିତ୍ୱ ମାତ୍ର ।

କିନ୍ତୁ କର୍ତ୍ତବ୍ୟର ଅନୁରୋଧରେ ମାଘୋତ୍ସବ ପାଇଁ ବ୍ରହ୍ମ-ସଂଗୀତ ଲେଖିବାକୁ ପଡ଼ିଲା । ସେହି ସାତୋଟି ଗୀତ 'ଗୀତବିତାନ' ଅନ୍ତର୍ଗତ ହୋଇଛି । ସେତେବେଳକୁ ରବୀନ୍ଦ୍ରଙ୍କ ବୟସ ଉଣେଇଶ ବର୍ଷ । ଏହାପରେ ଷାଠିଏ ବର୍ଷ ମଧ୍ୟରେ କେତେ ବ୍ରହ୍ମସଂଗୀତ ବା ଧର୍ମ ସଂଗୀତ ଲେଖିଛନ୍ତି ତା'ର ବିଶଦ ବିବରଣୀ ଦେବା କଠିନ । କୌଣସି ବିଶେଷ ଦେବତାର ନାମ ନଥାଇ, ସର୍ବମାନବର ଗ୍ରହଣ-

ଯୋଗ୍ୟ ବ୍ରହ୍ମସଂଗୀତ ବ୍ରହ୍ମସମାଜ ତରଫରୁ ଲେଖା ଆରମ୍ଭହେଲା ।
ଏ ବିଷୟରେ ଠାକୁର ପରିବାରର ଦାନ ଅବିସ୍ମରଣୀୟ—
ରବୀନ୍ଦ୍ରନାଥଙ୍କର ଦାନର ତୁଳନା ନାହିଁ । ଏହି ସମ୍ପର୍କରେ ଲେଖା
ଗୀତିନାଟ୍ୟ 'ବାଲ୍ମୀକୀ ପ୍ରତିଭା'ର ଆଦର ଓ ଆକର୍ଷଣ ଏପର୍ଯ୍ୟନ୍ତ
ବଙ୍ଗଦେଶରେ ଅକ୍ଷୁଣ୍ଣ ଅଛି । ଠାକୁର ପରିବାରରେ ସଂଗୀତର
ଆବହାଓ୍ୱା ଥିଲା କହିଲେ ଯଥେଷ୍ଟ ହେବ ନି—ସଂଗୀତ ଓ କଳାର
ଗଭୀର ଉନ୍ମାଦନା ଥିଲା । ସବୁଜାଗାରେ ସଂଗୀତ ରଚନା କରିବା
ପରେ ସ୍ୱରଯୋଜନା କରିବା ହେଉଛି ରୀତି । କିନ୍ତୁ ସେମାନଙ୍କର
ପଦ୍ଧତି ଥିଲା ଓଲଟା । ଏହି ପ୍ରସଙ୍ଗରେ କବି କହିଛନ୍ତି, 'ଜ୍ୟୋତିଭାଇ
ସେତେବେଳେ ପ୍ରତିଦିନ ଓସ୍ତାଦି ସଂଗୀତଗୁଡ଼ିକୁ ପିଆନୋ
ସାହାଯ୍ୟରେ ବଜାଇ ଯଥେଷ୍ଟ ମନ୍ଥନ କରିବାରେ ପ୍ରବୃତ୍ତ ଥିଲେ ।
ସେଥିରେ ସମୟ ସମୟରେ ରାଗରାଗିଣୀ ଗୁଡ଼ିକର ଅପୂର୍ବ ମୂର୍ତ୍ତି ଓ
ଭାବବ୍ୟଞ୍ଜନା ପ୍ରକାଶ ପାଉଥାଏ । ମୁଁ ଓ ଅକ୍ଷୟ ବାବୁ (ଅକ୍ଷୟ
ଚୌଧୁରୀ) ଜ୍ୟୋତିଭାଇଙ୍କର ପିଆନୋ ସଙ୍ଗେ ତାଳ ଦେଇ ସ୍ୱର
ଓ କଥା ଯୋଜନାର ଚେଷ୍ଟା କରୁଥାଉ ।' ବେଳେବେଳେ ଭଉଣୀ
ସ୍ୱର୍ଣ୍ଣକୁମାରୀ ମଧ୍ୟ ଏହି କାର୍ଯ୍ୟରେ ଯୋଗଦେଉଥିଲେ ।

ଠାକୁର ପରିବାରରେ 'ବିଦ୍ୱଜ୍ଜନ ସମାଗମ' ହେଉଥିଲା ।
କଲିକତା ସହରରୁ ବହୁ ଖ୍ୟାତନାମା ଲୋକ ଆସୁଥିଲେ ।
ରବୀନ୍ଦ୍ରନାଥ ବିଲାତରୁ ଫେରିବା ପରେ ଏହି ସଭାର ବାର୍ଷିକ
ଅଧିବେଶନରେ ନାଟକ ଅଭିନୟ କରିବା କଥା ସ୍ଥିର ହେଲା ।
ରବୀନ୍ଦ୍ରନାଥଙ୍କୁ ନାଟକ ଲେଖିବାକୁ ଅନୁରୋଧ କରାଗଲା । ସେହି
ଅନୁରୋଧରେ 'ବାଲ୍ମୀକୀ ପ୍ରତିଭା' ନାଟକ ରଚିତ ହୋଇଥିଲା ।

ଏହି ନାଟକ ମଧ୍ୟରେ ବିହାରୀଲାଲ ଚକ୍ରବର୍ତ୍ତୀଙ୍କର ପ୍ରଭାବ
ଖୁବ ସ୍ପଷ୍ଟ; କାରଣ ସେତେବେଳେ ବିହାରୀଲାଲ ଥିଲେ ରବୀନ୍ଦ୍ର
କବି-କଳ୍ପନାର ପୂର୍ଣ୍ଣତା । ବିହାରୀଲାଲଙ୍କ ନିକଟରୁ ବିଷୟବସ୍ତୁର
ପ୍ରେରଣା ଓ ଜ୍ୟୋତିରୀନ୍ଦ୍ରନାଥଙ୍କଠାରୁ ସ୍ୱର-ସୃଷ୍ଟି ଓ ସ୍ୱର-
ଯୋଜନାର ସହାୟତା ଫଳରେ 'ବାଲ୍ମୀକୀ ପ୍ରତିଭା'ର ଜନ୍ମ ।
ଠାକୁର ପରିବାରରେ ଅଭିନୟ ହେଲା । ରବୀନ୍ଦ୍ରନାଥ ହେଲେ
ବାଲ୍ମୀକୀ ଓ ସରସ୍ୱତୀ ଭୂମିକାରେ ଅଂଶଗ୍ରହଣ କଲେ

ହେମେନ୍ଦ୍ରନାଥଙ୍କର କନ୍ୟା ପ୍ରତିଭା । ପରେ ପ୍ରତିଭା ଦେବୀଙ୍କର ଆଶୁତୋଷ ଚୌଧୁରୀଙ୍କ ସଙ୍ଗେ ବିବାହ ହେଲା । ରବୀନ୍ଦ୍ରନାଥ ଅଭିନୟ କୁଶଳତାରେ ଯେଉଁ ଅସାମାନ୍ୟତା ଦେଖାଇଥିଲେ, ତାର ଉନ୍ମେଷ ଏହି କ୍ଷୁଦ୍ର ନାଟିକା ଅଭିନୟ ଦିନ ହିଁ ଆରମ୍ଭ । ସେ ଦିନର ବିଦ୍ୱଜ୍ଜନମାନଙ୍କ ମଧ୍ୟରେ ଉପସ୍ଥିତ ଥିଲେ ବଙ୍କିମଚନ୍ଦ୍ର (୪୩) ଗୁରୁଦାସ ବନ୍ଦୋପାଧ୍ୟାୟ (୩୭) ହରପ୍ରସାଦ ଶାସ୍ତ୍ରୀ (୨୮) ପ୍ରଭୃତି । ଗୁରୁଦାସ ବାବୁ ମୁଗ୍ଧ ହୋଇ ଗୋଟିଏ କବିତା ଲେଖିଥିଲେ—

ଉଠେଚ୍ଛ ନବୀନ ରବି, ନବ ଜଗତେର ଛବି,
ନବ 'ବାଲ୍ମୀକି ପ୍ରତିଭା' ଦେଖାଇଛେ ପୁନର୍ବାର··· ଇତ୍ୟାଦି ।

ହରପ୍ରସାଦ ତାଙ୍କର 'ବାଲ୍ମୀକିର ଜୟ' ଗ୍ରନ୍ଥର ଶେଷ ଭାଗରେ ରବୀନ୍ଦ୍ରନାଥଙ୍କର ଆଖ୍ୟାନ ଓ କବିଆଦର୍ଶକୁ ଅନୁସରଣ କରିଥିଲେ ।

ବାଲ୍ମୀକି ପ୍ରତିଭା ପାଠଯୋଗ୍ୟ କାବ୍ୟ ଗ୍ରନ୍ଥ ନୁହେଁ । ସଂଗୀତର ଏକ ନୂତନ ପରୀକ୍ଷା—ଅଭିନୟ ସଙ୍ଗେ ସଙ୍ଗେ କାନରେ ନ ଶୁଣିଲେ ଏହାର ଆସ୍ୱାଦ ପାଇବା ସମ୍ଭବପର ନୁହେଁ । ପ୍ରକୃତରେ ଏହା ସ୍ୱର ଓ ତାଳରେ ଗ୍ରଥିତ ନାଟିକା; ସ୍ୱତନ୍ତ୍ର ସଂଗୀତ ମାଧୁର୍ଯ୍ୟ ଅଳ୍ପ । କେତୋଟି ସ୍ୱର ବିଲାତି ସ୍ତୁଇରେ ତିଳା—ଏହା ବି ଏକ ପରୀକ୍ଷା ।

ଏହିପରି ଭାବରେ ଜୀବନ ବିତିଲେ ମନ୍ଦ ନୁହେଁ । କିନ୍ତୁ ଶେଷରେ ସ୍ଥିରହେଲା ଯେ ରବୀନ୍ଦ୍ରନାଥଙ୍କୁ ବିଲାତ ଯାଇ ବାରିଷ୍ଟର ପାଶ୍ କରିବାକୁ ପଡ଼ିବ । ଏଥର ସଙ୍ଗରେ ଗଲେ ଭଣଜା ସତ୍ୟପ୍ରସାଦ । ଅଦୃଷ୍ଟର ଲିପି କିଏ ବା ଖଣ୍ଡନ କରିବ ? ମାନ୍ଦ୍ରାଜ ପର୍ଯ୍ୟନ୍ତ ଯାଇ ଦୁଇଜଣଯାକ ମତ ବଦଳାଇଲେ । ସତ୍ୟପ୍ରସାଦ ସଦ୍ୟ ବିବାହିତ; ସୁତରାଂ ଘରକୁ ଫେରି ଆସିବାର କାରଣ ଅଛି । ସତ୍ୟପ୍ରସାଦ ଫେରିବାରୁ ରବୀନ୍ଦ୍ରନାଥ ମଧ୍ୟ ଫେରିଲେ ।

ଦୁଇଜଣଯାକ ଅପରାଧୀ ପରି ଦେବେନ୍ଦ୍ରନାଥଙ୍କ ସଙ୍ଗେ ଦେଖା କରିବାକୁ ମସୌରି ଗଲେ । ଦେବେନ୍ଦ୍ରନାଥ କାହାରିକୁ

ତିରସ୍କାର କଲେନାହିଁ । ମନେହେଲା ଯେପରି ସେ ଖୁବ୍ ଖୁସି ଓ ଏହି ଘଟଣାରେ ଭଗବାନଙ୍କର ସଦୁଦ୍ଦେଶ୍ୟ ଅଛି ବୋଲି ଉପଲବ୍ଧି କରିଛନ୍ତି । ଦ୍ୱିତୀୟ ଥର ବିଲାତ ଯିବା ପୂର୍ବରୁ ରବୀନ୍ଦ୍ର-ନାଥଙ୍କର ଦୁଇଖଣ୍ଡି କାବ୍ୟ ପ୍ରକାଶିତ ହୋଇଥିଲା— ଭଗ୍ନହୃଦୟ ଓ ରୁଦ୍ର ଚଣ୍ଡ । 'ଭଗ୍ନହୃଦୟ' ଉତ୍ସର୍ଗ କରିଥିଲେ କାଦମ୍ବରୀ ଦେବୀଙ୍କୁ ତାଂକର ଶ୍ରଦ୍ଧା ନାମରେ— ଅର୍ଥାତ୍ ସେ ଯେଉଁ ନାମରେ ଅନ୍ତରଙ୍ଗ-ମାନଙ୍କ ମଧ୍ୟରେ ପରିଚିତ ଥିଲେ, ତାହାର ଆଦ୍ୟ ଅକ୍ଷର ଉତ୍ସର୍ଗ ପତ୍ରରେ ଲେଖା ହୋଇଥିଲା । ଦ୍ୱିତୀୟ ବହି 'ରୁଦ୍ରଚଣ୍ଡ' ଜ୍ୟୋତିରୀନ୍ଦ୍ରନାଥଙ୍କ ନାମରେ ଉତ୍ସର୍ଗ ହୋଇଥିଲା—ଉତ୍ସର୍ଗ କବିତାରେ ବିଲାତଯାତ୍ରୀର ଭାବୀ ବିଚ୍ଛେଦ ବେଦନା ପ୍ରକଟିତ । ପୂର୍ବରୁ କୁହାଯାଇଛି ଯେ, ଆମର ଧାରଣା ଏହା ଏଗାରବର୍ଷ ବୟସରେ ଲିଖିତ ନାଟ୍ୟ କାବ୍ୟ 'ପୃଥ୍ୱୀରାଜ ପରାଜୟର' ସଂସ୍କରଣ ମାତ୍ର— ଅତ୍ୟନ୍ତ ଅପରିପକ୍ୱ ଲେଖା ।

'ଭଗ୍ନହୃଦୟ' ଗୀତିକାବ୍ୟ (୩୪ସର୍ଗ) ନାଟକ ଆକାରରେ ଲିଖିତ । ସମାଲୋଚକ କହନ୍ତି, ଏହି ଶିଥିଳବନ୍ଧ କାବ୍ୟରେ ଘଟଣାର ତ୍ରୁଟିକୁ ଭାବନା ସାହାଯ୍ୟରେ ପୂରଣ କରିବାର ଚେଷ୍ଟା କବିକାହାଣୀ ଓ ବନଫୁଲ ଅପେକ୍ଷା ଅନେକ ବେଶୀ ।

'ଭଗ୍ନହୃଦୟ' କାବ୍ୟ ଆଜି ଆମେ ପଢ଼ୁନାହୁଁ । କାରଣ ପରେ ରବୀନ୍ଦ୍ରନାଥଙ୍କ ଲେଖନୀରୁ ଅନେକ ଅବିସ୍ମରଣୀୟ କାବ୍ୟ ଆମେ ପାଇଛୁ । ଅଥଚ ସେ ସମୟରେ ଏହି କାବ୍ୟ ଏତେ ଚମତ୍କାର ଥିଲା ଯେ କାବ୍ୟୋତ୍ସାହୀ ଅନେକ ଯୁବକ ଏହାର ବହୁଅଂଶ ମୁଖସ୍ଥ କରିଥିଲେ । ଏହି କାବ୍ୟ ପ୍ରକାଶିତ ହେବାବେଳେ କବି ବହୁଲୋକଙ୍କ ନିକଟରୁ ଅଯାଚିତ ସମ୍ମାନ ଓ ସମାଦର ପାଇଥିଲେ । ଦିନେ ସୁଦୂର ତ୍ରିପୁରାର ରାଜଧାନୀ ଅଗରତାଲାରୁ ମହାରାଜ ବୀରଚନ୍ଦ୍ର ମାଣିକ୍ୟ ବାହାଦୁରଙ୍କର ମୁନ୍‌ସୀ ରାଧାରମଣ ଘୋଷ ଆସି ତରୁଣ କବିଙ୍କୁ ଦେଖାକରି କହିଥିଲେ ଯେ, ମହାରାଜ 'ଭଗ୍ନହୃଦୟ' ପଢ଼ି ପ୍ରୀତ ହୋଇଛନ୍ତି ଓ ରାଜାଙ୍କର ନିର୍ଦ୍ଦେଶରେ ଏହି ଖବର ଜଣାଇବାକୁ ସେ ଯୋଡ଼ାସାଁକୋ ଆସିଛନ୍ତି । ତରୁଣ କବିଙ୍କ ପକ୍ଷରେ ଏହାଠାରୁ ବଳି ଆଶାତୀତ ପୁରସ୍କାର କ'ଣ

ହୋଇପାରେ ? ସେ ପର୍ଯ୍ୟନ୍ତ ତ୍ରିପୁରା ରାଜାଙ୍କ ସହିତ କବିଙ୍କର ପରିଚୟ ନଥିଲା—ଘନିଷ୍ଠତା ହୁଏ ଖୁବ୍ ପରେ । କବିଙ୍କର ଶେଷ ଜୀବନରେ ତ୍ରିପୁରା ଦରବାରରୁ ସେ ଶେଷ ସମ୍ମାନ 'ଭାରତଭାସ୍କର' ଉପାଧି ପାଇଥିଲେ ।

(୧୦)

ତରୁଣ କବିଙ୍କର ଉଦ୍ଦେଶ୍ୟହୀନ ଜୀବନ ଯାହା ଆଗେଇ ଚାଲିଲା । ଯୋଡାସାଁକୋର ପୂର୍ବ ଭାବ ଶିଥିଳ । ଦ୍ୱିଜେନ୍ଦ୍ରନାଥ ତାଙ୍କର କାବ୍ୟ-ଦର୍ଶନ ଗଣନାରେ ମଗ୍ନ—ପିଲାମାନଙ୍କର ଶିକ୍ଷାଦୀକ୍ଷାରେ ଉଦାସୀନ । ସତ୍ୟେନ୍ଦ୍ରନାଥ କର୍ମ ବହୁଳ ଜୀବନ ନେଇ ବମ୍ବେ ପ୍ରଦେଶରେ ପ୍ରବାସୀ । ହେମେନ୍ଦ୍ରନାଥ ଘରେ ଥାଆନ୍ତି; କିନ୍ତୁ ସେ ଓ ତାଙ୍କର ସ୍ତ୍ରୀ ବହୁ ସନ୍ତାନ ସନ୍ତତି ଜଞ୍ଜାଳରେ ବ୍ୟସ୍ତ । ଜ୍ୟୋତିରୀନ୍ଦ୍ରନାଥ ଓ କାଦମ୍ବରୀ ଦେବୀ ନିଃସନ୍ତାନ; ତେଣୁ ତାଙ୍କରି ନିକଟରେ ରବୀନ୍ଦ୍ର ଯାହାକିଛି ଆଦର ପାଆନ୍ତି । ତରୁଣ କବିଙ୍କର ସାଧନା ଓ କଳ୍ପନାରେ ସେମାନେହିଁ ଥିଲେ ଅନୁକୂଳ ସୁହୃଦ୍ ଓ ସଙ୍ଗୀ । ସ୍ୱାମୀ ସ୍ତ୍ରୀ ଭ୍ରମଣରେ ବାହାରିଗଲେ, ରବୀନ୍ଦ୍ରନାଥ ଏକା ରହୁଥିଲେ । ଏହି ନିଃସଙ୍ଗ ଜୀବନରେ କାବ୍ୟଧାରା ଏକ ନୂତନ ବାଟରେ ପ୍ଲାବିତ ହେଲା । ଏପର୍ଯ୍ୟନ୍ତ ଯେଉଁ ଅଭ୍ୟାସ ସଂସ୍କାର-ବେଷ୍ଟିତ ଥିଲା ହଠାତ୍ ସେଥିରୁ ମୁକ୍ତ ହୋଇ ନୂତନ ଛନ୍ଦ ଓ ନୂତନରୂପରେ କାବ୍ୟ ସୁନ୍ଦରୀ ଉଭା ହେଲେ—ସେହି କାବ୍ୟଗ୍ରନ୍ଥ 'ସନ୍ଧ୍ୟାସଂଗୀତ' । ମୋହିତଚନ୍ଦ୍ର ସେନଙ୍କ ସମ୍ପାଦିତ କାବ୍ୟ ଗ୍ରନ୍ଥରେ ଏହି ସମୟର କବିତା ଗୁଡ଼ିକୁ 'ହୃଦୟ ଅରଣ୍ୟ' ନାମରେ ଅଭିହିତ କରାଯାଇଛି ।

ଏ ପର୍ଯ୍ୟନ୍ତ କବି ମନର ଆନନ୍ଦ ବେଦନା 'ବନଫୁଲ', 'କବି କାହାଣୀ' ଓ 'ଭଗ୍ନହୃଦୟ'ର ନାୟକ ନାୟିକାଙ୍କର ମୁଖରେ ପ୍ରକାଶିତ ହେଉଥିଲା । କିନ୍ତୁ ଏଣିକି ନିଜ ଭାଷାରେ ନିଜ ମୁଖରେ

ପ୍ରକାଶିତ ହେଲ 'ସନ୍ଧ୍ୟାସଂଗୀତ' । ଏହି ଆତ୍ମଚେତନା ଫଳରେ ଛନ୍ଦ ହେଲ ସାବଲୀଳ, ବର୍ଣ୍ଣନା ହେଲ ବୈଶିଷ୍ଟ୍ୟମୟ—ମୁହୂର୍ତ୍ତଙ୍କ ମଧ୍ୟରେ କବି ଯେପରି ନିଜକୁ ଖୋଜି ପାଇଲେ । ଏହି କାବ୍ୟର ଅଧିକାଂଶ ଲେଖା କୋଡ଼ିଏ ବର୍ଷ ବୟସର—ସାହିତ୍ୟ ବିଚାର ଦୃଷ୍ଟିରୁ ଅପରିପକ୍ୱ । ରବୀନ୍ଦ୍ରନାଥଙ୍କର ମୁଦ୍ରିତ କାବ୍ୟଗ୍ରନ୍ଥାବଳୀରେ ସନ୍ଧ୍ୟା ସଂଗୀତ ପୂର୍ବରୁ ଲିଖିତ 'ଭାନୁସିଂହ ଠାକୁରଙ୍କ ପଦାବଳୀ' ବ୍ୟତୀତ ଅନ୍ୟ ସମସ୍ତ ରଚନା ସ୍ଥାନ ପାଇନାହିଁ । ଶେଷଜୀବନରେ ସନ୍ଧ୍ୟା ସଂଗୀତକୁ ମଧ୍ୟ ଏଥିରୁ ବାଦ୍ ଦେବାକୁ ଚାହିଁଥିଲେ । କିନ୍ତୁ ଲୋକଙ୍କର ପ୍ରତିବାଦ ଫଳରେ ତାହା କରି ପାରିଲେ ନାହିଁ ।

## (୧୧)

ମସୌରିରୁ ଫେରି ରବୀନ୍ଦ୍ରନାଥ ଜ୍ୟୋତିରୀନ୍ଦ୍ରଙ୍କ ପରିବାର ସହିତ ଚନ୍ଦନନଗରରେ ଗଙ୍ଗାକୂଳରେ ବାସକଲେ । କବି ଲେଖିଥିଲେ, 'ସେହି ସମୟରେ ମୁଁ ପ୍ରଥମ ଥର ପାଇଁ ଅନୁଭବ କଲି ଯେ ବଙ୍ଗଳାର ନଦୀ ହିଁ ବଙ୍ଗ ଦେଶର ପ୍ରାଣ ବହନ କରେ ।' ମଧ୍ୟ ଜୀବନରେ ପଦ୍ମା ଓ ପଦ୍ମାର ଶାଖାନଦୀ ତାଙ୍କର ସାହିତ୍ୟ ସୃଷ୍ଟିରେ ଯେଉଁ ପ୍ରେରଣା ଦେଇଥିଲ । ତାହା ପରେ ଦେଖିବାକୁ ମିଳିବ ।

ଚନ୍ଦନଗରରେ ଅବସ୍ଥାନ କାଳରେ ରବୀନ୍ଦ୍ରନାଥ ଅନେକ ଗଦ୍ୟ ରଚନା ଲେଖିଥିଲେ—'ବିବିଧ ପ୍ରସଙ୍ଗ' ନାମରେ ସେଗୁଡ଼ିକ ମୁଦ୍ରିତ ହୋଇଛି । ରଚନା ଗୁଡ଼ିକରେ କୌଣସି ଧରାବନ୍ଧା ପଦ୍ଧତି ନାହିଁ ; ସନ୍ଧ୍ୟା ସଂଗୀତପରି ଯେ କୌଣସି ବିଷୟକୁ ନେଇ ଲିଖିତ । ଜୀବନ ଏକ ଖିଆଲରେ ଚାଲୁଥାଏ—ତେଣୁ ଦାୟିତ୍ୱହୀନ ଭାବନା ଓ କଳ୍ପନାରେ କୌଣସି ପ୍ରତିବନ୍ଧକ ନଥିଲ ।

ସଂପୂର୍ଣ୍ଣ ନୂତନ ଜିନିଷ ମଧ୍ୟ ଲେଖିଥିଲେ ତାହା ହେଉଛି 'ବୌଠାକୁରାଣୀର ହାଟ' ଉପନ୍ୟାସ (୧୮୮୨-୮୩) । ଏହା

କୋଡ଼ିଏ ବର୍ଷ ବୟସରେ ଲେଖା ହୋଇଥିଲା। ବଙ୍ଗଳା ଭାଷାରେ ଉପନ୍ୟାସ ଲେଖାର ଇତିହାସ ବେଶୀ ଦିନର ନୁହେଁ— ବଙ୍କିମଚନ୍ଦ୍ରଙ୍କର ପ୍ରଥମ ଉପନ୍ୟାସ ଲେଖା ହୁଏ ପ୍ରାୟ ପନ୍ଦରବର୍ଷ ପୂର୍ବେ ।

'ବୌଠାକୁରାଣୀର ହାଟ'ର ଗଳ୍ପାଂଶ ପ୍ରତାପାଦିତ୍ୟଙ୍କର ଜୀବନୀରୁ ଗୃହୀତ । ପ୍ରତାପଚନ୍ଦ୍ର ଘୋଷଙ୍କର 'ବଙ୍ଗାଧିପ ପରାଜୟ' (୧୮୬୯) ନାମକ ସୁବୃହତ୍ ଗ୍ରନ୍ଥର ଉପାଦାନକୁ ସାମାନ୍ୟ ପରିବର୍ତ୍ତିତ କରି ଏହି ଉପନ୍ୟାସ ଲେଖିଥିଲେ । କବି ଏହି ଗ୍ରନ୍ଥ ଛଡ଼ା ପ୍ରତାପାଦିତ୍ୟଙ୍କ ସମ୍ପର୍କରେ ନାନା କିମ୍ବଦନ୍ତୀ ମଧ୍ୟ ସଂଗ୍ରହ କରିଥିଲେ ।

କବି ଏହି ଉପନ୍ୟାସ ସମ୍ପର୍କରେ ଲେଖିଛନ୍ତି, 'ପ୍ରାଚୀରଘେରା ମନ ଖୋଲିଦେବାଆକୁ ବାହାରି ପଡ଼ିଲା, ସେତେବେଳକୁ ସଂସାରର ବିଚିତ୍ର ପଥରେ ଯାତାୟତ ଆରମ୍ଭ ହୋଇଛି । ଏହି ସମୟରେ ତାଙ୍କର ଲେଖନୀ ଗଦ୍ୟ ରାଜ୍ୟରେ ନୂତନ ନୂତନ ଛବି, ନୂତନ ନୂତନ ଅଭିଜ୍ଞତାର ସନ୍ଧାନୀ ହେଲା । ତାହାର ପ୍ରଥମ ପ୍ରକାଶ ଦେଖାଦେଲା 'ବୌଠାକୁରାଣୀର ହାଟ' ଗଳ୍ପରେ । ଚରିତ୍ରଗୁଡ଼ିକ ମଧ୍ୟରେ ଯେଉଁ ଜୀବନ ଲକ୍ଷଣ ପ୍ରକାଶ ପାଇଛି ତାହା ନିର୍ଜୀବ ପୁତ୍ତଳିକାଠାରୁ ଉଚ୍ଚକୋଟୀର ନୁହେଁ । ଏମାନେ ସ୍ୱଚ୍ଛନ୍ଦ ଗତିରେ ପରିଚାଳିତ ନୁହନ୍ତି – ଏକ ଧରାବନ୍ଧା ସାଙ୍କସଙ୍କା ମଧ୍ୟ ଦେଇ ଚରିତ୍ରର ଗତି ସୃଷ୍ଟି । ସେ ଯାହାହେଉ, ଗଳ୍ପ ପ୍ରକାଶିତ ହେବା ସଙ୍ଗେ ସଙ୍ଗେ ବଙ୍କିମଚନ୍ଦ୍ର ପ୍ରଶଂସା କରି ପତ୍ର ଲେଖିଥିଲେ । ଏହା ପୂର୍ବରୁ 'ସନ୍ଧ୍ୟା ସଂଗୀତ' ବାହାରିବା ବେଳେ ମଧ୍ୟ ସେ ତରୁଣ କବିଙ୍କୁ ସମ୍ମାନିତ କରିଥିଲେ ।

ଏହି ଉପନ୍ୟାସ ରଚନାର ପ୍ରାୟ ଛବିଶ ବର୍ଷ ପରେ କବି ଏହାର ଗଳ୍ପାଂଶକୁ ନେଇ 'ପ୍ରାୟଶ୍ଚିତ' ନାଟକ ଲେଖିଲେ (୧୯୦୯) ଓ ତାହାର କୋଡ଼ିଏ ବର୍ଷ ପରେ 'ପରିତ୍ରାଣ' (୧୯୨୯), ମଝିରେ 'ମୁକ୍ତଧାରା' (୧୯୨୨) ଲେଖିଲେ—ପ୍ରାୟଶ୍ଚିତ ନାଟକର ଧନଞ୍ଜୟ ବୈରାଗୀ ଓ ତାହାର ଦଳବଳ ଏହି ନାଟକମାନଙ୍କରେ

ମଧ୍ୟ ଅଛନ୍ତି । ଘଟଣାର ସାମ୍ୟ ଅଛି ଓ ସ୍ୱରୂପରେ ମଧ୍ୟ ପାର୍ଥକ୍ୟ ନାହିଁ ।

'ଭାରତୀ'ରେ 'ଚୌଠାକୁରାଣୀର ହାଟ' ପ୍ରକାଶ ସଙ୍ଗେ ସଙ୍ଗେ ବିବିଧ ବିଷୟରେ ପ୍ରବନ୍ଧ ଓ 'ସମାଲୋଚନା ମଧ୍ୟ ପ୍ରକାଶିତ ହେଉଥିଲା । 'ମେଘନାଦବଧ'ରୁ ଏ ପର୍ଯ୍ୟନ୍ତ ମନର ଓରମାନା ମେଣ୍ଟିନି । ସେଥିପାଇଁ ଗୋଟିଏ ପ୍ରବନ୍ଧରେ ଲେଖିଥିଲେ— 'ମେଘନାଦ ବଧ କାବ୍ୟରେ ମହାକାବ୍ୟ ପରି କୌଣସି ମହାନ୍ ବ୍ୟକ୍ତିଙ୍କୁ କେନ୍ଦ୍ର କରି ମହାନ୍ ଭାବ ବା ଆଦର୍ଶ ଗଢ଼ି ଉଠିନି । ନିରସ୍ତ୍ର ଇନ୍ଦ୍ରଜିତକୁ ଚୋରର ପରି ଲଙ୍କାରେ ପ୍ରବେଶ କରାଇ ହତ୍ୟା କରିବାକୁ ମହାନ୍ ଘଟଣା ବୋଲି କୁହାଯାଇ ପାରିବନି । ମେଘନାଦ ବଧର ନରକ ବର୍ଣ୍ଣନା ପାଶ୍ଚାତ୍ୟ କାବ୍ୟର ଅନୁକରଣ ମାତ୍ର — କାବ୍ୟର ଅନ୍ତର୍ଗତ ବିଷୟ ନୁହେଁ, ସଂପୂର୍ଣ୍ଣ ଅବାନ୍ତର ।' ସମାଲୋଚନାରେ ସ୍ପଷ୍ଟ ବିରୋଧିତା ଥିଲେ ବି ଚିନ୍ତା କରିବାର ଅନେକ କିଛି ଅଛି ।

ଏହି ସମୟରେ 'ବାଉଲ ସଙ୍ଗୀତ' ନାମକ ଏକ ପୁସ୍ତକର ସମାଲୋଚନା ପ୍ରସଙ୍ଗରେ ଦେଶବାସୀଙ୍କର ଦୃଷ୍ଟି ଆକର୍ଷଣ କରି କହିଥିଲେ ଯେ ସମସ୍ତେ ଯଦି ଏହି ଶ୍ରେଣୀର ସଂଗ୍ରହ କାର୍ଯ୍ୟରେ ମନ ଦିଅନ୍ତି ତେବେ ବଂଗଳାଭାଷା ଓ ସାହିତ୍ୟର ପ୍ରଚୁର ଉପକାର ହେବ । ତାହେଲେ, 'ଆମେ ଆମର ଦେଶର ଲୋକଙ୍କୁ ଭଲଭାବରେ ଚିହ୍ନି ପାରିବା । ସେମାନଙ୍କର ସୁଖ ଦୁଃଖ ଆଶା ଭରସା ଆମ ନିକଟରେ ଅପରିଚିତ ରହିବ ନାହିଁ ।' ୧୩୦୨ (ବଙ୍ଗାବ୍ଦ) ସାଲରେ ବଙ୍ଗୀୟ ସାହିତ୍ୟ ପରିଷଦ ସ୍ଥାପିତ ହେବା ପରେ କବି ଆଉଥରେ ଦେଶବାସୀଙ୍କୁ ଏ ଦିଗରେ ଦୃଷ୍ଟିଦେବାକୁ କହିଥିଲେ ଓ ସଙ୍ଗେ ସଙ୍ଗେ ନିଜେ ମଧ୍ୟ ସଂଗ୍ରହ କାର୍ଯ୍ୟରେ ପ୍ରବୃତ୍ତ ହୋଇଥିଲେ । ସେହି ଦିନରୁ ବଙ୍ଗଳାରେ ଲୋକ ସଙ୍ଗୀତ ଓ 'ଛଡ଼ା' ସଂଗ୍ରହ, ସମ୍ପାଦନା ଓ ପ୍ରକାଶନ ପ୍ରବୃତ୍ତି ଦେଖି ଦେଇଛି । ଏହାର ସୂତ୍ରପାତ 'ଭାରତୀ' ଯୁଗରେ ।

ଭାରତୀ ପ୍ରକାଶିତ ହେବାର ପ୍ରାୟ ପାଞ୍ଚବର୍ଷ ହେଲା । କିନ୍ତୁ ଏହି ଶ୍ରେଣୀର ପତ୍ରିକା ପରିଚାଳନାରେ ସମସ୍ତେ ଅନୁଭବ କଲେ

ଯେ, ଗୋଟିଏ ସାହିତ୍ୟ ସଂସଦ ପଛରେ ନଥିଲେ ନିୟମିତ ଲେଖା ସରବରାହ ସମ୍ପର୍କରେ ନିଶ୍ଚିନ୍ତ ରହି ହେବନାହିଁ । ସମସ୍ତେ ଅନୁଭବ କଲେ ଯେ, ବିଜ୍ଞାନ ବିଷୟକ ପ୍ରବନ୍ଧ ପ୍ରକାଶ ବିଶେଷ ପ୍ରୟୋଜନ, ଅଥଚ ଲେଖିବାକୁ ଗଲେ ପରିଭାଷା ମିଳୁନି । ସେଥିପାଇଁ ସ୍ଥିରହେଲା ଯେ, ଏକାଡେମୀ ଜାତୀୟ ଏକ ପ୍ରତିଷ୍ଠାନ (କଲିକତା ସାରସ୍ୱତ ସମ୍ମିଳନ) ସ୍ଥାପନ କରିବାକୁ ହେବ । ଯୋଡ଼ାସାଁକୋ ଘରେ ସଭା ବସିଲା, କଲିକତାର ବିଶିଷ୍ଟ ଶିକ୍ଷିତ ଲୋକ ଆସିଲେ, ସମ୍ବିଧାନ ରଚିତ ହେଲା, ସଭାପତି ସମ୍ପାଦକ ପ୍ରଭୃତି ନିର୍ବାଚିତ ହେଲେ । ବିଦ୍ୟାସାଗର ମହାଶୟଙ୍କ ନିକଟକୁ ଯିବାରୁ ସେ କହିଲେ; 'ରାମାଶ୍ୟାମାଙ୍କ ପାଖକୁ ଯାଅନାହିଁ—କାର୍ଯ୍ୟ ପଣ୍ଡ ହେବ ।'

ସଭାପତି ହେଲେ ବଙ୍ଗଳାର ଜ୍ଞାନବିଜ୍ଞାନର ସବ୍ୟସାଚୀ ରାଜେନ୍ଦ୍ରଲାଲ ମିତ୍ର, ସମ୍ପାଦକ କୃଷ୍ଣବିହାରୀ ସେନ (କେଶବଚନ୍ଦ୍ର ସେନଙ୍କର ଭାଇ) ଓ ରବୀନ୍ଦ୍ରନାଥ ।

କାର୍ଯ୍ୟ ଆରମ୍ଭରେ ଅନୁଭବ କଲେ ଯେ, ବିଦ୍ୟାସାଗରଙ୍କର କଥା ଠିକ୍ । ଦ୍ୱାର ଦ୍ୱାର ବୁଲି ରବୀନ୍ଦ୍ରନାଥଙ୍କର ଅଭିଜ୍ଞତା ହେଲା; ସେ କହିଲେ, 'ଯେଉଁ ବିଜ୍ଞ ଲୋକ ସଦନୁଷ୍ଠାନକୁ ଉପହାସ କରେ, ତାହା ଅପେକ୍ଷା ଯେଉଁ ସରଳ ଲୋକ ସଦନୁଷ୍ଠାନ ଗଠନ କରିବାର ଚେଷ୍ଟା କରି ଅକୃତକାର୍ଯ୍ୟ ହୋଇଛି ସେ ମହତ୍ ।' ଏହି ସମାଜ ଅଙ୍କୁରୋଦ୍‌ଗମରୁ ହିଁ ବିଲୟ ଭଜିଲା । କିନ୍ତୁ କିଛିଦିନ ପରେ ବଙ୍ଗୀୟ ସାହିତ୍ୟ ପରିଷଦ ପ୍ରତିଷ୍ଠିତ ହେବା ପରେ ପରିଭାଷା ପ୍ରଣୟନରେ ରବୀନ୍ଦ୍ରନାଥ ବିଶେଷ ଉଦ୍‌ଯୋଗୀ ହୋଇଥିଲେ ।

(୧୨)

'ବୌଠାକୁରାଣୀର ହାଟ'ର ରଚନା ଆରମ୍ଭ ହୋଇଥିଲା ଚନ୍ଦନ ନଗରରେ, କିନ୍ତୁ ଶେଷହେଲା କଲିକତାର ସଦର ଷ୍ଟ୍ରିଟର ଭଡ଼ାଘରେ । ସେଠାରେ ଦିନେ ସକାଳେ ଏକ ଅଭୂତପୂର୍ବ ଆନନ୍ଦ

ଅନୁଭବ କଲେ । ସେକଥା ରବୀନ୍ଦ୍ରନାଥ ବିଶଦ ଭାବରେ ତାଙ୍କର ଜୀବନ ସ୍ମୃତିରେ ଲେଖିଛନ୍ତି – 'ମୋର ହୃଦୟର ସ୍ତରେ ସ୍ତରେ ଯେଉଁ ବିଷାଦ ଆଚ୍ଛାଦିତ ଥିଲା, ନିମିଷକ ମଧ୍ୟରେ ସେ ସ୍ଥାନରେ ବିଶ୍ୱଆଲୋକ ବିଚ୍ଛୁରିତ ହୋଇପଡ଼ିଲା ।' ସେହିଦିନ କବି ଲେଖିଥିଲେ 'ନିର୍ଝରେର ସ୍ୱପ୍ନଭଙ୍ଗ' —ନିର୍ଝରର ପରି ସତେ ଯେପରି ସ୍ୱତଃ ପ୍ରବାହିତ ହେଲା । ଏହାପରେ ଲେଖିଲେ 'ପ୍ରଭାତ ଉତ୍ସବ'— ତାହା ମଧ୍ୟ ଅନୁରୂପ ଭାବର ଆବେଶ ଓ ଅନୁଧ୍ୟାନରେ ଲେଖା ।

କିଛିଦିନ ପରେ ଏକ ପତ୍ରରେ ଲେଖିଥିଲେ, 'ପ୍ରଭାତ ସଂଗୀତ' (କାବ୍ୟଖଣ୍ଡ) ମୋର ଅନ୍ତଃ ପ୍ରକୃତିର ବହିର୍ମୁଖୀ ପ୍ରକାଶ, ସେଥିପାଇଁ ଏଥିରେ କୌଣସି ବାଛବିଚାରର ବାଧାବନ୍ଧନ ନାହିଁ । ବର୍ତ୍ତମାନ ମୁଁ ସମସ୍ତ ପୃଥିବୀକୁ ଏକପ୍ରକାର ଭଲପାଏ – କିନ୍ତୁ ସେପରି ଉଦ୍ଦାମ ଭାବରେ ନୁହେଁ ।' ପରେ ଏହି କବିତା ଗୁଚ୍ଛର ନାମକରଣ କରିଥିଲେ—'ନିଷ୍କ୍ରମଣ' । ସତେ ଯେପରି ମୁକ୍ତିପାଇଲେ —ନିଜଠାରୁ ନିଜର ମୁକ୍ତି ।

ଶରତ କାଳରେ (ବଙ୍ଗାବ୍ଦ ୧୨୮୯) ଜ୍ୟୋତିରିନ୍ଦ୍ରନାଥଙ୍କ ସଙ୍ଗରେ ଦାର୍ଜିଲିଂ ଗଲେ । ସଦର ଷ୍ଟ୍ରିଟରେ ଯେଉଁ ଅନୁଭୂତି ହୋଇଥିଲା; ଆଶା କରିଥିଲେ, ମହାନ୍ ହିମାଳୟର ଆଶ୍ଚର୍ଯ୍ୟ ଶୋଭା ମଧ୍ୟରେ ତାହା ବହୁଗୁଣିତ ହେବ । କିନ୍ତୁ ସେ ଧ୍ୱନି କାନରେ ବା ପ୍ରାଣରେ ଶୁଣିବାକୁ ପାଇଲେ ନାହିଁ । ଶୁଣିଲେ ଓ ଲେଖିଲେ 'ପ୍ରତିଧ୍ୱନି' ।

ଏଥର ଫେରି କଲିକତାର ଲୋଅର ସରକୁଲାର ରୋଡ଼ର ଏକ ବସାରେ ରହିଲେ । 'ବିଦ୍ୱଜନ ସମାଗମ'ର ବାର୍ଷିକ ଉତ୍ସବ ଏପର୍ଯ୍ୟନ୍ତ ଧାରାବାହିକ ଭାବରେ ଚାଲିଥାଏ । ସ୍ଥିରହେଲା ଯେ, ଉତ୍ସବ ଉପଲକ୍ଷେ ଏକ ନାଟକ ଅଭିନୀତ ହେବ । ଦାୟିତ୍ୱଟା ସ୍ୱଭାବତଃ ରବୀନ୍ଦ୍ରନାଥଙ୍କ ଉପରେ ପଡ଼ିଲା—ଲେଖିଲେ 'କାଳ ମୃଗୟା' ନାଟକ । ଯୋଡ଼ାସାଁକୋ ଘରେ ଅଭିନୟ ହେଲା (୧୮୮୨ ଡିସେମ୍ବର ୨୩) । ରବୀନ୍ଦ୍ରନାଥ ଅନ୍ଧମୁନି ଓ ଜ୍ୟୋତିରିନ୍ଦ୍ରନାଥ ଦଶରଥ ହେଲେ । ଏହି ନାଟକରେ ଥିବା ସଂଗୀତ ଗୁଡ଼ିକ ବିଲାତି ଢାଞ୍ଚାରେ ଲେଖା ହୋଇଥିଲା । 'କାଳ ମୃଗୟା' ଦୀର୍ଘକାଳ ଧରି

ମୁଦ୍ରିତ ହୋଇନାହିଁ । 'କାଳ ମୃଗୟା'ର ଅନେକଗୁଡ଼ିଏ ଦୃଶ୍ୟ ଓ ସଂଗୀତ 'ବାଲ୍ମୀକି ପ୍ରତିଭା'ର ନୂତନ ସଂସ୍କରଣରେ ଅନ୍ତର୍ଭୁକ୍ତ ହୋଇଥିଲା । ଆଜିକାଲି 'କାଳ ମୃଗୟା' ତୃତୀୟ ଖଣ୍ଡ 'ଗୀତ ବିତାନ'ରେ ଓ 'ସ୍ୱରବିତାନ'ର ଅଣତିରିଶ ଖଣ୍ଡରେ ଛପା ହୋଇ ଶିଶୁମହଲରେ ଅଭିନୀତ ଓ ଆଦୃତ ହେଉଛି ।

(୧୩)

ରବୀନ୍ଦ୍ରନାଥଙ୍କର ବୟସ ବାଇଶ ବର୍ଷ । ଏପର୍ଯ୍ୟନ୍ତ ସଂସାରରେ ପ୍ରବେଶ କରିନାହାନ୍ତି, ସେଥିପାଇଁ ବଡ଼ଭାଇମାନଙ୍କର ସଂସାରରେ ଆଶ୍ରିତ । ଜ୍ୟୋତିରୀନ୍ଦ୍ରନାଥ ଓ କାଦମ୍ବରୀ ଦେବୀଙ୍କ ସହିତ ବମ୍ବେ ପ୍ରଦେଶ ଅନ୍ତର୍ଗତ କାରୋୟାର ଗଲେ । ସତ୍ୟେନ୍ଦ୍ରନାଥ ବଦଳି ହୋଇ ଆସି ସେଠାରେ ଥାଆନ୍ତି ।

କାରୋୟାର କର୍ଣ୍ଣାଟକର ପ୍ରଧାନ ନଗରୀ, ସମୁଦ୍ର କୂଳରେ ଅବସ୍ଥିତ, ଅତି ମନୋରମ ସ୍ଥାନ । କାରୋୟାର-ବାସ ସମୟ କବି ଜୀବନରେ ବ୍ୟର୍ଥ ହୋଇନି; ଏକଦିଗରେ କବିତା, ସଂଗୀତ ଓ ନାଟକ; ଅନ୍ୟଦିଗରେ ଗଦ୍ୟ ପ୍ରବନ୍ଧ ଲେଖା ଚାଲିଥାଏ । ଗଦ୍ୟ-ରଚନା ମଧ୍ୟରେ ତୀବ୍ର ବ୍ୟଙ୍ଗ ଓ ଶ୍ଳେଷ ।

କାରୋୟାରରେ ଅବସ୍ଥାନ କାଳର ଶ୍ରେଷ୍ଠ ରଚନା ହେଲା 'ପ୍ରକୃତିର ପ୍ରତିଶୋଧ' । ଏହା ହେଉଛି ତାଙ୍କର ପ୍ରଥମ ନାଟକ; କିନ୍ତୁ ସଂଗୀତ ମୁଖରିତ ନୁହେଁ—ବରଂ ଏହିରେ କାବ୍ୟ ଓ ନାଟକର ଭାବ-ଧାରା ମିଶ୍ରିତ । ସନ୍ନ୍ୟାସୀର ଅନ୍ତର କଥା ପ୍ରକାଶିତ ହୋଇଛି କବିତାରେ । ସେ ତା'ର ନିଜର କଥା । ଏହି ଆତ୍ମକେନ୍ଦ୍ରିକ ବୈରାଗୀକୁ ନେଇ ପ୍ରତ୍ୟହ ସଂସାର, ନାନା ରୂପେ ନାନା କୋଳାହଳରେ ମୁଖରିତ ହୋଇଛି । ଏହି କଳରବର ବିଶେଷତ୍ୱହିଁ ତା'ର ଅକାଙ୍କ୍ଷିତକରିତା । ଏହି ବିପରୀତ ଭାବକୁ ନାଟକୀୟ କୁହାଯାଇ ପାରେ । ଏହାରି ମଝିରେ ସଂଗୀତ ଓ ରସ ଅନିର୍ବଚନୀୟତାର ଆଭାସ ଦେଇଛି ।

ଏହି ସମୟରେ 'ଆଲୋଚନା' ନାମରେ ବେଙ୍ଗ ଗ୍ଲୋଟ ଗ୍ଲୋଟ ଗଦ୍ୟ ପ୍ରବନ୍ଧ ପ୍ରକାଶିତ ହେଉଥିଲ, ତାହା ମୂଳରେ 'ପ୍ରକୃତିର ପ୍ରତିଶୋଧ'ର ଅନ୍ତର୍ଗବର ତତ୍ତ୍ୱ ବ୍ୟାଖ୍ୟା କରିବାର ଚେଷ୍ଟା ଦେଖାଯାଏ । 'ସୀମା ଯେ ସୀମାବଦ୍ଧ ନୁହେଁ, ତାହା ଯେ ଅତଳସ୍ପର୍ଶୀ ଗଭୀରତାକୁ, ଏକ ଜଳକଣା ମଧ୍ୟରେ ମହତ ସହ 'ଦେଖାଇଦେଇଛି ଏହି ବିଷୟରେ ଆଲୋଚନା ହୋଇଛି ।·· ଆଜି ସ୍ପଷ୍ଟ ଦେଖାଯାଉଛି ଯେ ଏହି ଗୋଟିଏ ମାତ୍ର idea ଅଲକ୍ଷ୍ୟ ଭାବରେ ନାନା ବେଶରେ ଆଜିପର୍ଯ୍ୟନ୍ତ (୨୨ବର୍ଷ ବୟସ ପର୍ଯ୍ୟନ୍ତ) ମୋର ସମସ୍ତ ରଚନାକୁ ଅଧିକାର କରିଛି ।' ଏହି 'ଆଇଡ଼ିଆ'ର ଦୁଇଟି ରୂପ—ଗୋଟିଏ ଅନ୍ତର୍ବିଷୟୀ ସାଧନାର ଅଙ୍ଗ, ଯାହାର ମନ୍ତ୍ର ହେଉଛି 'ସୀମାର ମାଝେ ଅସୀମ ତୁମି ବାଜାଅ ଆପଣା ସୁର୍'; ଅନ୍ୟଟି ବହିର୍ବିଷୟୀ କର୍ମସାଧନାର ଅଙ୍ଗ, ସେଠାରେ ମୂଳମନ୍ତ୍ର ହେଉଛି 'ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନହେ ।' 'ପ୍ରକୃତିର ପ୍ରତିଶୋଧ'ରେ ଏହି ଦୁଇଟି ଭାବଧାରା ସର୍ବପ୍ରଥମେ ସ୍ପଷ୍ଟ ହୋଇଛି ।

(୧୪)

କାରୋୟାରରୁ ଫେରି କବି ଜ୍ୟୋତିରିନ୍ଦ୍ରନାଥଙ୍କର ଚୌରଙ୍ଗୀ ନିକଟସ୍ଥ ସାରକୁଲାର ରୋଡ଼ଠାରେ ରହିଲେ । ଘରର ଦକ୍ଷିଣ ଦିଗରେ ଏକ ବଡ଼ ବସ୍ତି । ରବୀନ୍ଦ୍ରନାଥଙ୍କ ଘରୁ ସେ ବସ୍ତି ଛବି ପରି ଦେଖାଯାଏ । ସେହି ଦୃଶ୍ୟ ମନମଧ୍ୟରେ ଯେଉଁ ଧ୍ୱନି ସୃଷ୍ଟି କଲା ତାହା ରୂପାୟିତ ହେଲା 'ଛବି ଓ ଗାନ' କାବ୍ୟରେ । 'ଭାରତୀ'ରେ ନାନା ପ୍ରବନ୍ଧ ପ୍ରକାଶିତ ହେଉଥିଲା । ପରେ ଏହି ପ୍ରବନ୍ଧ ସବୁ 'ଆଲୋଚନା' ନାମକ ଗ୍ରନ୍ଥରେ ସଙ୍କଳିତ ହୋଇ ପ୍ରକାଶିତ ହେଲା । 'ଛବି ଓ ଗାନ'ର ସ୍ୱର ଗମ୍ଭୀର; କିନ୍ତୁ ଲେଖା ଗମ୍ଭୀର ନଥିଲା । ଗଦ୍ୟ ପ୍ରବନ୍ଧଗୁଡ଼ିକ ବାହ୍ୟ ଦୃଷ୍ଟିରେ ଖୁବ ହାଲୁକା ପରି ଜଣାଗଲେ ମଧ୍ୟ ତାହା ଭିତରେ ଥିଲା ବହୁ ଦୂରର ତୀବ୍ର

କଷାଘାତ । ଏ ସମସ୍ତ ସମ୍ପର୍କରେ ସମ୍ୟକ୍ ଅବଧାରଣା କରି ପାରିଲେ ତତ୍‌କାଳୀନ ରବୀନ୍ଦ୍ରନାଥଙ୍କର ପରିଚୟ ମିଳିପାରିବ ।

'ଛବି ଓ ଗାନ' କାବ୍ୟରଚନା ସମୟରେ ରବୀନ୍ଦ୍ରନାଥଙ୍କର କେଶ, ବେଶ ପ୍ରସାଧନ ଓ ଦେହସଜ୍ଜାରେ ଏପରି ଭାବାତିଶଯ୍ୟ ପ୍ରକାଶ ପାଉଥିଲା ଯେ; ଲୋକେ ଦେଖିଲେ ଭାବନ୍ତେ ଲୋକଟା କବିଭଳି ପାଗଳାମୀ କରୁଛି । ପ୍ରକୃତ ପକ୍ଷେ ଏହି ସମୟରେ, ଆଖି ସାହାଯ୍ୟରେ ମନର ଜିନିଷ ଓ ମନ ଜରିଆରେ ଆଖିର ଦେଖାକୁ ଦେଖିପାରିବାର ପ୍ରବଳ ଇଚ୍ଛା ଥିଲା । କବି ଦୁଃଖକରି କହିଥିଲେ ଯେ, ତୂଳୀଧରି ଛବି ଆଙ୍କିପାରୁଥିଲେ ରେଖା ଓ ରଙ୍ଗ ଦେଇ ଉତ୍ତଳା ମନର ଦୃଷ୍ଟି ଓ ସୃଷ୍ଟିକୁ ରୂପାୟିତ କରିବାର ଚେଷ୍ଟା କରି ପାରିଥାନ୍ତେ । ତାଙ୍କର ପୁଞ୍ଜି ଥିଲା କଥା ଓ ଛନ୍ଦ । ସେତେବେଳେ କଥାର ତୂଳୀରେ ଭାବର ରେଖା ସ୍ପଷ୍ଟ ନୁହେଁ, କେବଳ ରଙ୍ଗ ବିଚ୍ଛୁରିତ ହୋଇପଡ଼ୁଥାଏ ଗୀତିପାଖରେ ।

ଗଦ୍ୟ ପ୍ରବନ୍ଧଗୁଡ଼ିକର ନାମ ଦେଖି ବୁଝାଯାଏ ଯେ କେଉଁ ଭାବନାରେ ସେଗୁଡ଼ିକ ଲେଖା—ଲେଖାକୁମାରୀ ଓ ଛାପା ସୁନ୍ଦରୀ, ଟାଉନହଲର ତାମସା, ଗୋଁଫ ଓ ଡ଼ମ୍ଭ, ଚେଁଏ ବଲ୍, କନ୍ହା ଆନ୍ଦୋଳନ, ନ୍ୟାସନାଲ ଫଣ୍ଡ, ଅକାଳକୁଷ୍ମାଣ୍ଡ, ହାତେ କଲମ ଇତ୍ୟାଦି । ଏହିସବୁ ପ୍ରବନ୍ଧରେ ଭାଷା ତୀକ୍ଷ୍ଣ—ପ୍ରାୟ ବ୍ୟଙ୍ଗ ଓ ଶ୍ଳେଷାତ୍ମକ । ତନ୍ମଧ୍ୟରୁ ଗୋଟିଏ ରଚନାର ଏକ ବିଶେଷ କଥା ସ୍ମରଣୀୟ । ଦେଶରେ ଶିକ୍ଷାପ୍ରସାର ଆଲୋଚନା ପ୍ରସଙ୍ଗରେ କବି ଲେଖିଛନ୍ତି— 'ବଙ୍ଗ ବିଦ୍ୟାଳୟ ଦେଶସାରା ବ୍ୟାପୀଯାଉ, ସେହି ସମସ୍ତ ଶିକ୍ଷା ବଙ୍ଗଳାରେ ବ୍ୟାପ୍ତ ହୋଇପଡ଼ୁ । କାରଣ ଇଂରେଜ ମାଧ୍ୟମରେ ଶିକ୍ଷା ଦେବା ଦେଶର ସବୁଆଡ଼େ କଦାପି ପହଞ୍ଚିପାରିବ ନାହିଁ ।' ଏହି ବାଇଶବର୍ଷ ବୟସର ଉକ୍ତିକୁ କବି ସାରାଜୀବନ ପ୍ରଚାର କରି ଆସିଛନ୍ତି । ସେଥିପାଇଁ ବିଶ୍ୱଭାରତୀରେ 'ଲୋକଶିକ୍ଷା ସଂସଦ' ସ୍ଥାପନ କରି ବଙ୍ଗାଳୀଙ୍କର ଘରେ ଘରେ ବଙ୍ଗଳାରେ ଲେଖାପଢ଼ା ଚର୍ଚ୍ଚାର ବ୍ୟବସ୍ଥା କରିଥିଲେ ।

(୧୫)

ବଙ୍ଗଳାରେ ପ୍ରବାଦ ଅଛି—'ଜନ୍ମ ମୃତ୍ୟୁ, ବିବାହ, ଏ ତିନି ବିଧାତା ନିର୍ଣ୍ଣୟ ।' ରବୀନ୍ଦ୍ରନାଥଙ୍କର ବିବାହ ହେଲା (୧୮୮୩ ଡ଼ିସେମ୍ବର ୯) ଅତ୍ୟନ୍ତ ଆକସ୍ମିକ ଭାବରେ । ସମ୍ବନ୍ଧ ହେଲା ଅପ୍ରତ୍ୟାଶିତ କୁଳରେ—ଠାକୁର ଘରର ଏକ ଅଧସ୍ତନ କର୍ମଚାରୀର ବାରବର୍ଷ ବୟସର କନ୍ୟା ସହିତ । ପିରାଳୀ ବ୍ରାହ୍ମଣକୁଳକୁ ବୋହି ଆସନ୍ତି ଯଶୋହରଖୁଲନା ଗ୍ରାମରୁ; ଏମାନେ ଥିଲେ ଖୁଲନାର ପିରାଲୀ ବ୍ରାହ୍ମଣ । ବିବାହ ଯୋଡ଼ାସାଁକୋ ଘରେ ହେଲା । ଝିଅଟିର ନାମ ଥିଲା ଭବତାରିଣୀ । ଏ ଧରଣର ନାମ ଠାକୁର ଘରେ ଅଚଳ, ସେଥିପାଇଁ କାଦମ୍ବିନୀ ହୋଇଥିଲେ କାଦମ୍ବରୀ ଓ ଭବତାରିଣୀ ହେଲେ ମୃଣାଳିନୀ—ରବୀନ୍ଦ୍ରନାଥଙ୍କର ପ୍ରିୟନାମ ନଳିନୀର ପ୍ରତିଶବ୍ଦ । ସେ ଯାହାହେଉ, ଏହି ବାଳିକା ବଧୂକୁ ଶିକ୍ଷା ଦୀକ୍ଷା ଦେଇ ଅନ୍ୟମାନଙ୍କ ସଙ୍ଗେ ସମାନ କରିବାର ଯଥାବିଧି ଚେଷ୍ଟା ଚାଲିଲା । ରବୀନ୍ଦ୍ରନାଥ ଅତ୍ୟନ୍ତ ସ୍ନେହୀ ଓ କର୍ତ୍ତବ୍ୟପରାୟଣ ସ୍ୱାମୀ ଥିଲେ ।

ବିବାହର ପାଞ୍ଚମାସ ପରେ ପରିବାର ଉପରେ ଏକ ଝଞ୍ଜା ବହିଗଲା । ଜ୍ୟୋତିରୀନ୍ଦ୍ରନାଥଙ୍କର ପତ୍ନୀ କାଦମ୍ବରୀ ଦେବୀ ଅକସ୍ମାତ ଆତ୍ମହତ୍ୟା କଲେ, କାରଣ ଅଜ୍ଞାତ । ଶୁଣାଯାଏ ପାରିବାରିକ ମନୋମାଳିନ୍ୟ ହିଁ ଏହାର କାରଣ । ରବୀନ୍ଦ୍ରନାଥଙ୍କ ଉପରେ ଏ ଆଘାତ ହୋଇଥିଲା ପ୍ରଚଣ୍ଡ । ରବିଙ୍କୁ ସେ କେତେ ସ୍ନେହ କରୁଥିଲେ ତାହା କବିଙ୍କର ସମସାମୟିକ ରଚନା 'ପୁଷ୍ପାଞ୍ଜଳି'ରୁ ଜଣାଯାଏ । ତାହାଛଡ଼ା ସାରାଜୀବନ ଧରି ତାଙ୍କ ଉଦ୍ଦେଶ୍ୟରେ ଲେଖିଥିବା ଅସଂଖ୍ୟ କବିତା ଓ ସଂଗୀତ ଏହାର ଜୀବନ୍ତସାକ୍ଷୀ । କବି ମାନସ ସ୍ଥୂଳ ଓ ପ୍ରତ୍ୟକ୍ଷକୁ ଉପଲକ୍ଷ୍ୟ କରି, ଭାବ ଓ କଳ୍ପନା ଆକାଶରେ 'ଆରେ ସତ୍ୟ'ର ଉର୍ଦ୍ଧ୍ୱଲୋକରେ ଅନାୟାସରେ ପହଞ୍ଚିପାରିଛି ।

କିନ୍ତୁ ରବୀନ୍ଦ୍ରନାଥଙ୍କର ମନ ଗୋଟିଏ ଜାଗାରେ ଅନାସକ୍ତ, ତାଙ୍କ ମତରେ 'ଭୁଲିବାର ଶକ୍ତି ପ୍ରାଣଶକ୍ତିର ଏକ ପ୍ରଧାନ ଅଙ୍ଗ ।'

ତେଣୁ ବାରମ୍ବାର ପୁରାତନକୁ ବିଦାୟ ଦେଇ ନୂତନର ଆବାହନୀ ଗାଇଛନ୍ତି ।

ସେ ସଂଗୀତ ରଚନା କରି ସ୍ୱର ଦେଉଥିଲେ; କିନ୍ତୁ ଦୁଇଦିନ ପରେ ଆପଣା ରଚିତ ସ୍ୱର ଭୁଲିଯାଉଥିଲେ । ଲୋକେ ଅନୁରୋଧ କଲେ କହୁଥିଲେ, 'ଯଦି ଭୁଲି ନ ଯାଉଥାନ୍ତି ତେବେ ରାମପ୍ରସାଦୀ ସ୍ୱର ପରି ସବୁ ସଂଗୀତର ଏକପ୍ରକାର ସ୍ୱରଯୋଜନା ହେଉଥାନ୍ତା ।' ବିସ୍ମୃତି ଓ ଅନାସକ୍ତି ଦୁଇଟି ମହତ୍ ଗୁଣ । ନଚେତ୍ ସ୍ମୃତିଭାରବିଜର୍ଜରିତ ମନରେ ନୂତନର ଅଭ୍ୟୁଦୟ ହୋଇପାରନ୍ତା ନାହିଁ । କବିଙ୍କର ମନ ଅନାସକ୍ତିର ଉପାଦାନରେ ଗଠିତ ହୋଇଥିବାରୁ ସାହିତ୍ୟର ସୃଷ୍ଟି ଅବ୍ୟାହତ ।

କବିଙ୍କର ବୃଦ୍ଧ ବୟସରେ ତାଙ୍କଠାରୁ କାଦମ୍ବରୀ ଦେବୀଙ୍କ ସମ୍ବନ୍ଧରେ ଅନେକ କଥା ଶୁଣି, ମୈତ୍ରେୟୀ ଦେବୀ ସ୍ୱ ଗ୍ରନ୍ଥରେ ଲେଖିଛନ୍ତି, 'ବିସ୍ମିତ ମନରେ ଭାବେ, ଏତେ ଦୀର୍ଘ ସମୟର ବ୍ୟବଧାନ ପରେ ଯେଉଁ ସ୍ନେହର ସ୍ମୃତି ଏପରି ଓତଃପ୍ରୋତ ଭାବରେ ତାଙ୍କର ଜୀବନ ସହିତ ଜଡ଼ିତ ଥିଲା, କଳ୍ପନା ମାଧୁର୍ଯ୍ୟ ବିସ୍ତାର କରୁଥିଲା, ଅସଂଖ୍ୟ କବିତ୍ୱର କେନ୍ଦ୍ର ଥିଲା, ସେ କେତେ ପ୍ରଭାବଶାଳୀ ନଥିଲେ । କିମ୍ବା କବି-ମନ ତା'ର ନିଜ ଆଲୋକରେ ସୃଷ୍ଟି କରେ ଜଗତ, ବାହାର ଅବଲମ୍ବନ ତା'ର ଉପଲକ୍ଷ୍ୟ ମାତ୍ର ।' ତଥାପି ଏକଥା ମନେ କରାଯାଇପାରେ ଯେ ଏପରି ଅଭୂତପୂର୍ବ ବିରାଟ ପ୍ରତିଭା ମଧ୍ୟରେ ଏପରି ଦୀର୍ଘକାଳ ସ୍ଥାୟୀ ତାଙ୍କର ପ୍ରଭାବ ଯେ ବିସ୍ତାର କରିପାରୁଥିଲେ - ସେ କମ୍ ପ୍ରତିଭାଶାଳୀ ନୁହନ୍ତି ।

(୧୭)

୧୮୮୪ ଖ୍ରୀଷ୍ଟାବ୍ଦ ସ୍ମରଣୀୟ । କେଶବଚନ୍ଦ୍ର ସେନ ଏହି ବର୍ଷର ଆରମ୍ଭରେ ଇହଲୀଳା ସାଙ୍ଗ କରିଥିଲେ । ଇତିପୂର୍ବେ ଦକ୍ଷିଣେଶ୍ୱରର ରାମକୃଷ୍ଣ ପରମହଂସଙ୍କର ଅସାଧାରଣ ଭଚବେଚ୍

ଶକ୍ତି କଥା, କଲିକତାର ଭଦ୍ରସମାଜ ନିକଟରେ ସୁପରିଚିତ । ବହୁ ଶିକ୍ଷିତ ଲୋକ ତାଙ୍କପ୍ରତି ଆକୃଷ୍ଟ ହେଉଥାନ୍ତି ।

ଏହି ସମୟରେ ଶଶଧର ତର୍କଚୂଡ଼ାମଣି ପ୍ରମୁଖ ପଣ୍ଡିତମାନେ ହିନ୍ଦୁଧର୍ମର ବୈଜ୍ଞାନିକ ବ୍ୟାଖ୍ୟା ନାମରେ କେତେକ ଅବାନ୍ତର ମତାମତ ଅର୍ଦ୍ଧଶିକ୍ଷିତ ଲୋକମାନଙ୍କୁ ବୁଝାଉଥିଲେ । ସେମାନଙ୍କର ପ୍ରତିପାଦ୍ୟ ବିଷୟ ଥିଲା—ସମାଜରେ ପ୍ରଚଳିତ ସମୁଦାୟ ଆଚାର ଅନୁଷ୍ଠାନ ଓ ସଂସ୍କାର ବିଜ୍ଞାନ-ସମ୍ମତ । ବଙ୍କିମଚନ୍ଦ୍ର ପ୍ରମୁଖ ମନୀଷୀଗଣ ଅଦ୍ୱୈତବାଦୀ ସଂପ୍ରଦାୟର କଲ୍ୟାଣ ଧର୍ମକୁ ହିନ୍ଦୁଧର୍ମର ଆଦର୍ଶ ବୋଲି ପ୍ରଚାର କରିଥିଲେ । ଚନ୍ଦ୍ରନାଥ ବସୁ ସେ ସମୟର ବିଶିଷ୍ଟ ଚିନ୍ତାଶୀଳ ଓ କ୍ଷମତାବାନ୍ ଲେଖକ । ଏମାନେ ସମସ୍ତେ ବ୍ରାହ୍ମ ସମାଜର ବିରୋଧୀ ଓ ହିନ୍ଦୁଧର୍ମର ନୂତନ ବ୍ୟାଖ୍ୟାକୁ ସମର୍ଥନ କରୁଥିଲେ । ଏହି ନବ ଚେତନାର ମୁଖପତ୍ର ରୂପେ 'ନବଜୀବନ' ଓ 'ପ୍ରଚାର' ନାମରେ ଦୁଇଟି ମାସିକ ପତ୍ରିକାର ଆବିର୍ଭାବ ହେଲା । ଉଭୟ ପତ୍ରିକାର ପୃଷ୍ଠପୋଷକ ଥିଲେ ବଙ୍କିମଚନ୍ଦ୍ର ପ୍ରଭୃତି ସାହିତ୍ୟିକ ଗଣ ।

ଏହି ଦୁଇ ପତ୍ରିକାର କେତେକ ପ୍ରବନ୍ଧ ଉପରେ ପ୍ରତିବାଦ କଲେ ରବୀନ୍ଦ୍ରନାଥ । ବଙ୍କିମଚନ୍ଦ୍ରଙ୍କ ସହିତ ଏହି ବିଷୟ ନେଇ ସାମୟିକ ବହୁ ଯୁକ୍ତିତର୍କ ଚାଲିଥିଲା । ସେସବୁ କଥା ଲୋକେ ଭୁଲି ଯାଇଛନ୍ତି ଓ ତାର ବିଶଦ ଉଲ୍ଲେଖ ଆଜି ନିରର୍ଥକ । ରବୀନ୍ଦ୍ରନାଥ 'ଜୀବନ ସ୍ମୃତି'ରେ ଲେଖିଛନ୍ତି, 'ଏହି ବିରୋଧର ଅବସାନ ପରେ ବଙ୍କିମ ବାବୁ ମୋତେ ଏକ ପତ୍ର ଲେଖିଥିଲେ—'

—'ମୋର ଦୁର୍ଭାଗ୍ୟକୁ ତାହା ହଜି ଯାଇଛି । ଯଦି ଥାଆନ୍ତା, ତେବେ ପାଠକମାନେ ଦେଖି ପାରିଥାନ୍ତେ ଯେ କିପରି ସଂପୂର୍ଣ୍ଣ କ୍ଷମତାର ସହିତ ସେ ଏହି ବିରୋଧ କଣ୍ଟାଟିକୁ ଉତ୍ପାଟନ କରିଥିଲେ ।'

କେଶବଚନ୍ଦ୍ର ସେନଙ୍କର ମୃତ୍ୟୁପରେ ବ୍ରାହ୍ମସମାଜ ସାଧାରଣଭାବେ ଖୁବ୍ ହୀନବଳ ହୋଇ ପଡ଼ିଲା । ଦେବେନ୍ଦ୍ରନାଥ ଆଦି ବ୍ରାହ୍ମ ସମାଜକୁ ପୁନର୍ବାର ଜାଗ୍ରତ କରିବା ପାଇଁ ରବୀନ୍ଦ୍ରନାଥଙ୍କୁ ଏହି ସମାଜର ସଂପାଦକ ଓ ଦ୍ୱିଜେନ୍ଦ୍ରନାଥଙ୍କୁ 'ତତ୍ତ୍ୱବୋଧିନୀ'

ପତ୍ରିକାର ସଂପାଦକ ଭାବେ ନିଯୁକ୍ତ କଲେ । ରବୀନ୍ଦ୍ରନାଥ ସମାଜର ସଂପାଦକ ହୋଇ ସମାଜର ନାନା କାର୍ଯ୍ୟରେ ମନଦେଲେ ।

( ୧୬ )

ବ୍ରାହ୍ମସମାଜର କାର୍ଯ୍ୟ କେତେବେଳେ ହେଲେ କବି, ସାହିତ୍ୟିକଙ୍କର ଚରମ କର୍ତ୍ତବ୍ୟ ହୋଇ ପାରେ ନାହିଁ; ତାଙ୍କର ସାହିତ୍ୟ ଜୀବନ ଚକ୍ରରେ ନୂତନବନ୍ଧୁ ପ୍ରବେଶ କରିଥିଲେ । ଅକ୍ଷୟ ଚୌଧୁରୀ, ଜ୍ୟୋତିରୀନ୍ଦ୍ରନାଥ, ପ୍ରବୋଧଚନ୍ଦ୍ର ଘୋଷ ପ୍ରଭୃତିଙ୍କର ଗଣ୍ଡି ଅତିକ୍ରମ କରି ନୂତନ ବନ୍ଧୁ ଗୋଷ୍ଠୀ ମିଳିଥିଲ—ପ୍ରିୟନାଥ ସେନ, ଶ୍ରୀଶଚନ୍ଦ୍ର ମଜୁମଦାର, କାଳୀପ୍ରସନ୍ନ କାବ୍ୟବିଶାରଦ, ଆଶୁତୋଷ ଚୌଧୁରୀ; ଯୋଗେନ୍ଦ୍ର ନାରାୟଣ ମିଶ୍ର ପ୍ରଭୃତି । ଏମାନଙ୍କ ମଧ୍ୟରୁ ଯୋଗେନ୍ଦ୍ରନାରାୟଣ ରବୀଂଦ୍ରନାଥଙ୍କର ପ୍ରଥମ ଗୀତ ସଂକଳନ 'ରବିଛାୟା' ପ୍ରକାଶ କଲେ । କବି ନିଜେ ଶ୍ରୀଶଚଂଦଙ୍କ ସହିତ ମିଳିତ ଭାବେ ପ୍ରକାଶ କଲେ 'ପଦରତ୍ନାବଳୀ' । ଆଶୁତୋଷ ଚୌଧୁରୀ କବିଙ୍କର 'କଡ଼ି ଓ କୋମଲ'ର କବିତା ଗୁଡ଼ିକୁ ଛାପିବା ପାଇଁ ସଜାଇ ଦେଲେ ।

ଆଶୁତୋଷ କଲିକତା ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର, ବିଲାତରୁ ବାରିଷ୍ଟର ପାସ୍ କରି ଫେରିଥାନ୍ତି । ତାଙ୍କର ମନ ମଧ୍ୟରେ ଯେଉଁ ସାହିତ୍ୟର ଧାରା ପ୍ରବାହିତ ହେଉଥିଲ, ତାହା ମଧ୍ୟରେ ଥିଲ ଦରିଆପାରି ଅଙ୍ଗଣା ବଗିଚାର ନାନାଫୁଲର ମିଳିତ ସୌରଭ । ରବୀଂଦ୍ରନାଥ ତାଙ୍କର ନିକଟରୁ ଏହି ନୂତନ କାବ୍ୟ-ସାହିତ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରାର ସଂଦେଶ ପାଇଲେ—ଯେପରି ବାଲ୍ୟକାଳରେ ଅକ୍ଷୟ ଚୌଧୁରୀ, ପ୍ରୌଢ଼ ବୟସରେ ଅଜିତ ଚକ୍ରବର୍ତ୍ତୀ ଓ ଶେଷ ବୟସରେ ଅମିୟ ଚକ୍ରବର୍ତ୍ତୀଙ୍କ ଠାରୁ ପାଇଥିଲେ । ଆଶୁତୋଷ ଚୌଧୁରୀ ରବୀଂଦ୍ରନାଥଙ୍କର ମଝିଆ ଭାଇ ହେମେଂଦ୍ରଙ୍କର କନ୍ୟା ପ୍ରତିଭା ଦେବୀଙ୍କୁ ବିବାହ କଲେ; ଏ ଦିଗରୁ ମଧ୍ୟ ଆତ୍ମୀୟତା ଥିଲ ।

ପ୍ରିୟନାଥ ସେନ ଆଶୁତୋଷଙ୍କ ପରି ଆଇନ ବ୍ୟବସାୟୀ, କିନ୍ତୁ ଅନ୍ତରରେ ଥିଲେ ସାହିତ୍ୟ ରସିକ । 'ଦେଶୀ ଓ ବିଦେଶୀ ପ୍ରାୟ ସକଳ ଭାଷାର ସକଳ ସାହିତ୍ୟର ରାଜପଥ ଓ ଗଳିରେ ତାଙ୍କର ପ୍ରବେଶ ଥିଲା', ତାଙ୍କରି ନିକଟରେ ବସି 'ଭାବ ରାଜ୍ୟର ଦୂର ଦିଗନ୍ତର ଦୃଶ୍ୟ' କବିଙ୍କର ମାନସ ପଟରେ ଉଦ୍‌ଭାସିତ ହେଉଥିଲା । ଏମାନଙ୍କୁ ନେଇ କବିଙ୍କର ଘରେ ଆଡ୍‌ଡ଼ା ଜମୁଥିଲା, ଗଳ୍ପ ଓ ଗାନରେ ସମୟ କଟୁଥିଲା । କୁହାଯାଇ ପାରେ 'ଜୀବନ ଥିଲା ଲଘୁ ପ୍ରଥମ ବୟସେ' ।

(୧୮)

ସତ୍ୟେନ୍ଦ୍ରନାଥଙ୍କର ପତ୍ନୀ ଜ୍ଞାନଦାନନ୍ଦିନୀ ଦେବୀ ପିଲା-ମାନଙ୍କର ପଢ଼ାପଢ଼ି ପାଇଁ କଲିକତା ଆସିଲେ । ଠାକୁର ପରିବାରରେ ବହୁ ଶିଶୁ ଓ ବାଳକ । ସେମାନଙ୍କ ମଧ୍ୟରୁ କେତେକ ବଡ଼ ହୋଇଛନ୍ତି – ଦ୍ୱିଜେନ୍ଦ୍ରନାଥଙ୍କର ଜ୍ୟେଷ୍ଠ ପୁଅ ସୁଧୀନ୍ଦ୍ରନାଥ, ବୀରେନ୍ଦ୍ର ନାଥଙ୍କର ପୁଅ ବଳେନ୍ଦ୍ରନାଥ, ହେମେନ୍ଦ୍ରଙ୍କ ପୁଅ ହିତେନ୍ଦ୍ରନାଥ ପ୍ରଭୃତି ଓ 'ପାଞ୍ଚନମ୍ବର ଘର'ର ଗଗନେନ୍ଦ୍ର, ସମରେନ୍ଦ୍ର, ଅବନୀନ୍ଦ୍ର ତିନିଭାଇ । ପିଲାମାନଙ୍କ ପାଇଁ ଜ୍ଞାନଦାନନ୍ଦିନୀ ଦେବୀ 'ବାଳକ' ନାମରେ ଏକ ମାସିକ ପତ୍ରିକା ପ୍ରକାଶ କରିବାକୁ ସ୍ଥିର କଲେ । ସେ ଭଲକରି ଜାଣିଥିଲେ ଯେ ପତ୍ରିକାର ସମ୍ପାଦନା ସେ କଲେ ମଧ୍ୟ, ତା'ର ମାସିକ ଖୋରାକ ଯୋଗାଇବେ କନିଷ୍ଠ ଦିଅର ରବି । ଶେଷରେ ତାହାହିଁ ହେଲା । ରବୀନ୍ଦ୍ରନାଥଙ୍କର କର୍ମହୀନ ଜୀବନରେ କାର୍ଯ୍ୟ ଜୁଟିଲା । ପିଲାମାନଙ୍କ ପାଇଁ ଲେଖିଲେ ଗଳ୍ପ, ଉପନ୍ୟାସ, ନାଟିକା, କବିତା, ପ୍ରବନ୍ଧ, ଭ୍ରମଣକାହାଣୀ, ହାସ୍ୟ କୌତୁକ ଆଦି ବହୁ ବିଚିତ୍ର ରଚନା । 'ଶିଶୁ' ନାମରେ ଯେଉଁ କାବ୍ୟ ଖଣ୍ଡିକ ଦେଖିବାକୁ ପାଉଁ ତାର ପ୍ରଥମଭାଗ ଏହି ସମୟରେ ରଚିତ ଓ ଏହାର ଅପର ଭାଗ ଲେଖା ହୋଇଥିଲା ଆଲମୋଡ଼ାରେ ।

ପିଲାମାନଙ୍କ ପାଇଁ ବିପୁର ରାଜବଂଶର କାହାଣୀ ଅବଲମ୍ବନରେ 'ରାଜର୍ଷି' ଉପନ୍ୟାସ ଲେଖିଲେ । 'ମୁକୁଟ' ନାମକ କ୍ଷୁଦ୍ର ଗଳ୍ପଟି ବିପୁରର କାହାଣୀ । ପରେ ରାଜର୍ଷିର କଥାବସ୍ତୁକୁ ନେଇ 'ବିସର୍ଜନ' ନାଟକ ଲେଖିଥିଲେ ଓ 'ମୁକୁଟ'ର ଗଳ୍ପାଂଶକୁ ଅଭିନୟୋପଯୋଗୀ କରିଥିଲେ ।

ବଙ୍ଗଳା ସାହିତ୍ୟରେ ସବୁଠାରୁ ଅଭିନବ ଜିନିଷ ହେଉଛି 'ହାସ୍ୟ କୌତୁକ' । କବି ଏହାର ସୂଚନା ପାଇଲେ ପାଶ୍ଚାତ୍ୟ 'ଶାରାଡ଼ (charade) ନାମକ ଏକ ପ୍ରକାର ନାଟ୍ୟ ଖେଳରୁ' । ଛାତ୍ର ଛାତ୍ରୀମାନେ ରବୀନ୍ଦ୍ରନାଥଙ୍କର ହାସ୍ୟ କୌତୁକ ଓ ବ୍ୟଙ୍ଗ କୌତୁକ ନାଟକ କଥା ଜାଣନ୍ତିନାହିଁ ଓ କୌଣସି ଉତ୍ସବରେ ଦୁଇ ଗୋଟିଏ ଅଭିନୟ ନ କରିଛନ୍ତି, ଏପରି ସ୍କୁଲ ବଙ୍ଗଳାରେ ନାହିଁ ।

'ବାଳକ' ମାସିକ ପତ୍ରିକାରେ ଲେଖିବା ସଙ୍ଗେ ସଙ୍ଗେ 'ଭାରତୀ'ରେ ବିଭିନ୍ନ ରଚନା ପ୍ରକାଶିତ ହେଉଥାଏ । ବୈଶାଖ-ଜ୍ୟେଷ୍ଠ ସଂଖ୍ୟା 'ବାଳକ'ରେ (୧୨୯୨) ସାଲରେ 'ମୁକୁଟ ଗଳ୍ପ ଓ ଶିଶୁ ଉପଯୋଗୀ କବିତା ପ୍ରକାଶିତ ହୁଏ । ସେହି ସମୟରେ 'ଭାରତୀରେ ପ୍ରକାଶିତ ହେଲା 'ପୁଷ୍ପାଞ୍ଜଳି' ଓ 'ରସିକତାର ଫଳାଫଳ' । ପ୍ରଥମଟି ତାଙ୍କର ଭାଉଜ କାଦମ୍ବରୀ ଦେବୀଙ୍କ ଉଦ୍ଦେଶ୍ୟରେ ଶୋକାଶ୍ରୁ ଓ ଦ୍ୱିତୀୟଟି ବ୍ୟଙ୍ଗ କୌତୁକ । ବହୁରଙ୍ଗୀ ଜୀବନର ଅଦ୍ଭୁତ ଅନୁଭୂତି ଓ ଆତ୍ମପ୍ରକାଶ ।

(୧୯)

ବ୍ରାହ୍ମ ସମାଜ ପ୍ରଭାବରେ ବଙ୍ଗଦେଶରେ ହିନ୍ଦୁ ସମାଜର ଅନେକ କିଛି ପରିବର୍ତ୍ତିନ ହୋଇ ଯାଇଥାଏ । ପୁରାତନ ମତ ଓ ବିଶ୍ୱାସର ଜୀର୍ଣ୍ଣ ମଳିନ ପୋଷାକ ପରିତ୍ୟାଗ କରିବାରେ ନବୀନ ପ୍ରଗତିପନ୍ଥୀଙ୍କର ଯେପରି ଉଗ୍ରତା, ସେହି ଜୀର୍ଣ୍ଣ ପୋଷାକରେ ତାଳି ପକାଇ ପରିଷ୍କାର କରି ରଖିବା ପାଇଁ ପ୍ରବୀଣ 'ସନାତନୀ'ଙ୍କର

ବିଷୟର ମମତା ଦେଖା ଦେଇଥାଏ । ଏହି ପ୍ରବୀଣ ଓ ନବୀନଙ୍କ ଦ୍ୱନ୍ଦ୍ୱ ସମ୍ବନ୍ଧରେ ରବୀନ୍ଦ୍ରନାଥଙ୍କର 'ଚିଠିପତ୍ର' ଗୁଡ଼ିକ 'ସମାଜ' ଗ୍ରନ୍ଥରେ ସଂଗୃହୀତ ହୋଇଛି । ଅଜାନାଭ ପତ୍ର ବିନିମୟ ଛଳରେ ମତାମତ ନେଇ ଧସ୍ତାଧସ୍ତି । ସମୟାତୀତ ହେଲେ ବି; ସେ ଗୁଡ଼ିକ ଆଜି ବି ସୁଖପାଠ୍ୟ । ତା ଛଡ଼ା, ଜୀର୍ଣ୍ଣତାକୁ ଧରି ରଖିବା ଲୋକ ଏ ଦେଶରେ ଏବେ ବି ଅଛନ୍ତି ।

ସ୍ତ୍ରୀ ଶିକ୍ଷା ଓ ବିବାହ ସମସ୍ୟା ନେଇ ହିନ୍ଦୁ ସମାଜର ସଂସ୍କାରକ ଓ ସଂରକ୍ଷକଙ୍କ ମଧ୍ୟରେ ସବୁଠାରୁ ବେଶୀ ମତଭେଦ ଦେଖା ଦେଇଛି । ବ୍ରାହ୍ମସମାଜରେ ସ୍ତ୍ରୀ ଶିକ୍ଷାର ପ୍ରସାର ହେତୁ ଝିଅମାନଙ୍କର ବିବାହ ବୟସ ବଢ଼ି ଯାଇଥାଏ; କାରଣ ଆଠବର୍ଷରେ ଗୌରୀଦାନ କଲେ ତ ଆଉ ପଢ଼ାଶୁଣା ହୋଇ ପାରିବ ନାହିଁ । ଆଜି ଆମ ଘରେ ଘରେ ବୟସ୍କା ଅବିବାହିତା କନ୍ୟା, ସେଥିପାଇଁ କାହାର ମୁଣ୍ଡବ୍ୟଥା ହୁଏ ନାହିଁ । କାରଣ ସମସ୍ତେ କାଚଘରେ ବାସ କରୁଛନ୍ତି, କିଏବା କାହାକୁ ଢେଲା ପକାଇବ ? କିନ୍ତୁ ସତୁରି ବର୍ଷ ପୂର୍ବେ ଏ ବିଷୟ ନେଇ ସାହିତ୍ୟିକମାନଙ୍କର କମ୍ ଦୁଶ୍ଚିନ୍ତା ନଥିଲା । ତା ଛଡ଼ା ସେମାନଙ୍କ ମଧ୍ୟରେ ଓ ସମାଜସେବୀଙ୍କ ମଧ୍ୟରେ ପଛଘୁଞ୍ଚା ଦେବାର ଲୋକଙ୍କର ଅଭାବ ବି ନ ଥିଲା । ଆଜି ବି କମ୍ ନାହିଁ । ସମାଜର ଏହି ସଂକଟପୂର୍ଣ୍ଣ ମୁହୂର୍ତ୍ତରେ ରବୀନ୍ଦ୍ରନାଥ 'ହିନ୍ଦୁ ବିବାହ' ନାମକ ଏକ ପ୍ରବନ୍ଧ ଲେଖି 'ସାଇନ୍ସ ଏସୋସିଏସନ୍' ହଲରେ ପଢ଼ିଲେ—ତୀବ୍ର ଭାବରେ ବାଲ୍ୟ ବିବାହ ସମର୍ଥକଙ୍କର ମତ ଖଣ୍ଡନ କଲେ । ବିବାହାଦି ପ୍ରଶ୍ନ ଛଡ଼ା ସେ ଯୁଗର ବହୁ ମତବାଦ ସଂପର୍କରେ ରବୀନ୍ଦ୍ରନାଥ ଯେଉଁ ଆଲୋଚନା କରୁଥିଲେ ତାହା ସାହିତ୍ୟରେ ସ୍ଥାୟୀ ହୋଇ ରହିବ ନାହିଁ; କିନ୍ତୁ ଅନେକ ଭ୍ରାନ୍ତ ମତବାଦ ଆଜି ବି ଧ୍ୱଂସ ହୋଇନି ଓ ନାନା ଛଦ୍ମନାମରେ ବଙ୍ଗାଳିଙ୍କୁ ଉଦ୍‌ଭ୍ରାନ୍ତ କରୁଥିବା ଯୋଗୁଁ ରବୀନ୍ଦ୍ରନାଥଙ୍କର ଲିପିବଦ୍ଧ ଚିନ୍ତାରେ ଯଥେଷ୍ଟ ମୂଲ୍ୟ ଅଛି ।

୧୨୯୦ ସାଲରେ କୃଷ୍ଣପ୍ରସନ୍ନ ସେନ ନୂତନ ତନ୍ତ୍ର ସାଧନା ଆରମ୍ଭ କରି ନାମଦେଲେ 'କୃଷ୍ଣାନନ୍ଦ' । ଶୁଣାଗଲା, ସେ କଳ୍କି

ଅବତାର । ଅବତାର ହେଲେ ଚେଲଙ୍କର ଅଭାବ ହୁଏନା— ବଙ୍ଗାଳିମାନେ ତାହା ହାଡ଼େ ହାଡ଼େ ଉପଲବ୍ଧି କରିଛନ୍ତି । ଧର୍ମ, ଅବତାର ଓ ଗୁରୁ ନାମରେ ଧର୍ମପିପାସୁଗଣ ଯେପରି ଶୋଷିତ ହୁଅନ୍ତି, ବୋଧହୁଏ କୌଣସି ଦୁର୍ଦ୍ଧର୍ଷ ସମ୍ରାଟ ପ୍ରତ୍ୟକ୍ଷ ଓ ପରୋକ୍ଷ ଖଜଣା ଭାରରେ ଏତେ ରକ୍ତ ଶୋଷଣ କରି ପାରିବ ନାହିଁ । ରବୀନ୍ଦ୍ରନାଥଙ୍କ ପକ୍ଷରେ ଏସବୁ ଅବାନ୍ତର ଧର୍ମ ମୋହର ଉପଦ୍ରବ ଓ ଅସ୍ଖଳନ ନୀରବରେ ସହ୍ୟ କରିବା କଠିନ ଥିଲା; ସେଥିପାଇଁ ଗଦ୍ୟ, ପଦ୍ୟ, ନାଟକ, ପ୍ରହସନ ଇତ୍ୟାଦିରେ ସେ ବ୍ରାହ୍ମମତ ଆନ୍ଦୋଳନ ଚଳାଇଲେ । ଗୋଟିଏ ପଦ କବିତାରୁ କେତୋଟି ପଙ୍କ୍ତି ଦେଖିଲେ ଜଣାଯିବ —

ଝୁଦେ ଝଦେ ଆର୍ଟଗୁଲେ ଘାସେର ମତ ଗଜାଚ୍ଛେ ଓ..ଠ
ଛୁଁଚଲେ ସବ କ୍ଷବେର ଡଗା କାହାର ମତୋ ପାଚ୍ଛେ ଫୋଟେ ।
ତାଁରା ବଲେନ 'ଆମି କଲ୍କି' ଗାଁଜାର କଲ୍କେ ହବେ ବୁଝି
ଅବତାରେ ଭରେ ଗେଲ ଯତ ରାଜ୍ୟେର ଗଲିଘୁଁଜି ।

ଦୁଃଖର ବିଷୟ, ଏହି ବ୍ୟର୍ଥ ସଂସ୍କାର ଚେଷ୍ଟା ର ରବୀନ୍ଦ୍ରନାଥ ବେଶୀ ସମୟ ଓ ଶକ୍ତି ନଷ୍ଟ କରିନାହାନ୍ତି । ସେ ସଂସ୍କାରକ ନୁହନ୍ତି— କବି । ସମୟ ସମୟରେ ମାନବ କଲ୍ୟାଣ କଥା ଚିନ୍ତା କରି ବିତର୍କ ଭିତରକୁ ଓହ୍ଲାଇ ପଡ଼ନ୍ତି; ଉତ୍ତେଜନା କଟିଗଲେ ନିଜର କବି ଜୀବନକୁ ଫେରି ଯାଆନ୍ତି । ତାଙ୍କର ଜୀବନରେ ଏହି ବୈଶିଷ୍ଟ୍ୟ ବାରମ୍ବାର ଦେଖାଯାଇଛି ।

( ୨୦ )

'ଜୀବନ ଥିଲା ଲଘୁ ପ୍ରଥମ ବୟସେ' । ଯୌବନରେ ଦାୟିତ୍ୱହୀନ ଜୀବନ ଯାପନ କରିଛନ୍ତି । ଅର୍ଥ ଉପାର୍ଜନ ପ୍ରଶ୍ନ ଠାକୁର ପରିବାରର ଯୁବକଙ୍କୁ ଚଞ୍ଚଳ କରିନି । ରବୀନ୍ଦ୍ରନାଥ କଲିକତା ସହରର ଅଭିଜାତ ଶ୍ରୀ ଓ ସୌଖୀନତାର ମୂର୍ତ୍ତି - ଯୁବକଙ୍କର

ଅନୁକରଣ ଓ ଈର୍ଷାର ପାତ୍ର । ଆପଣା ମନର ଆବେଗରେ କବିତା ଲେଖନ୍ତି—ସତ୍ୟକ କରି ଲେଖାପଢ଼ା କରନ୍ତି । ବନ୍ଧୁ ବାନ୍ଧବଙ୍କ ସଙ୍ଗରେ ସଂଗୀତ ମଜଲିସରେ ଗୀତ ଗାଆନ୍ତି । କଲିକତା କଂଗ୍ରେସ ଅଧିବେଶନ ପାଇଁ (୧୮୮୬) ଗୀତ ଲେଖିବାକୁ ବରାଦ ଆସିଲା—ଲେଖିଲେ 'ଆମରା ମିଲେଛି ଆଜ ମାୟେର ଡାକେ' । ଅନୁରୋଧ ହେଲା ଗାଇବାକୁ— ଗାଇଲେ ମର୍ମସ୍ପର୍ଶୀ ମଧୁର କଣ୍ଠରେ ।

ହଠାତ୍ ଗାଜିପୁର ଯିବାକୁ ମନହେଲା । ଏହା ପୂର୍ବରୁ ବଳଦ ଗାଡ଼ିରେ ଗ୍ରାଣ୍ଡ୍ଟ୍ରଙ୍କ ରୋଡ୍ ବା ଶେରସାହା ସଡ଼କ ଦେଇ ପଶ୍ଚିମ ବୁଲିଯିବାକୁ ମନଥିଲା । ଶେଷ ପର୍ଯ୍ୟନ୍ତ ତାହା ହୋଇପାରି ନଥିଲା । ଏତେ ଜାଗା ଥାଉ ଥାଉ ଗାଜିପୁର ଯିବାର କାରଣ ସଂପର୍କରେ କବି ଲେଖିଛନ୍ତି— "ବାଲ୍ୟ କାଳରୁ ପଶ୍ଚିମ ଭାରତ ମୋ ନିକଟରେ ରୋମାଣ୍ଟିକ କଳ୍ପନା ଥିଲା····· ଅନେକ ଦିନରୁ ଏହି ପଶ୍ଚିମ ଭାରତର କୌଣସି ଏକ ଜାଗାରେ ଆଶ୍ରୟ ନେଇ ମନ ଭିତରେ ଭାରତବର୍ଷର ବିରାଟ ଚକ୍ଷୁବୃଦ୍ଧ ଅତୀତ ଯୁଗର ସ୍ପର୍ଶଲାଭ କରିବାର ଇଚ୍ଛାଥିଲା······ ଶୁଣିଥିଲି ଗାଜିପୁରରେ ଗୋଲାପ ବଗିଚା । ତାହାର ମୋହ ମୋତେ ପ୍ରବଳ ଭାବରେ ଟାଣିଥିଲା' ।

ସପରିବାରେ ଗାଜିପୁର ଗଲେ । ସପରିବାର କହିଲେ ପଂଦର ବର୍ଷ ବୟସ୍କା ସ୍ତ୍ରୀ ଓ ବର୍ଷକର କନ୍ୟା ବେଲା ।

ଗାଜିପୁର ଆସି ଦେଖିଲେ ସେଠାରେ 'ବ୍ୟବସାୟୀଙ୍କର ଗୋଲାପ କ୍ଷେତ' । ସେଠାରେ ବୁଲ୍‌ବୁଲ୍‌ର ଆମନ୍ତ୍ରଣ ନାହିଁ—କବିଙ୍କୁ ମଧ୍ୟ ଡାକରା ନାହିଁ । କବି ମନର ରଙ୍ଗୀନ ଆଶା ତୁଟିଗଲା ।

କିନ୍ତୁ ବାହାରେ ଯା ଦେଖି ନପାରିଲେ, ଅନ୍ତରରେ ତାହାଠାରୁ ଦେଖିଲେ ବେଶୀ । 'ମାନସୀ' କାବ୍ୟର ଅନେକ ଗୁଡ଼ିଏ କବିତା ଏଠାରେ ଲେଖାହେଲା—ମୋଟ ୬୮ ଟି । 'ମାନସୀ' କାବ୍ୟରେ ଦୀର୍ଘ ତିନିବର୍ଷର କବିତା ସଙ୍କଳିତ ହୋଇଛି ସତ୍ୟ; କିନ୍ତୁ 'ମାନସୀ' ପ୍ରସଙ୍ଗ ଉଠିଲେ କବି ଗାଜିପୁର-ପ୍ରବାସ କଥା ସ୍ମରଣ କରୁଥିଲେ ।

ଏଠାର ଗୋଟିଏ ଘଟଣା ଉଲ୍ଲେଖ ଯୋଗ୍ୟ । କବିଙ୍କର ବସା ନିକଟରେ ଜଣେ ଇଂରେଜୀ ସିଭିଲସର୍ଜନଙ୍କର ବସା । କବିଙ୍କର ସାଙ୍ଗରେ ପରିଚୟ ହେଲା ପରେ, କବି କ'ଣ ଲେଖନ୍ତି ଡାକ୍ତର

ଜାଣିବାକୁ ଚାହିଁଲେ । କବି ମୁକ୍ତ ଛନ୍ଦରେ ରଚିତ 'ନିଷ୍ଫଳ କାମନା' କବିତାଟିକୁ ଇଂରେଜୀରେ ଅନୁବାଦ କରି ଶୁଣାଇଲେ । ସାହେବ କ'ଣ ବୁଝିଲେ, ତାହା ଆମେ ଜାଣୁନା । କିନ୍ତୁ ଇଂରେଜୀରେ ନିଜର କବିତା ଅନୁବାଦ କରିବାର ଚେଷ୍ଟା, ଏହା ପ୍ରଥମ ବୋଲି ଉଲ୍ଲେଖ ଯୋଗ୍ୟ ।

ବର୍ଷା ଆରମ୍ଭରେ ରବୀନ୍ଦ୍ରନାଥ ଗାଜିପୁରରୁ କଲିକତା ଫେରିଲେ । କେତେବେଳେ ଯୋଡ଼ାସାଁକୋ ଘରେ, କେତେବେଳେ ବା ଜ୍ଞାନଦାନନ୍ଦନୀ ଦେବୀଙ୍କ ନିକଟରେ ଉଡ୍‌ଷ୍ଟ୍ରୀଟ ବା ବିର୍ଜିତଲା ବସାରେ ରହନ୍ତି । 'ବାଳକ' ବର୍ଷେ ପ୍ରକାଶିତ ହେବାପରେ ବନ୍ଦ ହୋଇଗଲା; 'ଭାରତୀ' ସହିତ ମିଶି ନାମ ହୋଇଥିଲା 'ଭାରତୀ ଓ ବାଳକ' । ରବୀନ୍ଦ୍ରନାଥଙ୍କ ଲେଖା ଉପରୁ ବାହାର ତାଗିଦ୍ କମିଗଲା ।

କଲିକତାର ମହିଳା ପ୍ରତିଷ୍ଠାନ 'ସଖି ସମିତି' ନିକଟରୁ ଝିଅମାନଙ୍କ ଅଭିନୟ ଉପଯୋଗୀ ନାଟକ ଲେଖିଦେବାକୁ ଅନୁରୋଧ ହେଲା । ସେଥିପାଇଁ ଲେଖିଲେ 'ମାୟାର ଖେଳ' । 'ବାଲ୍ମୀକି ପ୍ରତିଭା' ଠାରୁ ଏହା ଅନ୍ୟ ଧରଣର । ଏଥିରେ ନାଟ୍ୟାଂଶ ମୁଖ୍ୟ ନୁହେଁ, ଗୀତ ହିଁ ମୁଖ୍ୟ । ଘଟଣା ସ୍ରୋତ କ୍ଷୀଣ, ହୃଦୟାବେଗ ହିଁ ପ୍ରବଳ । କବି 'ମାୟାର ଖେଳ' ଲେଖିଲା ବେଳେ ସଙ୍ଗୀତ ରସରେ ତାଙ୍କର ସମସ୍ତ ମନ ଅଭିଷିକ୍ତ ଥିଲା ।

ବେଥୁନ୍ କଲେଜ ହଲରେ ଝିଅମାନଙ୍କର ଅଭିନୟ ହେଲା । ଝିଅମାନେ ହିଁ ଦର୍ଶକ । ଝିଅମାନଙ୍କର ସେ ଏକ ନୂତନ ଅନୁଭୂତି— ଏପରି ଘଟଣା ପୂର୍ବରୁ କେବେ ହୋଇନାହିଁ ।

(୨୧)

୧୨୯୭ ସାଲର ଗ୍ରୀଷ୍ମକାଳ । ପିଲମାନଙ୍କର ସ୍କୁଲ ବନ୍ଦ ଥିବାରୁ ଜ୍ଞାନଦାନନ୍ଦନୀ ଦେବୀ ସ୍ୱାମୀଙ୍କ ନିକଟକୁ ବମ୍ବେରୁ ସୋଲାପୁର ଗଲେ । ରବୀନ୍ଦ୍ରନାଥ ମଧ୍ୟ ସପରିବାରେ ତାଙ୍କ ସହିତ ଗଲେ ।

ତାଂକର ବଡ ଝିଅର ବୟସ ଅଢ଼େଇ ବର୍ଷ, ଶିଶୁପୁତ୍ର ଗୃଭମାସର । ପୃଥକ୍ ସଂସାର କରିବା ଭଳି ସ୍ତ୍ରୀଙ୍କର ବୟସ ହୋଇନି ଓ ଦୁଇଟି ଶିଶୁ ନେଇ ସମ୍ଭବ ବି ନୁହେଁ । ସେଥିପାଇଁ ମହିଷି ଭାଇଂଙ୍କ ସଂସାର ହିଁ ଆଶ୍ରୟ ।

ସୋଲାପୁରରେ ଏମାନେ ପ୍ରାୟ ମାସେ ରହିଲେ । ଏଠାରେ ରବୀନ୍ଦ୍ରନାଥଙ୍କର ପ୍ରଥମ ନାଟକ 'ରାଜା ଓ ରାଣୀ' ଲେଖା ହୋଇଥିଲା । ଏହି ନାଟକ ଏକଦା ସଫଳତାର ସହିତ ବଙ୍ଗଳା ନାଟ୍ୟମଞ୍ଚରେ ଅଭିନୀତ ହୋଇଥିଲା । ବହୁବର୍ଷ ପରେ ରବୀନ୍ଦ୍ରନାଥ କହିଥିଲେ ଯେ, ନାଟକଟି ତାଙ୍କର ମନମୁତାବକ ନୁହେଁ । ତା'ର କାରଣ, 'ଏହି ନାଟକର ପୃଷ୍ଠଭୂମିରେ ରହିଛି ଲିରିକ୍‌ର ପ୍ଲାବନ, ସେଥିପାଇଁ ନାଟକ ଦୁର୍ବଳ—ଏହା ହୋଇଛି କାବ୍ୟର କଳାଭୂମି ।' ନୂତନ ଭାବରେ ଲେଖିବାକୁ ଯାଇ 'ରାଜା ଓ ରାଣୀ' ସଂସ୍କାର କରିବା ବଦଳରେ 'ତପତୀ'ର ସୃଷ୍ଟିହେଲା । ଯଥାସ୍ଥାନରେ ସେକଥା ଆଲୋଚିତ ହେବ ।

ସୋଲାପୁରରୁ ସେମାନେ ପୁନା ଆସିଲେ । ଖିଡ୍‌କିର ସହରତଳି ଅଞ୍ଚଳର ଏକ ଘରେ ରହୁଥାନ୍ତି । ପୁନାରେ ଏକ ନୂତନ ଅଭିଜ୍ଞତା ହେଲା । ଦିନେ ମରାଠୀ ବିଦୁଷୀ ରମାବାଈଙ୍କର ବକ୍ତୃତା ଶୁଣିବାକୁ ଯାଇଥିଲେ । ସ୍ତ୍ରୀଲୋକଙ୍କର ଅଧିକାର ଓ ଶକ୍ତି ସମ୍ପର୍କରେ ରମଣୀ ଜଣେ ବକ୍ତୃତା ଦେବା ଶୁଣି ମହାରାଷ୍ଟ୍ରୀୟ ବୀରପୁରୁଷ ସ୍ଥିର ରହିପାରିଲେ ନାହିଁ; ପୁରୁଷର ପରାକ୍ରମ ପ୍ରକାଶ କରି ଆରମ୍ଭ କଲେ ଗର୍ଜନ ତର୍ଜନ—ଅବଳାର କ୍ଷୀଣ କଣ୍ଠସ୍ୱରକୁ ଅଭିଭୂତ କରି ସଗର୍ବରେ ଘରକୁ ଫେରିଲେ । 'ବର୍ଗୀଙ୍କର ଉତ୍ପାତରେ ବକ୍ତୃତା ହୋଇପାରିଲା ନାହିଁ ।'

ରବୀନ୍ଦ୍ରନାଥ ଖଣ୍ଡିଏ ଚିଠିରେ ନାରୀ ପ୍ରଗତି ଓ ନାରୀ ମୁକ୍ତି ଆନ୍ଦୋଳନ ନେଇ ଅନେକ ଆଲୋଚନା କରିଥିଲେ । (ଭାରତୀ ୧୨୦୭ ଆଷାଢ଼) ।

(୨୨)

ସୋଲପୁରରୁ ବର୍ଷାଦିନ ମଧ୍ୟଭାଗରେ ଫେରିଲେ । 'ରାଜା ଓ ରାଣୀ' ପ୍ରକାଶିତ ହେଲା (୧୨୯୬ ଶ୍ରାବଣ ୨୬) । ରବୀନ୍ଦ୍ରନାଥ ଭାବିଥିଲେ ଏହିପରି ଭାବରେ ଦିନ ବିତିବ । କିନ୍ତୁ ତାହା ହୋଇ-ପାରିଲା ନାହିଁ ।

ଦେବେନ୍ଦ୍ରନାଥ ବୃଦ୍ଧ; ସେ ଦେଖିଲେ, ରବିକୁ କୌଣସି କାର୍ଯ୍ୟରେ ନ ପୂରାଇଲେ ଚଳିବ ନାହିଁ । ଜମିଦାରୀର କାର୍ଯ୍ୟ କାହାକୁ ତ ହେଲେ ଦେଖିବାକୁ ହେବ । ବଡ଼ପୁଅ ଦ୍ୱିଜେନ୍ଦ୍ରନାଥ ଦାର୍ଶନିକ ଲୋକ, ବୈଷୟିକ କାର୍ଯ୍ୟରେ ଅଯୋଗ୍ୟ । କର୍ତ୍ତବ୍ୟ-ବୋଧରେ ଜମିଦାରୀ କାମ ଦେଖିବାକୁ ଯାଇ ଦାନ କରନ୍ତି, ଖଜଣା ଛାଡ଼ କରନ୍ତି; ଲୋକସାନ କରି ଫେରିଆସନ୍ତି । ସତ୍ୟେନ୍ଦ୍ରନାଥ ସରକାରୀ କାର୍ଯ୍ୟରେ ଦୂରରେ ଥାନ୍ତି; ଛୁଟିରେ ବା କେତେଦିନ ପାଇଁ ଆସନ୍ତି । ତାଙ୍କ ପକ୍ଷରେ ଜମିଦାରୀ ତଦାରଖ ସମ୍ଭବପର ନୁହେଁ । ଜ୍ୟୋତିରୀନ୍ଦ୍ରନାଥ ନିଃସନ୍ତାନ —ସଂସାରରେ ଆସକ୍ତି କମ୍—ଭୋଗ କରିବ କିଏ ? ହେମେନ୍ଦ୍ରନାଥ ଗତାୟୁ, ବୀରେନ୍ଦ୍ରନାଥ ଓ ସୋମେନ୍ଦ୍ରନାଥ ବାୟୁରୋଗ ଗ୍ରସ୍ତ । ସୁତରାଂ ପୁଅମାନଙ୍କ ମଧ୍ୟରେ ରବୀନ୍ଦ୍ରନାଥଙ୍କ ଛଡ଼ା ଜମିଦାରୀ ଦେଖିବା ପାଇଁ ଆଉ କେହି ନାହିଁ ।

ଜମିଦାରୀ କାମ ଶିଖିବା ପାଇଁ ରବୀନ୍ଦ୍ରନାଥଙ୍କୁ କଲିକତା ସିରସ୍ତାରେ ବସିବାକୁ ହେଲା । ପରେ ଉତ୍ତରବଙ୍ଗ ଓ ଶିଲାଇଦହକୁ ଯିବାକୁ ପଡ଼ିଲା । ସେଠାରେ ନଦୀ ଘାଟରେ ନୌକାରେ ରହନ୍ତି । ଜୀବନର ନୂତନ ଅଭିଜ୍ଞତା ମନ୍ଦ ଲାଗୁ ନଥାଏ । କବି ଲେଖିଛନ୍ତି 'ପୃଥିବୀ ବାସ୍ତବିକ୍ କି ଆଶ୍ଚର୍ଯ୍ୟ ସୁନ୍ଦରୀ ତାହା କଲିକତାରେ ରହିଲେ ଭୁଲିଯିବାକୁ ପଡ଼େ' । ନୂତନ ପରିବେଶରେ ନୂତନ ରଚନା ଲେଖିବାର ପ୍ରେରଣା ଚିରକାଳ ପାଇଛନ୍ତି । ସାହାଦପୁରୀର ନିର୍ଜନ କୋଠିରେ ସେ ସୁଯୋଗ ଥିଲା; ଏଠାରେ ବସି ଲେଖିଲେ 'ବିସର୍ଜନ' ନାଟକ [୧୨୯୬ ମାଘ-ଫାଲ୍ଗୁନ] । ଉତ୍ସର୍ଗ କଲେ ସ୍ନେହର

ସୁରେନ୍ଦ୍ରନାଥଙ୍କୁ; କାରଣ ସେ ଖଣ୍ଡିଏ ଖାତା ନେଇ ନାଟକ୍ ରଚନା କରିବାକୁ ଅନୁରୋଧ କରିଥିଲେ । ଉତ୍ସର୍ଗ ପତ୍ରରେ ଅଛି—

‘ଚୋର ହାତେ ବାନ୍ଧା ଖାତା,
ଚାରି ଶ’ ଖାନେକ ପାତା
ଅକ୍ଷରେତେ ଫେଲିଯାଚ୍ଛି ଢେକେ’

‘ବାଳକ’ରେ ପ୍ରକାଶିତ ‘ରାଜର୍ଷି’ ଉପନ୍ୟାସର ପ୍ରଥମାଂଶ ନେଇ ‘ବିସର୍ଜନ’ ଲେଖା ହେଲା । ନାଟକର କେତେଗୁଡ଼ିଏ ଚରିତ୍ର ନୂତନ, ଯେପରି ଗୁଣବତୀ ଅପର୍ଣ୍ଣା, ନୟନରାୟ, ଚାନ୍ଦ ପାଲ ପ୍ରଭୃତି । ରାଜର୍ଷିର ‘ବିଲ୍ୱନ’ ବିସର୍ଜନ ନାଟକରେ ଅନୁପସ୍ଥିତ; ଏପରି ଆହୁରି ଅନେକ ଅଛି ।

‘ବିସର୍ଜନ’ ପ୍ରକାଶ ନେଇ ମନ ଯେତେବେଳେ ଉତ୍ତେଜିତ ଠିକ୍ ସେହି ସମୟରେ ରାଷ୍ଟ୍ରନୀତିର କାଳ ବୈଶାଖୀ ଆସି ସାମୟିକ ଭାବରେ ସମସ୍ତ ଓଲଟ ପାଲଟ କରି ଦେଲା । ୧୮୯୦ ଖ୍ରୀଷ୍ଟାବ୍ଦ । ବିଷୟ ହେଉଛି—ବଡ଼ଲାଟଙ୍କର କର୍ମ ସଂସଦରେ ମୁଷ୍ଟିମେୟ ସଦସ୍ୟ ଥାଆନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶ ଇଂରେଜ, ସେଠାରେ ଭାରତୀୟମାନଙ୍କର ସଂଖ୍ୟା ବୃଦ୍ଧି କରାଯାଇ ପାରିବ କି ନାହିଁ, ଥିଲା ସେ ଦିନର ବ୍ରିଟିଶ ଶାସକମାନଙ୍କର ପ୍ରଶ୍ନ । ଏହାଛଡ଼ା ସରକାରୀ ଉଚ୍ଚ ପଦରେ ଭାରତୀୟମାନଙ୍କର ନିଯୁକ୍ତିର ବୈଚିତ୍ର୍ୟ ସଂପର୍କରେ ଇଂରେଜ ମହଲରେ ଗବେଷଣା ଚାଲୁଥିଲା ।

ରବୀନ୍ଦ୍ରନାଥ ଭାରତ ସରକାରଙ୍କ ନୀତିର ପ୍ରତ୍ୟକ୍ଷ ସମାଲୋଚନା କରି ଏମାରଲେଣ୍ଡ ଥିଏଟରରେ ମନ୍ତ୍ରୀ ଅଭିଷେକ ପ୍ରବନ୍ଧ [୧୮୯୦ ମେ ୧୫] ପଢ଼ିଲେ । ତାଙ୍କର ଯୁକ୍ତି ଥିଲା ଯେ ଗଭର୍ଣ୍ଣମେଣ୍ଟ ଦ୍ୱାରା ମନ୍ତ୍ରୀ ନିଯୁକ୍ତି ଅପେକ୍ଷା ସାଧାରଣ ଲୋକଙ୍କ ଦ୍ୱାରା ମନ୍ତ୍ରୀ ଅଭିଷେକ ଅନେକ କାରଣରୁ ଆମର ପ୍ରାର୍ଥନୀୟ ମନେହୁଏ—ଅର୍ଥାତ୍ ଗଣତନ୍ତ୍ର ସପକ୍ଷରେ ପ୍ରବଳ ଓକିଲାତି । ଏହି ପ୍ରବନ୍ଧପାଠର ପ୍ରାୟ ପଚିଶ ବର୍ଷ ପରେ କବି ଲେଖିଛନ୍ତି, ‘ଯେତେବେଳେ ମନ୍ତ୍ରୀ ଅଭିଷେକ ଲେଖିଥିଲି ତାହା ପରେ ସମୟ ବଦଳି ଯାଇଛି ।······ସେତେବେଳେ ରାଜ ଦ୍ୱାରରେ ଭିକ୍ଷା ଦାବୀ

ଥିଲା, ଅତ୍ୟନ୍ତ ସଂକୁଚିତ । ଆମେ ଥିଲୁ ଶିକୁଳିବନ୍ଧା କାକତୁଆ, ଡେଣାପିଟି ଚିତ୍କାର କରୁଥିଲୁ । ପାଦରୁ ଶିକୁଳି ଆଉ ଇଞ୍ଚେ ଲମ୍ବା କରିଦେବା ପାଇଁ । ଆଜି ଦଉଡ଼ି କମ୍ବା ଶିକୁଳି କଥା କହୁନି— ଡେଣା ମେଲାଇ ଅବାଧ ସ୍ୱରାଜ କଥା କହୁଛି । ସେତେବେଳେ ସେହି ଦୁଇ ଇଞ୍ଚ ମାପର ଦାବୀ ପାଇଁ ରାଜପୁରୁଷଙ୍କର ମୁଣ୍ଡ ଗରମ ହୋଇ ଯାଇଥିଲା । ମୁଁ ସେ ଲାଲ ଆଖିର ଜବାବ ଦେଇଥିଲି ଗରମ ଭାଷାରେ । କିନ୍ତୁ ମନେ ରଖିବାକୁ ହେବ ଯେ ଏହାଥିଲା ପରିମିତ ଭିକ୍ଷାପ୍ରାର୍ଥୀମାନଙ୍କ ତରଫରୁ ସେ କାଳର ଉତ୍କଳିତ ।'

(୨୩)

ନଗରର ଉତ୍ତେଜନା ପରେ କବି ବୋଲପୁର ଚାଲି ଆସିଲେ । ସେଠାରେ ପ୍ରାନ୍ତର ମଝିରେ ଶାନ୍ତିନିକେତନ ନାମରେ ଯେଉଁ ଦୋତାଲା ଘର ଥିଲା ତାକୁ କେନ୍ଦ୍ର କରି ଦୁଇବର୍ଷ ଆଗରୁ ଆଶ୍ରମ ପ୍ରତିଷ୍ଠିତ ହୋଇଥାଏ (୧୮୮୮ ଅକ୍ଟୋବର ୧୯) । ଏହାର କିଛିଦିନ ପୂର୍ବରୁ ଶାନ୍ତିନିକେତନ ସଂପର୍କରେ ମହର୍ଷିଙ୍କର ଉଇଲ ସଂପାଦିତ ହୋଇଥିଲା (୧୮୮୮ ମାର୍ଚ୍ଚ) । ମନ୍ଦିର ସେ ପର୍ଯ୍ୟନ୍ତ ତିଆରି ହୋଇନି ।

ଆଜିଠାରୁ ସତୁରି ବର୍ଷ ପୂର୍ବର ଶାନ୍ତିନିକେତନ ବର୍ତ୍ତମାନ କଳ୍ପନା ବି କରାଯାଇପାରେ ନାହିଁ । 'ଶାନ୍ତିନିକେତନ' ଦ୍ୱିତଳ ଗୃହଟି ଛଡ଼ା ଅନ୍ୟ କୌଣସି ଘରଦ୍ୱାର ନଥିଲା । ବୋଲପୁରରୁ ଆସିବା ରାସ୍ତାରେ ଗୁରି ପାଞ୍ଚ ଖଣ୍ଡ ଚାଳ ଘର ଛଡ଼ା କିଛି ଆଖିରେ ପଡ଼ୁ ନଥିଲା । ଏଥର ଶାନ୍ତିନିକେତନ ଆସିବା ପରେ କବିଙ୍କ ସହିତ କାବ୍ୟ ଲକ୍ଷ୍ମୀଙ୍କର ସାକ୍ଷାତ ହେଲା; କେତୋଟି କବିତା ଲେଖିଲେ—ତାହା ମଧ୍ୟରେ 'ମାନସୀ' କାବ୍ୟର 'ମେଘଦୂତ' ବିଶେଷ ସ୍ମରଣୀୟ ।

ବୋଲପୁରରୁ ଜମିଦାରୀକୁ ଯିବାକୁ ପଡ଼ଲା । କିନ୍ତୁ ସେଠାରେ ମନ ଲଗୁ ନଥିଲା । ନୀରବରେ ମୌଲବୀର ବକ୍ତୃତା, ନାଏବଙ୍କର କୈଫିୟତ, ପ୍ରଜାଙ୍କର ନାଲିସ ଶୁଣିବାକୁ ପଡ଼େ—ତାହାର ମଝିରେ ସମୟ ପାଇଲେ ଗେଟେଙ୍କର ଫଷ୍ଟ ମୂଳ ଜର୍ମାନୀ ସହିତ ମିଳାଇ ପଢ଼ନ୍ତି । ଏହି ପ୍ରତିକୂଳ ଆବହାଓ୍ୱାରେ ପଢ଼ା ଆଗେଇ ପାରେନାହିଁ । ଗୋଟିଏ ନାଟକର ଯୋଜନା କଲେ -- ତା ବି ହେଲାନି । ମନ ଚଳ ଚଞ୍ଚଳ । ମଝିଆ ଭାଇଙ୍କ ପାଖକୁ ସୋଲାପୁର ଗଲେ । ସେଠାରେ ଯାଇ ଶୁଣିଲେ ଭାଇ ଓ ଲୋକେନ୍ ପାଲିତ ପରିବାର ସହିତ ବିଲାତ ଯାଉଛନ୍ତି । କବିଙ୍କର ମନ ଚଞ୍ଚଳ ହେଲା—ସେମାନଙ୍କ ସାଙ୍ଗରେ ବିଲାତ ଗୁଲିଲେ । ଉଦ୍ଭ୍ରାନ୍ତ ଶୃଙ୍ଖଳ କବିତାରେ ନିଜର ମନକଥା ବ୍ୟକ୍ତ କରି କହିଛନ୍ତି –

ଜଗତ ବେଡ଼ିୟା ନିୟମେର ପାଶ
ଅନିୟମ ଶୁଧୁ ଆମି ।
ବାସା ବେଁଧେଆଛେ କାଛେ କାଛେ ସବେ
କତ କାଜ କରେ କତ କଲରବେ,
ଚିରକାଲ ଧ'ରେ ଦିବସ ଚଲିଛେ ଦିବସେର ଅନୁଗାମୀ,
ଶୁଧୁ ଆମି ନିଜ ବେଗ ସାମାଲିତେ ନାରି
ଛୁଟେଛି ଦିବସ ଯାମୀ !

ଏହା ନିଛକ୍ କାବ୍ୟ ନୁହେଁ—ରବୀନ୍ଦ୍ର ଜୀବନର ଯଥାର୍ଥ ତଥ୍ୟ । ସ୍ୱୀକାର କରିବାକୁ ହେବ ଯେ କବିବାଣୀ 'ଆମି ସୁଦୂରେର ପିୟାସୀ' – ଅକ୍ଷରେ ଅକ୍ଷରେ ସତ୍ୟ ।

ପୁଣିଥରେ ବିଲାତ ଗଲେ ତିନିମାସ ପାଇଁ (୧୮୯୦-ଅଗଷ୍ଟ ୨୨-ନଭେମ୍ବର ୩) । ସେଥିମଧ୍ୟରୁ ଜାହାଜରେ ଯିବା ଆସିବାରେ ଗଲା ବୟାଳିଶ ଦିନ । ଲଣ୍ଡନରେ ଅବସ୍ଥାନ ମାତ୍ର ଏକମାସ । ହଠାତ୍ ବିଲାତ ଯିବାପାଇଁ ଯେପରି ମନର ଅସ୍ଥିରତା, ହଠାତ୍ ଫେରିଆସିବାର କାରଣ ମଧ୍ୟ ସେହିପରି ରହସ୍ୟମୟ । ଏହି ସାଢ଼େ ତିନିମାସ ଲଣ୍ଡନ ଯାତ୍ରା ଫଳରେ ବଙ୍ଗଳା ସାହିତ୍ୟ ପାଇଲା 'ୟୁରୋପ ଯାତ୍ରୀର ଡାଏରି' । ଏପରି ସରସ ରଚନା ପୂର୍ବେ ପ୍ରକାଶିତ ହୋଇ ନଥିଲା ।

ଅଳ୍ପଦିନ ତଳେ 'ୟୁରୋପ ଯାତ୍ରୀର ଡାଏରୀ' ପାଣ୍ଡୁଲିପି 'ବିଶ୍ୱଭାରତୀ' ପତ୍ରିକାରେ ଛପା ହୋଇଛି । ଛପା ବହି ଓ ପାଣ୍ଡୁଲିପି ମଧ୍ୟରେ ଅନେକ ତଫାତ୍ ଦେଖିବାକୁ ମିଳେ । ସାହିତ୍ୟିକ ରବୀନ୍ଦ୍ରନାଥ ବହି ଛପିବା ସମୟରେ ମଣିଷ ରବୀନ୍ଦ୍ରନାଥଙ୍କୁ ସଚେତ ଯେପରି ଯବନିକାର ଅନ୍ତରାଳକୁ ଘଟାଇ ଦେଇଛନ୍ତି । ପାଣ୍ଡୁଲିପି ପଢ଼ିଲେ କବିଙ୍କ ଯୌବନର ଅସଲ ମଣିଷ-ରୂପଟି ମିଳେ— ସାହିତ୍ୟର ଆବରଣରେ ତା'ଙ୍କୁ ସୁନ୍ଦର ଓ ସୌଷ୍ଠବ କରିବାର ଚେଷ୍ଟା ଦେଖାଯାଏ ନାହିଁ ।

ବିଲାତରୁ ଫେରିବାର କେତେକବର୍ଷ ପୂର୍ବ ଓ ପରର ରଚିତ କବିତାଗୁଡ଼ିକୁ ସଙ୍କଳନ କରି 'ମାନସୀ' (୧୮୯୦ ଡିସେମ୍ବର) ପ୍ରକାଶ କଲେ । 'ମାନସୀ' କାବ୍ୟ କେବଳ ଯେ, ରବୀନ୍ଦ୍ର-ମାନସର ନୂତନ ରୂପାୟନ ତା ନୁହେଁ, ବଙ୍ଗଳା ଛନ୍ଦର ପରମ ମୁକ୍ତ ଓ ସ୍ୱଚ୍ଛନ୍ଦ ଗତି । ଏହି କାବ୍ୟରେ 'ଉପହାର' ନାମରେ ଗୋଟିଏ କବିତା ଅଛି; କିନ୍ତୁ ତାହା କାହା ଉଦ୍ଦେଶ୍ୟରେ ରଚିତ କହିବା କଠିନ । ମୃଣାଳିନୀ ଦେବୀଙ୍କ ଉଦ୍ଦେଶ୍ୟରେ ହୋଇପାରେ— ନହୋଇ ବି ପାରେ ।

(୨୪)

୧୮୯୧ ଖ୍ରୀଷ୍ଟାବ୍ଦ— । ରବୀନ୍ଦ୍ରନାଥଙ୍କର ବୟସ ତିରିଶ ବର୍ଷ । ତିନିବର୍ଷ ପୂର୍ବରୁ ଏହି ତିରିଶବର୍ଷ ବୟସର ଆଗମନ ଉପଲକ୍ଷେ କବି ଲେଖିଥିଲେ, 'ତିରିଶ ଅର୍ଥାତ୍ ଯେଉଁ ଅବସ୍ଥାରେ ମଣିଷ ରସ ଅପେକ୍ଷା ଶସ୍ୟ ପ୍ରତ୍ୟାଶା କରେ ଅଧିକ ।' ଶସ୍ୟର ସମ୍ଭାବନା ନ ଥିବାରୁ ସତେଇଶବର୍ଷ ବୟସରେ କବି ଅବଶୋଷ କରିଥିଲେ । ତିରିଶବର୍ଷ ହେବା ସଙ୍ଗେ ସଙ୍ଗେ ଦେଖାଗଲା ଅପ୍ରତ୍ୟାଶିତ ପ୍ରାଚୁର୍ଯ୍ୟ ।

ଜମିଦାରୀକୁ ଯିବାଆସିବା କରୁଥାନ୍ତି; ସ୍ଥାୟୀଭାବରେ ରହି ପାରନ୍ତିନି । କଲିକତାର ମାୟାମମତାଯୋଗୁଁ ସେଠାକୁ ଚାଲିଯାଆନ୍ତି । ଥରେ ଆସି ଶୁଣିଲେ ବନ୍ଧୁମହଲରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରିବାର ଆୟୋଜନ ଚାଲିଛି; ସେ ମଧ୍ୟ ଖୁବ୍ ଉତ୍ସାହର ସହିତ ଯୋଗଦେଲେ । ବନ୍ଧୁ ଶ୍ରୀଶ ଚନ୍ଦ୍ରଙ୍କୁ ଲେଖିଥିଲେ 'ଆମ୍ଭେ-ମାନେ ହିତବାଦୀ ନାମରେ ଖଣ୍ଡିଏ ସାପ୍ତାହିକ ସମ୍ବାଦପତ୍ର ବାହାର କରୁଛୁ । ଗୋଟିଏ ବଡ଼ କମ୍ପାନୀ କରି କାର୍ଯ୍ୟରେ ଅଗ୍ରସର ହେବାକୁ ଯାଉଛୁ ।' ଓଡ଼ିଆ ବିଭାଗର ଭାର ବଙ୍କିମ ବାବୁଙ୍କୁ ଦିଆଗଲା । ରବୀନ୍ଦ୍ରନାଥ ହେଲେ ସାହିତ୍ୟ ବିଭାଗର ସମ୍ପାଦକ ।

ନୂତନ ପତ୍ରିକାର ପ୍ରେରଣା ଫଳରେ ଲେଖନୀରେ ନୂତନ ଶକ୍ତିର ସଞ୍ଚାର ହେଲା । ସାପ୍ତାହିକ ହିତବାଦୀର କଲ୍ୟାଣରୁ କବି କ୍ଷୁଦ୍ରଗଳ୍ପ ରଚନା ଆରମ୍ଭ କଲେ । ଭାରତୀରେ କ୍ଷୁଦ୍ରଗଳ୍ପର ଆଭାସ ମାତ୍ର ଥିଲା—'ଘାଟର କଥା' ଓ 'ରାଜପଥର କଥା' । ଏଣିକି କ୍ଷୁଦ୍ର ଗଳ୍ପ ପରିଣତ ରୂପ ପାଇଲା । ପଲ୍ଲୀଗ୍ରାମରେ ବୁଲି ଗତ କେତେ-ବର୍ଷ ଭିତରେ ରବୀନ୍ଦ୍ରଙ୍କର ନାନା ଅଭିଜ୍ଞତା ହୋଇଥିଲା । ସାଧାରଣ ମଣିଷ—ପଲ୍ଲୀ ମଣିଷକୁ ଦେଖିବାର ସୁଯୋଗ ଆଗରୁ ପାଇନଥିଲେ । ଏଣିକି ସେମାନଙ୍କୁ କେବଳ ଦେଖିଲେ ନାହିଁ, ସେମାନଙ୍କୁ ବୁଝିବାକୁ ଚେଷ୍ଟା କଲେ । ସେହି ଅଭିଜ୍ଞତା ରୂପାୟିତ ହେଲା କ୍ଷୁଦ୍ରଗଳ୍ପ ଜରିଆରେ । ପଲ୍ଲୀର ଚାଷୀ ଅଚାଷୀ ଲୋକେ ହେଲେ ଗଳ୍ପର ନାୟକ ନାୟିକା । ସାଧାରଣ ମଣିଷକୁ ନେଇ ଗଳ୍ପରଚନା ବଙ୍ଗଳା ସାହିତ୍ୟରେ ଏହାହିଁ ପ୍ରଥମ । ସେମାନଙ୍କର ସୁଖଦୁଃଖ, ହସ କାନ୍ଦ ଆଗରୁ ଏପରି କେହି ଲେଖିନଥିଲେ ।

ହିତବାଦୀରେ କ୍ରମାନ୍ୱୟରେ ଛ'ଟି ଗଳ୍ପ ପ୍ରକାଶିତ ହେଲା—ଦେଣାପାଉଣା, ଗିହ୍ନଣୀ, ପୋଷ୍ଟମାଷ୍ଟର, ତାରାପ୍ରସନ୍ନଙ୍କର କୀର୍ତ୍ତି, ବ୍ୟବଧାନ ଓ ରାମକହ୍ନାଇର ନିର୍ବୁଦ୍ଧିତା । ଗଦ୍ୟରଚନା ମଧ୍ୟରେ 'ଅକାଳ ବିବାହ' ନାମକ ପ୍ରବନ୍ଧଟି ସାହିତ୍ୟ ବଜାରରେ ବେଶ ଉତ୍ତେଜନା ଆଣିଥିଲା । ଲେଖାଟି ଥିଲା ଚନ୍ଦ୍ରନାଥ ବାବୁଙ୍କର ବିବାହ ବିଷୟକ ମତବାଦ ନେଇ ଯୁକ୍ତିତର୍କ । ଏହି ପ୍ରବନ୍ଧରେ କବି କହିଛନ୍ତି ଯେ, ଅକାଳ ବିବାହ କହିଲେ ଯେ କେବଳ ହିନ୍ଦୁ-

ମାନଙ୍କର ଅସମୟରେ ବିବାହ ତାହା ନୁହେଁ, ପୁରୁଷ ଯଦି ଅର୍ଥନୈତିକ ସ୍ୱାଧୀନତା ନ ପାଇ ବିବାହ କରେ ତାହାବି ଅକାଳ ବିବାହ'। ଚନ୍ଦ୍ରନାଥ କହିଥିଲେ ଯେ, ରବୀନ୍ଦ୍ରନାଥଙ୍କଠାରେ 'ୟୁରୋପୀୟ ଢାଞ୍ଚା'ର ପ୍ରକୃତି ଦେଖାଯାଏ । ରବୀନ୍ଦ୍ରନାଥଙ୍କ ସମ୍ପର୍କରେ ଚନ୍ଦ୍ରନାଥଙ୍କର ଏ ପ୍ରକାର ଉକ୍ତିକୁ ଉଡ଼ାଇ ଦେଇ ହେବନି । ରବୀନ୍ଦ୍ରନାଥଙ୍କର ପ୍ରକୃତି ମଧ୍ୟରେ ଆଧୁନିକତାକୁ ଗ୍ରହଣ କରିବା ଭଳି ଯେଉଁ ପ୍ରେରଣା ଥିଲା ତାହାକୁ ୟୁରୋପୀୟ ଛଡ଼ା କ'ଣ କୁହାଯାଇପାରେ ? ରବୀନ୍ଦ୍ରନାଥ କହିଲେ, 'ହିନ୍ଦୁ ପ୍ରକୃତି ସହିତ ୟୁରୋପୀୟ ପ୍ରକୃତିର କୌଣସି ବିରୋଧ ନାହିଁ । କେବଳ ବର୍ତ୍ତମାନ ହୀନଦଶାଗ୍ରସ୍ତ ଭାରତର, ନିର୍ଜୀବ ଅନ୍ଧାନୁସରଣ ଓ କମ୍ପୁଟିତ କମାକାର ବିକୃତ ହିନ୍ଦୁ ପ୍ରଣିଆ ଯଥାର୍ଥରେ ଅହିନ୍ଦୁ ।'

(୨୫)

ହିତବାଦୀ ସଙ୍ଗରେ କବିଙ୍କର ସମ୍ପର୍କ ମାତ୍ର ତିନିମାସ । କର୍ତ୍ତୃପକ୍ଷଙ୍କର ତାଗିଦା ଅନୁଯାୟୀ ସାରବାନ୍ ସାହିତ୍ୟ ଲେଖିବା ପାଇଁ କବି ନାରାଜ ହେଲେ । ପତ୍ରିକା ସହିତ ସମ୍ପର୍କ ଛିନ୍ନହେଲା । ବୋଧହୁଏ ବାଂଙ୍କରେ ଲେଖିଥିଲେ 'ସାହିତ୍ୟର ନମୁନା' ଓ 'ପ୍ରତ୍ନତତ୍ତ୍ୱ' । ସୁରେଶଚନ୍ଦ୍ର ସମାଜପତିଙ୍କ ସମ୍ପାଦିତ ନୂତନ 'ସାହିତ୍ୟ' ମାସିକ ପତ୍ରିକାରେ ଏହା ପ୍ରକାଶିତ ହେଲା (ବଙ୍ଗାବ୍ଦ ୧୨୯୮)—ଭାବଧାରା ଥିଲା ବସ୍ତୁବାଦୀ ସାହିତ୍ୟର ଆଦର୍ଶ ସମ୍ପର୍କରେ ।

କଲିକତାରେ ସ୍ଥିର ହୋଇ ରହି ପାରୁ ନଥିଲେ । ଜମିଦାରୀ କାର୍ଯ୍ୟରେ ବାରମ୍ବାର ଉତ୍ତରବଙ୍ଗ ଯିବାକୁ ପଡ଼ୁଥିଲା । ଥରେ ଓଡ଼ିଶା ଯିବାକୁ ପଡ଼ିଲା; ଓଡ଼ିଶାରେ ଦ୍ୱାରକାନାଥ ଠାକୁର ନାମଙ୍କ ଅଫିସର ଥିବା ସମୟରେ ଅନେକ ଭୂସମ୍ପତ୍ତି କ୍ରୟ କରିଥିଲେ । ସବୁ ସମ୍ପତ୍ତି ଇଜମାଇଲରେ ଥାଏ । ଇଜମାଇଲ କହିଲେ

ଦେବେନ୍ଦ୍ରନାଥଙ୍କର ଅଂଶ—ପରେ ଯାହାର ମାଲିକ ହେଲେ ଗଗନେନ୍ଦ୍ରନାଥ ପ୍ରଭୃତି । ସେମାନଙ୍କର ଘର ଥିଲା 'ପାଞ୍ଚନମ୍ବର ଘର'— ବର୍ତ୍ତମାନ ସେଠାରେ ରବୀନ୍ଦ୍ର ଭାରତୀ । ଦେବେନ୍ଦ୍ରନାଥ ବହୁକାଳ ପୂର୍ବରୁ ଗିରୀନ୍ଦ୍ରନାଥଙ୍କର ପିଲାମାନଙ୍କର ଅଂଶ ପୃଥକ୍ କରି ଦେଇଥିଲେ । କିନ୍ତୁ ଭ୍ରାତୃଷ୍ପୁତ୍ର ମାନଙ୍କର ଅକାଳ ମୃତ୍ୟୁ ପରେ ଗଗନେନ୍ଦ୍ର ପ୍ରମୁଖ ନାବାଳକମାନଙ୍କର ସଂପତ୍ତି ଇଜମାଇଲରେ ଦେଖାଶୁଣା କରୁଥିଲେ । ଓଡ଼ିଶାର ଜମିଦାରୀ ଥିଲା ହେମେନ୍ଦ୍ରନାଥ ପ୍ରଭୃତିଙ୍କର । ହେମେନ୍ଦ୍ରନାଥ ପ୍ରଭୃତିଙ୍କର ଅକାଳ ମୃତ୍ୟୁ ପରେ ସେମାନଙ୍କର ଅଂଶ ମଧ୍ୟ ମହର୍ଷି ପୃଥକ୍ କରିଦେଲେ । କିନ୍ତୁ ସମସ୍ତ ଜମିଦାରୀର ଦେଖାଶୁଣା ଏକାଠି ହେଉଥିଲା । ଏହି କାର୍ଯ୍ୟର ତାଗିଦ୍‌ରେ ରବୀନ୍ଦ୍ରନାଥଙ୍କୁ ଓଡ଼ିଶା ଯିବାକୁ ପଡ଼ିଲା । ଆଜିକାଲି ହାଓଡ଼ାରେ ରାତିଗାଡ଼ି ଧରିଲେ ସକାଳେ କଟକ ବା ପୁରୀରେ ପହଞ୍ଚି ହୁଏ । କିନ୍ତୁ ସେତେବେଳକୁ ରେଲ ରାସ୍ତା ହୋଇନ; ନଦୀ ଓ ସମୁଦ୍ର ପଥରେ ଷ୍ଟିମର ଓ ନୌକା ଥିଲା ଯାନବାହନ,—ତା ଛଡ଼ା ଶ୍ରୀକ୍ଷେତ୍ର ପର୍ଯ୍ୟନ୍ତ କେବଳ ଚାଲିବାଟ ।

ଛିନ୍ନପତ୍ର ଗ୍ରନ୍ଥରେ ଓଡ଼ିଶା ସମ୍ପର୍କରେ ସୁନ୍ଦର ଓ ବିସ୍ତାରିତ ବର୍ଣ୍ଣନା ଅଛି । ପାଣ୍ଡୁଆ ଗ୍ରାମର କଚେରୀ ଘରେ କିଛିଦିନ ରହିଲେ । ସେହି ନଡ଼ିଆ ଘରେ ବସି ରବୀନ୍ଦ୍ରନାଥ ତାଙ୍କର କାବ୍ୟନାଟିକା 'ଚିତ୍ରାଙ୍ଗଦା'ର ଖସଡ଼ା କରିଥିଲେ (୧୮୯୧) । କିଛି ଦିନ ଆଗରୁ ମନଭିତରେ 'ଅନଙ୍ଗ-ଆଶ୍ରମ'ର କଳ୍ପନା ମଧ୍ୟ କରୁଥିଲେ ।

ଓଡ଼ିଶାରୁ ଫେରି ପୁନର୍ବାର ଉତ୍ତରବଙ୍ଗ ଜମିଦାରୀ ଦେଖିବାକୁ ଯିବାକୁ ପଡ଼ିଲା । କଲିକତା ସମାଜରୁ ଏ ନିର୍ବାସନ ଭଲ ଲାଗୁନଥାଏ । ନୌକାଘରେ ଥାଆନ୍ତି, ଦିନେ ଲେଖିଲେ, 'ଉପବାସ ରହି ରାତିରେ ଆକାଶକୁ ଚାହିଁ ବିନିଦ୍ର ରହେ, ସର୍ବଦା ମନ ଭିତରେ ଯୁକ୍ତିତର୍କ କରେ, ପୃଥିବୀ ଓ ମନୁଷ୍ୟ ହୃଦୟକୁ କଥାରେ କଥାରେ ବଞ୍ଚିତ କରେ, ସ୍ୱେଚ୍ଛାରଚିତ ଦୁର୍ଭିକ୍ଷରେ ଜୀବନ ତ୍ୟାଗ କରିବାକୁ ଚାହେଁ ନା । ଦେବତାଙ୍କ ପରି ଅଦୃଶ୍ୟ ହେବା ମୋର କାମ ନୁହେଁ ।'

ଏହା ତରୁଣବର୍ଷ ବୟସ୍କ ସୁସ୍ଥ ସବଳ ଯୁବକର ଭାବନା—ଏହା ତା'ର ଚରମବାଣୀ କି ନୁହେଁ, କିମ୍ବା ଏ ବାଣୀର ଦୂରଗାମୀ ତାତ୍ପର୍ଯ୍ୟ କ'ଣ, ତାହା ରବୀନ୍ଦ୍ରନାଥଙ୍କର ସମଗ୍ର ଜୀବନର ଆଲୋଚନାରେ କ୍ରମଶଃ ପରିସ୍ଫୁଟ ହେବ ।

(୨୨)

ଓଡ଼ିଶା ଓ ଉତ୍ତରବଙ୍ଗରୁ ଫେରି କଲିକତା ଆସି ଦେଖିଲେ ଯେ ଭ୍ରାତୁଷ୍ପୁତ୍ରମାନେ ଘରୁ ଖଣ୍ଡିଏ ମାସିକ ପତ୍ରିକା ବାହାର କରିବା ଆୟୋଜନରେ ବ୍ୟସ୍ତ । ଉଦ୍ୟୋକ୍ତାମାନଙ୍କର ଅଗ୍ରଣୀ ସୁଧୀନ୍ଦ୍ରନାଥ—ଦ୍ୱିଜେନ୍ଦ୍ରନାଥଙ୍କର କନିଷ୍ଠ ପୁତ୍ର । ବି. ଏ ପାଶ କରିଥାନ୍ତି, ସାହିତ୍ୟ ରସିକତା ଥାଏ, ସେ ହିଁ ହେଲେ ସମ୍ପାଦକ । କିନ୍ତୁ ଭ୍ରାତୃଷ୍ପୁତ୍ରମାନେ ଜାଣିଥିଲେ ଯେ ପତ୍ରିକା ପାଇଁ ଖୋରାକ୍ ଯୋଗାଇବେ 'ରବିକକା' । ପତ୍ରିକା ପ୍ରକାଶ ସମ୍ପାଦରେ, ରବୀନ୍ଦ୍ରନାଥଙ୍କର ଖୁବ୍ ଉତ୍ସାହ ମିଳିଲା । କାରଣ ସବୁ ଦିଗରୁ ଗୋଟିଏ ଆଦର୍ଶ ସ୍ଥାନୀୟ ମାସିକ ପତ୍ରିକା ପ୍ରକାଶ କରିବାର ଇଚ୍ଛା ଥିଲା । ଅନେକ କଥା ସ୍ପଷ୍ଟ କହିବା ଦରକାର; କିନ୍ତୁ ବଡ଼ ଲେଖକ ମାନେ ନୀରବ । ତାହାଛଡ଼ା ସେମାନଙ୍କ ମଧ୍ୟରୁ ଅନେକ ପୁରୁଣା କଥାକୁ ଘଷିମାଜି ସାହିତ୍ୟ ସୃଷ୍ଟି କରିଥିଲେ । ସାହିତ୍ୟରୁ ସୌନ୍ଦର୍ଯ୍ୟ-ବୈଚିତ୍ର୍ୟ ଓ ସତ୍ୟ ଲୋପ ପାଇଥାଏ । ସେଥିପାଇଁ ପତ୍ରିକା ଜରିଆରେ କବି ଖୁବ୍ କଟୁ ସମାଲୋଚନା କଲେ । ରବୀନ୍ଦ୍ରନାଥ ସବୁଜପତ୍ର ଯୁଗରେ ମଧ୍ୟ ଏହିପ୍ରକାର ମନ୍ତବ୍ୟ ଦେଇଥିଲେ ।

ମାର୍ଗଶୀର ମାସରେ ନାନାବିଧ ବିଚିତ୍ର ରଚନା ଘେନି 'ସାଧନା' ପ୍ରକାଶିତ ହେଲା । ରବୀନ୍ଦ୍ରନାଥଙ୍କର ରଚନାହିଁ ବେଶୀ—ଗଳ୍ପ, ଡାଏରି, ପ୍ରବନ୍ଧ, ପୁସ୍ତକ ସମାଲୋଚନା ପ୍ରଭୃତି । ବର୍ଷକ ମଧ୍ୟରେ ଏଗାରଟି ଗଳ୍ପ ଲେଖିଲେ (୧୮୯୧-୯୨)—ହିତବାଦୀ ଗଳ୍ପ ଧାରାର ଅନୁକ୍ରମ କୁହାଯାଇ ପାରେ । ଅଧିକାଂଶ

ଗଳ୍ପ ବିୟୋଗାନ୍ତକ । ପ୍ରଥମ ଗଳ୍ପ 'ଖୋକାବାବୁର ପ୍ରତ୍ୟାବର୍ତ୍ତନ' । ପ୍ରମତ୍ତ ପଦ୍ମାର ଛବି ଦେଇ ଗଳ୍ପର ଆରମ୍ଭ, ମଣିଷ ଜୀବନର ବ୍ୟର୍ଥ ବେଦନାରେ ତା'ର ଶେଷ । ସମ୍ପତ୍ତି ସମର୍ପଣ, କଂକାଳ, ଜୀବିତ ଓ ମୃତ, ସ୍ୱର୍ଣ୍ଣମୃଗ, ଜୟ ପରାଜୟ—ସମସ୍ତ ବିୟୋଗାତ୍ମକ । 'ଦାଲିୟା', ଇତିହାସର କ୍ଷୀଣଧାରା ଅବଲମ୍ବନରେ ଲିଖିତ—ନିଦାରୁଣ ଭାବରେ ବିୟୋଗାତ୍ମକ ହେଉ ହେଉ melodramatic ଭାବେ ମିଳନାତ୍ମକ ହୋଇଛି । (ଏହି ଗଳ୍ପଟିକୁ କେନ୍ଦ୍ର କରି ବିଲାତରେ ଜଣେ ଇଂରେଜ 'The Mobarani of Arakan ନାଟକ ଲେଖିଥିଲେ ଓ ତାହାର ଅଭିନୟ ମଧ୍ୟ ସେଠାରେ ହୋଇଥିଲା) । 'ତ୍ୟାଗ' ଗଳ୍ପର ନାୟକ ଆଶ୍ଚର୍ଯ୍ୟ ସାହସ ସହିତ ଅଭିଭାବକଙ୍କୁ କହିଲା ଯେ, ସେ ସ୍ତ୍ରୀକୁ ତ୍ୟାଗ କରିବ ନାହିଁ ଓ ଜାତି ମାନିବ ନାହିଁ । 'ଜାତିମାନେ ନାହିଁ' କହିବାର ସତ୍ ସାହସ ଲେଖକଙ୍କ ଲେଖନୀରୁ ସ୍ପଷ୍ଟ । ଏପର୍ଯ୍ୟନ୍ତ ଆଦିବ୍ରାହ୍ମ ସମାଜ ମଧ୍ୟ ଜାତି ପ୍ରଥା ମାନୁଥିଲେ ଓ ରବୀନ୍ଦ୍ରନାଥ ଏହି ସଂସ୍କାରରୁ ମୁକ୍ତ ନଥିଲେ ।

ବୃଦ୍ଧ ବୟସରେ କବି 'ମୁକ୍ତିର ଉପାୟ' ଗଳ୍ପଟିର ନାଟ୍ୟରୂପ ଦେଇଥିଲେ ଓ 'ଏକଟି ଆଷାଢ଼େ ଗଳ୍ପ' ଅବଲମ୍ବନରେ 'ତାସେର ଦେଶ' ଲେଖିଥିଲେ ।

(୨୨)

ମାର୍ଗଶିର ମାସରେ 'ସାଧନା' ପ୍ରକାଶିତ ହେଲା । ପୌଷ ମାସରେ ବୋଲପୁର-ଶାନ୍ତି ନିକେତନରେ ବ୍ରହ୍ମ ମନ୍ଦିର ପ୍ରତିଷ୍ଠିତ ହେଲା (ବଙ୍ଗାବ୍ଦ ୧୨୯୮ ପୌଷ ୭); ଉତ୍ସବରେ ରବୀନ୍ଦ୍ରନାଥ ଉପସ୍ଥିତ ରହି ସଂଗୀତ ଗାନ କରିଥିଲେ । କିନ୍ତୁ ଉପାସନାଦି କାର୍ଯ୍ୟରେ ସେ ପର୍ଯ୍ୟନ୍ତ ଜଡ଼ିତ ହୋଇ ନଥିଲେ । ଠିକ୍ ଦଶବର୍ଷ ପରେ କବି ସେହି ପୁଣ୍ୟ ଦିବସରେ ବ୍ରହ୍ମଚର୍ଯ୍ୟାଶ୍ରମ ସ୍ଥାପନ କଲେ ।

ଉତ୍ସବ ପରେ ତାଂକୁ ପୁଣି ଜମିଦାରୀକୁ ଫେରିବାକୁ ପଡ଼ିଲା । ବହୁତ ଦିନ ହେବ କାବ୍ୟ-ଲକ୍ଷ୍ମୀଙ୍କ ସହିତ ସାକ୍ଷାତ ହୋଇନି । ଗତବର୍ଷ 'ମାନସୀ' ପ୍ରକାଶିତ ହୋଇଥିଲା । ଏଥର ଶିଲାଇଦାହରେ ଫାଲ୍‌ଗୁନ ମାସର ଭରା ବସନ୍ତରେ ହଠାତ୍ ଲେଖିଲେ 'ଗଗନେ ଗରଜେ ମେଘ ଘନ ବରଷା'—ଯଦିଓ କେଉଁଠାରେ ବିନ୍ଦୁମାତ୍ର ବାରିପାତ ନାହିଁ ।

ରସର ସୁଅରେ ସୁନାତରୀ ଭାସିଗଲା— ।

କେଉଁ କୁକ୍ଷଣରେ 'ସୋନାରତରୀ' କବିତା ଲେଖିଥିଲେ କେଜାଣି ! ଏହି କବିତା ନେଇ ବଂଗଳା ସାମୟିକ ସାହିତ୍ୟରେ ଯେଉଁ ଅମୃତ ଓ ଗରଳ ଉଦ୍‌ଗୀରିତ ହୋଇଥିଲା, ତାହା ବୋଧ-ହୁଏ ଅନ୍ୟ କୌଣସି ରଚନା ଉପରେ ପୂର୍ବରୁ କିଂବା ପରେ ହୋଇନି । ଆଶ୍ଚର୍ଯ୍ୟର କଥା, ସମାଲୋଚନାର ଝଞ୍ଜା ବହି ଥିଲା ରଚନାର ବହୁବର୍ଷ ପରେ । କବିତାଟି ଥିଲା ଉପଲକ୍ଷ୍ୟ—କବିହିଁ ଥିଲେ ଆକ୍ରମଣର ଲକ୍ଷ୍ୟସ୍ଥଳ । କାରଣ ରବୀନ୍ଦ୍ରନାଥଙ୍କର ବହୁମୁଖୀ ପ୍ରତିଭାର ବୈଶିଷ୍ଟ୍ୟକୁ ଦେଶର ଶିକ୍ଷିତ ସମାଜ ଅଧିକାଂଶ ସ୍ୱୀକାର କରି ନେଇଥିଲେ ବି ଅନ୍ୟ ଏକ ଦଳ ତା'ଙ୍କୁ ହେୟ ପ୍ରମାଣିତ କରିବାରେ ଆଗଭର ଥିଲେ ।

'ସୋନାରତରୀ'ର ଅନେକ କବିତା ଏହି ସମୟରେ ଲେଖା ହୋଇଥିଲା । ଏହା ସଙ୍ଗେ ସଙ୍ଗେ ଗଳ୍ପ ଓ ନାନା ବିଷୟରେ ପଦ୍ୟ ରଚନା ମଧ୍ୟ କରୁଥିଲେ । କିନ୍ତୁ ଯେତେ ପ୍ରକାର ଲେଖା ଲେଖିଲେ ମଧ୍ୟ କବିତା ରଚନାରେ ହିଁ କବି ଆତ୍ମସନ୍ତୋଷ ଲାଭ କରୁଥିଲେ । —'ଗୋଟିଏ କବିତା ଲେଖିଲେ ଯେତେ ଆନନ୍ଦ ହୁଏ, ହଜାର ଗଦ୍ୟ ଲେଖିଲେ ବି ସେପରି ହୁଏ ନାହିଁ ।'

(୨୮)

୧୮୯୨ ଖ୍ରୀଷ୍ଟାବ୍ଦ । କଲିକତାରେ ଭାରତୀୟ ସଂଗୀତ ସମାଜ ସ୍ଥାପିତ ହେଲା । ଏହି ସମାଜ ଥିଲା ଏକାଧାରରେ ବିଲାତୀ କ୍ଲବ

ଓ ଧନୀ ଲୋକମାନଙ୍କର ବୈଠକ । ଏପର୍ଯ୍ୟନ୍ତ ସଂଗୀତ ଓ ଅଭିନୟ ଧନୀମାନଙ୍କର ବୈଠକଖାନାରେ ଆବଦ୍ଧ ଥିଲା— ସର୍ବସାଧାରଣଙ୍କ ପ୍ରବେଶାଧିକାର ନ ଥିଲା । ପରେ ଏହା ଆଶ୍ରୟ ପାଇଲା, ପେଷାଦାର ନାଟ୍ୟ ରଙ୍ଗମଞ୍ଚରେ । ଅବଶ୍ୟ ପଇସା ଥିଲେ ସେଠାରେ ପ୍ରବେଶ କରିବାରେ କାହାରି ବାଧା ନଥିଲା । ଦରବାରୀ ସଂଗୀତ ମଜଲିସ୍ ଓ ପେଶାଦାର ରଙ୍ଗମଞ୍ଚଠାରୁ ସମ୍ପୂର୍ଣ୍ଣ ନୂତନ ପରିବେଶ ମଧ୍ୟରେ ସଂଗୀତ ସମାଜ ବା ଏହି ଶିକ୍ଷିତ ଉଚ୍ଚ ମଧ୍ୟ-ବିତ୍ତଙ୍କର କ୍ଲବ ଜନ୍ମ ଲାଭ କଲା ।

ଜ୍ୟୋତିରୀନ୍ଦ୍ରନାଥ ଓ ରବୀନ୍ଦ୍ରନାଥ ଆରମ୍ଭରୁ ଏହି ସମାଜ ସହିତ ଘନିଷ୍ଠ ଭାବରେ ସଂପୃକ୍ତଥିଲେ । ଏଠାରେ ଅଭିନୟ ପାଇଁ ରବୀନ୍ଦ୍ରନାଥ 'ଗୋଡ଼ାର ଗଲଦ' ପ୍ରହସନ ଲେଖିଥିଲେ । ନିଜେ ନିର୍ଦ୍ଦେଶକ ଥିଲେ । କାରଣ ବଲାତଫେରନ୍ତା ବଂଗାଳୀ ସାହେବମାନଙ୍କୁ ଅଭିନୟ ଶିଖାଇବା ସହଜ କାମ ନୁହେଁ । ଉଜାଣି ସ୍ରୋତରେ ନୌକା ବାହିଲାପରି, ଉଚ୍ଚାରଣ ଠିକ୍‌କରିବା, ଭାବଭଙ୍ଗୀ ଶିଖାଇବା କଠିନ କାମ ।

'ଗୋଡ଼ାର ଗଲଦ' ପାଣ୍ଡୁଲିପିର ଅନେକ ପରିବର୍ତ୍ତନ ହେଲା; ପ୍ରୟୋଜନ ମୁତାବକ ଅଦଲ ବଦଲ ହେଲା । ଅଭିନୟ ସମୟରେ ଶେଷ ଅଙ୍କ ଶେଷ ଦୃଶ୍ୟରେ ଏକ କୌତୁକପ୍ରଦ ଘଟଣା ଘଟିଲା । ଚନ୍ଦ୍ରବାବୁ ଯୁବକମାନଙ୍କୁ କହିଲେ ଯେ ସେମାନଙ୍କର ସଭାକୁ ରବିବାବୁ ଆସୁଛନ୍ତି । ସତକୁ ସତ ରବୀନ୍ଦ୍ରନାଥ ସ୍ୱୟଂ ରଙ୍ଗମଞ୍ଚରେ ପ୍ରବେଶକରି ଅଣ୍ଟାରେ ଚାଦର ବାନ୍ଧି ଗୀତ ବୋଲିଥିଲେ । ଏହି ଆକସ୍ମିକ ଘଟଣା ପାଇଁ ଦର୍ଶକମାନେ ପ୍ରସ୍ତୁତ ନଥିଲେ; ସୁତରାଂ ତାଂକର ଆନନ୍ଦ କହିଲେ ନସରେ ।

'ଗୋଡ଼ାର ଗଲଦ' ଛପା ହେଲା ଭାଦ୍ରବ ମାସରେ । ସେହିମାସରେ ଅବନୀନ୍ଦ୍ରନାଥଙ୍କର ଚିତ୍ରସହ ଚିତ୍ରାଙ୍ଗଦା ମୁଦ୍ରିତ ହେଲା । ଶିକ୍ଷାନବୀଶ ଅବନୀନ୍ଦ୍ର ରବୀନ୍ଦ୍ରନାଥଙ୍କର ଉତ୍ସାହ ଓ ଆଗ୍ରହ ଫଳରେ ଛବିଗୁଡ଼ିକ ଅଙ୍କନ କରିଥିଲେ । ରବୀନ୍ଦ୍ରନାଥ ତରୁଣ ଅବନୀନ୍ଦ୍ରଙ୍କୁ ବହିଖଣ୍ଡି ଉତ୍ସର୍ଗ କରିଥିଲେ ।

(୨୯)

ଜମିଦାରକୁ ସମୟ ସମୟରେ ଯିବାକୁ ପଡ଼େ; ସେଠାରେ ପାଞ୍ଚ ଲୋକଙ୍କ ସଂଗରେ ମିଶନ୍ତି, ପାଞ୍ଚପ୍ରକାର ସମସ୍ୟାର ସମ୍ମୁଖୀନ ହୁଅନ୍ତି ।—ମନ୍ଦ ଲାଗେନା । ନୌକାରେ ବୁଲିବୁଲି ରାଜଶାହୀ ଆସିଲେ । ସେଠାରେ ଲୋକେନ୍ ପାଲିତ ଜିଲା ଜଜ ଥାନ୍ତି । ଲୋକେନ୍ ବାଲ୍ୟ ବନ୍ଧୁ; ସାହିତ୍ୟ ରସିକ ଓ ଏକାନ୍ତ ସୌନ୍ଦର୍ଯ୍ୟ ଉପାସକ । 'ସାଧନା'ର ପୃଷ୍ଠାରେ ଦୁଇ ବନ୍ଧୁଙ୍କ ମଧ୍ୟରେ ସାହିତ୍ୟ ସମ୍ପର୍କୀୟ ଯେଉଁ ପତ୍ର ବିନିମୟ ହୋଇଥିଲା, ତାହା ଏବେ ବି ସୁଖ-ପାଠ୍ୟ ।

ସେଠାରେ 'ସିରାଜୌଦ୍ଦୌଲା' ଓ 'ମୀର କାସୀମ'ର ଅମର ଲେଖକ ଅକ୍ଷୟ ମିତ୍ର ଓ ଆହୁରି ଅନେକ ସାହିତ୍ୟିକ ବି ଥିଲେ । ସେମାନଙ୍କର ଅନୁରୋଧରେ 'ଶିକ୍ଷାର ହେରଫେର' ନାମକ ଏକ ପ୍ରବନ୍ଧ ଲେଖି ରବୀନ୍ଦ୍ରନାଥ ରାଜଶାହୀ ଆସୋସିଏସନରେ ପାଠ କଲେ ।

ଏହା ପୂର୍ବରୁ ବଙ୍ଗଳା ଭାଷାରେ ଶିକ୍ଷାଦାନ ସମ୍ପର୍କରେ ଅନ୍ୟ କୌଣସି ସୁଚିନ୍ତିତ ଆଲୋଚନା ହୋଇଥିଲା ବୋଲି ମନେ ହୁଏ ନାହିଁ । ଲୋକେ ଯେତେବେଳେ ଇଂରେଜୀ ରଚନାରେ ମୋହ-ଗ୍ରସ୍ତ ଓ ତାହାର ପ୍ରଶଂସା କରିବାରେ ବ୍ୟସ୍ତ, ବଙ୍ଗଳା ଭାଷା ମାଧ୍ୟମରେ ଶିକ୍ଷା ଦାନର ବ୍ୟବସ୍ଥା ସମ୍ପର୍କରେ ସୁପାରିଶ କରିବା କମ୍ ସାହସିକତାର କାର୍ଯ୍ୟ ନୁହେଁ । ରବୀନ୍ଦ୍ରନାଥ କହିଛନ୍ତି ଯେ ଜୀବନର କୋଡ଼ିଏ ବାଇଶି ବର୍ଷ ପର୍ଯ୍ୟନ୍ତ ଆମେ ଯେଉଁ ଇଂରେଜୀ ଶିକ୍ଷାପାଉ, ତାହା ଆମର ମନର ବହିରାବରଣ ରୂପେଥାଏ, ବିଦ୍ୟା ଓ ପ୍ରୟୋଜନୀୟତା ମଧ୍ୟରେ ଦୁର୍ଭେଦ୍ୟ ବ୍ୟବଧାନ ରହିଯାଏ । ଏହି ଶିକ୍ଷା ଫଳରେ ଜୈବ ପ୍ରକ୍ରିୟାରେ ଜୀବନର ପ୍ରୟୋଜନୀୟ କୌଣସି ଭବାନ୍ତର ବା ରୂପାନ୍ତର ଘଟେ ନାହିଁ । ରବୀନ୍ଦ୍ରନାଥଙ୍କ ମତାନୁଯାୟୀ ପ୍ରଦେଶର ସବୁ ସ୍ଥାନରେ ଓ ଶିକ୍ଷାର ସବୁ ସ୍ତରରେ ବଙ୍ଗଳା ଭାଷା ଓ ସାହିତ୍ୟର ଅନୁଶୀଳନ ଫଳରେ, ଏପରି ଅସ୍ୱାଭାବିକ ଅବସ୍ଥାର ଅବସାନ ସମ୍ଭବ ।

ଏହି ଦୀର୍ଘ ପ୍ରବନ୍ଧରେ ଶିକ୍ଷା ସମ୍ପର୍କରେ ବହୁ ବିଚିତ୍ର ପ୍ରଶ୍ନ ଆଲୋଚିତ ହୋଇଲା । ବଂକିମଚନ୍ଦ୍ର, ଗୁରୁ ଦାସ ବନ୍ଦୋପାଧ୍ୟାୟ, ଆନନ୍ଦ ମୋହନ ବସୁ ପ୍ରଭୃତି ଲେଖକମାନେ କବିଙ୍କର ବଳିଷ୍ଠ ଯୁକ୍ତି-ପୂର୍ଣ୍ଣ ପ୍ରବନ୍ଧ ପାଇଁ ଧନ୍ୟବାଦ ଦେଇ ପତ୍ର ଲେଖିଥିଲେ । କିନ୍ତୁ ସାଧାରଣ ଦେଶବାସୀଙ୍କ କାନରେ ଏହା ପହଞ୍ଚି ପାରିଲା ନାହିଁ । ଇଂରେଜ ସରକାର ଏ ସମ୍ପର୍କରେ ମଧ୍ୟ କର୍ଣ୍ଣପାତ କଲେନାହିଁ କହିଲେ ଚଳେ ।

ସାଜାଦପୁରରୁ ଆସି କବି ନାଟୋରରେ ଜଗଦୀନ୍ଦ୍ରନାଥଙ୍କର ଅତିଥି ହେଲେ । ଦନ୍ତବ୍ୟଥା ଫଳରେ ସେଠାରେ କିଛିଦିନ ରହି ଗଲେ । କବି ବୋଲି ତ ରୋଗ ଛାଡ଼ିବ ନାହିଁ । ଯାହାହେଉ ଶିଲାଇ ଦହକୁ ଫେରିଲେ, 'ପ୍ରାଣେ ଗାନ ନେଇ' — କବିତାଲେଖା ହେଲନାହିଁ । ଗୋଟିଏ ପତ୍ରରେ କବି ଲେଖିଛନ୍ତି 'କବିତା ଅନ୍ୟାନ୍ୟ ଲଳନାଙ୍କ ପରି ଏକାଧିପତ୍ୟ ପ୍ରତ୍ୟାଶିନୀ । ଏଥିପାଇଁ ମୋର ମନ ଖରାପ । ବାସ୍ତବିକ୍ ଏ ଜୀବନରେ କବିତାହିଁ ମୋର ସର୍ବପ୍ରଥମ ପ୍ରେୟସୀ—ତାହା ସହିତ ବିଚ୍ଛେଦ ମୋର ସହ୍ୟ ହେଉ ନାହିଁ ।' ଏହାରି କିଛିଦିନ ପରେ ଲେଖିଲେ 'ମାନସ ସୁନ୍ଦରୀ'— କବିଙ୍କର ଅନ୍ୟତମ ଶ୍ରେଷ୍ଠ କବିତା ।

'ମାନସ ସୁନ୍ଦରୀ' ଯେବେ ଯେତେ ଉଚ୍ଛ୍ୱାସ କଲେ ମଧ୍ୟ ଏହା ବାସ୍ତବ ଜଗତର ସମସ୍ୟାଠାରୁ ବହୁତ ଦୂରରେ । ମନୋଜଗତର କଳ୍ପନା ଓ ବାହ୍ୟ ଜଗତର ବାସ୍ତବତା ମଧ୍ୟରେ ମିଳନ ହେବା କଠିନ । ସ୍ତ୍ରୀ ସୋଲାପୁରରୁ ଚିଠି ଲେଖିଲେ ଯେ ସେ ପିଲାଙ୍କୁନେଇ ଫେରୁଛନ୍ତି—ସେଠାରେ ଭଲ ଲାଗୁନାହିଁ । ଜାଆର ସଂସାରରେ ବା କେତେଦିନ ରହନ୍ତେ । କବି କିଂକର୍ତ୍ତବ୍ୟ ବିମୂଢ଼ । ସ୍ତ୍ରୀଙ୍କୁ ଲେଖିଲେ, 'ମୁଁ ଭଲଭାବରେ ଜାଣେ ଯେ ଯେତେଦିନ ତୁମ୍ଭେମାନେ ସୋଲାପୁରରେ ରହିବ ସେତେଦିନ ତୁମର ଭଲ । ପିଲାମାନେ ଅନେକ କିଛି ଦେଖି ଶୁଣି ଭଲହୋଇ ଫେରିବେ ବୋଲି ଆଶା କରିଥିଲି । ଯାହାହେଉ, ମଣିଷ ଯାହାଭାବେ ତାହା ହୁଏନା । କାରଣ ସଂସାର ମନୁଷ୍ୟର ଆୟତ୍ତରେ ନାହିଁ ।'

(୩୦)

ଶୋଲାପୁରରୁ ମୃଣାଳିନୀ ଦେବୀ ପିଲାମାନଙ୍କୁ ନେଇ ଫେରି ଆସିଲେ । ଯୋଡ଼ାସାଙ୍କୋରେ ପରିବାର ସହ ରହିବାକୁ ପଡ଼ିଲା । ଜାନୁୟାରୀ ମାସ (୧୮୯୩)ରେ ରବୀନ୍ଦ୍ରନାଥଙ୍କର ତୃତୀୟ କନ୍ୟା ବା ଚତୁର୍ଥ ସନ୍ତାନ ଜନ୍ମ ହେଲା । ବୋଧହୁଏ ଏହି ଘଟଣା କାରଣରୁ ଶାନ୍ତିନିକେତନ ସାମ୍ବତ୍ସରିକ ଉତ୍ସବରେ ରବୀନ୍ଦ୍ରନାଥ ପ୍ରଥମଥର ପାଇଁ ଉପସ୍ଥିତ ରହି ପାରିଲେ ନାହିଁ । କିନ୍ତୁ ମାଘୋତ୍ସବ ପାଇଁ ବ୍ରହ୍ମସଙ୍ଗୀତ ରଚନା କରି ଦେଇଥିଲେ ।

ଉତ୍ସବ ପରେ ଜମିଦାରୀ ଦେଖିବାପାଇଁ ଓଡ଼ିଶା ଯିବାକୁ ପଡ଼ିଲା । ଏଥର ରବୀନ୍ଦ୍ରନାଥଙ୍କ ସଙ୍ଗରେ ଗଲେ ଅଗ୍ରଜ ବୀରେନ୍ଦ୍ର-ନାଥଙ୍କର ପୁଅ ବଳେନ୍ଦ୍ରନାଥ । ବଳେନ୍ଦ୍ରଙ୍କ ବୟସ ବାଇଶ ବର୍ଷ । ସାହିତ୍ୟ କ୍ଷେତ୍ରରେ କବିଙ୍କର ଅନୁସରଣ କରୁଥାନ୍ତି ଓ ଜମିଜମା ସମ୍ପର୍କରେ ବି ଶିଖୁଥାନ୍ତି ।

କଟକରେ ବିହାରୀ ଲାଲ ଗୁପ୍ତଙ୍କ ଘରେ ରହିଲେ । ଭାରତୀୟ ସିଭିଲ ସର୍ଭିସର ଦ୍ୱିତୀୟ ଦଳରେ ପାସ କରିଥିଲେ ବିହାରୀ ଲାଲ, ସୁରେନ୍ଦ୍ରନାଥ ବନ୍ଦୋପାଧ୍ୟାୟ ଓ ରମେଶଚନ୍ଦ୍ର ଦତ୍ତ । ରବୀନ୍ଦ୍ର-ନାଥଙ୍କ ସହିତ ବିହାରୀଲାଲଙ୍କ ପରିବାରର ଘନିଷ୍ଠତା ଥିଲା । କଟକରୁ ସ୍ତ୍ରୀଙ୍କୁ ଏକ ପତ୍ରରେ ଲେଖିଥିଲେ, 'ବିହାରୀବାବୁ ଅନେକାଂଶରେ ମୋହ ପରି । ସେ ସବୁ ବିଷୟରେ ଭାରି ବ୍ୟସ୍ତ ଓ ଚିନ୍ତିତ ହୋଇ ପଡ଼ନ୍ତି । .. ସେ ମୋ ପରି ସବୁ ବିଷୟରେ କଟକଟ ହୁଅନ୍ତି ନାହିଁ, ସେଇଟା ତାଙ୍କ ସ୍ତ୍ରୀଙ୍କ ପକ୍ଷରେ ଏକ ସୁବିଧା ।'

କବି କଟକରେଥିବା ସମୟରେ ବିହାରୀ ବାବୁଙ୍କ ଘରେ ଦିନେ ଏକ ଭୋଜି ସଭାରେ ରେଭେନ୍‌ସା କଲେଜର ଇଂରେଜୀ ଅଧ୍ୟକ୍ଷ ଭାରତ ସଭ୍ୟତା ସମ୍ପର୍କରେ ଏପରି ମନ୍ତବ୍ୟ କଲେ ଯେ ତାହା କବିଙ୍କୁ ଅତ୍ୟନ୍ତ ବାଧିଲା । ସେତେବେଳେ ଜିକୁ ଦେଶରେ ଜୁରୀ ପ୍ରଥା ନେଇ ଆଲୋଚନା-ଆନ୍ଦୋଳନ ଚାଲିଛି । ସାହେବ କହିଲେ ଯେ, ଭାରତୀୟମାନଙ୍କର ନୈତିକ ଜୀବନର ମାନ ଅତ୍ୟନ୍ତ ନୀଚ

ଓ ସେମାନେ ଜୀବନର ପବିତ୍ରତା [Sacredness of life] ସମ୍ପର୍କରେ ଉଦାସୀନ । ସେଥିପାଇଁ ଜଗତରେ ସେମାନଙ୍କର ସଂଖ୍ୟା କମାଇବା ଦରକାର । ରବୀନ୍ଦ୍ରନାଥ ଏହି ଘଟଣା ଉଲ୍ଲେଖ କରି ଲେଖିଛନ୍ତି, 'ଜଣେ ବଙ୍ଗାଳୀର ନିମନ୍ତ୍ରଣରେ ଆସି ବଙ୍ଗାଳୀ-ମାନଙ୍କ ମଧ୍ୟରେ ବସି ଯେଉଁମାନେ ଏପରି କହିବାପାଇଁ କୁଣ୍ଠିତ ହୁଅନ୍ତି ନାହିଁ, ସେମାନେ ଆମକୁ କି ଚକ୍ଷୁରେ ଦେଖନ୍ତି !' ସମ୍ଭବତଃ ଏହି ଦିନର କଥା ସ୍ମରଣ କରି 'ଅପମାନର ପ୍ରତିକାର' ପ୍ରବନ୍ଧଟି ଲେଖିଥିଲେ । ବହୁ ବର୍ଷ ପରେ ପ୍ରେସିଡ଼େନ୍‌ସି କଲେଜର ଛାତ୍ରମାନେ ଅଧ୍ୟାପକ ଓଟେନ୍ ସାହେବଙ୍କୁ ପ୍ରହାର କଲାବେଳେ ରବୀନ୍ଦ୍ରନାଥ 'ସବୁଜପତ୍ର' ପତ୍ରିକାରେ ଛାତ୍ର ଶାସନ ନାମକ ଯେଉଁ ପ୍ରବନ୍ଧଟି ଲେଖିଥିଲେ ତାହା ମଧ୍ୟ ସ୍ମରଣୀୟ ।

କଟକରୁ ଘୋଡ଼ାଗାଡ଼ି କରି ସମସ୍ତେ ପୁରୀ ଗଲେ । ସେତେବେଳକୁ ରେଳ ରାସ୍ତା ହୋଇନି । ସେଠାରୁ ଭୁବନେଶ୍ୱର ଦେଖିବାକୁ ଗଲେ । ଭୁବନେଶ୍ୱର ମନ୍ଦିର ଦେଖି ଲେଖିଥିଲେ, 'ମୁଁ ଯେପରି ଗୋଟିଏ ନୂତନ ଗ୍ରନ୍ଥ ପାଠକଲି । ବେଶ୍ ବୁଝିପାରିଲି ଯେ ଏହି ପଥର ବକ୍ଷରେ ବହୁ କଥା ରହିଛି । ସେ କଥା ବହୁ ଶତାବ୍ଦୀ ଧରି ସ୍ତମ୍ଭିତ ବୋଲି, ମୂକ ବୋଲି ହୃଦୟରେ ଆହୁରି ବେଶୀ ଭାବରେ ଆଘାତ କରେ ।'

ଜମିଦାରୀ କାର୍ଯ୍ୟରେ ନାନା ସ୍ଥାନ ନୌକାରେ ଓ ପାଲିଙ୍କିରେ ବୁଲୁଥାନ୍ତି । କଚେରୀ ଘରେ ରହନ୍ତି । ସେହି ସମୟ ମଧ୍ୟରେ କବିତା ଲେଖନ୍ତି—'ସୋନାର ତରୀ'ର କେତେକ କବିତା ଏହିପରି ଭ୍ରାମ୍ୟମାଣ ଅବସ୍ଥାର ଲେଖା ।

(୩୨)

ଫାଲ୍‌ଗୁନ (ବଙ୍ଗାବ୍ଦ ୧୨୯୯) ମାସ ଶେଷରେ କଲିକତାକୁ ଫେରି ଅଳ୍ପ ସମୟ ପରେ ଉତ୍ତରବଙ୍ଗ ଯିବାକୁ ପଡ଼ିଲା । ସେଠାରେ

ଲେଖିଥିଲେ 'ବିଦାୟ ଅଭିଶାପ' କାବ୍ୟନାଟିକା—କଚ ଓ ଦେବଯାନୀର କାହାଣୀ । ବଂଗଳା ସାହିତ୍ୟରେ ଏ ଶ୍ରେଣୀର କାବ୍ୟ-ନାଟିକା ରଚନା ବୋଧହୁଏ ଏହା ପ୍ରଥମ । ମନେହୁଏ, ଏହା ବ୍ରାଉନିଂଙ୍କର ନାଟକୀୟ ଭଙ୍ଗୀରେ କବିତା ରଚନା ଶୈଳୀଦ୍ୱାରା ପ୍ରଭାବାନ୍ୱିତ । ବ୍ରାଉନିଂଙ୍କର କବିତା କବି ଭଲ ଭାବରେ ପଢ଼ିଥିଲେ । ବୃଦ୍ଧ ବୟସରେ ମଧ୍ୟ ଛାତ୍ର ଓ ଅଧ୍ୟାପକଙ୍କୁ ପଢ଼ି ଶୁଣାଉଥିଲେ ।

ଯେଉଁଦିନ 'ବିଦାୟ ଅଭିଶାପ' ଲେଖିଥିଲେ ସେହିଦିନ ଗୋଟିଏ ପତ୍ରରେ ଲେଖିଛନ୍ତି, 'ମୁଁ ଅନେକ ଦିନରୁ ଭାବି ଦେଖିଛି ପୁରୁଷମାନେ ବହୁ ପରିମାଣରେ ଖାପଛଡ଼ା ଓ ସ୍ତ୍ରୀଲୋକମାନେ ବେଶ ସୁସଂପୂର୍ଣ୍ଣ । ପ୍ରକୃତରେ ଏହା ସତ୍ୟ । ପୁରୁଷ ଯଦି ଖାପଛଡ଼ା ନ ହୁଏ ତେବେ ଆଦର୍ଶ ଅକ୍ଷୁଣ୍ଣ ରଖିବା ପାଇଁ ସୁନ୍ଦରୀ ଉପଯାଚିକାର ପ୍ରେମ ନିବେଦନକୁ ପ୍ରତ୍ୟାଖ୍ୟାନ କରି, ବିଦାୟ ସମୟର ଅଭିଶାପ ଗ୍ରହଣ କରି କର୍ତ୍ତବ୍ୟ ପଥରେ ଅଗ୍ରସର ହେବ କାହିଁକି ?' କବିଙ୍କର ଏହି ସମୟର ରଚନା ମଧ୍ୟରେ ଜୀବନର ବହୁ ପ୍ରଶ୍ନର ଆଲୋଚନା ଚାଲୁଥିଲା । 'ପଞ୍ଚଭୂତର ଡାଏରୀ' ତାର ସାକ୍ଷୀ ।

କଲିକତାକୁ ଫେରି ଦେଖିଲେ ନାନା ରାଜନୈତିକ କାରଣରୁ ଭଦ୍ର ମହଲରେ ବେଶ୍ ଉତ୍ତେଜନା ଦେଖା ଯାଉଥାଏ । ରବୀନ୍ଦ୍ରନାଥ ଏଥିରୁ ନିଜକୁ ଅଲଗା ରଖି ପାରିଲେ ନାହିଁ । ଏହି ସବୁ ସମସ୍ୟା ସଂପର୍କରେ ରବୀନ୍ଦ୍ରନାଥଙ୍କର ଅନେକ ଗୁଡ଼ିଏ ପ୍ରବନ୍ଧ ଠିକ୍ ଏହି ସମୟରୁ 'ସାଧନା' ପତ୍ରିକାରେ ପ୍ରକାଶିତ ହେଲା । ପୂର୍ବ-ତନ 'ଭାରତୀରେ' ମଧ୍ୟ ଅନେକ ଅର୍ଦ୍ଧ-ରାଜନୀତିକ ପ୍ରବନ୍ଧ ଅଛି । ତଥାପି ସେତେବେଳକୁ ବୟସରେ ତରୁଣ—ଗଭୀର ଭାବରେ ବା ଗମ୍ଭୀର ଭାବରେ ଆଲୋଚନା କରିବାର ମାନସିକ କ୍ଷେତ୍ର ପ୍ରସ୍ତୁତ ହୋଇ ନଥିଲା । 'ସାଧନା'ର ପ୍ରବନ୍ଧଗୁଡ଼ିକ ପ୍ରଧାନତଃ ଇଂରେଜ ରାଜନୀତିର ସମାଲୋଚନା । ଗଠନମୂଳକ କର୍ମପଦ୍ଧତି ଉପସ୍ଥାପିତ କରିବାର ଅଭିଜ୍ଞତା ନଥିଲା—ତାହା ହୋଇଥିଲା ଆଂଶିକ ଭାବରେ 'ବଙ୍ଗଦର୍ଶନ'ରେ । ଯଥା ସ୍ଥାନରେ ତା'ର ଆଲୋଚନା କରାଯିବ ।

୧୮୯୩ ଖ୍ରୀଷ୍ଟାବ୍ଦର କଥା । ସିପାହୀ ବିଦ୍ରୋହ ପରେ ୧୮୬୧ ଖ୍ରୀ:ଅ. ରେ ପ୍ରଥମ ଭାରତ କାଉନ୍‌ସିଲ୍ ଆକ୍ଟ ପାସ ହୋଇଥାଏ ।

ତା'ର ପ୍ରାୟ ତିରିଶବର୍ଷ ପରେ ୧୮୯୨ ମସିହାରେ ଭାରତୀୟ ବ୍ୟବସ୍ଥା ପରିଷଦର ନୂତନ ଆଇନ ସଂଶୋଧିତ ହେଲା—ଭାରତ ରାଜନୀତିଜ୍ଞମାନଙ୍କର ଦାବୀ ଥିଲା ପ୍ରତିନିଧି ମୂଳକ ଶାସନ । ସେ ଦାବୀ ତ ପୂରଣ ହେଲା ନାହିଁ; ବରଂ ତା ଉପରେ ପରିଷଦର କେତୋଟି ଆସନ ପାଇଁ ସାମ୍ପ୍ରଦାୟିକ ବଣ୍ଟୁଆରା ନୀତି ପ୍ରବର୍ତ୍ତନ କରାଯାଇଥିଲା । ସରକାରୀ ଚାକିରିରେ ଭାରତୀୟମାନଙ୍କର ନିଯୁକ୍ତି ସମ୍ପର୍କରେ ଅନେକ ବାଧା ପ୍ରୟୋଗ କରାହେଲା । ଶିଳିଂ ଓ ଟଙ୍କାର ବିନିମୟ ମୂଲ୍ୟରେ ଏପରି ଅର୍ଥନୈତିକ କାରସାଦି କରାଗଲା ଯେ ଭାରତୀୟମାନଙ୍କର କୋଟି କୋଟି ଟଙ୍କା ଲୋକସାନ ହେବାର ଦେଖାଗଲା । ଏସବୁ ବିଷୟରେ ଶିକ୍ଷିତ ଭାରତୀୟମାନେ ଉତ୍ତେଜିତ ହୋଇ ପଡ଼ିଲେ । ବଙ୍କିମଚନ୍ଦ୍ରଙ୍କ ପରି ପେନସନ୍ ଭୋଗୀ 'ରାୟବାହାଦୁର' ମଧ୍ୟ ଲେଖିଥିଲେ, 'ଯେତେଦିନ ଦେଶୀ ବିଦେଶୀମାନଙ୍କ ମଧ୍ୟରେ ଜେତା ବିଜେତା ସମ୍ବନ୍ଧ ରହିବ ସେତେଦିନ ଆମ୍ଭେମାନେ ନିକୃଷ୍ଟ ହେଲେ ବି ପୂର୍ବ-ଗୌରବ ସ୍ମରଣ କରିବୁ, ସେତେଦିନ ପର୍ଯ୍ୟନ୍ତ ଜାତି ବୈରି-ସମତାର ସମ୍ଭାବନା ନାହିଁ ଓ ଆମ୍ଭେମାନେ କାୟମନୋବାକ୍ୟରେ ପ୍ରାର୍ଥନା କରୁଛୁ ଯେ ଯେତେଦିନ ପର୍ଯ୍ୟନ୍ତ ଇଂରେଜଙ୍କର ସମତୁଲ୍ୟ ନ ହୋଇଛୁ, ସେତେଦିନ ପର୍ଯ୍ୟନ୍ତ ଆମ୍ଭମାନଙ୍କ ମଧ୍ୟରେ ଏହି ଜାତି ବୈରିତାର ପ୍ରଭାବ ଏହିପରି ପ୍ରବଳ ରହୁ ।' ଦେଶର ମନୋଭାବ ଏହିପରି ଥିଲା । ରବୀନ୍ଦ୍ରନାଥ ନୀରବ ରହି ପାରିଲେ ନାହିଁ । 'ଇଂରେଜ ଓ ଭାରତବାସୀ' ଶୀର୍ଷକ ଏକ ପ୍ରବନ୍ଧ ଲେଖିଲେ । କଥା ହେଲା ବଙ୍କିମଚନ୍ଦ୍ର ହେବେ ସଭାର ସଭାପତି । କିନ୍ତୁ ରବୀନ୍ଦ୍ରନାଥ କ'ଣ ଲେଖିଛନ୍ତି ତାହା ବଙ୍କିମଚନ୍ଦ୍ର ଶୁଣିବାକୁ ଚାହିଁଲେ । ବୋଧହୁଏ ତାଙ୍କର ଆଶଙ୍କା ଥିଲା ଯେ ରବୀନ୍ଦ୍ରନାଙ୍କର ଭାଷାର ଆତିଶଯ୍ୟ ଫଳରେ ପେନାଲ୍ କୋର୍ଡ ଧାରାର ବ୍ୟବହାର ଦରକାର ପଡ଼ିପାରେ । ରବୀନ୍ଦ୍ରନାଥ ବଙ୍କିମଚନ୍ଦ୍ରଙ୍କ ଘରକୁ ଯାଇ ପ୍ରବନ୍ଧ ଶୁଣାଇ ଆସିଲେ । ବଙ୍କିମଚନ୍ଦ୍ରଙ୍କର ସଭାପତିତ୍ୱରେ ବିଡ଼ନ ଷ୍ଟ୍ରୀଟ୍‌ରେ ଚୈତନ୍ୟ ଲାଇବ୍ରେରୀରେ ସଭା ହେଲା । ବଙ୍କିମଚନ୍ଦ୍ରଙ୍କ ସହିତ ରବୀନ୍ଦ୍ରନାଥଙ୍କର ଏହାହିଁ ଥିଲା ଶେଷ ସାକ୍ଷାତ—କିଛିଦିନ ପରେ ବଙ୍କିମଚନ୍ଦ୍ରଙ୍କର

ମୃତ୍ୟୁ ହେଲା । 'ଇଂରେଜ ଓ ଭାରତବାସୀ' ବ୍ୟତୀତ ଏହିସମୟରେ କବି ଅନ୍ୟ କେତେଗୁଡ଼ିଏ ପ୍ରବନ୍ଧ ଲେଖିଥିଲେ, ଯଥା— ଇଂରେଜର ଆତଙ୍କ, ସୁବିଚାରର ଅଧିକାର, ରାଜା ଓ ପ୍ରଜା, ରାଜନୀତିର ଦ୍ୱିଧା ପ୍ରଭୃତି । ଏହିସବୁ ପ୍ରବନ୍ଧର ଛତ୍ରେ ଛତ୍ରେ ରବୀନ୍ଦ୍ରନାଥଙ୍କର ଦେଶାତ୍ମବୋଧ ପ୍ରକାଶ ପାଇଛି । ସେ ଗୋଟିଏ ଜାଗାରେ ଲେଖିଛନ୍ତି, 'ୟୁରୋପର ନୀତି କେବଳ ୟୁରୋପ ପାଇଁ । ଭାରତବାସୀ ଏପରି ସ୍ୱତନ୍ତ୍ର ଜାତି ଯେ, ସଭ୍ୟ ନୀତି ସେମାନଙ୍କ ପାଇଁ ଉପଯୋଗୀ ନୁହେଁ ।'

ଏହି ସମୟରୁ ଭାରତୀୟ ରାଜନୀତିରେ ସାଂପ୍ରଦାୟିକତା ପ୍ରବେଶ କଲା । ସଙ୍ଗେ ସଙ୍ଗେ ହିନ୍ଦୁ ଓ ମୁସଲମାନ ସମାଜ-ଜୀବନରେ ତା'ର ବିଷକ୍ରିୟା ଦେଖାଦେଲା । ମହାରାଷ୍ଟ୍ରରେ ସର୍ବ-ପ୍ରଥମେ ହିନ୍ଦୁ-ଜାତୀୟତା ଆନ୍ଦୋଳନ ଦେଖାଦେଲା । ଲୋକମାନ୍ୟ ତିଳକ ତାହାର ପ୍ରବର୍ତ୍ତକ । ଶିବାଜୀ ଉତ୍ସବ, ସାର୍ବଜନୀନ ଗଣପତି ପୂଜା ପ୍ରଭୃତିକୁ କେନ୍ଦ୍ରକରି ମହାରାଷ୍ଟ୍ରୀୟମାନଙ୍କ ମଧ୍ୟରେ ଉଗ୍ର ଜାତୀୟତାବୋଧ ଜାଗ୍ରତ ହେଲା । ଗୋରକ୍ଷଣୀ ସଭା ସ୍ଥାପିତ ହେଲା ଏବଂ ତାହାହିଁ ହେଲା ହିନ୍ଦୁ ଧାର୍ମିକତାର ପ୍ରତୀକ । ଅଳ୍ପକାଳ ମଧ୍ୟରେ ମୁସଲମାନଙ୍କର ଧର୍ମ ପାଇଁ ଗୋବଧ ଅତି ଆବଶ୍ୟକ ଓ ହିନ୍ଦୁଙ୍କ ପାଇଁ ଗୋବଧ ନିବାରଣ, ଧର୍ମ ଦୃଷ୍ଟିରୁ ଅନିବାର୍ଯ୍ୟ ହୋଇପଡ଼ିଲା । ରକ୍ତାକ୍ତ ବିଭୀଷୀକା ଆରମ୍ଭ ହେଲା । ଗୋରୁ ମାରିବା ଓ ଗୋରୁ ରକ୍ଷା କରିବାକୁ ଯାଇ ଅସଂଖ୍ୟ ଲୋକ ମଲେ । ଇଂରେଜମାନେ ଇଚ୍ଛା କରିଥିଲେ ଏହି ବିବାଦର ସମାଧାନ କରିପାରିଥାନ୍ତେ । କିନ୍ତୁ 'ଅନେକ ହିନ୍ଦୁଙ୍କର ବିଶ୍ୱାସ, ବିରୋଧ ମେଣ୍ଟାଇବା ଗଭର୍ଣ୍ଣମେଣ୍ଟର ଆନ୍ତରିକ ଅଭିପ୍ରାୟ ନଥିଲା । କାଳେ କଂଗ୍ରେସର ଚେଷ୍ଟାରେ ହିନ୍ଦୁ-ମୁସଲମାନ କ୍ରମଶଃ ଐକ୍ୟ ପଥରେ ଅଗ୍ରସର ହେବେ, ଏଥିପାଇଁ ସେମାନେ ଉଭୟ ସଂପ୍ରଦାୟଙ୍କର ଧର୍ମବିଦ୍ୱେଷ ଜାଗ୍ରତ ରଖିବାକୁ ଚାହିଁଲେ ଓ ମୁସଲମାନଙ୍କ ଦ୍ୱାରା ହିନ୍ଦୁଙ୍କର ଦର୍ପ ଚୂର୍ଣ୍ଣକରି ମୁସଲମାନଙ୍କୁ ସନ୍ତୁଷ୍ଟ ଓ ହିନ୍ଦୁଙ୍କୁ ଅଭିଭୂତ କରିବାକୁ ଇଚ୍ଛା-କଲେ ।'

ଏହି ମୀତର ଚରମ ଓ ମର୍ମାନ୍ତିକ ରୂପ ପ୍ରକାଶ ପାଇଲା, ୧୯୪୫ ମସିହା ଅଗଷ୍ଟ ମାସରେ ଓ ଇଂରେଜ କୂଟନୀତର ପରମ ଜୟ ହେଲା ୧୯୪୭ ସାଲରେ – ଭାରତ ଖଣ୍ଡିତ ହେବା ଦ୍ୱାରା ।

ରବୀଂଦ୍ରନାଥ ବଡ଼ ଆଶା କରିଥିଲେ ଯେ ଏହି ଆଘାତ ଫଳରେ ସବୁ ଶ୍ରେଣୀର ହିନ୍ଦୁଙ୍କ ମନ ପରସ୍ପର ପ୍ରତି ଆକୃଷ୍ଟ ହେବ । ରବୀନ୍ଦ୍ରନାଥ କହିଥିଲେ 'ବାହାରର ଝଡ଼ ଅପେକ୍ଷା ଆମର ଘର ଭିତରର ବାଲୁକାମୟ ପ୍ରତିଷ୍ଠା ସ୍ଥାନ ବିଷୟରେ ମୋର ଅଧିକ ଆଶଙ୍କା ।'

ଷାଠିଏ ବର୍ଷ ପରେ ଆଜି ବି ଆମ୍ଭେମାନେ ନିଶ୍ଚିତ ଭାବରେ ଧେଶ ଯେ ସମସ୍ତ ଦେଶବାସୀଙ୍କର ଧ୍ରୁବ ଆଶ୍ରୟ ସ୍ଥଳ ହୋଇଛି, ଏହା କହିପାରିବା କି ?

(୩୨)

ରବୀଂଦ୍ରନାଥଙ୍କ ସାହିତ୍ୟ ଜୀବନର ଆଦର୍ଶ ଥିଲେ ବଙ୍କିମଚନ୍ଦ୍ର ଓ ବିହାରୀଲାଲ । ସେମାନଙ୍କର ମୃତ୍ୟୁ ହେଲା ମାତ୍ର ଦେଢ଼ମାସ ବ୍ୟବଧାନରେ । ଚୈତନ୍ୟ ଲାଇବ୍ରେରୀରେ ରବୀଂଦ୍ରନାଥଙ୍କ ସହିତ ବଙ୍କିମଚଂଦ୍ରଙ୍କର ଶେଷ ଦେଖା ।

ବଙ୍କିମଚନ୍ଦ୍ରଙ୍କ ମୃତ୍ୟୁ ପରେ କଲିକତାରେ ଶୋକସଭା ହେଲା । ସେଠାରେ ରବୀଂଦ୍ରନାଥ ଗୋଟିଏ ପ୍ରବନ୍ଧ ପଢ଼ିବା ପାଇଁ ଉଦ୍‌ଯୋଗୀ ହୋଇ ନବୀନଚଂଦ୍ର ସେନଙ୍କୁ ଏହି ସଭାର ସଭାପତିତ୍ୱ କରିବାକୁ ଅନୁରୋଧ କଲେ । ନବୀନଚଂଦ୍ର ଲେଖି ପଠାଇଲେ ଯେ ସଭାକରି ଶୋକ ପ୍ରକାଶ କରିବାର ସେ ବିରୋଧୀ । କାରଣ ହିନ୍ଦୁ ହୋଇ-ଥିବାରୁ, ସେ ଶୋକ ସଭାର ଅର୍ଥ ବୁଝନ୍ତି ନାହିଁ—ଏହା ଏକ ବିଲାତୀ ଢଙ୍ଗ ।

ସେ ଯାହାହେଉ, ଶୋକସଭା ହେଲା । ସଭାପତି ହେଲେ ଗୁରୁଦାସ ବନ୍ଦୋପାଧ୍ୟାୟ (୧୮୯୪ ଏପ୍ରିଲ ୨୮) । ରବୀନ୍ଦ୍ରନାଥ

କହିଲେ ଯେ ଆମ ଦେଶରେ ପିତୃ ଶ୍ରାଦ୍ଧ ପ୍ରକାଶ୍ୟ ସଭାରେ ଅନୁଷ୍ଠିତ ହୁଏ । ସେପରି ଲୋକହିତୈଷୀ କୌଣସି ମହାନ୍ ବ୍ୟକ୍ତିଙ୍କର ମୃତ୍ୟୁରେ ପ୍ରକାଶ୍ୟ ସଭାରେ ଶୋକ ଜ୍ଞାପନ ଏକ ସାମାଜିକ କର୍ତ୍ତବ୍ୟ । ବଙ୍କିମଚନ୍ଦ୍ରଙ୍କ ପ୍ରତି କବିଙ୍କର କିପରି ଶ୍ରଦ୍ଧା ଥିଲା, ତାହା ତାଙ୍କର ଭାଷଣରେ ପ୍ରକଟିତ ହୋଇଛି । ଏହାପରେ ମଧ୍ୟ ବହୁ ସ୍ଥାନରେ ନାନା ଉପଲକ୍ଷେ କବି ବଙ୍କିମଚନ୍ଦ୍ରଙ୍କ ସମ୍ବନ୍ଧରେ ଉଚ୍ଛ୍ୱସିତ ଭାବରେ କହିଛନ୍ତି ।

ବିହାରୀଲାଲଙ୍କର ଜ୍ୟୈଷ୍ଠ ମାସରେ ମୃତ୍ୟୁ ହେଲା । ତାଙ୍କର ସ୍ମୃତିରେ କୌଣସି ସଭା ହୋଇ ନଥିଲା । ରବୀନ୍ଦ୍ରନାଥ ଏକ ପ୍ରବନ୍ଧ ଜରିଆରେ ତାଙ୍କର ଶ୍ରଦ୍ଧାଞ୍ଜଳି ଅର୍ପଣ କରିଥିଲେ । କବି ବାଲ୍ୟ-କାଳରେ ବିହାରୀଲାଲଙ୍କ ରଚନାରୁ ହିଁ ଗୀତିକାବ୍ୟ ରଚନାର ପ୍ରଥମ ପ୍ରେରଣା ପାଇଥିଲେ ।

କଲିକତାର ଏସବୁ କାର୍ଯ୍ୟ ସାରି କବି ତ୍ରିପୁରା ରାଜାଙ୍କର ନିମନ୍ତ୍ରଣ ରକ୍ଷାକରି କିଛିଦିନ ପାଇଁ କାର୍ସିୟାଙ୍ଗ ଗଲେ । ଏହି ମହାରାଜା କବିଙ୍କର 'ଭଗ୍ନହୃଦୟ' ପଢ଼ି ଅଭିନନ୍ଦନ ଜଣାଇଥିଲେ । ରବୀନ୍ଦ୍ରନାଥଙ୍କୁ ନିମନ୍ତ୍ରଣ କରିଥିଲେ—ବଙ୍ଗଳା ବୈଷ୍ଣବ ପଦାବଳୀ ଭଲଭାବରେ ସମ୍ପାଦନା କରି ପ୍ରକାଶ କରିବା ଇଚ୍ଛାରେ । ରବୀନ୍ଦ୍ରନାଥଙ୍କ ଉପରେ ଏହି ଦାୟିତ୍ୱ ଦେଲେ । କିନ୍ତୁ ମହାରାଜାଙ୍କର ଅକାଳ ମୃତ୍ୟୁ ଫଳରେ ପରିକଳ୍ପନା ସଫଳ ହୋଇ ପାରିଲା ନାହିଁ ।

ରବୀନ୍ଦ୍ରନାଥ ବୈଷ୍ଣବ ସାହିତ୍ୟ ଭଲଭାବରେ ପଢ଼ିଥିଲେ । ବ୍ରଜବୋଲିର ଦୁରୂହ ଶବ୍ଦାର୍ଥ ସମାଧାନରେ ଅନେକ ଗବେଷଣା କରିଥିଲେ । ବିଦ୍ୟାପତିଙ୍କର ପଦାବଳୀ ସମ୍ପାଦନ କରି ଗ୍ରନ୍ଥାକାରରେ ପ୍ରକାଶ କରିବାକୁ ଇଚ୍ଛା କରିଥିଲେ । କିନ୍ତୁ କାଳିପ୍ରସନ୍ନ କାବ୍ୟବିଶାରଦ ବିଦ୍ୟାପତିଙ୍କ ରଚନା ସମ୍ପାଦନା କରୁଥିବାର ଶୁଣି ତାଙ୍କୁ ସମସ୍ତ କାଗଜପତ୍ର ଦେଇ ଦେଇଥିଲେ— ତାହା ଫେରସ୍ତ ପାଇ ନଥିଲେ ।

(୬୬)

୧୩୦୧ ସାଲର ଆରମ୍ଭରେ 'ବଙ୍ଗୀୟ ସାହିତ୍ୟ ପରିଷଦ' ପ୍ରତିଷ୍ଠିତ ହେଲା । ଆରମ୍ଭରୁ ରବୀନ୍ଦ୍ରନାଥ ଏହା ସହିତ ଘନିଷ୍ଠ ଭାବରେ ସଂପୃକ୍ତ ଥିଲେ । ପ୍ରଥମ ବର୍ଷ ନବୀନଚନ୍ଦ୍ର ଓ ରବୀନ୍ଦ୍ରନାଥ ସହକାରୀ ସଭାପତି ହୋଇଥିଲେ । ପାରିଭାଷିକ ଉପସମିତିରେ ମଧ୍ୟ ରବୀନ୍ଦ୍ରନାଥ ଥିଲେ । ଲୋକସାହିତ୍ୟ ସଂଗ୍ରହ ସମ୍ପର୍କରେ ସେ ଦେଶର ଶିକ୍ଷିତ ସଂପ୍ରଦାୟଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ନିଜେ ମଧ୍ୟ ସେ କାର୍ଯ୍ୟରେ ଲଗି ପଡ଼ିଲେ । ଏହି ସଂଗ୍ରହ ସମ୍ପର୍କରେ 'ସାଧନା'ରେ କେତୋଟି ପ୍ରବନ୍ଧ ଲେଖିଥିଲେ ।

ସେ ସମୟରେ ନବୀନଚନ୍ଦ୍ର ରାନାଘାଟ ମହକୁମାର ମାଜିଷ୍ଟ୍ରେଟ । ରବୀନ୍ଦ୍ରନାଥ ଶିଲାଇଦହ ଯିବା ସମୟରେ ନବୀନଚନ୍ଦ୍ରଙ୍କ ନିମନ୍ତ୍ରଣରେ ରାନାଘାଟ ଗଲେ । ଏହି ଉପଲକ୍ଷରେ ନବୀନଚନ୍ଦ୍ରଙ୍କ ଆତ୍ମଜୀବନୀରେ ବତିଶ ବର୍ଷ ବୟସ୍କ ରବୀନ୍ଦ୍ରନାଥଙ୍କ ସଂପର୍କରେ ଏକ ସୁନ୍ଦର ବର୍ଣ୍ଣନା ଅଛି ।

'ଦେଖିଲି ସେହି ୧୮୭୭ ଖ୍ରୀଷ୍ଟାବ୍ଦର ନବଯୁବକର ଆଜି ପରିଣତ ଯୌବନ । କି ସୁନ୍ଦର, କି ଶାନ୍ତ, କି ପ୍ରତିଭାଶାଳୀ ଦୀର୍ଘାବୟବ । ଉଜ୍ଜ୍ୱଳ ଗୌରବର୍ଣ୍ଣ, ସ୍ଫୁଟୋନ୍ମୁଖ ପଦ୍ମ କୋରକପରି ଦୀର୍ଘ ମୁଖ, ମସ୍ତକର ମଧ୍ୟ ଭାଗରେ ବିଭକ୍ତ କୁଞ୍ଚିତ ଓ ସଜ୍ଜିତ କେଶ ଶୋଭା; କୁଞ୍ଚିତ ଅଳକଶ୍ରେଣୀରେ ସଜ୍ଜିତ ସୁବର୍ଣ୍ଣ ଦର୍ପଣୋଜ୍ଜ୍ୱଳ ଲଲାଟ, ଭ୍ରମର କୃଷ୍ଣ କେଶ, ଓ ଶ୍ମଶ୍ରୁ ଶୋଭିନ୍ତ ମୁଖମଣ୍ଡଳ, କୃଷ୍ଣପକ୍ଷ୍ମଯୁକ୍ତ ଦୀର୍ଘ ଓ ସମୁଜ୍ଜ୍ୱଳ ଚକ୍ଷୁ, ସୁନ୍ଦର ନାସିକାରେ ସୁବର୍ଣ୍ଣ ଚଶମା । ବର୍ଣ୍ଣ-ଗୌରବ ସୁବର୍ଣ୍ଣ ସହିତ ଦ୍ୱନ୍ଦ୍ୱ ଉପସ୍ଥିତ କରିଛି । ମୁଖାବୟବ ଦେଖିଲେ ଚିତ୍ରିତ ଖ୍ରୀଷ୍ଟଙ୍କ କଥା ମନେପଡ଼େ । ପରିଧାନ ସାଦା ଧୋତି; ସାଦା ରେଶମୀ ପଞ୍ଜାବୀ ଓ ଚଦର । ଚରଣରେ କୋମଳ ପାଦୁକା—ଇଂରେଜୀ ପାଦୁକାର କଠିନତାର ଅସହ୍ୟତାବ୍ୟଞ୍ଜକ ।'

ସାହିତ୍ୟ ପରିଷଦ ପ୍ରତିଷ୍ଠିତ ହେବା ସଙ୍ଗେ ସଙ୍ଗେ ରବୀନ୍ଦ୍ରନାଥ ବଙ୍ଗଳାର 'ଛଡ଼ା' ବିଶେଷ ଭାବରେ 'ମେୟେଲି ଛଡ଼ା' ସଂଗ୍ରହରେ ମନଦେଲେ । ଏ ସଂପର୍କରେ ଗୋଟିଏ ବଡ଼ ପ୍ରବନ୍ଧ ଲେଖିଲେ ଓ ତାହା ଚୈତନ୍ୟ ଲାଇବ୍ରେରୀରେ ପାଠ କଲେ— ଏଥର ମଧ୍ୟ ସଭାପତି ଥିଲେ ଗୁରୁଦାସ ବନ୍ଦୋପାଧ୍ୟାୟ । ସାହିତ୍ୟିକ-ମାନଙ୍କ ଆଗରେ ବଙ୍ଗଳାର ଏକ ନୂତନ ଦିଗ ଆବିଷ୍କାର କରିଦେଲେ । ଲୋକ-ସାହିତ୍ୟରେ ଯେଉଁ ପ୍ରାଣ, ସୌନ୍ଦର୍ଯ୍ୟ ଓ ସ୍ୱାଭାବିକତା ଅଛି ତାହା ଲୋକ ସମାଜରେ ଉପସ୍ଥାପିତ କଲେ । ଦକ୍ଷିଣାରଞ୍ଜନଙ୍କର 'ଠାକୁର ମା' ର ଝୁଲି' ପୁସ୍ତକରେ ରବୀନ୍ଦ୍ରନାଥ ଭୂମିକା ଲେଖି ଦେଇଥିଲେ । ସେହିଦିନୁ ବଙ୍ଗବାସୀଙ୍କର ଦୃଷ୍ଟି ଲୋକସାହିତ୍ୟ ଉପରେ ପଡ଼ିଲା ।

ଜମିଦାରୀରେ ଓ କଲିକତାରେ ରହି ମନ ମଝିରେ ମଝିରେ ବିଶ୍ରାମ ଲୋଡ଼େ । କଲିକତାରେ ରହି 'ଭାବିବା, ଅନୁଭବ କରିବା, କଳ୍ପନା କରିବା, ମନଭାବ ପ୍ରକାଶ କରିବାର ଅବସର ଓ ଉତ୍ତେଜନା କମିଯାଏ ଭିତରେ ବାହାରେ ଦିନରାତିର ଅବିଶ୍ରାମ ଠିକ୍ ଠିକ୍ ଶବ୍ଦ ଶୁଭୁଥାଏ ।' ତେଣୁ ବୋଲପୁର ଚାଲି ଆସିଲେ । ସେତେବେଳକୁ ଦ୍ୱିତଳ ଅତିଥିଶାଳା ଓ ମନ୍ଦିର ଛଡ଼ା ଘରଦ୍ୱାର ହୋଇନି— ଚାରିଦିଗରେ ମରୁପ୍ରାନ୍ତର । ଆଶ୍ରମର ଆମ୍ବ ଅଁଳା ଗଛ ସେ ପର୍ଯ୍ୟନ୍ତ ମୁଣ୍ଡଟେକି ଉଠିନି । ଏହି ଜନଶୂନ୍ୟ ଦୋତାଲରେ ସମସ୍ତ ଦରଜା ଖୋଲି—କବି ଏକାକୀ । ମନକୁ ମନ ପଢ଼ନ୍ତି, ଲେଖନ୍ତି । ଏହି ନିର୍ଜନ ପରିବେଶ ମଧ୍ୟରେ ନିଜର ସ୍ୱଭାବ ବିଶ୍ଳେଷଣ କରି କବି ଖଣ୍ଡିଏ ପତ୍ରରେ ଲେଖିଛନ୍ତି—

'ମୋତେ ସ୍ୱୀକାର କରିବାକୁ ଲଜ୍ଜା ହୁଏ ଓ ଭାବିବାକୁ ଦୁଃଖ ହୁଏ ଯେ ସାଧାରଣ ମଣିଷର ସଂସର୍ଗ ମୋତେ ବେଶୀ ଉଦ୍‌ଭ୍ରାନ୍ତ କରିଦିଏ—ମୋର ଚାରିଦିଗରେ ଥିବା ଶୃଙ୍ଖଳକୁ ଲଙ୍ଘନ କରିପାରେ ନାହିଁ ।...ଅଥଚ ମଣିଷର ସଂସର୍ଗରୁ ମଧ୍ୟ ବଞ୍ଚିତ ହୋଇ ରହିବା ମୋ ପକ୍ଷରେ ସମ୍ଭବ ନୁହେଁ—ପୁଣି ମଣିଷର କୋଳାହଳ ମଧ୍ୟକୁ ଫେରିବାକୁ ମନ ହୁଏ—ମଣିଷର ସଂସ୍ପର୍ଶରେ ଯେଉଁ ଜୀବନୋତ୍ତାପ ଅଛି ତାହା ପ୍ରାଣ ଧାରଣ ପକ୍ଷରେ ଆବଶ୍ୟକ ।

ନିଜର ଆତ୍ମୀୟ ଲୋକଙ୍କ ସହିତ ବାସ ଫଳରେ ଏହି ଦୁଇ ବିରୋଧି ଭାବର ସାମଞ୍ଜସ୍ୟ ହୋଇଥାଏ । ସେମାନେ ସଙ୍କେତଦ୍ୱାରା ମନକୁ ଶାନ୍ତ କରି ଦିଅନ୍ତି, ମନର ସମସ୍ତ ସ୍ୱାଭାବିକ କ୍ରିୟାଗୁଡ଼ିକୁ ଆନନ୍ଦ ଦାନ କରି ଲଘୁ କରି ଦିଅନ୍ତି ଓ ଉତ୍ସାହ ପ୍ରଦାନ ଦ୍ୱାରା ପରିଚାଳିତ କରିବାରେ ସହାୟତା କରନ୍ତି ।'

ଏହି ପତ୍ର ଖଣ୍ଡିକରେ ରବୀନ୍ଦ୍ରନାଥଙ୍କର ସ୍ୱଭାବର ଯେଉଁ ବିଶ୍ଳେଷଣ ହୋଇଛି, ତାହା ତାଙ୍କର ସାରା ଜୀବନର ଘଟଣାବଳୀରେ ପ୍ରତିଫଳିତ । ଜୀବନର ଶେଷ କାଳରେ 'ଜନ୍ମଦିନେ' ଅନ୍ତର୍ଗତ 'ଐକତାନ' କବିତାରେ ଏହି କଥାହିଁ କହିଛନ୍ତି ।

(୩୪)

ରବୀନ୍ଦ୍ରନାଥଙ୍କର ଜୀବନରେ ନୂତନ ଅଧ୍ୟାୟ ଆରମ୍ଭ ହେଲା । ସୁରେନ୍ଦ୍ରନାଥ ଓ ବଳେନ୍ଦ୍ରନାଥ ପରିଣତ ବୁଦ୍ଧି ଯୁବକ — କୁଣ୍ଠିଆଛନ୍ତି ବ୍ୟବସାୟ କାର୍ଯ୍ୟ ବୁଝୁଥାନ୍ତି । ଠାକୁର ବଂଶର ଧନାଗମ ହୋଇଥିଲା ପ୍ରିନ୍ସ ଦ୍ୱାରକାନାଥ ଠାକୁରଙ୍କର ବ୍ୟବସାୟ ବୁଦ୍ଧି ଫଳରେ । ତାହାର ପୁନରାବୃତ୍ତି ପାଇଁ ଦୁଇ ଭାଇ ବ୍ୟବସାୟରେ ଯୋଗଦେଲେ — ସଙ୍ଗରେ ଥିଲେ ରବୀନ୍ଦ୍ରନାଥ । ରବୀନ୍ଦ୍ରନାଥ କବି ହେଲେବି ମନୀଷି ଥିଲେ । ସେ ସାଧାରଣ ମନୁଷ୍ୟ ପରି ବୁଝୁଥିଲେ ଯେ ସଂସାରର ସମସ୍ତ ସାଧାରଣ ଓ ଅସାଧାରଣ ଜିନିଷ ପାଇଁ ଅର୍ଥର ପ୍ରୟୋଜନ ଯଥେଷ୍ଟ ।

କବି ଯେତେବେଳେ ଯାହା କରୁଥିଲେ, ତାହାମଧ୍ୟରେ ଭାବାତ୍ମକ ଦିଗଟା ପ୍ରତି ଝୁଙ୍କ୍ ବେଶୀ । ଜିନିଷର ନଗଦ ମୂଲ୍ୟ ଦେଇ ଖୁସି ହୁଅନ୍ତି ନାହିଁ । ତା'ର ଭାବରୂପର ମର୍ଯ୍ୟାଦା ଦେବାକୁ ଚାହାନ୍ତି । ଏକ ସମସାମୟିକ ପତ୍ରରେ ଲେଖିଛନ୍ତି, 'କର୍ମ ଯେ ଉତ୍କୃଷ୍ଟ ପଦାର୍ଥ ତାହା କେବଳ ବହିର ଉପଦେଶ ହିସାବରେ ଜାଣିଥିଲି । ବର୍ତ୍ତମାନ ଜୀବନରେ ଅନୁଭବ କରୁଛି ଯେ, କାର୍ଯ୍ୟ

ମଧ୍ୟରେହିଁ ପୁରୁଷର ଯଥାର୍ଥ ଚରିତାର୍ଥତା । ... ଯେତେ ବିଭିନ୍ନ ରକମର କାର୍ଯ୍ୟ ହାତକୁ ନେଉଛି ସେତିକି କାର୍ଯ୍ୟ ଜଗତଟା ଉପରେ ମୋର ଶ୍ରଦ୍ଧା ବଢ଼ୁଛି । ଦେଶ ଦେଶାନ୍ତରର ଲୋକ ଯେଉଁଠାରେ ମିଳନ୍ତି ସେହିଠାରେ ମୁଁ ପହଞ୍ଚିଛି ।' 'ଚିତ୍ରା'ର 'ନବସଙ୍ଗୀତ' କବିତାରେ କବି ଲେଖିଛନ୍ତି—

ଦୁର୍ଭେଦ୍ୟ ଜନତା ସଂଘ, ବନ୍ଧନହୀନ ମହାଆସଙ୍ଗ,
ତାରି ମାଝେ ଆମି କରିବ ଭଙ୍ଗ, ଆପନ ଗୋପନ ସ୍ୱପନେ
କ୍ଷୁଦ୍ର ଶାନ୍ତି କରିବ ତୁଚ୍ଛ, ପଡ଼ିବ ନିମ୍ନେ ଚଢ଼ିବ ଉଚ୍ଚ,
ଧରିବ ଧୂମକେତୁର ପୁଚ୍ଛ, ବାହୁ ବାଡ଼ାଇବ ପତନେ ।

କୁଷ୍ଟିୟା, କଲିକତା ଓ ଜମିଦାରୀର ଗ୍ରାମେ ଗ୍ରାମେ ଘୁରି ବୁଲୁଥାନ୍ତି । ଏହାଛଡ଼ା ମାର୍ଗଶିର ମାସରୁ 'ସାଧନା'ର ସମ୍ପାଦନା କାର୍ଯ୍ୟ । ସେ କାର୍ଯ୍ୟ ମଧ୍ୟ ମନଯୋଗ ସହିତ କରନ୍ତି—ଗଳ୍ପ, ପ୍ରବନ୍ଧ ସାମୟିକୀ ଲେଖନ୍ତି । ଏହି ପ୍ରବନ୍ଧ ମଧ୍ୟରୁ ବେଶୀ ହେଉଛି ଗ୍ରନ୍ଥ ସମାଲୋଚନା । ବଙ୍କିମଚନ୍ଦ୍ର 'ବଙ୍ଗଦର୍ଶନ'ରେ ପୁସ୍ତକ ସମାଲୋଚନା ଆରମ୍ଭ କରିଥିଲେ ! କିନ୍ତୁ ରବୀନ୍ଦ୍ରନାଥଙ୍କର ସମାଲୋଚନା ବଙ୍ଗଳା ଭାଷାରେ ପାଶ୍ଚାତ୍ୟ ସମାଲୋଚନା ସାହିତ୍ୟ ଅନୁରୂପ ନୂତନ ମାନଦଣ୍ଡ ପ୍ରତିଷ୍ଠିତ କଲା ।

'ସାଧନା' ପତ୍ରିକା ଲାଭଜନକ ବ୍ୟବସାୟ ନଥିଲା । ସେ ସମୟରେ ମାସିକ ପତ୍ରିକା ବିଜ୍ଞାପନ ଆୟରୁ ଚଳୁ ନଥିଲା । ନିଜର ଯାହାକିଛି ଉଦ୍‌ବୃତ୍ତ ଅର୍ଥ ତାହା ସାହେବ କମ୍ପାନୀ ସହିତ ପ୍ରତିଯୋଗିତା କ୍ଷେତ୍ରରେ କୁଷ୍ଟିୟା ବ୍ୟବସାୟର ଆଖୁକଳାତଆଶରେ ନିୟୋଜିତ । ସୁତରାଂ 'ସାଧନା'ର ଋଣଭାର ବହନ କରିବା କଠିନ ହୋଇପଡ଼ିଲା । ପତ୍ରିକା ଖଣ୍ଡିକ ଚାରିବର୍ଷ ପରେ ବନ୍ଦ ହୋଇଗଲା । କବି ସ୍ୱସ୍ତିର ନିଶ୍ୱାସ ପକାଇଲେ, ଶ୍ରୀଶ ଚନ୍ଦ୍ରଙ୍କୁ ଲେଖିଥିଲେ, 'ବହୁତ ଦିନ ପରେ ମୋର ପ୍ରିୟ ବନ୍ଧୁ ଆଳସ୍ୟର ସାକ୍ଷାତକାର ଲାଭ କରିଛି ।'

ମାସିକ ପତ୍ରିକାରେ ବାରମାସ ନାନାପ୍ରକାର ଲେଖା ସରବରାହ କରିବା ରବୀନ୍ଦ୍ରନାଥଙ୍କ ପକ୍ଷରେ ଅସହନୀୟ ହୋଇ-ପଡ଼ିଲା । ପ୍ରକୃତପକ୍ଷେ ଦୀର୍ଘକାଳ ଏକପ୍ରକାର କାର୍ଯ୍ୟ ଓ ଭାବନାରେ

ବୃଦ୍ଧରହିବା ତାଙ୍କର ସ୍ୱଭାବ-ବିରୁଦ୍ଧ ଥିଲା । ତେଣୁ ପତ୍ରିକା ଦାୟିତ୍ୱରୁ ମୁକ୍ତଥାଇ ମନ ହାଲୁକା ହୋଇଗଲା । ଏହି ସମୟରେ 'ଚିତ୍ରା'ର କେତୋଟି ଉତ୍କୃଷ୍ଟ କବିତା ଲେଖିଥିଲେ—ପୂର୍ଣ୍ଣିମା, ଉର୍ବଶୀ, ବିଜୟିନୀ, ସ୍ୱର୍ଗ ହଇତେ ବିଦାୟ, ସିନ୍ଧୁପାରେ ପ୍ରଭୃତି । 'ଚିର ବନ୍ଧୁ ଆଳସ୍ୟ' ନିରବଚ୍ଛିନ୍ନ ହସ୍ତିବା ସୁଡ଼ିରେ ଦିନ କାଟିବା ପାଇଁ ଲେଖା ନୁହେଁ ।

(୩୪)

୧୩୦୨ (ବଙ୍ଗାବ୍ଦ) ସାଲର ମାର୍ଗଶିର ମାସରେ 'ସାଧନା' ବନ୍ଦ ହୋଇଗଲା । ଫାଲ୍‌ଗୁନ ମାସରେ 'ଚିତ୍ରା' ପ୍ରକାଶିତ ହେଲା ଓ ଚୈତ୍ର ମାସରେ 'ଚୈତାଳି' ଲେଖିଲେ ।

ରବୀନ୍ଦ୍ରନାଥ ପତିସରର ଜମିଦାରୀରେ ଥାନ୍ତି । ସେଠାର ନଦ ନଦୀ ନିତାନ୍ତ ଗ୍ରାମ୍ୟ । କ୍ଷୀଣ ତାର ପରିସର, ମନ୍ଥର ତା'ର ଗତି—କବିପ୍ରାଣକୁ ବିଭୋଳ କରିଥିଲା ।

ଚୈତ୍ରର ଦୁଃସହ ଗରମରେ ନୌକାରେ ଥାଆନ୍ତି – ମନ ଦେଇ ବହି ପଢ଼ିବାର ଅନୁକୂଳ ବାତାବରଣ ନାହିଁ । ନୌକାର ଝରକା ବନ୍ଦ – ଦରଜା ଖୋଲା—ତା'ର ମଝିରେ ଦେଖାଯାଉଥାଏ ବାହାର ଜଗତ – ପରେ 'ଛବି ଓ ଗାନ'ର ଝରକାରେ ଦେଖିଲା ପରି । ସେ ଜଗତ ଏକ ସଂକୀର୍ଣ୍ଣ ପରିବେଷ୍ଟନୀରେ । ସେ ଛବି ନିରଳଙ୍କାର ଭାବରେ ଭାଷାରେ ଅଙ୍କିତ । ପ୍ରକୃତ କବି ରବୀନ୍ଦ୍ରନାଥ ଏତେଦିନ ପର୍ଯ୍ୟନ୍ତ ବହୁ କବିତାରେ ପ୍ରକୃତିର ଶୋଭା ଆଙ୍କିଥିଲେ, ମନୁଷ୍ୟ ଥିଲା ସେଠାରେ ଗୌଣ । କେବଳ ପ୍ରକୃତିକୁ ସୁନ୍ଦରତର କରିବା ପାଇଁ ମନୁଷ୍ୟର ଯେତିକି ସାହାଯ୍ୟ ଲୋଡ଼ା, ସେତିକି ନେଇଥିଲେ । କିନ୍ତୁ 'ଚୈତାଳି' କବିତାଗୁଚ୍ଛରେ ମଣିଷ ଓ ପ୍ରକୃତି ମଧ୍ୟରେ ଏକ ପାରସ୍ପରିକ ସମ୍ବନ୍ଧ ସ୍ଥାପିତ ହୋଇଛି । ଅର୍ଥାତ୍ ମାନବତାର ପ୍ରଥମ କାକଳୀ ଏହି କାବ୍ୟରେହିଁ ଶୁଣାଗଲା ।

ଜମିଦାରୀ କାର୍ଯ୍ୟରେ ଘୁରିବୁଲି କବି ମଣିଷକୁ ଚହ୍ନିଲେ ଓ ସେମାନଙ୍କର କଥା କହିଲେ ଗଳ୍ପଗୁଚ୍ଛରେ—ସେମାନଙ୍କର ଛବି ଆଙ୍କିଲେ 'ଚୈତାଳି'ରେ ।

ପ୍ରକୃତ କବି ରବୀନ୍ଦ୍ରନାଥଙ୍କୁ ଜମିଦାର ରବୀନ୍ଦ୍ରନାଥ ଭାବରେ ପୁଣି ଥରେ ଓଡ଼ିଶା ଯିବାକୁ ପଡ଼ିଲା । ସାଂସାରିକ ସମସ୍ୟା ଜଟିଳ ହୋଇଉଠିଛି; ଠାକୁର ଇଷ୍ଟେଟର ଭାଗବଣ୍ଟନ କଥା ଚାଲୁଥାଏ । ଏପର୍ଯ୍ୟନ୍ତ ସମସ୍ତ ଜମିଦାରୀ ଇଜମାଇଲରେ ଥିଲା । ଦେବେନ୍ଦ୍ର-ନାଥଙ୍କର କନିଷ୍ଠ ଗିରୀନ୍ଦ୍ରନାଥଙ୍କର ପୁତ୍ର ଗଗନେନ୍ଦ୍ର, ସମରେନ୍ଦ୍ର ଓ ଅବନୀନ୍ଦ୍ର ସାବାଳକ । ମହର୍ଷିଙ୍କର ଇଚ୍ଛା ଯେ ତାଙ୍କର ଜୀବିତ କାଳରେ ବିଷୟ-ସମ୍ପତ୍ତି ଭାଗ ହୋଇଯିବା ଦରକାର, ଯାହା ଫଳରେ ଭବିଷ୍ୟତରେ କୌଣସି ଗଣ୍ଡଗୋଳ ସୃଷ୍ଟି ନ ହେବ । ତଦନୁସାରେ ସାଜାନପୁର ପ୍ରଗଣା ଗଗନେନ୍ଦ୍ରଙ୍କ ଭାଗରେ ପଡ଼ିଲା ଓ ଓଡ଼ିଶାର ଜମିଦାରୀ ହେମେନ୍ଦ୍ରନାଥଙ୍କର ବଂଶଧରଙ୍କ ଭାଗରେ ପଡ଼ିଲା । ଏହିସବୁ ବ୍ୟବସ୍ଥା ନେଇ ରବୀନ୍ଦ୍ରନାଥଙ୍କୁ ଖୁବ୍ ବୁଲିବାକୁ ପଡ଼ିଲା; କାରଣ ଜମିଦାରୀର ପୁଙ୍ଖାନୁପୁଙ୍ଖ ଖବର ସେ ରଖୁଥିଲେ ଓ ଜଟିଳ କାର୍ଯ୍ୟଧନ୍ଦା ବୁଝୁଥିଲେ । ଏହିସବୁ ବୈଷୟିକ ବ୍ୟବସ୍ଥାରେ କେତେକ ଅଶାନ୍ତି ଦେଖା ଦେଇଥିଲା—ତା'ର ସ୍ୱାକ୍ଷର ରହିଛି ଚୈତାଳି କାବ୍ୟରେ । ମନକୁ ଶାନ୍ତ କରିବାପାଇଁ କବି ବାରମ୍ବାର ପ୍ରାର୍ଥନା କରିଛନ୍ତି ଏହାର ଜରିଆରେ ।

ଏହି ଓଡ଼ିଶା ରହଣୀ କାଳରେ 'ମାଳିନୀ' କାବ୍ୟନାଟିକା ଖଣ୍ଡିକ ଲେଖିଥିଲେ । ମନ ନିରାସକ୍ତ ନଥିଲେ, ବୈଷୟିକ ଅଶାନ୍ତି ମଧ୍ୟରେ ଏପରି ରୂପରସ କଳ୍ପନା କରିବା ସମ୍ଭବ ହୋଇ ନଥାନ୍ତା ।

ମାଳିନୀ ଓ ଚୈତାଳୀ ପୃଥକ୍ ପୁସ୍ତକ ଆକାରରେ ମୁଦ୍ରିତ ହୋଇନାହିଁ—କେତେକ ମାସ ପରେ ପ୍ରକାଶିତ ତାଙ୍କର କାବ୍ୟ-ଗ୍ରନ୍ଥାବଳୀର ଅନ୍ତର୍ଭୁକ୍ତ ହୋଇଥିଲା । ଏହା ହିଁ ରବୀନ୍ଦ୍ରନାଥଙ୍କର ପ୍ରଥମ କାବ୍ୟ ସଂଗ୍ରହ—ପ୍ରକାଶ କରିଥିଲେ ଭଣଜା ସତ୍ୟପ୍ରସାଦ ଗଙ୍ଗୋପାଧ୍ୟାୟ ।

(୩୭)

ପତ୍ରିକାର ତାଗିଦା ନାହିଁ, ଲେଖାର ତାଗିଦା ନାହିଁ—ଲେଖମୀ ସ୍ତବ୍‌ଧ । କୃଷ୍ଟିସ୍ତ୍ୱାରେ ବ୍ୟବସାୟ ଗ୍ଟଲୁଛି, ତାର ମଧ୍ୟରେ ନିଜକୁ ବୁଡ଼ାଇ ଦେଇଛନ୍ତି । 'ସନ୍ଧ୍ୟାର ପ୍ରେମ'ର ନିଗଡ଼ ବନ୍ଧନ—

ତୁଇ ତୋ ଆମାର ବନ୍ଦୀ ଅଭାଗୀ
ବାନ୍ଧିୟାଛି କାରାଗାରେ
ପ୍ରାଣେର ବାଁଧନ ଦିୟେଛି ପ୍ରାଣେତେ,
ଦେଖି କେ ଖୁଲିତେ ପାରେ ।

ବନ୍ଧୁମାନଙ୍କର ଲେଖିବାପାଇଁ ଅନୁରୋଧ ଫଳରେ ଏହି ଶିକୁଳିରୁ ମୁକ୍ତ ହେଲେ । ଲେଖିଲେ 'ବୈକୁଣ୍ଠର ଖାତା'—ଗୃରବର୍ଷ ପୂର୍ବରୁ ସେହି ବନ୍ଧୁମାନଙ୍କ ଅନୁରୋଧରେ 'ଗୋଡ଼ାୟ ଗଲଦ' ଲେଖିଥିଲେ । ଅନାବିଲ ହାସ୍ୟରସ ମଧ୍ୟରେ କେଦାର ଓ ତିନକଡ଼ି ଚରିତ୍ର ଦୁଇଟିର ଚରଣ ଦେଖି ତାଙ୍କ ଉପରେ ରୀତିମତ ରାଗ ହୁଏ ।

'ବୈକୁଣ୍ଠର ଖାତା' ପ୍ରକାଶିତ ହେବାର ମାସକ ପରେ 'ପଞ୍ଚଭୂତର ଡାଏରୀ' ପ୍ରକାଶିତ ହେଲା—କ୍ଷିତି, ଅପ୍, ତେଜ, ମରୁତ, ବ୍ୟୋମ ସଙ୍ଗରେ ଅପୂର୍ବ କଥାବାର୍ତ୍ତା । ବଙ୍ଗଳା ଭାଷାରେ ଏପରି ବହି ପୂର୍ବରୁ ବା ପରେ ପ୍ରକାଶିତ ହୋଇଥିବାର ମନେହୁଏ ନାହିଁ । ଏହି ବହି ପଢ଼ିଲେ ଆମେରିକାନ୍ ଲେଖକ ଓଏ୍ୱେନ ଓ୍ୱେଲ ହୋମରଙ୍କର 'ପୋଏଟ ଅଫ୍ ଦି ବ୍ରେକଫାଷ୍ଟ ଟେବୁଲ୍'ର କଥା ମନେ ପଡ଼େ—ଆକାଶପାତାଳ ପ୍ରଭେଦ ମାତ୍ର ।

(୩୭)

୧୩୦୪ ସାଲର ଜ୍ୟେଷ୍ଠ ମାସରେ ରାଜଶାହୀ ଜିଲାର ନାଟୋୟା ସହରରେ ବଙ୍ଗୀୟ ପ୍ରାଦେଶିକ ସମ୍ମିଳନୀର ବାର୍ଷିକ ଅଧିବେଶନ

ବସିଲ । ନାଟୋଯ୍ବାର ଜମିଦାର ମହାରାଜା ଜଗଦୀନ୍ଦ୍ରନାଥ ଥିଲେ ସମ୍ମିଳନୀର ଆବାହକ । ରବୀନ୍ଦ୍ରନାଥ ଥିଲେ ମହାରାଜଙ୍କର ପରମ ବନ୍ଧୁ । ତେଣୁ ସେହି ସଭାରେ ଯୋଗଦେଲେ । ଠାକୁର ପରିବାରର ବହୁ ଯୁବକଙ୍କୁ ସଙ୍ଗରେ ନେଲେ; ସେଠାରେ ରାଜୋଚିତ ସମ୍ବର୍ଦ୍ଧନା ମିଳିଲ—ଏ ଯୁଗର ରାଜସୂୟ ଯଜ୍ଞ ।

ପ୍ରାଦେଶିକ ସମ୍ମିଳନୀ—ଆଜିକାଲିର ପ୍ରାଦେଶିକ କଂଗ୍ରେସ ସମ୍ମିଳନୀର ପୂର୍ବରୂପ । ସେ ସମୟରେ, ଅର୍ଥାତ୍ ଊନବିଂଶ ଶତାବ୍ଦୀର ଶେଷଭାଗରେ ରାଜନୀତି ଥିଲ ଉଚ୍ଚ ଓ ମଧ୍ୟବିତ୍ତ ଶିକ୍ଷିତ ସମାଜ ମଧ୍ୟରେ ଆବଦ୍ଧ । ସଭାର ବକ୍ତୃତା, ପ୍ରସ୍ତାବ, ତର୍କବିତର୍କ ପ୍ରଭୃତି ସମସ୍ତ ଇଂରାଜୀ ଭାଷାର ମାଧ୍ୟମରେ ହେଉଥିଲ । ସବୁ କର୍ମାନୁଷ୍ଠାନ ହେଉଥିଲ ଇଂରେଜୀ ପ୍ରଭୁଙ୍କୁ ଜଣାଇ ଦେବାପାଇଁ—ଦେଶର ଲୋକଙ୍କୁ ଦେଶୀୟ ଭାଷାରେ ଦେଶଦଶର କଥା ବୁଝାଇଦେବା ସେତେବେଳକାର ନେତାମାନେ ଅନୁଭବ କରି ନଥିଲେ । ନାଟୋଯ୍ବା ସମ୍ମିଳନୀର ସଭାପତି ସତ୍ୟେନ୍ଦ୍ରନାଥ ଠାକୁର—ଅବସରପ୍ରାପ୍ତ ଭାରତୀୟ ସିଭିଲ ସର୍ଭିସ କର୍ମଚାରୀ । ସେ ଯଥାବିଧି ତାଙ୍କର ସଭାପତିର ଅଭିଭାଷଣ ଇଂରାଜୀରେ ଲେଖିଥିଲେ ।

ରବୀନ୍ଦ୍ରନାଥ ପ୍ରମୁଖ ଯୁବକ ଦଳ ଇଂରାଜୀ ଭାଷାରେ ସଭା କାର୍ଯ୍ୟ ପରିଚାଳନାର ଘୋର ବିରୋଧୀ ଥିଲେ । କବି ଲେଖିଛନ୍ତି, 'ଜଗଦୀନ୍ଦ୍ରନାଥଙ୍କ ସଙ୍ଗରେ ଚକ୍ରାନ୍ତ କରି ସଭାରେ ବଙ୍ଗଳା ଭାଷା ପ୍ରବର୍ତ୍ତନ କରିବାର ପ୍ରଥମ ଚେଷ୍ଟା କଲି ସମୟରେ, ଉମେଶଚନ୍ଦ୍ର ବନ୍ଦୋପାଧ୍ୟାୟ (W. C. Bauerjee, କଂଗ୍ରେସର ପ୍ରଥମ ସଭାପତି) ମହାଶୟ ପ୍ରଭୃତି ତତ୍କାଳୀନ ରାଷ୍ଟ୍ରନେତାମାନେ ମୋ ଉପରେ କ୍ରୁଦ୍ଧ ହୋଇ କଠୋର ବିଦ୍ରୂପ କରିଥିଲେ । ରବୀନ୍ଦ୍ରନାଥ ଠିକ୍ କରିଥିଲେ ଯେ ସ୍ୱେଚ୍ଛାସେବକମାନଙ୍କୁ ଧନ୍ୟବାଦ ଦେବା ସମୟରେ ତାଙ୍କର ମନସାଧ ମେଣ୍ଟାଇବେ । କିନ୍ତୁ ବିଧି ବାମ—ତା ହୋଇ ପାରିଲ ନାହିଁ । କୌଣସିପ୍ରକାରେ ପ୍ରାଣ ନେଇ ସମସ୍ତେ କଲିକତା ଫେରି ଆସିଲେ । ଅବନୀନ୍ଦ୍ରନାଥ ତାଙ୍କର 'ଘରୋୟା' ପୁସ୍ତକରେ ନାଟୋଯ୍ବା ସମ୍ମିଳନୀର ଅତି ସୁନ୍ଦର ବର୍ଣ୍ଣନା ଦେଇଛନ୍ତି ।

ରାଜନୀତି କ୍ଷେତ୍ରରେ ଏହି ଘଟଣାଟି କବିଙ୍କ ସମସାମୟିକ ଜୀବନରେ ସାମାନ୍ୟ ଅଂଶ ମାତ୍ର—ପ୍ରକୃତରେ ଏହା 'କଳ୍ପନା'ର ସଂଗୀତ ଓ କାବ୍ୟନାଟିକା ରଚନାର ସମୟ । ସଂଗୀତ ରଚନା ପରେ ଦେଖାଗଲା ଗଳ୍ପରଚନାର ଝୁଙ୍କ୍ । କାବ୍ୟନାଟିକା, ବଙ୍ଗଳା ସାହିତ୍ୟରେ କବିଙ୍କର ଅଭିନବ ସୃଷ୍ଟି । ପ୍ରକୃତିର ପ୍ରତିଶୋଧ, 'ଚିତ୍ରାଙ୍ଗଦା', ବିଦାୟ ଅଭିଶାପ, ମାଳିନୀ—ଅନେକଦିନରେ ଲିଖିତ । ଏହାପରେ ଲେଖିଲେ—ଗାନ୍ଧାରୀର ଆବେଦନ, ସତୀ, ନରକବାସ, ଲକ୍ଷ୍ମୀର ପରୀକ୍ଷା । ତାପରେ ଲେଖିଲେ ଅନେକ ଗାଥା କବିତା । ସବୁଗୁଡ଼ିକ ଲେଖା ହୋଇଥିଲା ୧୩୦୪ ବଙ୍ଗାବ୍ଦର କାର୍ତ୍ତିକ-ମାର୍ଗଶିର ମାସ ମଧ୍ୟରେ । 'ଭାଷା ଓ ଛନ୍ଦ' କବିତାର ଗଳ୍ପାଂଶ ଜରିଆରେ ଇତିହାସ-ସତ୍ୟ କେତେ ସାମାନ୍ୟ, ତା'ର ସାର କଥା କହିଥିଲେ ନାରଦ ମୁନିଙ୍କ ମୁଖରେ—

> ନାରଦ କହିଲ ହାସି, ସେଇ ସତ୍ୟ
> ଯା ରଚିବେ ତୁମି ।
> ଘଟେ ଯା' ତା' ସତ୍ୟ ନହେଁ
> କବି ତବ ମନୋଭୂମି
> ରାମେର ଜନମ ସ୍ଥାନ, ଅଯୋଧ୍ୟାର
> ଚେୟେ ସତ୍ୟ ଜେନୋ ।

କବି ଏହିକଥା ମଧ୍ୟ ଖ୍ରୀଷ୍ଟଙ୍କ ସମ୍ପର୍କରେ କହିଥିବାର ଶୁଣାଯାଏ । ଅଧ୍ୟାପକ ଧୀରେନ୍ଦ୍ରନାଥ ଚୌଧୁରୀ ଗୋଟିଏ ବହି ଲେଖି ଖ୍ରୀଷ୍ଟଙ୍କର ଅଣଐତିହାସିକତା ସମ୍ପର୍କରେ ପ୍ରମାଣ କରିଥିଲେ—ନାନା ଐତିହାସିକ ଗ୍ରନ୍ଥରୁ ସେ ସବୁ ସଂଗୃହୀତ । କବି ତାଙ୍କୁ କହିଥିଲେ ଯେ ମନୁଷ୍ୟ ଯେଉଁ ଖ୍ରୀଷ୍ଟ ସୃଷ୍ଟି କରିଛି ତାହା ଚଳୁଛି ଓ ଚଳିବ; କାରଣ ତାହା ତା'ର ଧ୍ୟାନଲବ୍ଧ ସତ୍ୟ । 'ଘଟେ ଯାହା ସବୁ ସତ୍ୟ ନୁହେଁ ।'

(୩୮)

୧୩୦୪ ସାଲରେ ରବୀନ୍ଦ୍ରନାଥଙ୍କ ଉପରେ ଭାରତୀର ସଂପାଦନା ଦାୟିତ୍ୱ ପଡ଼ିଲା । ଏହା ପୂର୍ବରୁ ସ୍ୱର୍ଣ୍ଣକୁମାରୀ ଦେବୀଙ୍କର କନ୍ୟା ହିରଣ୍ମୟୀ ଦେବୀ ଓ ସରଳା ଦେବୀ ଦୁଇ ବର୍ଷ ସଂପାଦକତ୍ୱ କରିଥିଲେ । ତା ପୂର୍ବରୁ ଦଶ ବର୍ଷ ସଂପାଦକ ଥିଲେ ସ୍ୱର୍ଣ୍ଣକୁମାରୀ ଦେବୀ ନିଜେ ଓ ତା ପୂର୍ବରୁ ଥିଲେ ଦ୍ୱିଜେନ୍ଦ୍ରନାଥ । ଏକୋଇଶ ବର୍ଷ ପୂର୍ବେ 'ଭାରତୀ'ର ଆରମ୍ଭ । ସେତେବେଳକୁ ରବୀନ୍ଦ୍ରନାଥଙ୍କର ବୟସ ଥିଲା ଷୋଳବର୍ଷ—ବର୍ତ୍ତମାନ ସଇଁତିରିଶ ।

ପତ୍ରିକା ଦାୟିତ୍ୱ ପଡ଼ିଲେ ରବୀନ୍ଦ୍ରନାଥଙ୍କର ଲେଖନୀ ହୁଏ ସଚଳ । ଗଳ୍ପ, କବିତା, ପୁସ୍ତକ ସମାଲୋଚନା, ନାନା ବିଷୟକ ପ୍ରବନ୍ଧ ଯଥାନିୟମ ଲେଖା ଚାଲିଲା ।

ଊନବିଂଶ ଶତାବ୍ଦୀର ଶେଷ ଭାଗ । ଗତ କେତେବର୍ଷ ମଧ୍ୟରେ ରାଜନୈତିକ ଚେତନା ଜନତା ମଧ୍ୟରେ ନୂତନ ରୂପ ପାଇଥାଏ । ୧୮୯୩ ମସିହାରୁ ବାଳଗଙ୍ଗାଧର ତିଲକଙ୍କର ପ୍ରେରଣାରେ ମହାରାଷ୍ଟ୍ରରେ ହିନ୍ଦୁ ଜାତୀୟବୋଧ ଦେଖା ଦେଇଥିଲା । ତା'ର ପ୍ରତିକ୍ରିୟା ଫଳରେ ଯେଉଁ ସବୁ ଘଟଣା ଘଟିଥିଲା, ତା'ର ଆଭାସ ପୂର୍ବରୁ ଦିଆ ହୋଇଛି ।

୧୮୯୭ ଖ୍ରୀଷ୍ଟାବ୍ଦରେ ବମ୍ବେ ପ୍ରଦେଶରେ ପ୍ଲେଗ ରୋଗ ଆରମ୍ଭ ହେଲା । ଇଂରେଜ ସରକାର ହତବୁଦ୍ଧି ହୋଇ ଏପରି ଆଇନଜାରି କଲେ ଯେ ଲୋକେ ତାହାକୁ ରୀତିମତ ଜୁଲୁମ୍ ଭାବିଲେ— ବ୍ୟାଧି ଠାରୁ ତା'ର ଔଷଧ ଆହୁରି କଷ୍ଟ । ଏହା ପୂର୍ବରୁ ଇଂରେଜମାନଙ୍କୁ ପ୍ରତିରୋଧ କରିବା ପାଇଁ ପୁନାରେ ଗୁପ୍ତ ସମିତି ଗଠିତ ହୋଇଥିଲା । ତାର ଦୁଇଜଣ ସଦସ୍ୟ ମହାରାଣୀ ଭିକ୍ଟୋରିଆଙ୍କର ଜୁବିଲି ଉତ୍ସବ ଦିନ ପ୍ଲେଗ ଅଫିସର ଓ ମାଜିଷ୍ଟ୍ରେଟ ସାହେବଙ୍କୁ ଗୁଳି କରି ମାରିଲେ । ସରକାର ବାଳଗଙ୍ଗାଧର ତିଲକଙ୍କୁ ଏହାର ପ୍ରରୋଚକ ଭାବିଲେ ଓ ତାଙ୍କର ଏକବର୍ଷ କାରାଦଣ୍ଡ ହେଲା ।

ଭାରତର ସବୁଆଡ଼େ ବିଶେଷତଃ ବଙ୍ଗଳା ଓ ବମ୍ବେ ପ୍ରଦେଶରେ ମହାରାଷ୍ଟ୍ରୀୟ ପତ୍ରିକା ଗୁଡ଼ିକ ଭାରତ ସରକାରଙ୍କ ଜୁଲମ୍‌ର ତୀବ୍ର ସମାଲୋଚନା କଲେ । ତାଙ୍କର ଭାଷା ବେପରୁଆ, ଧୃଷ୍ଟ ବିକୃତ ଭାବରେ ପ୍ରକାଶିତ ହେଲା । ସରକାର ଏହି ଦାୟିତ୍ୱହୀନ ଲେଖା ବନ୍ଦ କରିବା ପାଇଁ 'ସିଡ଼ିଶନ' ବିଲ୍ ଆଣିଲେ । ସେତେବେଳେ ବଡ଼ଲାଟଙ୍କର ରାଜଧାନୀ କଲିକତାରେ ଥାଏ । ଏହି ବିଲ୍ ପାସ ହେବାର ପୂର୍ବ ଦିନ ଟାଉନହଲରେ ବିରାଟ ସଭା ହେଲା । ରବୀନ୍ଦ୍ରନାଥ 'କଣ୍ଠରୋଧ' ନାମକ ପ୍ରବନ୍ଧ ପାଠକଲେ ।

ରବୀନ୍ଦ୍ରନାଥଙ୍କ ମତରେ ଦେଶରେ ଅସନ୍ତୋଷ ଦେଖାଦେଲେ ତାହା ପ୍ରକାଶ କରିବା ଉଚିତ । ସେ କହିଲେ ଯେ ସଂବାଦପତ୍ର ଯେତେ ଅଧିକ ସଂଖ୍ୟାରେ ପ୍ରକାଶିତ ହେବ, ତାର ଗତିପଥ ଯେତେ ଅବାଧ ହେବ, ସ୍ୱାଭାବିକ ନିୟମ ଅନୁସାରେ ଦେଶ ସେତିକି ଅଗ୍ରସର ହେବ । ରୁଦ୍ଧବାକ୍ ସମ୍ବାଦପତ୍ରରେ, ରହସ୍ୟାଚ୍ଛନ୍ନ ଅନ୍ଧକାର ମଧ୍ୟରେ ରହିବା ଆମ୍ଭମାନଙ୍କ ପକ୍ଷରେ ଭୟଙ୍କର ଅବସ୍ଥା । କବିଙ୍କର ମତରେ 'କଠିନ ଆଇନ ଓ ଜବରଦସ୍ତିର ସମ୍ପୂର୍ଣ୍ଣ ଓଲଟା ଫଳ ଫଳେ।' ସେ କହିଲେ ରାଜାର ବିରୁଦ୍ଧରେ କ୍ଷୁବ୍ଧତାକୁ ଯଦି ରାଜଦ୍ରୋହ କୁହାଯାଏ, ତେବେ ପ୍ରଜାଙ୍କ ବିରୁଦ୍ଧରେ ରାଜପୁରୁଷମାନଙ୍କର ଅତ୍ୟାଚାରକୁ ପ୍ରଜାଦ୍ରୋହ ନ କୁହାଯିବ କାହିଁକି ? ଏହା ଏକ କଠିନ ଶବ୍ଦ ଓ ଉକ୍ତି—ପ୍ରଜାର ସ୍ୱାର୍ଥବିରୋଧୀ ରାଜକାର୍ଯ୍ୟ ପ୍ରଜାଦ୍ରୋହିତା !

କେତେକ ଦିନ ପରେ ଢାକାରେ ପ୍ରାଦେଶିକ ସମ୍ମିଳନୀ ହେଉଥାଏ । ସଭାପତି ହାଇକୋର୍ଟର ଉକିଲ ରେଭରେଣ୍ଡ କାଳୀଚରଣ ବନ୍ଦୋପାଧ୍ୟାୟ – ଧର୍ମରେ ନିଷ୍ଠାବାନ୍ ଖ୍ରୀଷ୍ଟିୟାନ ଓ ଅନ୍ତରରେ ଦେଶପ୍ରେମୀ । ସେ ଯୁଗର ରୀତି ଅନୁସାରେ ସଭାପତିଙ୍କ ଭାଷଣ ଇଂରାଜୀରେ ପଠିତ ହେଲା । କିନ୍ତୁ ବଙ୍ଗଳାରେ ତାର ସାରାଂଶ କହିଲେ ରବୀନ୍ଦ୍ରନାଥ । କବି ଉଦ୍‌ବୋଧନୀ ସଙ୍ଗୀତ ମଧ୍ୟ ଗାନ କରିଥିଲେ ।

(୩୯)

ସାହିତ୍ୟ ସୃଷ୍ଟି, ସଙ୍ଗୀତ ସମାଲୋଚନା—ଏ ସବୁ ଜୀବନର ବାହ୍ୟ ବିଷୟ; କିନ୍ତୁ ମନୁଷ୍ୟ ରବୀନ୍ଦ୍ର ନାଥ ? ତାଙ୍କର ସମସ୍ୟା ସାଧାରଣ ମନୁଷ୍ୟର ସମସ୍ୟା । ପିଲାମାନେ ବଡ଼ ହୋଇଛନ୍ତି— ସେମାନଙ୍କର ଶିକ୍ଷା ଦୀକ୍ଷା ସମ୍ବନ୍ଧରେ ତାଙ୍କର ନିଜସ୍ୱ ମତ ଥିବାରୁ ସେମାନଙ୍କୁ କଲିକତାର ସ୍କୁଲରେ ପଢ଼ାଇଲେ ନାହିଁ । ଅବଶ୍ୟ ଠାକୁର ପରିବାରର ଅନ୍ୟାନ୍ୟ ଅଧିକାଂଶ ଶିଶୁ ଯଥାରୀତିରେ ସ୍କୁଲ ଯାଉଥିଲେ – କଲେଜରେ ପଢ଼ୁଥିଲେ ।

ଯୋଡାସାଁକୋର ଘର ବହୁ ଗୋଷ୍ଠୀରେ ପୂର୍ଣ୍ଣ—ନାନା ଆଦର୍ଶରେ ପିଲାମାନଙ୍କୁ ମଣିଷ କରାଯାଉଛି । ମହର୍ଷି ଦେବେନ୍ଦ୍ରନାଥ ବୃଦ୍ଧ— ଯୋଡାସାଁକୋ ଘରେ ରହନ୍ତି ନାହିଁ । ରବୀନ୍ଦ୍ରନାଥ ମଧ୍ୟ ଏପରି ଅବସ୍ଥାରେ ପିଲାପିଲି ନେଇ ସେଠାରେ ରହିବାକୁ ଇଚ୍ଛା କଲେ ନାହିଁ । ତାକାରୁ ଶିଲାଇଦହକୁ ଫେରି ସ୍ତ୍ରୀଙ୍କୁ ଲେଖିଲେ, 'ମୁଁ କଲିକତାରେ ସ୍ୱାର୍ଥ-ଦେବତାଙ୍କ ପାଷାଣ ମନ୍ଦିରରୁ ତୁମ୍ଭମାନଙ୍କୁ ଦୂର ନିଭୃତ ପଲ୍ଲୀ ଗ୍ରାମକୁ ନେବାକୁ ଉତ୍ସୁକ ହୋଇ ପଡ଼ିଛି ।'

୧୩୦୪ସାଲର ମଧ୍ୟଭାଗରେ କବି ତାଙ୍କର ପରିବାରକୁ ଶିଲାଇଦହ ନେଇଗଲେ । ଘରେ ପିଲାମାନଙ୍କର ଶିକ୍ଷା ବ୍ୟବସ୍ଥା କଲେ । ତିନିବର୍ଷ ପରେ ଶାନ୍ତିନିକେତନ ଆବାସିକ ବିଦ୍ୟାଳୟ ସ୍ଥାପିତ ହେଲା – ତାର ନାମ ଦେଲେ ବ୍ରହ୍ମଚର୍ଯ୍ୟାଶ୍ରମ । ଯଥା ସ୍ଥାନରେ ଏହି ବିଦ୍ୟାଳୟ ପ୍ରସଙ୍ଗରେ କୁହାଯିବ ।

(୪୦)

କୁଷ୍ଟିଆ ବ୍ୟବସାୟର ଅବସ୍ଥା ଭଲ ନୁହେଁ; ବଳେନ୍ଦ୍ରନାଥ ଅସୁସ୍ଥ, ସୁରେନ୍ଦ୍ରନାଥ ଉଦାସୀନ ଓ ରବୀନ୍ଦ୍ରନାଥ 'ଭାରତୀ' ନେଇ ବ୍ୟସ୍ତ । ନିଜର ସାହିତ୍ୟ ସୃଷ୍ଟିର ଆନନ୍ଦ ଓ ପାରିବାରିକ ସମସ୍ୟାର ନିରାନନ୍ଦ ନେଇ ତାଙ୍କର ଜୀବନ ଚାଲିଥାଏ । ବ୍ୟବସାୟ ଦିଗରେ

ଦୃଷ୍ଟି ପକାଇଲବେଳକୁ, ତାର ଅବସ୍ଥା ଶୋଚନୀୟ । ବଳେନ୍ଦ୍ର-ନାଥଙ୍କର ଅତି ବିଶ୍ୱାସୀ ମ୍ୟାନେଜରର ଫେରିର, ସତୁରି ହଜାରରୁ ଊର୍ଦ୍ଧ୍ୱ ଟଙ୍କା ଋଣ ହୋଇଛି । ସମସ୍ତ ବୋଝ ପଡ଼ିଲା ରବୀନ୍ଦ୍ରନାଥଙ୍କ ଉପରେ । କାରଣ ବଳେନ୍ଦ୍ରନାଥ ଓ ସୁରେନ୍ଦ୍ର-ନାଥ ସେତେବେଳ ପର୍ଯ୍ୟନ୍ତ ଜମିଦାରୀର ଅଂଶୀଦାର ନୁହନ୍ତି । ଉଭୟଙ୍କର ପିତା ଜୀବିତ ।

ବ୍ୟବସାୟର ଋଣ ହୁଏତ ସ୍ୱାଭାବିକ ଭାବରେ ପରିଶୋଧ ହୋଇ ପାରିଥାନ୍ତା । କିନ୍ତୁ ରବୀନ୍ଦ୍ରନାଥ ବ୍ୟବସାୟ ବନ୍ଦ କରିଦେଲେ । କବିଙ୍କର ଜୀବନରେ ବହୁବାର ଦେଖାଯାଇଛି ଯେ ନିଷ୍ଫଳତାର ସମସ୍ତ ସ୍ମୃତି ସେ ନିର୍ମମ ଭାବରେ ପୋଛି ଦେଇଛନ୍ତି—ଅତୀତର କୌଣସି ଚିହ୍ନ ଯେପରି ବିନଷ୍ଟିର କରୁଣ କାହାଣୀ ମନେ ପକାଇବା ପାଇଁ ରହି ନଯାଏ । ଲେଖା ଯେତେବେଳେ କାଟିପକାନ୍ତି ସେତେବେଳେ ଏପରି ଭାବରେ କଲମ ଚଳାନ୍ତି ଯେ କାହାରି ପଢ଼ି ପାରିବାର ସାଧ ନାହିଁ । ସେଥିପାଇଁ କୁଷ୍ଟିୟାର ବ୍ୟବସାୟ ବନ୍ଦ କରିବାରେ ଔତ୍ସୁକ୍ୟ ଦେଖାଦେଲା । ସାହିତ୍ୟ ମଧ୍ୟରେ ତାର କୌଣସି ସ୍ପଷ୍ଟ ଉଲ୍ଲେଖ ନାହିଁ । ବ୍ୟବସାୟର ଋଣ ପରିଶୋଧ ପାଇଁ ଅନ୍ୟ ସ୍ଥାନରେ ଋଣ କଲେ । ଏହିପରି ଭାବରେ ଏକ ଗୁରୁ ବ୍ୟବସାୟ ନଷ୍ଟ ହୋଇଗଲା । ଇତି ମଧ୍ୟରେ ୧୩୦୬ ସାଲ ଭାଦ୍ର ମାସରେ ଊନତିରିଶ ବର୍ଷ ବୟସରେ ବଳେନ୍ଦ୍ରନାଥ ଠାକୁରଙ୍କର ମୃତ୍ୟୁ ହୋଇଥିଲା । ମାତ୍ର ମୃତ୍ୟୁର ଗୁରିବର୍ଷ ପୂର୍ବରୁ ଏହି ପ୍ରତିଭାବାନ ପ୍ରିୟଦର୍ଶନ ଯୁବକଙ୍କର ବିବାହ ହୋଇଥିଲା ।

(୪୧)

ଶିଳାଇଦହର କୋଠିବାଡ଼ିରେ ପିଲାମାନଙ୍କ ପାଇଁ ଏକ ସ୍କୁଲ ଖୋଲା ହେଲା । ଇଂରେଜୀ ପଢ଼ାଇବା ପାଇଁ ନିଯୁକ୍ତ ହେଲେ ଏଲେନ୍ ଲରେନ୍ସ—ଏକ ପାଗଳ ମିଜାଜର ଲୋକ । ଗଣିତ ଶିଖାଇବା ପାଇଁ ଆସିଲେ ଜଗଦାନନ୍ଦ ରାୟ । ଶିବଧନ ବିଦ୍ୟାର୍ଣ୍ଣବ

ସଂସ୍କୃତ ପଢ଼ାଇବାରେ ନିଯୁକ୍ତ ହେଲେ । ରବୀନ୍ଦ୍ରନାଥ ନିଜେ ମଧ୍ୟ ପିଲମାନଙ୍କ ପାଠପଢ଼ାରେ ଯଥେଷ୍ଟ ସମୟ ଦେଲେ ।

ଭଲ ମନ୍ଦ, ସୁଖ ଦୁଃଖ, ଶାନ୍ତି ଉଦ୍‌ବେଗର ଅନ୍ତରାଳରେ କାବ୍ୟ ଲକ୍ଷ୍ମୀଙ୍କର ଦେଖା . ମିଳନ୍ତି । କିନ୍ତୁ ସେପରି ବିଶେଷ କିଛି ସୃଷ୍ଟି ହୋଇ ପାରନି—ଲେଖିଥିଲେ 'କଣିକା' ଦୁଇ ପଙ୍‌କ୍ତିରୁ ଦଶ ପଙ୍‌କ୍ତିର କବିତା । ବାଂବଧାୟ ସେସବରେ ବିଭିନ୍ନ ଲୋକଙ୍କର ସଂସ୍ପର୍ଶରେ ଆସି ଅନୁଭବ କରିଥିଲେ ଯେ ଭିତରେ ଏକ ମନ୍ତ୍ର ଫାଙ୍କିବାଜ ରହିଛନ୍ତି—ଭଣ୍ଡାମୀ ଉପରେ ଭଦ୍ରତାର ମୁଖା ପିନ୍ଧି ସମସ୍ତେ କାର୍ଯ୍ୟ କରୁଛନ୍ତି । ଏଣୁ ତାର ପ୍ରତିକ୍ରିୟା ରୂପେ ତାଙ୍କ କବିତା ହେଲା ତୀବ୍ର ବିଦ୍ରୂପରସାଣିତ । ତଥାକଥିତ ଗୁଣକ୍ୟ ଶ୍ଳୋକ ସଙ୍ଗେ ତୁଳନା କଲେ ତାତ୍ପର୍ଯ୍ୟ ବା ଔଜ୍ଜ୍ୱଲ୍ୟରେ ଏହା ନ୍ୟୂନ ନୁହେଁ; ବହି ଖଣ୍ଡିକ ମୟୂମନସିଂହର ଜମିଦାର ପ୍ରଥମନାଥ ରାୟ ଚୌଧୁରୀଙ୍କୁ ଉତ୍ସର୍ଗ କଲେ—ସେ ସମୟରେ ତାଙ୍କର କବିଖ୍ୟାତି ଥିଲା ।

୧୩୦୬ ସାଲର ମଧ୍ୟଭାଗରେ ଗାଥା କବିତା ଲେଖା ଆରମ୍ଭ କଲେ । ଏହା ପ୍ରଥମେ 'କଥା' ଓ ପରେ 'କଥା ଓ କାହାଣୀ' କାବ୍ୟ ନାମରେ ମୁଦ୍ରିତ ହୋଇଥିଲା । ରବୀନ୍ଦ୍ର ସାହିତ୍ୟ-ସୃଷ୍ଟିର ସ୍ରୋତ-ଧାରାର ମଝିରେ ମଝିରେ ଦେଖାଯାଏ ଗଳ୍ପ ବା କାହାଣୀ କହିବାର ଆବେଗ । କେତେବେଳେ ଗଦ୍ୟ କିମ୍ବା ପଦ୍ୟରେ ତାର ରୂପ ଦିଅନ୍ତି 'ଭାବ ଯେତେ ଗୁଏ ମାଝାରେ ଛଡ଼ା' । ଏଥର କୋଡ଼ିଏଟି ଗାଥା କବିତା ଲେଖିଥିଲେ ।

ଶିଲାଇଦହରେ ରହିଲେ ବି ନାନା କାର୍ଯ୍ୟରେ କଲିକତା ଆସିବାକୁ ପଡୁଥାଏ । କଲିକତା ଯୁବକ ସମାଜ 'ରବିବାବୁ'ଙ୍କୁ ନ ପାଇଲେ ଅନେକ କାର୍ଯ୍ୟ ହୋଇପାରେନି । ୧୩୦୬ ସାଲର ଶେଷଆଡ଼କୁ ବଙ୍ଗୀୟ ସାହିତ୍ୟ ପରିଷଦର ଏକ ଗଣ୍ଡଗୋଳ ମେଣ୍ଟାଇବା ପାଇଁ ତାଙ୍କୁ କଲିକତା ଆସିବାକୁ ହେଲା । ଗତ ଛଅ ବର୍ଷଧରି ପରିଷଦର କାର୍ଯ୍ୟାଳୟ ଗ୍ରେ ଷ୍ଟ୍ରୀଟରେ ଶୋଭାବଜାର ରାଜ-ବାଟୀରେ ହେଉଥାଏ । ନବୀନ ଦଳ ଧନୀ ଗୃହରେ ସଭାସମିତି କରିବା ବିରୋଧୀ; ସେମାନଙ୍କର ଇଚ୍ଛା ପୃଥକ ଗୃହକୁ ପରିଷଦ

ସ୍ଥାନାନ୍ତରିତ ହେଉ । ରବୀନ୍ଦ୍ରନାଥପ୍ରମୁଖ ନବୀନ ଦଳଙ୍କର ଚେଷ୍ଟାରେ ଜୟ ହେଲା ଓ ନୂତନ ଭଡ଼ାଘରେ ପରିଷଦ କାର୍ଯ୍ୟାଳୟ ହେଲା । ପରିଷଦ ପାଇଁ ସରକୁଲାର ରୋଡ଼ରେ ଜମି 'ମିଳିଲା—ମହାରାଜ ମଣୀନ୍ଦ୍ରଚନ୍ଦ୍ର ନନ୍ଦୀ ପରିଷଦ ପାଇଁ ଜମି ଦାନ କଲେ । ପରିଷଦ ପକ୍ଷରୁ ଗ୍ରହୀତାମାନଙ୍କ ମଧ୍ୟରେ ରବୀନ୍ଦ୍ରନାଥ ଥିଲେ ଅନ୍ୟତମ ।

(୪୨)

'କଥା ଓ କାହାଣୀ' ଲେଖୁ ଲେଖୁ କବିଙ୍କର ମନରେ ଏକ ବିଦ୍ରୋହ ଭାବ ଆସିଲା । ମନ ଗୃହେଁ ଖୋଲା ଆକାଶ—ମୁକ୍ତି । କ୍ଷଣକ ପାଇଁ କ୍ଷଣିକ ସଙ୍ଗୀତ ଗାଇବା ପାଇଁ ମନ ବ୍ୟାକୁଳ ହେଲା । 'କଡ—ନା ଯୁଗେର କାହାଣୀ' ପାଇଁ ମନ ଉଭିଲା ନୁହେଁ । ଅନ୍ତରର 'କଳ୍ପନା'ଲୋକରେ ଅତୀତ ଓ ଅନାଗତରେ ସ୍ୱପ୍ନ ବିହାର ଅନେକ ହୋଇଛି । ମନ ଖୋଜୁଛି ମୁକ୍ତ—ପ୍ରତି ମୁହୂର୍ତ୍ତର ଅଭିଜ୍ଞତାରେ, ଉପଲବ୍ଧିରେ, ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧରେ ।

'ଭାରତୀ' ପାଇଁ ଲେଖିବାର ତାଗିଦା ଆସିବା ଫଳରେ ଯେଉଁ କାହାଣୀ ଲେଖିଲେ ତାହା ରୂପାୟିତ ହେଲା 'ଚିରକୁମାର ସଭା' ନାମରେ । କବିତା ଆସିଲା 'କ୍ଷଣିକା' ବେଶରେ । 'କ୍ଷଣିକା'ର କବିତା ନୁଡ଼ିକ ୧୬୦୭ ସାଲର ପ୍ରଥମ ଭାଗରେ ଲିଖିତ । କେତେକ ଶିଲାଇଦହରେ, କେତେକ କଲିକତାରେ ଓ ଅନ୍ୟ କେତେକ ତ୍ରିପୁରା ମହାରାଜାଙ୍କ ସଙ୍ଗରେ ଦାର୍ଜିଲିଂ ଯିବା ସମୟରେ ଲିଖିତ । ବହୁ ଖଣ୍ଡିକ ସାହିତ୍ୟିକ ବନ୍ଧୁ ଲୋକେନ୍ ପାଲିତଙ୍କୁ ଉତ୍ସର୍ଗ କରିଥିଲେ ।

'କ୍ଷଣିକା' ରବୀନ୍ଦ୍ରନାଥଙ୍କର ଅନ୍ୟତମ ଶ୍ରେଷ୍ଠ ରଚନା—ଆପାତ ଦୃଷ୍ଟିରେ ଦେଖିଲେ ଲଘୁ ଭାବରେ ହାଲୁକା ଛନ୍ଦରେ ଯାହା କହିବାକୁ ଗୃହିଁଛନ୍ତି, ତାହା ସୂଚିତ କରୁଛି ଗୁଢ଼ ଓ ଗଭୀରତର ବାଣୀ ।

'ଚିରକୁମାର ସଭା' ପ୍ରହସନାତ୍ମକ ଉପନ୍ୟାସ ହେଲେବି ତାହା କେବଳ ନିଛକ ହାସ୍ୟରସ ନୁହେଁ—ଗମ୍ଭୀର ସମସ୍ୟାର ଅନ୍ତଃସଲିଳା ଫଲ୍‌ଗୁ ତାର ଛନ୍ଦେ ଛନ୍ଦେ ପ୍ରବାହିତ ।

ଚିରକୌମାର୍ଯ୍ୟ ସମାଜର ଆଦର୍ଶ ହୋଇପାରେ କି ନାହିଁ, ପ୍ରହସନ ଆକାରରେ ସେହି ସମସ୍ୟାଟି ବର୍ଣ୍ଣିତ ହୋଇଛି । ଏହି ସମୟରେ ସ୍ୱାମୀ ବିବେକାନନ୍ଦ ବଙ୍ଗଳାର ନୂତନ ସନ୍ନ୍ୟାସୀ ସମ୍ପ୍ରଦାୟ ଗଢ଼ିଥାନ୍ତି—ଏହି ପ୍ରହସନ କଣ ସେହି ମତବାଦର ସମାଲୋଚନା ? 'କ୍ଷଣିକା'ର ଗୋଟିଏ କବିତାରେ ଏହି ମନୋଭାବ ଲକ୍ଷ୍ୟ କରାଯାଏ ।

ଏଥିରେ ହାସ୍ୟ ପରିହାସ ଜରିଆରେ ଯାହା କହିଥିଲେ, ତାହା ଗଭୀର ଆଧ୍ୟାତ୍ମବୋଧ ଜରିଆରେ 'ନୈବେଦ୍ୟ' କାବ୍ୟରେ ପ୍ରକଟିତ —ବୈରାଗ୍ୟ ସାଧନେ ମୁକ୍ତି ସେ ଆମାର ନହେ ।

(୪୩)

ନିଜର ସ୍ତ୍ରୀ ପୁତ୍ର କନ୍ୟା ନେଇ ସଂସାର ସମସ୍ତେ କରନ୍ତି— ରବୀନ୍ଦ୍ରନାଥ ବି କରୁଥିଲେ । ତାଙ୍କପରି କର୍ତ୍ତବ୍ୟ ପରାୟଣ ସ୍ୱାମୀ ଓ ସ୍ନେହଶୀଳ ପିତା କମ୍ ଦେଖାଯାନ୍ତି । ଅନ୍ୟର ଦୁଃଖମୋଚନ କରିବା ଚିନ୍ତା ମଧ୍ୟ କରୁଥିଲେ । ରୋଗୀର ସେବା ବହୁତ କରିଛନ୍ତି । କିନ୍ତୁ ହାସପାତାଳରେ, ଯେଉଁଠି ବହୁ ରୋଗୀଙ୍କର ଦୁଃଖ ପୁଞ୍ଜୀଭୂତ ସେଠାକୁ ଯାଉନଥିଲେ — ସେଥିରେ ବ୍ୟଥିତ ହେଉଥିଲେ । କେହି କୌଣସି ଦେଶ ହିତକର କାର୍ଯ୍ୟ କରୁଥିବାର ଶୁଣିଲେ ତାକୁ ନାନାଭାବେ ସାହାଯ୍ୟ କରୁଥିଲେ । କେହି ଗବେଷଣା କରୁଛି ଜାଣିଲେ ତାକୁ ଗ୍ରନ୍ଥାଦି ମଧ୍ୟ କିଣି ଦେଉଥିଲେ । ଅନେକ ସାହିତ୍ୟିକଙ୍କୁ ଗଳ୍ପର ପ୍ଲଟ୍ ଯୋଗାଇ ଦେଇଛନ୍ତି, କେତେଲୋକଙ୍କର ରଚନା ପଙ୍‌କ୍ତି ପରେ ପଙ୍‌କ୍ତି ଦେଖି ଦେଇଛନ୍ତି । କେତେ ଲୋକଙ୍କର ଗ୍ରନ୍ଥ ପଢ଼ି ସଂଶୋଧନ କରିଛନ୍ତି,

କେତେ ଲୋକଙ୍କୁ ଉତ୍ସାହ ଦେବାପାଇଁ ଗ୍ରନ୍ଥର ଭୂମିକା ଲେଖି ଦେଇଛନ୍ତି—ତାର ସବିସ୍ତର ଗବେଷଣା ଏପର୍ଯ୍ୟନ୍ତ ହୋଇନି । ଗବେଷଣା ହେଲେ ରବୀନ୍ଦ୍ର ଚରିତ୍ରର ଏକ ନୂତନ ଦିଗର ସନ୍ଧାନ ମିଳି ପାରିବ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଜଗଦୀଶଚନ୍ଦ୍ର ବସୁ ପ୍ରେସିଡେନ୍‌ସି କଲେଜର ପଦାର୍ଥ ବିଜ୍ଞାନ ଅଧ୍ୟାପକ—ଛୁଟି ନେଇ ବିଲାତରେ ଗବେଷଣା କରୁଥାନ୍ତି । ବିଲାତରେ ତାଙ୍କର ଗବେଷଣା କାର୍ଯ୍ୟରେ ଯେପରି କୌଣସି ପ୍ରତିବନ୍ଧକ ନ ଆସେ, ସେଥିରେ ରବୀନ୍ଦ୍ରନାଥ ଯତ୍ନବାନ୍ ଥିଲେ । ସେ ସମୟରେ ଦେଶୀୟ ଅଧ୍ୟାପକ-ମାନେ ଯେ ଗବେଷଣା କରିବେ, ତାହା ଇଂରେଜ କର୍ତ୍ତୃପକ୍ଷଙ୍କର କଳ୍ପନାତୀତ ଥିଲା । ବୈଜ୍ଞାନିକ ଗବେଷଣା ମଧ୍ୟରେ ରବୀନ୍ଦ୍ରନାଥ ଭବିଷ୍ୟତ ଭାରତର ଗୌରବ ଉପଲବ୍ଧି କରୁଥିଲେ । ଜଗଦୀଶ-ଚନ୍ଦ୍ରଙ୍କୁ ଲେଖିଥିଲେ, 'ତୁମ ନିକଟରୁ ଜ୍ଞାନର ପନ୍ଥା ଭିକ୍ଷା କରୁଛି—ଭାରତର ଅନ୍ୟ କୌଣସି ପଥ ନାହିଁ—ତପସ୍ୟା ଓ ସାଧନା ଆମ୍ଭମାନଙ୍କର ପଥ । ଆମ୍ଭେମାନେ ଜଗତକୁ ଅନେକ ଜିନିଷ ଦାନ କରିଛୁ; କିନ୍ତୁ ସେ କଥା କାହାରି ମନେ ନାହିଁ—ଆମକୁ ଆଉଥରେ ଗୁରୁର ଆସନ ଗ୍ରହଣ କରିବାକୁ ପଡ଼ିବ, ନଚେତ୍ ମୁଣ୍ଡ ଟେକିବାର ଉପାୟ ନାହିଁ ।'

'ଜଗଦୀଶଚନ୍ଦ୍ର ବିଲାତରେ ନିଶ୍ଚିନ୍ତରେ ଗବେଷଣା କାର୍ଯ୍ୟ କରିବା ପାଇଁ ଯଥେଷ୍ଟ ଅର୍ଥର ପ୍ରୟୋଜନ । ଅର୍ଥ ସାହାଯ୍ୟ ତ ଦୂରର କଥା, ସରକାର ଛୁଟି ଦେବାକୁ ବି ନାରାଜ । ଏହି ଅବସ୍ଥାରେ ରବୀନ୍ଦ୍ରନାଥ ତ୍ରିପୁରାର ମହାରାଜା ରାଧାକିଶୋର ମାଣିକ୍ୟଙ୍କର ଶରଣାପନ୍ନ ହେଲେ । ମହାରାଜ ରବୀନ୍ଦ୍ରନାଥଙ୍କୁ ଅପରିସୀମ ଶ୍ରଦ୍ଧା କରୁଥିଲେ । ଜଗଦୀଶଚନ୍ଦ୍ରଙ୍କ ଗବେଷଣା ପାଇଁ ରବୀନ୍ଦ୍ରନାଥଙ୍କ ହାତରେ ଦଶହଜାର ଟଙ୍କା ଦେଲେ । ସେହି ଅର୍ଥ ସାହାଯ୍ୟ ପାଇଁ କବିଙ୍କୁ ତ୍ରିପୁରା ଦରବାରକୁ ଅନେକଥର ଯିବାକୁ ପଡ଼ିଥିଲା । ଏହି ଅର୍ଥ ସାହାଯ୍ୟ ପାଇ ଜଗଦୀଶଚନ୍ଦ୍ର ନିଶ୍ଚିନ୍ତରେ ବିଲାତରେ ଗବେଷଣା କଲେ ।

ତ୍ରିପୁରାର ମହାରାଜା ହିନ୍ଦୁରାଜାର ଆଦର୍ଶରେ ରାଜ୍ୟପାଳନ କରନ୍ତୁ, ରବୀନ୍ଦ୍ରନାଥଙ୍କର ଏହା ହିଁ ଇଚ୍ଛା ଥିଲା । ମଙ୍ଗଳ କାର୍ଯ୍ୟରେ ମୁକ୍ତ ହସ୍ତ ହେବା ସେ ଉଚିତ ମନେ କରୁଥିଲେ । ତ୍ରିପୁରା ଜ୍ଞାନ-ବିଜ୍ଞାନରେ ବହୁତ ପଛରେ ପଡ଼ିଥିଲା । ମଫସଲରେ ବାସ କରୁଥିବାରୁ ମହାରାଜଙ୍କର କଲିକତାର ସମ୍ଭ୍ରାନ୍ତ ଲୋକଙ୍କ ସହିତ ପରିଚୟ ନଥିଲା । ମହାରାଜାଙ୍କୁ ବଙ୍ଗଳାର ହିତ କାର୍ଯ୍ୟରେ ବ୍ରତୀ ହେବାପାଇଁ ରବୀନ୍ଦ୍ରନାଥ ଚେଷ୍ଟା କଲେ ।

କଲିକତାରେ ତାଙ୍କୁ ସମ୍ବର୍ଦ୍ଧନା ଦେବାର ବ୍ୟବସ୍ଥା ହେଲା । ବିସର୍ଜନ ନାଟକ ଅଭିନୟ କରି ତାଙ୍କର ପୂର୍ବ ପୁରୁଷ ଗୋବିନ୍ଦ ମାଣିକ୍ୟଙ୍କର ମହାନ୍ ଆଦର୍ଶ ଦେଖାଇ ଦିଆଗଲା । ଅଭିନୟରେ ରବୀନ୍ଦ୍ରନାଥ ନିଜେ ରଘୁପତି ଭୂମିକାରେ ଅଂଶ ଗ୍ରହଣ କରିଥିଲେ ।

ଏହି ଭାବରେ ରାଧାକିଶୋର ମାଣିକ୍ୟ ରବୀନ୍ଦ୍ରନାଥଙ୍କ ଉପରେ କ୍ରମେ ଅଧିକ ଶ୍ରଦ୍ଧାଶୀଳ ଓ ବହୁ ବିଷୟରେ ଏକାନ୍ତ ନିର୍ଭରଶୀଳ ହୋଇ ପଡ଼ିଲେ । ରାଜକୁମାରମାନଙ୍କର ଶିକ୍ଷା, ରାଜ୍ୟଶାସନ, ମନ୍ତ୍ରୀ ନିଯୁକ୍ତ ପ୍ରଭୃତି ବ୍ୟକ୍ତିଗତ ଓ ରାଜ୍ୟର ଅସଂଖ୍ୟ ସମସ୍ୟା ସମ୍ପର୍କରେ କବିଙ୍କ ସହିତ ପରାମର୍ଶ କରୁଥିଲେ । କିନ୍ତୁ କବି ଗୋଟିଏ ପତ୍ରରେ ଲେଖିଥିଲେ, 'ଲକ୍ଷ୍ମୀବନ୍ତ ପୁରୁଷମାନେ ନିଜେ ସଦାଶୟ ହେଲେ ମଧ୍ୟ କ୍ଷୁଦ୍ରଚେତା ବ୍ୟକ୍ତିମାନଙ୍କ ଦ୍ୱାରା ଏପରି ଭାବରେ ପରିବେଷ୍ଟିତ ଯେ ଇଚ୍ଛା କଲେ ମଧ୍ୟ ସେମାନଙ୍କର ଶୁଭଚେଷ୍ଟା ବ୍ୟର୍ଥ ହୋଇଥାଏ । ସେମାନଙ୍କୁ ପୃଥିବୀର ଶୁଭ କାର୍ଯ୍ୟରେ ପ୍ରବୃତ୍ତ କରିବା ଅସମ୍ଭବ ।'

କବି ଗେଟେ ମଧ୍ୟ ୱାଇମାରର ଡିଉକ୍‌ଙ୍କର ସଭାସଦ୍ ରୂପେ ଅନେକ କିଛି କରିବାକୁ ଚେଷ୍ଟା କରିଥିଲେ । ଛୁଞ୍ଚି କଣା ବାଟେ ଓଟ ଗଳିଯାଇ ପାରେ; କିନ୍ତୁ ଧନୀଙ୍କର ସ୍ୱର୍ଗଯିବା ଅସମ୍ଭବ ।

( ୪୪ )

୧୯୦୧ ଖ୍ରୀଷ୍ଟାବ୍ଦରେ 'ବଙ୍ଗ ଦର୍ଶନ' ନୂତନ ଭାବରେ ପ୍ରକାଶିତ ହେଲା । ରବୀନ୍ଦ୍ରନାଥ ସଂପାଦକ ହେଲେ । ସେତେବେଳକୁ ତାଙ୍କର

ବୟସ ଗୃଳଶ ବର୍ଷ । ପତ୍ରିକାର ପୃଷ୍ଠପୋଷକତା କରୁଥିଲେ ଶ୍ରୀଶଚନ୍ଦ୍ରଙ୍କର ଭାଇ ଶୈଳେଶଚନ୍ଦ୍ର ମଜୁମଦାର । 'ମଜୁମଦାର ଏଜେନ୍ସି' ନାମରେ ସେ ଏକ ପୁସ୍ତକ ପ୍ରକାଶାଳୟ ଖୋଲିଥିଲେ । ରବୀନ୍ଦ୍ରନାଥଙ୍କର ବହୁ ପୁସ୍ତକର ସେମାନେ ହେଉଛନ୍ତି ପ୍ରଥମ ପ୍ରକାଶକ । ଏହି ଦୋକାନ ଓ ପ୍ରକାଶନୀକୁ କେନ୍ଦ୍ର କରି 'ଆଲୋଚନା ସଭା' ନାମରେ ଏକ ସାହିତ୍ୟ ଅନୁଷ୍ଠାନ ଗଢ଼ି ଉଠିଲା । ସେଠାରେ ବହୁ ସାହିତ୍ୟିକ, ସାହିତ୍ୟ ସେବୀ ଓ ସାହିତ୍ୟପ୍ରେମୀ ଉପସ୍ଥିତ ହୋଇ ଏକ ସାହିତ୍ୟିକ ବାତାବରଣ ସୃଷ୍ଟି କଲେ । ରବୀନ୍ଦ୍ରନାଥଙ୍କର ଅନେକ ପ୍ରବନ୍ଧ ଏଠାରେ ପଠିତ ହୋଇଥିଲା । ବଙ୍ଗଳାରେ ଗ୍ରନ୍ଥ ପ୍ରକାଶନୀ ଓ ମୁଦ୍ରଣକୁ କେନ୍ଦ୍ର କରି ଯେଉଁ ପ୍ରକାର କ୍ଲବ ଆଜି ବହୁ ସ୍ଥାନରେ ଦେଖାଯାଏ, ତାର ଆରମ୍ଭ ବୋଧହୁଏ ଏହିଠାରୁ ।

ନୂତନ ପତ୍ରିକାର ଦାୟିତ୍ୱ ପଡ଼ିଲେ କବିଙ୍କର ମନ ସଜାଗ ଓ ଲେଖନୀ ସଚଳ ହୁଏ । ପୂର୍ବେ ଏହା ଦେଖା ଯାଇଛି ।

ନୂତନ ବଙ୍ଗଦର୍ଶନ ପତ୍ରିକାରେ ପ୍ରବନ୍ଧ, କବିତା ଉ. ପ୍ରକାଶିତ ହେଉଥିଲା—ନୂତନ ଉପନ୍ୟାସର ସୃଷ୍ଟି ହେଲା—'ଚୋଖେର ବାଲି' । କିଛିଦିନ ଆଗରୁ 'ବିନୋଦିନୀ' ନାମକ ଏକ ପ୍ଲଟ୍ ସ୍ଥିର କରିଥିଲେ । ପତ୍ରିକାର ଗୁହିଦା ଫଳରେ ତା'କୁ କେନ୍ଦ୍ର କରି ଉପନ୍ୟାସ ଲେଖା ଆରମ୍ଭ କଲେ ।

ଏପର୍ଯ୍ୟନ୍ତ ରବୀନ୍ଦ୍ରନାଥ କ୍ଷୁଦ୍ର ଗଳ୍ପ ଲେଖିଥିଲେ; ଶେଷରେ ଲେଖିଲେ 'ନଷ୍ଟନୀଡ଼'–ପ୍ରଥମେ ତାହା ଉପନ୍ୟାସ ନାମରେ ପ୍ରଚଳିତ ହୋଇଥିଲା । ତା'କୁ ଗଳ୍ପୋପନ୍ୟାସ କହିଲେ ବୋଧହୁଏ ଭୁଲ ହେବନାହିଁ । ଅର୍ଥାତ୍ ଗଳ୍ପରୁ ଉପନ୍ୟାସରେ ପହଞ୍ଚିବାର ମଝି ଅବସ୍ଥା । ଏହାପରେ ରବୀନ୍ଦ୍ରନାଥ ଉପନ୍ୟାସ ଲେଖା ଆରମ୍ଭ କଲେ । 'ଚୋଖେର ବାଲି' ବଙ୍ଗଳା ସାହିତ୍ୟରେ ଯୁଗାନ୍ତକାରୀ କାହାଣୀ । ମନସ୍ତାତ୍ତ୍ୱିକ ବିଶ୍ଳେଷଣପୂର୍ଣ୍ଣ ଉପନ୍ୟାସର ସୂତ୍ରପାତ ଦିଗରୁ ବୋଧହୁଏ ଏହାହିଁ ପଥ ପ୍ରଦର୍ଶକ ।

ଉପନ୍ୟାସଛଡ଼ା ଏ ସମୟର ଦେଶାତ୍ମବୋଧକ ଗଦ୍ୟ ପ୍ରବନ୍ଧ ଗୁଡ଼ିକ ମଧ୍ୟ ଏପର୍ଯ୍ୟନ୍ତ ଲୋକଙ୍କର ସୁଖପାଠ୍ୟ । ସମୟର ପରିବର୍ତ୍ତନରେ ମଧ୍ୟ ଏହାର ମୂଲ୍ୟ କମିଯାଇନି । ଦେଶର ଅବସ୍ଥା

ସମଗଃ ଜଟିଳ ହେଉଥାଏ; ଲୋକଙ୍କର ଦୁଃଖକଷ୍ଟ ବଢ଼ୁଥାଏ ।
ଏହି ଅବସ୍ଥାରେ ଇଂରେଜ ଶାସନ-ନୀତିକୁ ନିୟନ୍ତ୍ରିତ କରିବା
ପାଇଁ, ଜନଶକ୍ତିକୁ ଜାଗ୍ରତ ଓ ସଂହତ କରିବା କଥା ଚିନ୍ତାଶୀଳ
ଲୋକମାନେ ଅନୁଭବ କଲେ । ଏହି ଜନଶକ୍ତିକୁ କିପରି ବିପୁଳ
ଅଥଚ ଦୁର୍ବଳ ସମାଜରେ ସଂଘବଦ୍ଧ କରାଯାଇ ପାରିବ, ତାହାହିଁ
ଥିଲା ସମସ୍ୟା । ସେ ସମୟର ଚିନ୍ତାଶୀଳ ଲୋକମାନେ ମନେ
କରୁଥିଲେ ଯେ 'ହିନ୍ଦୁର ହିନ୍ଦୁତ୍ୱ' ବା 'ହିନ୍ଦୁ-ଜାତୀୟତା' ଭାବ
ଉଦ୍ରେକ କରି ପାରିଲେ, ଭାରତର ବିଭିନ୍ନ ସମସ୍ୟାର ସମାଧାନ
ହୋଇ ପାରିବ । ତେଣୁ ହିନ୍ଦୁର ଜାତୀୟତ୍ୱବୋଧ ଜାଗ୍ରତ କରିବା
ପାଇଁ ରାଜେନ୍ଦ୍ର ସୁନ୍ଦର ତ୍ରିବେଦୀ, ବ୍ରହ୍ମବାନ୍ଧବ ଉପାଧ୍ୟାୟ ପ୍ରମୁଖ
ଚିନ୍ତାଶୀଳ ଲୋକେ ଲେଖନୀ ଧାରଣ କରିଥିଲେ । ଏଠାରେ ମନେ
ରଖିବାର କଥା ଯେ ଏହି ନୂତନ ଗୋଷ୍ଠୀର ଚିନ୍ତାଧାରା ବା
ହିନ୍ଦୁତ୍ୱବୋଧ ଓ ପୂର୍ବବର୍ତ୍ତୀ ଶଶଧର ତର୍କ ଚୂଡ଼ାମଣି ପ୍ରମୁଖଙ୍କର
ହିନ୍ଦୁଧର୍ମ-ମର୍ଯ୍ୟାଦା ବ୍ୟାଖ୍ୟା ଏକ କଥା ନୁହେଁ । ମହାରାଷ୍ଟ୍ରୀୟମାନଙ୍କ
ସାଂପ୍ରଦାୟିକ ଓ ଜାତୀୟତାବୋଧ ମଧ୍ୟ ଭିନ୍ନ ଜିନିଷ ।

ରବୀନ୍ଦ୍ରନାଥ ଏମାନଙ୍କ ସହିତ ନବ ହିନ୍ଦୁତ୍ୱର ପୁନର୍ଗଠନ
ସମ୍ପର୍କୀୟ ଧ୍ୟାନ ଧାରଣା ଓ ତାର ପ୍ରକାଶ ପ୍ରଚାରରେ ମନଦେଲେ ।
ଏହା ପୂର୍ବରୁ ନୈବେଦ୍ୟ କବିତା ଗୁଚ୍ଛରେ ସେ ଈଶ୍ୱର ଓ ଦେଶ
ସମ୍ପର୍କରେ ତାଙ୍କର ଭାବନା ଲିପିବଦ୍ଧ କରିଥିଲେ । ଏଥର ବଙ୍ଗ-
ଦର୍ଶନ ପତ୍ରିକାରେ ସେହି କଥାକୁ ଗଦ୍ୟ ପ୍ରବନ୍ଧରେ ପ୍ରକାଶ କଲେ ।
ଏହି ଗଦ୍ୟ ପ୍ରବନ୍ଧ ଗୁଡ଼ିକୁ ନୈବେଦ୍ୟର ରୂପାନ୍ତର କୁହାଯାଇ
ପାରେ । ନୈବେଦ୍ୟର କବିତା ଓ ବଙ୍ଗ ଦର୍ଶନର ପ୍ରବନ୍ଧ ଗୁଡ଼ିକୁ
ଏକ ସଙ୍ଗରେ ପଢ଼ିବା ଉଚିତ ।

ବଙ୍ଗ ଦର୍ଶନ ଜରିଆରେ ବଙ୍ଗଳା ନୂତନ ଚିନ୍ତାଶକ୍ତି ପାଇଲା,
ସାହିତ୍ୟରେ ମଧ୍ୟ ନୂତନ ରୂପ ଦେଖାଦେଲା । ବର୍ଣ୍ଣାଶ୍ରମ ଧର୍ମ ଯେ
ହିନ୍ଦୁ ସମାଜର ଐକ୍ୟ-ଭିତ୍ତି, ଏକଥା ଘୋଷଣା କରି ରବୀନ୍ଦ୍ରନାଥ
ଲେଖିଲେ, 'ଭାରତବାସୀ ଆଦର୍ଶରେ ଲୋକଙ୍କୁ କେବଳ ତପସ୍ୱୀ
ଓ ବ୍ରାହ୍ମଣ କରନ୍ତି ବୋଲି ଯେଉଁମାନେ କହନ୍ତି, ସେମାନେ ଭୁଲ
କହନ୍ତି, ଓ ଗର୍ବ ଛଳରେ ମହାନ୍ ଆଦର୍ଶକୁ ନିନ୍ଦା କରିଥାନ୍ତି ।

ଭାରତବର୍ଷ ଯେତେବେଳେ ମହାନ୍ ଥିଲା, ସେତେବେଳେ ସେ ବିଶେଷ ଭାବରେ ମହାନ୍ ଥିଲା—ସେତେବେଳେ ବଳବୀର୍ଯ୍ୟ, ଐଶ୍ୱର୍ଯ୍ୟ ଜ୍ଞାନ ଓ ଧର୍ମରେ ମହାନ୍ ଥିଲା—କେବଳ ମାଳା ଜପକର ନୁହେଁ ।' ରବୀନ୍ଦ୍ରନାଥଙ୍କର ବ୍ରାହ୍ମଣ, ଆଦର୍ଶ ମଣ୍ଡିତ ମହାମାନବ । ତା'ର ଅସ୍ତିତ୍ୱ ଅତୀତରେ ଥିଲା କି ନାହିଁ ସନ୍ଦେହ; କିନ୍ତୁ ବର୍ତ୍ତମାନ ବିଂଶ ଶତାବ୍ଦୀରେ ସେ ବ୍ରାହ୍ମଣ ଦୁର୍ଲଭ—କୌଣସି ବ୍ରାହ୍ମଣପକ୍ଷରେ ସେ ଆଦର୍ଶଗତ 'ବ୍ରାହ୍ମଣ' ନାମ ଗ୍ରହଣ କରିବା ଅସମ୍ଭବ ।

(୪୫)

ସାହିତ୍ୟ ରଚନାରେ କବି ଯେପରି ନିଃସଙ୍ଗ, ସଂସାର କ୍ଷେତ୍ରରେ ମଧ୍ୟ ସେହିପରି ଏକା ।

ପ୍ରାୟ ତିନିବର୍ଷ ହେବ ଯୋଡ଼ାସାଁକୋ ର ବନ୍ଧୁ-ଜନ-ପରିପୂର୍ଣ୍ଣ ଘର ଓ ସଂସାରରୁ ବିଚ୍ଛିନ୍ନ ହୋଇ ଶିଳାଇଦହରେ ନିଜ ଚଳିବାଭଳି ଛୋଟ ଘର ଖଣ୍ଡିକରେ ସନ୍ତାନମାନଙ୍କର ଶିକ୍ଷାର ବ୍ୟବସ୍ଥା କରିଥିଲେ । କିନ୍ତୁ ମୃଣାଳିନୀ ଦେବୀଙ୍କ ପକ୍ଷରେ ଶିଲାଇଦହ 'ନିର୍ବାସନ ଦଣ୍ଡ' । ଏହି ସମାଜ-ଶୂନ୍ୟ ଓ ଭଦ୍ର-ପରିବେଶ ଶୂନ୍ୟ ଗ୍ରାମ ମଧ୍ୟରେ ସେ ଆଦୌ ସୁଖୀ ନଥିଲେ । ସେଥିପାଇଁ କବି ମଧ୍ୟ ଉଦ୍‌ବିଗ୍ନ । ନାନା କାରଣରୁ ଗ୍ରାମରେ 'ଅଳସ ଜୀବନ' ଯାପନ ସମ୍ଭବ ହେଲାନାହିଁ । ଝିଅମାନେ ବଡ଼ ହୋଇଗଲେଣି— ବିବାହ ବୟସ ହେଲଣି । ଜ୍ୟେଷ୍ଠ-ପୁତ୍ର ରଥୀନ୍ଦ୍ରନାଥଙ୍କର ଏଣ୍ଟ୍ରାନ୍‌ସ ପରୀକ୍ଷା ଦେବା ସମୟ ଆସିଗଲା । ତାଙ୍କୁ ପଢ଼ାଇବା ପାଇଁ ଅଭିଜ୍ଞ ଶିକ୍ଷକର ପ୍ରୟୋଜନ । କବି ଦେଖିଲେ ଯେ ଶିଲାଇଦହ ନ ଛାଡ଼ିଲେ କୌଣସି କାର୍ଯ୍ୟ ହୋଇ ପାରିବ ନାହିଁ । କିନ୍ତୁ ଯୋଡ଼ାସାଁକୋ ଘରେ ପରିବାରଙ୍କୁ ନେଇ ରହିବାକୁ ପ୍ରବୃତ୍ତି ନାହିଁ । ଶେଷରେ ଶାନ୍ତିନିକେତନରେ ଆସି ରହିବାକୁ ସ୍ଥିରକଲେ । ସେଠାରେ ଗୋଟିଏ ଆବାସିକ ବିଦ୍ୟାଳୟ ଖୋଲିବେ, ରବୀନ୍ଦ୍ରନାଥ ସେଠାରେ ପଢ଼ିବେ ଓ ପିଲାପିଲି ସେହିଠାରେ ରହିବେ; ଏହାହିଁ ସିଦ୍ଧାନ୍ତ କଲେ ।

କଲିକତା ଆସି ଜ୍ୟେଷ୍ଠ କନ୍ୟା ବେଲା ବା ମାଧୁରୀ ଲତାକୁ ବିଭାଦେଲେ । ଜାମାତା ଶରତଚନ୍ଦ୍ର ଚକ୍ରବର୍ତ୍ତୀ କବିଙ୍କର ପ୍ରଥମ ଜୀବନର ସାହିତ୍ୟ ଗୁରୁ ବିହାରୀଲାଲ ଚକ୍ରବର୍ତ୍ତୀଙ୍କର ପୁତ୍ର । ଶରତ-ଚନ୍ଦ୍ର ଏମ.ଏ.ବି,ଏଲ; ସେ ମୁଜାଫରପୁରରେ ଓକିଲାତି କରୁଥିଲେ । ଝିଅର ବୟସ ତୁଳନାରେ ଜୋଇଁଙ୍କ ବୟସ ବେଶୀ । କିନ୍ତୁ ପିରାଲୀ ଘର; ତା'ଛଡ଼ା ବ୍ରାହ୍ମ ପରିବାର—ସହଜରେ କେହି ବିବାହ କରି 'ଜାତି' ଧର୍ମ ନଷ୍ଟ କରିବାକୁ ଚାହାନ୍ତି ନାହିଁ । ସୁତରାଂ ଶରତଚନ୍ଦ୍ରଙ୍କ ପରି ଜାମାତା ପାଇବା ଠାକୁର ବଂଶ ପକ୍ଷରେ ଶକ୍ତ ବ୍ୟାପାର । ଅନ୍ୟ ଦିଗରୁ ଦେଖିଲେ—ସେମାନେ 'ସୋନାର ଚେନେର ବାମୁନ', ଉଚ୍ଚ ବର୍ଣ୍ଣ ବ୍ରାହ୍ମଣ ସେମାନଙ୍କ ଘରେ ଝିଅ ଦିଅନ୍ତି ନାହିଁ; ଠାକୁର ବଂଶ ସହିତ ସମ୍ବନ୍ଧ ସ୍ଥାପନ କଲେ ସେମାନଙ୍କର ସମ୍ମାନ ବଢ଼ିବ । ସୁତରାଂ ଉଭୟ ପକ୍ଷର ସୁବିଧା ଫଳରେ ବିବାହ ବ୍ୟବସ୍ଥା ହେଲା । ଏହି ବିବାହରେ ପୌରହିତ୍ୟ କଲେ ପ୍ରିୟନାଥ ସେନ । ପତ୍ରିକାର ରୀତି ଅନୁସାରେ ଶରତଚନ୍ଦ୍ରଙ୍କୁ ବ୍ରାହ୍ମଧର୍ମ ଗ୍ରହଣ କରିବାକୁ ପଡ଼ିଥିଲା ।

ବେଲାର ବିବାହର ଏକମାସ ପରେ ମଝିଆ ଝିଅ ରେଣୁକା ବା ରାଣୀର ଜଣେ ଡାକ୍ତରଙ୍କ ସହିତ ବିବାହ ହେଲା । ତାଙ୍କର ନାମ ସତ୍ୟେନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟ—ଏଲ୍, ଏମ୍, ଏସ୍, । ବିବାହପରେ ସତ୍ୟେନ୍ଦ୍ରନାଥ (ଏଲୋପାଥି ଡିଗ୍ରୀ ପରେ) ହୋମିଓପାଥି ପଢ଼ିବାକୁ ଆମେରିକା ଗଲେ । ଏହି ଦୁଇ ଝିଅଙ୍କର ବିବାହ ହୋଇଥିଲା ମାତ୍ର ଦୁଇମାସ ବ୍ୟବଧାନରେ ।

ବିବାହ ସମୟରେ ବେଲାର ବୟସ ଚଉଦ ଓ ରେଣୁକାର ବୟସ ବାରବର୍ଷ ମାତ୍ର । ଏହା ବାଲ୍ୟ ବିବାହ କହିଲେ ଚଳେ । କିନ୍ତୁ ଏହି ପରିବାରର ପ୍ରତିଭା ଦେବୀ, ଇନ୍ଦିରା ଦେବୀ, ସରଳା ଦେବୀ, ପ୍ରିୟମ୍ବଦା ଦେବୀ ପ୍ରଭୃତି ଅନେକ ବି,ଏ, ପାସ କରିବାପରେ ବିବାହ କରିଥିଲେ । ରବୀନ୍ଦ୍ରନାଥ ଝିଅମାନଙ୍କୁ ସ୍କୁଲରେ ପଢ଼ାଇ ନଥିଲେ—ଘରେ ମଧ୍ୟ ଶିକ୍ଷା ଦେଇ ନଥିଲେ । ଯେଉଁ ହିନ୍ଦୁତ୍ୱର ଜୟଗାନ କରିଥିଲେ, ବୋଧହୁଏ ତାହାରି ଆଦର୍ଶରେ ଏହି କନ୍ୟାମାନଙ୍କୁ

ବିବାହ ଦେଇଥିଲେ (?), କିମ୍ବା ଭଲ ପାଞ୍ଚ ପାଇବାରୁ ଶୀଘ୍ର କାର୍ଯ୍ୟ ଶେଷ କରିଦେଲେ (?)।

ଭାରତୀ, ହିତବାଦୀ, ସାଧନା ପ୍ରଭୃତିରେ ବିବାହ ବୟସ ସମ୍ପର୍କରେ ଯେଉଁ ମତାମତ ପ୍ରଚାର କରିଥିଲେ ତାହା ନିଜର ପରିବାରରେ କରି ପାରିଲେ ନାହିଁ। ତାର କାରଣ ସେ ଅର୍ଥନୈତିକ ଦିଗରୁ ସ୍ୱାଧୀନ ନଥିଲେ, ପିତାଙ୍କ ଉପରେ ନିର୍ଭରଶୀଳଥିଲେ। କବିଙ୍କର ସ୍ତ୍ରୀ ମଧ୍ୟ ଦେବେନ୍ଦ୍ରନାଥଙ୍କର ତେଜସ୍ୱିନୀ ବିଧବା ସ୍ତ୍ରୀଙ୍କର କର୍ତ୍ତୃତ୍ୱରୁ ମୁକ୍ତ ନଥିଲେ। ମୃଣାଳିନୀ ଦେବୀ ଝିଅମାନଙ୍କର ବିବାହ ଦେଇପାରିଲେ ନିଶ୍ଚିନ୍ତ- ବୋଝ ବି ଯିବ।

ରାଣୀର ବୟସ କମ୍‌ଥିବାର ଜୁଆଇଁଙ୍କୁ ମଧୁଶଯ୍ୟା ...ବରୁ ବିଲାତ ପଠାଇ ଦିଆଗଲା। ପ୍ରକୃତରେ 'କାବ୍ୟ ପଢ଼ି ଯେପରି ଭାବ, କବି ସେପରି ନୁହେଁ ଗୋ'। ରବୀନ୍ଦ୍ରନାଥ କବି ହେଲେବି ସାମାଜିକ ଓ ପାରିବାରିକ ମନୁଷ୍ୟ—ସମସ୍ତ ବନ୍ଧନ ଓ ସଂସ୍କାରରୁ ମୁକ୍ତ ନୁହନ୍ତି। ସଂସ୍କାର ଓ ରକ୍ଷଣଶୀଳ ମନୋଭାବ ମଧ୍ୟରେ ଚିରନ୍ତନ ସଂଗ୍ରାମ ଚାଲିଛି। ଏକ ସମାଧାନ ମନୋଭାବ—ଯାହାକୁ ସୁବିଧାବାଦ କୁହାଯାଏ, ତାହା ମଧ୍ୟ କବି ବେଳେବେଳେ ମାନି ନେଇଛନ୍ତି।

(୪୭)

ଝିଅମାନଙ୍କର ବିବାହ ହୋଇଗଲା। ବେଲା ଶାଶୁଘର ମୁଜାଫରପୁର ଚାଲିଗଲା, ରାଣୀର ସ୍ୱାମୀ ବିଲାତରେ। ରବୀନ୍ଦ୍ରନାଥ ପିଲାପିଲାଙ୍କୁ ସଙ୍ଗରେ ନେଇ ଶାନ୍ତିନିକେତନ ଆସିଲେ। 'ଶାନ୍ତି ନିକେତନ' ଆଶ୍ରମର ଅତିଥିଶାଳାରେ ରହିଲେ। ଶାନ୍ତିନିକେତନର ଦେବୋତ୍ତର ଜମିର ପୂର୍ବ ଦିଗର ରାସ୍ତା କଡ଼ରେ କେତେ ବିଘା ଖାଲି ଜମିଥିଲା। ତାହା କିଣି ଗୋଟିଏ ଘରର ମୂଳଦୁଆ ପକାଇଲେ। ଶାନ୍ତି ନିକେତନ ଘରେ ମାଛ ମାଂସ ଖାଇବା ନିଷେଧ, ତା'ଛଡ଼ା ସେ ଘର ଅତିଥିମାନଙ୍କ ପାଇଁ ମହର୍ଷି ଉତ୍ସର୍ଗ କରି ଦେଇଛନ୍ତି—

ସେଠାରେ ସବୁଦିନେ ରହି ହେବନି । ତେଣୁ ନିଜର ରହିବା ପାଇଁ 'ନୂତନ ଘର' କଲେ । ସେଠାରେ ବର୍ତ୍ତମାନ ବିଦ୍ୟାଳୟର କର୍ମୀମାନେ ରହନ୍ତି ।

ଶାନ୍ତି ନିକେତନରେ ଏକ ଆବାସିକ ବିଦ୍ୟାଳୟ ସ୍ଥାପନ କରିବା କଥା କବି କିଛିଦିନ ତଳେ ସ୍ଥିର କରିଥିଲେ । ତିନିବର୍ଷ ପୂର୍ବେ ବଳେନ୍ଦ୍ରନାଥ ଠାକୁର 'ବ୍ରହ୍ମବିଦ୍ୟାଳୟ' ସ୍ଥାପନ କରିବା ପାଇଁ ଖଣ୍ଡିଏ କୋଠା ତିଆରି କରିଥିଲେ । ତାହାକୁ କେନ୍ଦ୍ର କରି ଆବାସିକ ବିଦ୍ୟାଳୟ ଆରମ୍ଭ ହେଲା । ସେ ଘରେ ବର୍ତ୍ତମାନ ବିଶ୍ବ ଭାରତୀର ଉପାଚାର୍ଯ୍ୟଙ୍କର ଅଫିସ । ତିନୋଟି ଘର ଓ ବାରଣ୍ଡାଥିଲା ଏହି ଅଟ୍ଟାଳିକାର ଆଦିରୂପ ।

ମହର୍ଷି ଦେବେନ୍ଦ୍ରନାଥ ଶାନ୍ତି ନିକେତନ ଆଶ୍ରମର ସ୍ଥାପନା ଓ ମନ୍ଦିର ପ୍ରତିଷ୍ଠା କରିଥିଲେ । କିନ୍ତୁ ଏପର୍ଯ୍ୟନ୍ତ ସେଠାରେ କୌଣସି ସ୍ଥାୟୀ କାର୍ଯ୍ୟ ହୋଇନଥିଲା । ୧୩୦୮ ସାଲ ପୌଷ ସାତ ଉତ୍ସବରେ ବ୍ରହ୍ମଚର୍ଯ୍ୟାଶ୍ରମ ଆନୁଷ୍ଠାନିକ ଭାବରେ ଖୋଲିଗଲା । ବିଦ୍ୟାଳୟର ଦାୟିତ୍ବ ନେଲେ ବ୍ରହ୍ମବାନ୍ଧବ ଉପାଧ୍ୟାୟ । ତାଙ୍କର ପୂର୍ବନାମ ଥିଲା ଭବାନୀ ଚରଣ ବନ୍ଦୋପାଧ୍ୟାୟ । ପ୍ରଥମେ ସେ ନବ-ବିଧାନ ସମାଜର ବ୍ରାହ୍ମ, ପରେ ସିନ୍ଧୁ ପ୍ରଦେଶ ଯାଇ ରୋମାନ୍ କ୍ୟାଥଲିକ ଖ୍ରୀଷ୍ଟିୟାନ୍ ଓ ଶେଷରେ ବୈଦାନ୍ତିକ ସନ୍ନ୍ୟାସୀ ହୋଇଥିଲେ । ସେହି ଅବସ୍ଥାରେ ସେ ଶାନ୍ତି ନିକେତନ ଆସିଲେ । ରବୀନ୍ଦ୍ରନାଥଙ୍କର 'ବୋର୍ଡ଼ିଂସ୍କୁଲ୍'କୁ ସେ ଯଥାର୍ଥ ବ୍ରହ୍ମଚର୍ଯ୍ୟାଶ୍ରମରେ ରୂପାନ୍ତରିତ କରିଥିଲେ । ରବୀନ୍ଦ୍ରନାଥ ପଦ୍ୟରେ ଓ ପ୍ରବନ୍ଧରେ ପ୍ରାଚୀନ ଭାରତର ଗୁରୁଗୃହ ଆଦର୍ଶ କଥା କହିଛନ୍ତି ସତ୍ୟ; କିନ୍ତୁ ତାଙ୍କ ପକ୍ଷରେ ଶାନ୍ତିନିକେତନରେ ଏହି ସ୍କୁଲ ଚଳାଇବା ଓ ଆଶ୍ରମ ଗଢ଼ିବା ସମ୍ଭବ ନଥିଲା ।

ଛ'ଟି ଛାତ୍ରଙ୍କୁ ନେଇ ସ୍କୁଲ ଆରମ୍ଭ ହେଲା ।

ବ୍ରହ୍ମବାନ୍ଧବ ଦୁଇମାସ ରହି ଚାଲିଗଲେ । ବିଜନୀତର ଦୁର୍ବାର ଆକର୍ଷଣ—ତା'ଛଡ଼ା ଏ ଭାବରେ ଗୋଟିଏ ସ୍ଥାନରେ ରହିବା ତାଙ୍କର ସ୍ୱଭାବ-ବିରୁଦ୍ଧ ଥିଲା । ଗ୍ରୀଷ୍ମାବକାଶ ପରେ ହେଡ଼-ମାଷ୍ଟର ହୋଇ ଆସିଲେ ମନୋରଞ୍ଜନ ବନ୍ଦୋପାଧ୍ୟାୟ ନାମକ ଏକ ଗ୍ରାଜୁଏଟ ଯୁବକ । କବିଙ୍କର ପ୍ରାଚୀନ ଭାରତ ଆଦର୍ଶରେ ସ୍କୁଲ

ଅଚଗୃଳନାର କଳ୍ପନା ଏହି କେତେକ ମାସ ଭିତରେ ମ୍ଳାନ ହୋଇ ଯାଇଥାଏ । ସେ ଭାବିଥିଲେ ପିଲାମାନଙ୍କ ନିକଟରୁ ଦରମା ନନେଇ ସ୍କୁଲ ଚଳାଇବେ । ମନେ କରିଥିଲେ ଯେ ତାଙ୍କର ଆଦର୍ଶବାଦରେ ମୁଗ୍ଧ ହୋଇ ଦେଶବାସୀ ଟଙ୍କା ସାହାଯ୍ୟ କରିବେ । କାରଣ ଗୃହଆଡ଼େ ହିନ୍ଦୁତ୍ୱର ଜୟଗାନ ଶୁଣାଯାଉଥିଲା । ତାହା ହୋଇପାରିଲା ନାହିଁ । ଗ୍ରୀଷ୍ମ ପରେ—ଆଶ୍ରମ ନୁହେଁ, ବୋର୍ଡ଼ିଂ ସ୍କୁଲକୁ—ଗୁରୁ ବଦଳରେ ହେଡ଼ମାଷ୍ଟର ଆସିଲେ । ବ୍ରହ୍ମଚାରୀମାନଙ୍କ ନିକଟରୁ ଦରମା ନେବାର ବ୍ୟବସ୍ଥା ହେଲା । କାରଣ ଦେଖାଗଲା ଯେ, ଛାତ୍ରମାନଙ୍କୁ ତାପସକୁମାର କରିହେବ, ବଲ୍କଲ ପିନ୍ଧାଇହେବ; କିନ୍ତୁ ଶିକ୍ଷକମାନେ ତପସ୍ୱୀ ନୁହନ୍ତି । ସେମାନଙ୍କର ସଂସାର ଅଛି, ଅଭାବ ଅଛି, ଆକାଂକ୍ଷା ଅଛି—ତେଣୁ ଅର୍ଥର ପ୍ରୟୋଜନ ନିତ୍ୟ ! ସୁତରାଂ ଛାତ୍ର ଓ ଅଭିଭାବକମାନଙ୍କ ସହିତ ଅର୍ଥର ସମ୍ବନ୍ଧ କରିବାକୁ ହିଁ ପଡ଼ିଲା । କବିଙ୍କର ସ୍ୱପ୍ନର ଆଶ୍ରମ ସ୍ୱପ୍ନରେ ମିଳାଇଗଲା । ତଥାପି 'ଆଶ୍ରମ' ଶବ୍ଦଟି ବହୁଦିନ ପ୍ରଚଳିତ ଥିଲା । ବର୍ତ୍ତମାନ ଏହାର ପ୍ରଚଳନ ନାମକୁ ମାତ୍ର ରହିଛି ।

(୪୭)

କବି ଭାବିଥିଲେ ଯେ ଶାନ୍ତିନିକେତନର ନୂତନ ଗୃହରେ ପରିବାର ନେଇ ରହିବେ । କିନ୍ତୁ ବିଧାତା ଲିଖନ ଅନ୍ୟପ୍ରକାର ! କବିପତ୍ନୀ ମୃଣାଳିନୀ ଦେବୀ ଭାଦ୍ରମାସରେ ଅସୁସ୍ଥ ହୋଇପଡ଼ିଲେ । କଲିକତା ନେବାକୁ ହେଲା । କିଛିଦିନ ରୋଗ ଶଯ୍ୟାରେ ପଡ଼ିବା ପରେ ୧୩୦୯ ସାଲ ମାର୍ଗଶୀର ସାତରେ ତାଙ୍କର ମୃତ୍ୟୁ ହେଲା— ବିଦ୍ୟାଳୟ ସ୍ଥାପନାର ଏଗାର ମାସ ପରେ ।

ମୃତ୍ୟୁ ସମୟକୁ ମୃଣାଳିନୀ ଦେବୀଙ୍କର ବୟସ ମାତ୍ର ତିରିଶି ବର୍ଷ, ରବୀନ୍ଦ୍ରନାଥଙ୍କର ବୟସ ଏକଚାଳିଶ । ଜ୍ୟେଷ୍ଠପୁତ୍ର ରଥୀନ୍ଦ୍ର-

ନାଥଙ୍କର ବୟସ ଚଉଦ ବର୍ଷ—ଏଣ୍ଟ୍ରାନ୍‌ସ ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାନ୍ତି । ମିରାର ବୟସ ଦଶ । କନିଷ୍ଠପୁତ୍ର ଶମୀନ୍ଦ୍ରର ବୟସ ଆଠବର୍ଷ । ବେଲା ଓ ରାଣୀର ଆଗରୁ ବିବାହ ହୋଇଯାଇଥିଲା ।

ସ୍ତ୍ରୀଙ୍କର ମୃତ୍ୟୁ ପରେ ରବୀନ୍ଦ୍ରନାଥ କେତୋଟି କବିତା ଲେଖି ମୃଣାଳିନୀ ଦେବୀଙ୍କୁ ତାଙ୍କର ଶେଷଅର୍ଘ୍ୟ ନିବେଦନ କରିଥିଲେ—ସେଗୁଡ଼ିକ 'ସ୍ମରଣ' କବିତାଗୁଚ୍ଛରେ ସଂଗୃହୀତ ହୋଇଛି । 'ଉତ୍ସର୍ଗ' କାବ୍ୟର ସମସାମୟିକ କେତେକ କବିତାରେ ମଧ୍ୟ ଏହି ସାଶ୍ରୁ ବେଦନାର ଫଲ୍‌ଗୁଧାରା ପ୍ରବାହିତ ।

ଶୋକ ତାଙ୍କର ବ୍ୟକ୍ତିଗତ ବ୍ୟାପାର । ଜୀବନରେ ବହୁ ଆଘାତ ପାଇଛନ୍ତି—କୌଣସି ଦୁର୍ଘଟଣାରେ ଶୋକ କାତର କିମ୍ବା କର୍ମପନ୍ଥାରୁ ବିଚଳିତ ହେବା ଦେଖା ଯାଇନାହିଁ । ସେ ଜାଣିଥିଲେ ଯେ ସଂସାର କର୍ମଭୂମି, କର୍ତ୍ତବ୍ୟସ୍ଥଳ · ତାର ଗୃହଦାୟ ପୂରଣ କରିବାକୁ ପଡ଼ିବ । ସବୁଠାରୁ ବଡ଼ ସମସ୍ୟା ଦେଖାଦେଲା ମଝିଆଁ ଝିଅ ରାଣୀର ସ୍ୱାସ୍ଥ୍ୟ ନେଇ । ପ୍ରଥମେ ମନେ ହୋଇଥିଲା ଯେ ଗଳକ୍ଷତ; ପରେ ଜଣାପଡ଼ିଲା ଯେ ଯକ୍ଷ୍ମା । କବି ସ୍ତ୍ରୀଙ୍କର ମୃତ୍ୟୁ ପରେ ସମସ୍ତଙ୍କୁ ଶାନ୍ତିନିକେତନ ନେଇ ଆସିଲେ ।

କିନ୍ତୁ ରାଣୀର ରୋଗ ବଢ଼ିଚାଲିଲା । ଡାକ୍ତରମାନେ ଜଳବାୟୁ ପରିବର୍ତ୍ତନ କରିବାକୁ କହିଲେ । କବି ରାଣୀକୁ ନେଇ ହଜାରିବାଗ ଗଲେ । ୧୯୦୨-୩ ମସିହାରେ ହଜାରିବାଗ ଯିବାକୁ ହେଲେ ଗିରିଡ଼ିଠାରୁ 'ପୁଶ୍ ପୁଶ୍' ନାମକ ଠେଲା ପାଲିଙ୍କି ଗାଡ଼ିରେ ଯିବାକୁ ପଡ଼ୁଥିଲା । ବହୁବର୍ଷ ପୂର୍ବେ ଏଠାକୁ ବୁଲି ଆସିଥିଲେ—ଏଥର କିନ୍ତୁ ସଙ୍ଗରେ ପୀଡ଼ିତ ଝିଅ ।

ହଜାରିବାଗରେ କିଛିଦିନ ରହିଲେ । କିନ୍ତୁ ରାଣୀର ସ୍ୱାସ୍ଥ୍ୟ ଭଲ ହେଲନାହିଁ । ଆଲମୋଡ଼ା ଯିବାକୁ ସ୍ଥିର କଲେ ।

ସ୍ତ୍ରୀର ମୃତ୍ୟୁ, କନ୍ୟାର ଅସୁସ୍ଥତା; କିନ୍ତୁ ସକଳ ଘଟଣା ମଧ୍ୟରେ ପ୍ରତି ମାସରେ ବଙ୍ଗଦର୍ଶନ ପତ୍ରିକାକୁ ନିୟମିତ ଲେଖା ଯୋଗାଉଥିଲେ । ହଜାରିବାଗରେ ଥିବା ସମୟରେ 'ନୌକାଡୁବି' ନାମକ ନୂତନ ଉପନ୍ୟାସ ଆରମ୍ଭ କଲେ—୧୩୧୦ ବୈଶାଖ ସଂଖ୍ୟାରୁ

ତାହା ଧାରାବାହିକ ଭାବେ ଭାରତୀରେ ପ୍ରକାଶିତ ହେଲା । କବିତା-
ଲେଖା ବି ଚାଲିଥାଏ ।

(୪୮)

ରୁଗ୍ଣ କନ୍ୟାକୁ ନେଇ ହଜାରିବାଗରୁ ଗିରିଡ଼ି ହୋଇ
ଆଲମୋଡ଼ା ଯିବା ଯେ କି କଷ୍ଟ, ତାହା ବର୍ତ୍ତମାନ କଳ୍ପନା କରିବା
କଠିନ । ପାହାଡ଼ରେ ପହଞ୍ଚି ବନ୍ଧୁ ପ୍ରିୟନାଥ ସେନଙ୍କୁ ଲେଖିଲେ,
'ଏ ।ର ତରଣୀ ଟି ନାନାପ୍ରକାର ତୋଫାନ ସହିତ ଭାସି ଚାଲିଛି—
କେବେ ବନ୍ଦରରେ ପହଞ୍ଚି ନଙ୍ଗର ପକାଇ ପାରିବ ଜାଣେନା ।
ପିଲାମାନଙ୍କ ମଧ୍ୟରୁ କିଏ କେଉଁଠି ? ମୋର ବିଦ୍ୟାଳୟ ଗୋଟିଏ
ଆଡ଼େ ଓ ମୁଁ ରୋଗ ବୈରାଗ୍ୟ ନେଇ ଅନ୍ୟଆଡ଼େ—ବିକ୍ଷିପ୍ତ
ହୋଇ ଚାଲିଛି । ବିକ୍ଷିପ୍ତ ସଂସାରକୁ ଗୋଟିଏ ଜାଗାରେ ଏକାଠି
କରିବାକୁ ମନ ବ୍ୟାକୁଳ ହେଉଛି ।'

ଆଲମୋଡ଼ା ଯିବା ସମୟରେ ମୀରା ଓ ଶମୀନ୍ଦ୍ରଙ୍କୁ ଭାଉଜ
ଜ୍ଞାନଦାନନ୍ଦିନୀଙ୍କ ନିକଟକୁ ପଠାଇ ଦେଇଥିଲେ । ରଥୀନ୍ଦ୍ରନାଥ
ବୋର୍ଡ଼ିଂରେ; ବେଲା ମୁଜାଫରପୁରରେ—ଶାଶୁଘରେ ।

ରୋଗବ୍ୟାଧି ଥିଲେ ବି କବିଙ୍କର ମନ ସାଂସାରିକ
ଦୁର୍ଭାବନାରେ ଅସ୍ଥିର ନୁହେଁ । ବଙ୍ଗଦର୍ଶନ ପାଇଁ ଉପନ୍ୟାସ ପ୍ରବନ୍ଧ
ରଚନା ନିୟମିତ ଭାବରେ ଚାଲିଥିଲା । କିନ୍ତୁ 'କାବ୍ୟ ଗ୍ରନ୍ଥାବଳୀ'
ସମ୍ପାଦନରେ ସେ ବିଶେଷ ଭାବରେ ମନୋନିବେଶ କରିଥିଲେ ।
୧୯୦୩ ସାଲରେ କାବ୍ୟ ଗ୍ରନ୍ଥାବଳୀ ପ୍ରଥମ ଖଣ୍ଡ ପ୍ରକାଶ ପାଇଲା ।
ଏଥର କାବ୍ୟଗ୍ରନ୍ଥର ପରିକଳ୍ପନା ଅନ୍ୟପ୍ରକାର । ବିଷୟବସ୍ତୁ ଓ
ଭାବର ବିବର୍ତ୍ତନ ଦୃଷ୍ଟିରୁ କବିତାଗୁଡ଼ିକର ଶ୍ରେଣୀ ବିଭାଗ କରାହେଲା ।
ଏହି କାର୍ଯ୍ୟରେ ସହାୟତା କଲେ ମୋହିତଚନ୍ଦ୍ର ସେନ । ତାଙ୍କର
ସମ୍ପାଦନାରେ ବହିଗୁଡ଼ିକ 'ମଜୁମ୍ଦାର ଲାଇବ୍ରେରୀ' ଆନୁକୂଲ୍ୟରୁ
ପ୍ରକାଶିତ ହୋଇଥିଲା ।

ଆଲମୋଡ଼ାରେ ଅବସ୍ଥାନ ସମୟରେ ଏହି କାବ୍ୟ ଗ୍ରନ୍ଥାବଳୀର ଅଷ୍ଟମ ଖଣ୍ଡ 'ଶିଶୁ'ର ପୁରାତନ କବିତାଗୁଡ଼ିକ ସଙ୍କଳନ କଲାବେଳେ ଅନୁଭବ କଲେ ଯେ ସଂଗ୍ରହ ଅସଂପୂର୍ଣ୍ଣ । ତେଣୁ ନୂତନ କବିତା ଲେଖିଲେ—ପ୍ରାୟ ତିରିଶଟି । ପୁରାତନ ଓ ନୂତନ କବିତା ସଂଗ୍ରହ କରି ଏହି 'ଶିଶୁ' ଗ୍ରନ୍ଥଟି ପ୍ରକାଶିତ ହେଲା । ମୋହିତଚନ୍ଦ୍ର, ସେନଙ୍କର ସ୍ତ୍ରୀ ସୁଶୀଳା ଦେବୀ କବିତାଗୁଡ଼ିକ ପଢ଼ି କବିଙ୍କୁ ପ୍ରଶ୍ନ କରିଥିଲେ ଯେ, ସବୁ କବିତାଗୁଡ଼ିକ ପୁଅ ଉଦ୍ଦେଶ୍ୟରେ ଲେଖା, ଝିଅ ନାମରେ ଗୋଟିଏ କବିତା ନାହିଁ କାହିଁକି ? ସୁଶୀଳା ଦେବୀଙ୍କର ଦୁଇଟି ଝିଅ; ତେଣୁ ମାତୃ ହୃଦୟରେ ସ୍ୱଭାବତଃ ଏହି ପ୍ରଶ୍ନ ଉଠିଥିଲା । ଉତ୍ତରରେ ରବୀନ୍ଦ୍ରନାଥ ମୋହିତଚନ୍ଦ୍ରଙ୍କୁ ଲେଖିଥିଲେ, 'ମୋର ଏହି କବିତାଗୁଡ଼ିକ ଖୋକା (ପୁଅ) ନାମରେ···ପୁଅ ଓ ତାହାର ମା ମଧ୍ୟରେ ଘନିଷ୍ଠ ମଧୁର ସମ୍ବନ୍ଧ ହେଉଛି ମୋର ଗୃହ ସ୍ମୃତିର ଶେଷ ମାଧୁରୀ—ସେତେବେଳକୁ ଝିଅ ନଥିଲା—ମାତୃଶଯ୍ୟାର ସିଂହାସନରେ ପୁଅ (ଶମୀନ୍ଦ୍ରନାଥ)ହିଁ ଚକ୍ରବର୍ତ୍ତୀ ସମ୍ରାଟ ଥିଲା । ତେଣୁ ଲେଖିବସିଲେ ହିଁ ପୁଅ ଓ ତାହାର ମା'ର ଭାବନାଟିକ ସୂର୍ଯ୍ୟାସ୍ତ ପରବର୍ତ୍ତୀ ମେଘପରି ନାନା ରଙ୍ଗରେ ଉଦ୍‌ଭାସିତ ହୋଇଉଠେ – ସେହି ଅସ୍ତମିତ ମାଧୁରୀର ସମସ୍ତ କିରଣ ଓ ବର୍ଣ୍ଣର ଆକର୍ଷଣରେ ହିଁ ମୋର ଅଶ୍ରୁସିକ୍ତ ଖେଳା ଗୃହଟି— ତାହା ବନ୍ଦ କରି ପାରିନି ।'

ତିନିମାସ ରହିବା ପରେ ମଧ୍ୟ ଆଲମୋଡ଼ାରେ ରାଣୀର ସ୍ୱାସ୍ଥ୍ୟରେ କୌଣସି ଉନ୍ନତି ହେଲନାହିଁ । କଲିକତା ଫେରିବାପାଇଁ ସେ ଜିଦ ଧରିଲା; ବୋଧହୁଏ ବୁଝିପାରିଥିଲା ଯେ ତା'ର ଦିନକାଳ ଶେଷ ହୋଇଆସୁଛି ! କଲିକତା ଫେରିବାର ଅଳ୍ପଦିନ ମଧ୍ୟରେ ରାଣୀର ମୃତ୍ୟୁ ହେଲା । ମାତ୍ର ଦଶମାସ ବ୍ୟବଧାନରେ ସ୍ତ୍ରୀ ଓ କନ୍ୟାର ମୃତ୍ୟୁ ଘଟିଲା । ରାଣୀକୁ ସେ ଖୁବ୍ ସ୍ନେହ କରୁଥିଲେ । କିନ୍ତୁ ତା'ର ଚିହ୍ନ କୌଣସିଠାରେ ନାହିଁ ।

ବଙ୍ଗଦର୍ଶନ ପତ୍ରିକା ପାଇଁ 'ନୌକାଡୁବି' ଉପନ୍ୟାସ ନିୟମିତ ଲେଖୁଥାନ୍ତି—ବିଦ୍ୟାଳୟ ଖବର ଦୂରରେ ଥାଇ ତଦାରଖ୍

କରୁଥାନ୍ତି, ସାମାଜିକ କର୍ତ୍ତବ୍ୟ ବି ହସ ହସ ମୁହଁରେ କରି ଯାଉଥାନ୍ତି ।

ଶାନ୍ତିନିକେତନ ବିଦ୍ୟାଳୟ ସ୍ଥାପିତ ହେବା ଦୁଇବର୍ଷ ହୋଇନି । କବିଙ୍କର ଅନୁପସ୍ଥିତିରେ ଶିକ୍ଷକମାନଙ୍କ ମଧ୍ୟରେ ନାନା ସମସ୍ୟା ସୃଷ୍ଟି ହେଲା ।

କିନ୍ତୁ କବି ଆଶାବାଦୀ; ସେ ଲେଖିଛନ୍ତି, 'ପ୍ରତିଦିନ ମୁଁ ଆଶ୍ଚର୍ଯ୍ୟ ଅନୁଭବ କରୁଛି ଯେ, ସମସ୍ତ ବିପ୍ଳବ ସତ୍ତ୍ୱେ ବି ବିଦ୍ୟାଳୟ ନୂତନ ପ୍ରାଣ ଓ ପ୍ରବଳତର ପ୍ରତିଷ୍ଠା ଲାଭକରୁଛି ।' କବିଙ୍କର ଏହି ବିଶ୍ୱାସ ମୂଳରେ ଥିଲି ସତୀଶଚନ୍ଦ୍ର ରାୟଙ୍କ ପରି ଦୁର୍ଲଭ-ଚରିତ୍ର ଶିକ୍ଷକଙ୍କର ଉପସ୍ଥିତି । ବରିସାଲ୍‌ର ଏହି ଆଦର୍ଶବାଦୀ ତରୁଣ କବିଙ୍କୁ, ରବୀନ୍ଦ୍ରନାଥ ଜୀବନ ସାରା ବାରମ୍ବାର ସ୍ମରଣ କରିଛନ୍ତି ।

ସତୀଶଙ୍କ ମଧ୍ୟରେ କବି ସତେ ଯେପରି ନିଜ ଆଦର୍ଶର ରୂପ-ରେଖା ଦେଖିଥିଲେ । କିମ୍ବା ତାଙ୍କର ଅକାଳ ମୃତ୍ୟୁ ଫଳରେ ତାଙ୍କୁ ନିଜର କଳ୍ପନା ବଳରେ, ମନ ମୁତାବକ ଆଦର୍ଶ ସ୍ଥାନୀୟ କରି ଗଢ଼ିଥିଲେ—ଯେପରି ତାଙ୍କର ଭାଉଜ କାଦମ୍ବରୀ ଦେବୀଙ୍କୁ ଗଢ଼ି-ଥିଲେ ।

ବିଦ୍ୟାଳୟର ନୂତନ ପ୍ରାଣଶକ୍ତି ରୂଢ଼ ଆଘାତ ପାଇଲା ସତୀଶଚନ୍ଦ୍ର ରାୟଙ୍କ ମୃତ୍ୟୁ ଫଳରେ । ମାଘୋତ୍ସବ ପରେ ସ୍କୁଲ ଖୋଲିଲା । ସାମୟିକ ଭାବରେ ସ୍କୁଲକୁ ଶିଲାଇଦହ ନିଆ ହୋଇଥିଲା । ସେଠାରେ ମୋହିତଚନ୍ଦ୍ର ସେନ ହେଲେ ପ୍ରଧାନ ଶିକ୍ଷକ । ମୋହିତଚନ୍ଦ୍ର ସେନ ଦାର୍ଶନିକ, ସାହିତ୍ୟ ରସିକ—ଏତେଦିନ ପର୍ଯ୍ୟନ୍ତ 'କାବ୍ୟ ଗ୍ରନ୍ଥାବଳୀ' ସମ୍ପାଦନ କରୁଥିଲେ । ଭାବିଲେ କବିଙ୍କର ଆଦର୍ଶକୁ ମୂର୍ତ୍ତିମନ୍ତ କରିବେ । କିନ୍ତୁ କବିଙ୍କର ସଦା ଚଳମାନ କେଉଁ ରୂପକୁ ମୂର୍ତ୍ତିମନ୍ତ କରିବେ ?

ସେ ପରୀକ୍ଷା ବ୍ୟର୍ଥ ହେଲା । ଦାର୍ଶନିକଙ୍କ ଉପରେ ଅଯଥା ଦାୟିତ୍ୱ ପଡ଼ିଲା ଓ ଦାର୍ଶନିକଙ୍କର ବାସ୍ତବବୋଧ ନଥିବାରୁ ଅସମ୍ଭବ କାର୍ଯ୍ୟର ଭାର ନେଲେ । ଶରୀର ଅସୁସ୍ଥ ହେବାରୁ ଭଦ୍ର ବୃତ୍ତିଯ୍ନାରେ ଫେରିଗଲେ । ବିଦ୍ୟାଳୟର ଭାର ପଡ଼ିଲା ଭୂପେନ୍ଦ୍ରନାଥ ସାନ୍ୟାଲଙ୍କ ଉପରେ । ମୋହିତଚନ୍ଦ୍ର ନବବିଧାନ ସମାଜର ଉଦାର ବ୍ରାହ୍ମ ଓ

ପାଶ୍ଚାତ୍ୟ ଦର୍ଶନ ଶାସ୍ତ୍ରାଦିରେ ସୁପଣ୍ଡିତ ଥିଲେ । ଭୂପେନ୍ଦ୍ରନାଥ ସନାତନୀ ହିନ୍ଦୁ ଓ ପ୍ରାଚ୍ୟ ଧର୍ମାଗ୍ରହ ସମ୍ପର୍କରେ ଅତି ନିଷ୍ଠାବାନ୍ । ବିଦ୍ୟାଳୟର ପ୍ରକୃତି ମଧ୍ୟରେ ପରିବର୍ତ୍ତନ ଆସିଲା । ବିଦ୍ୟାଳୟର ଧାରାବାହିକ ଇତିହାସ କବି ଜୀବନର ବିଚିତ୍ର ଧାରାରେ ଗଡ଼ି ଚାଲିଲା ।

୧୯୦୪ ମସିହା ଅକ୍ଟୋବର ମାସ । ବଙ୍ଗବିଚ୍ଛେଦ ଆନ୍ଦୋଳନର ସମୟ ।ଅଧିକାଂଶ ପାଠକ ଜାଣନ୍ତି ଯେ ୧୯୪୭ ମସିହା ପୂର୍ବରୁ ୧୯୦୫ ମସିହାରେ ବଙ୍ଗ ଦ୍ୱିଖଣ୍ଡିତ ହୋଇଥିଲା; ସେଥର ହୋଇଥିଲା ଦୁଇଟି ପୃଥକ୍ ପ୍ରଦେଶ—ଏଥର କିନ୍ତୁ ଦୁଇଟା ପୃଥକ୍ ରାଜ୍ୟ !

ଲର୍ଡ଼ କର୍ଜନ ଭାରତର ବଡ଼ଲାଟ (୧୮୯୯—୧୯୦୫) । କଲିକତା ଭାରତର ରାଜଧାନୀ—ସିମଲା ଗ୍ରୀଷ୍ମନିବାସ । ବଙ୍ଗଳାରେ ଯେଉଁ ଜାତୀୟତାବୋଧ ଜାଗି ଉଠିଥିଲା ତାହା ଖର୍ବ କରିବା ବ୍ରିଟିଶ କୂଟନୀତିଜ୍ଞଙ୍କ ପକ୍ଷରେ ଆବଶ୍ୟକ ହେଲା । ସେହି ଉଦ୍ଦେଶ୍ୟ ଚରିତାର୍ଥ କରିବାପାଇଁ ମୁସଲମାନ ବହୁଳ ପୂର୍ବ ବଙ୍ଗ ଓ ଉତ୍ତର ବଙ୍ଗକୁ ପୃଥକ୍ ପ୍ରଦେଶ କରିବାର ପ୍ରସ୍ତାବ ଆସିଲା । ମୁସଲମାନଙ୍କୁ ନିଜ ଆଡ଼କୁ ଟାଣିବା ପାଇଁ କର୍ଜନ ଢାକାରେ କହିଲେ ଯେ ନୂତନ ପ୍ରଦେଶ ଗଠିତ ହେଲେ ସଂଖ୍ୟାଗରିଷ୍ଠ ମୁସଲମାନମାନଙ୍କର ପ୍ରାଧାନ୍ୟ ସେଠାରେ ବଢ଼ିବ । ଭେଦ ନୀତିର ବ୍ରହ୍ମାସ୍ତ୍ର ପ୍ରୟୋଗ କଲେ । ଦ୍ୱିଧାହୀନ ଭାବରେ ବଙ୍ଗ ଦ୍ୱିଖଣ୍ଡିତ କରିବାକୁ ସ୍ଥିର କଲେ ।

ଦେଶରେ ପ୍ରତିବାଦ ଆରମ୍ଭ ହେଲା—ତାର ବିସ୍ତୃତ ଇତିହାସ ଏଠାରେ ଲେଖିବା ସମ୍ଭବ ନୁହେଁ । ପ୍ରତିବାଦ, ରାଜନୈତିକ ଆନ୍ଦୋଳନ ବା ବୟକଟ୍ ଅର୍ଥାତ୍ ଅର୍ଥନୈତିକ ଆନ୍ଦୋଳନର ରୂପ ପରିଗ୍ରହ କରି ନଥିଲା । ଲୋକେ ବିଶ୍ୱାସ କରୁଥିଲେ ଯେ ମୌଖିକ ପ୍ରତିବାଦ ଦ୍ୱାରା ବ୍ରିଟିଶ କୂଟନୀତିକୁ ବଦଳାଇ ପାରିବେ । ଏହି ସମୟରେ ରବୀନ୍ଦ୍ରନାଥ 'ସ୍ୱଦେଶୀ ସମାଜ' ନାମକ ଏକ ଭାଷଣ ପାଠକଲେ (୧୯୦୪ ଜୁଲାଇ ୨୨) । ଏହା ପୂର୍ବରୁ ଦେଶର ସମସ୍ୟା ଓ ତାହାର ସମାଧାନ ସମ୍ପର୍କରେ ଅନ୍ୟ କେହି ଏପରି

ପରିସ୍ୱାର ଭିତରେ ବୁଝାଇ ନ ଥିଲେ । ରାଜଦ୍ୱାରରେ ଆବେଦନ ବା ସ୍ୱାକ୍ଷର ସଂଗ୍ରହକରି ମେମୋରିୟାଲ ପ୍ରେରଣ, ବକ୍ତୃତା ମଞ୍ଚରେ ଇଂରେଜୀ ଭାଷାରେ କ୍ରୋଧାନ୍ୱିତ ଭାଷଣ ଓ ସମ୍ବାଦପତ୍ର ଜରିଆରେ ଇଂରେଜୀଙ୍କୁ ଗାଳିବର୍ଷଣ ପ୍ରଭୃତି କ୍ଷୋଭପ୍ରକାଶ କରିବା ମାମୁଲି ପନ୍ଥା ଥିଲା । ରବୀନ୍ଦ୍ରନାଥ ତାଙ୍କର ଭାଷଣରେ ଗ୍ରାମକୁ ଫେରି ଯିବାର ଆହ୍ୱାନ ଦେଲେ । ଦେଶର ବିଭିନ୍ନ ସମସ୍ୟାର ସମାଧାନ ପନ୍ଥା ବତାଇ, ଦେଶରେ ପ୍ରାଣଶକ୍ତି ସଞ୍ଚାର କରିବା ସଙ୍ଗେ ସଙ୍ଗେ ଗ୍ରାମକୁ ମୂଳଭିତ୍ତି କରି ଐକ୍ୟଭାବ ଜାଗ୍ରତ କରିବା ପାଇଁ ନିବେଦନ କଲେ । ସଂହତି ଶକ୍ତି ଜାଗ୍ରତ କରିବା ପାଇଁ ବିସ୍ତୃତ ଆଲୋଚନା କରି କର୍ମପଦ୍ଧତି ଦେଶବାସୀଙ୍କ ଆଗରେ ଉପସ୍ଥାପିତ କଲେ । ସେ ପ୍ରବନ୍ଧ ବର୍ତ୍ତମାନ ମଧ୍ୟ ଲୋକଙ୍କର କାର୍ଯ୍ୟରେ ଲାଗିପାରିବ । 'ଫିରେ ଚଲ୍ ମାଟିର୍ ଟାନେ' କବିତାରେ ମଧ୍ୟ ସେହିକଥା ଲେଖିଥିଲେ—ପ୍ରାୟ କୋଡ଼ିଏବର୍ଷ ପରେ ।

କିନ୍ତୁ ସେ ଯୁଗର ରାଜନୀତିଜ୍ଞମାନେ କବିଙ୍କର କଥାକୁ ହସରେ ଉଡ଼ାଇ ଦେଲେ । ରବିବାବୁଙ୍କ କଥା ମୁତାବକ କାର୍ଯ୍ୟକଲେ ରାଜନୀତିର କାର୍ଯ୍ୟ ଆଗେଇ ପାରିବ ନାହିଁ ବୋଲି ସେମାନଙ୍କର ମତ ଥିଲା । ଅର୍ଦ୍ଧଶତାବ୍ଦୀ ପରେ ଦେଖାଗଲା ଯେ ପଲ୍ଲୀ ସଙ୍ଗଠନ ଓ ଗ୍ରାମୋଦ୍ୟୋଗ ସମ୍ପର୍କରେ ଜଣେ କବି ଯାହା କହିଥିଲେ ତାହାହିଁ ହେଲା ଜାତିଗଠନର ମୂଳକଥା ।

ଦେଶ ବିଚ୍ଛେଦ ସଙ୍ଗେ ସଙ୍ଗେ ଇଂରେଜ ସରକାର ଶିକ୍ଷା ପ୍ରସାର ପାଇଁ ଭାଷା ବିଚ୍ଛେଦର ଏକ ପ୍ରସ୍ତାବ କଲେ । ପୂର୍ବବଙ୍ଗ, ଉତ୍ତରବଙ୍ଗ, ପଶ୍ଚିମବଙ୍ଗ; ବିହାର ପ୍ରଭୃତି ପ୍ରାନ୍ତ ସୃଷ୍ଟିକରି ସ୍ଥାନୀୟ ବ୍ୟବହୃତ ଭାଷା ମାଧ୍ୟମରେ ପାଠ୍ୟପୁସ୍ତକ ଲେଖିବା ଓ ବିଦ୍ୟାଳୟରେ ଶିକ୍ଷାଦେବାର ବ୍ୟବସ୍ଥା କଲେ ।

ରବୀନ୍ଦ୍ରନାଥଙ୍କର ତେଜୋଗର୍ଭକ ପ୍ରତିବାଦ ବର୍ତ୍ତମାନ ମଧ୍ୟ ସୁଖପାଠ୍ୟ । ବଙ୍ଗବିଚ୍ଛେଦ କରିବା ସାବ୍ୟସ୍ତ ହେଲାପରେ ଭାଷା ବିଚ୍ଛେଦ ପ୍ରସ୍ତାବ କାର୍ଯ୍ୟକାରୀ ହେଲାନାହିଁ !

ସରକାରୀ ସାହେବ ମହଲ ଜାଣିଥିଲେ ଯେ, ବଙ୍ଗବିଚ୍ଛେଦ ରୂପକ ବିଷମଞ୍ଜିରୁ ଯେଉଁ ବୃକ୍ଷ ହେବ ସେଥିରେ ପ୍ରଚୁର ବିଷଫଳ

ଫଳିବ । ସେଥିପାଇଁ ବଙ୍ଗଳାରେ ଲିଗ୍ ମନ୍ତ୍ରିମଣ୍ଡଳ ସମୟରେ ଭାଷାରେ ହିନ୍ଦୁ ଶବ୍ଦ ଓ ମୁସଲମାନୀ ଶବ୍ଦ ସମ୍ପର୍କରେ ଯେଉଁ ଲଜ୍ଜାଜନକ ଘଟଣା ଘଟିଗଲା, ତାହା ବର୍ତ୍ତମାନ ଲୋକେ ଭୁଲି ଗଲେଣି ।

ବଙ୍ଗବିଚ୍ଛେଦର ଦିନ ଘନେଇ ଆସୁଛି—ନାନା ପ୍ରତିବାଦ ସତ୍ତ୍ୱେ ବି ବ୍ରିଟିଶ ସରକାର ଅଟଳ, ଅଚଳ । ବଙ୍ଗଚ୍ଛେଦ ପ୍ରସ୍ତାବ ଯେତେଦିନ ପର୍ଯ୍ୟନ୍ତ ରଦ୍ଦ ନ ହୋଇଛି ସେତେଦିନ ପର୍ଯ୍ୟନ୍ତ ବ୍ରିଟିଶ ଜିନିଷ ବର୍ଜନ କରିବାକୁ ୧୯୦୫ ଅଗଷ୍ଟ ୯ତାରିଖରେ ଘୋଷଣା କରାଗଲା । ପ୍ରତିଜ୍ଞାପତ୍ରରେ ଲୋକମାନେ ଦସ୍ତଖତ କଲାବେଳେ 'ଯେତେଦିନ' ପ୍ରଭୃତି ସର୍ତ୍ତ କାଟି ଦେଉଥିଲେ । ରବୀନ୍ଦ୍ରନାଥ 'ଭୂଷଣ ବଲେ ଗଲାର ଫାଁସି କିନବ ନା' ଗୀତ ଲେଖିଥିଲେ ସତ୍ୟ; କିନ୍ତୁ ଅନ୍ତରରେ ନେତିବାଦକୁ ସମର୍ଥନ କରି ପାରି ନଥିଲେ। କେବଳ 'କିନବ ନା' କହିଲେ ତ ନଗ୍ନତା ଘୁଞ୍ଚିବ ନାହିଁ । ବୟକଟ୍ ଘୋଷଣାର କିଛିଦିନ ପରେ କଲିକତା ଟାଉନହଲରେ 'ଅବସ୍ଥା ଓ ବ୍ୟବସ୍ଥା' ଶୀର୍ଷକ ଏକ ପ୍ରବନ୍ଧ ପାଠକଲେ । ସେହି ପ୍ରବନ୍ଧରେ ଲେଖିଥିଲେ, 'ଦେଶରେ କର୍ମଶକ୍ତିକୁ ଏକ ବିଶେଷ କର୍ତ୍ତୃସତ୍ତା ମଧ୍ୟରେ ଆବଦ୍ଧ କରିବାକୁ ହେବ । ଅନ୍ତତଃ ଜଣେ ହିନ୍ଦୁ ଓ ଜଣେ ମୁସଲମାନଙ୍କୁ ଆମ୍ଭେମାନେ ଏହି ସଭାରେ ଅଧିନାୟକ କରିବା । ସେମାନଙ୍କର କଥାମୁତାବକ ପରିଚାଳିତ ହେବା, ସେମାନଙ୍କୁ ଖଜଣା ଦେବା ଓ ସେମାନଙ୍କର ଆଦେଶ ନିର୍ବିଚାରରେ ପାଳନ କରିବା—ସେମାନଙ୍କୁ ସମ୍ମାନିତ କରି ଦେଶକୁ ସମ୍ମାନିତ କରିବା ।' ଆହୁରି ମଧ୍ୟ କହିଥିଲେ ଯେ, 'ଆମ୍ଭମାନଙ୍କର ଗ୍ରାମର ଶାସନକାର୍ଯ୍ୟ ଆମ୍ଭମାନଙ୍କୁ ନିଜ ହାତକୁ ନେବାକୁ ପଡ଼ିବ।... କୃଷିକୁ ଆମ୍ଭେମାନେ ହିଁ ରକ୍ଷାକରିବା, ତା'ର ସନ୍ତାନମାନଙ୍କୁ ଆମ୍ଭେମାନେ ଶିକ୍ଷା ଦେବା; କୃଷିର ଉନ୍ନତି ଆମ୍ଭମାନଙ୍କୁ ହିଁ କରିବାକୁ ପଡ଼ିବ ଓ ସର୍ବନାଶୀ ମାମଲାମକଦ୍ଦମାରୁ ଜମିଦାର ଓ ପ୍ରଜା-ମାନଙ୍କୁ ରକ୍ଷାକରିବାକୁ ପଡ଼ିବ । ଏ ସମ୍ବନ୍ଧରେ ରାଜାର ସାହାଯ୍ୟ ନେବା ପ୍ରଶ୍ନ ଯେପରି ଆମ ମୁଣ୍ଡରେ ନ ଉଠୁ ।' ବୟକଟ୍ ବା ବର୍ଜନନୀତି କେବଳ ଇଂରେଜ ତିଆରି ଲୁଗା, ଲବଣ, ମନୋହରୀ

ସାମଗ୍ରୀ ବର୍ଜନ ମଧ୍ୟରେ ସୀମିତ ହେଲେ ଚଳିବ ନାହିଁ, ଶାସନ ବିଷୟରେ ବର୍ଜନ କରି ପଲ୍ଲୀ ସମାଜରେ ଆତ୍ମଶାସନ ପ୍ରତିଷ୍ଠିତ କରିବାକୁ ହେବ—ଦେଶର ଅନ୍ତଃସ୍ଥଳରେ ପ୍ରବେଶ କରିବାକୁ ହେବ।

ଏହି ବର୍ଜନ-ଆନ୍ଦୋଳନ-କାମୀମାନଙ୍କୁ କବି କହିଥିଲେ ଯେ ଉପସ୍ଥିତ ସୁବିଧା ଖାତିରରେ ନିଜର ଆଦର୍ଶକୁ ଖର୍ବ କରିବାରେ ତାଙ୍କର ଆସ୍ଥା ନାହିଁ। ଇଂରେଜଙ୍କ ଉପରେ ରାଗାନ୍ୱିତ ହୋଇ କ୍ଷଣିକ ଉତ୍ତେଜନାରେ ମାତି ଉଠିବା ସହଜ; କିନ୍ତୁ ସେହି ସହଜ ପଥ ଶ୍ରେୟ ନୁହେଁ। ଇଂରେଜମାନେ ଆମର ପ୍ରାର୍ଥନା ପୂରଣ କରିବେ ନାହିଁ ବୋଲି ଆମ୍ଭେମାନେ ତାଙ୍କ ନିକଟକୁ ଯିବା ନାହିଁ କହିବା ଲଜ୍ଜାକର। ତେଣୁ କବି କହିଥିଲେ, 'ପୌରୁଷ, ମନୁଷ୍ୟତ୍ୱ ଓ ନିଜ ପ୍ରତି ସମ୍ମାନବଶତଃ ଯଦି ଏହା ନ ହୁଏ, ତେବେ ଏହି ଭିକ୍ଷା-ବୈରାଗ୍ୟ ପ୍ରତି ମୋର କୌଣସି ଭରସା ନାହିଁ।'

ବର୍ଗୁର ଶକ୍ତି ବଳରେ ଦେଶର ପରିସ୍ଥିତିକୁ ଆଲୋଚନା କଲେ ବି ଆନ୍ଦୋଳନକୁ ଇନ୍ଧନ ଯୋଗାଇବା ପାଇଁ କବିତା ଲେଖୁଥିଲେ। ବଙ୍ଗଚ୍ଛେଦ ସମ୍ପର୍କରେ ବଙ୍ଗଳାର ନିଜସ୍ୱ 'ବାଉଲ ଗୀତ'ର ସ୍ୱରରେ ଅନେକ ଗୀତ ରଚନା କରିଥିଲେ। ୧୯୦୫ ଅଗଷ୍ଟ ୧୬ ତାରିଖରେ ବଙ୍ଗଚ୍ଛେଦ ସରକାରୀ ଭାବରେ କାର୍ଯ୍ୟରେ ପରିଣତ ହେଲା। କବି ଲେଖିଲେ 'ବାଂଲାର ମାଟି ବାଂଲାର ଜଲ୍' ଗୀତ; ପ୍ରସ୍ତାବ କଲେ—ସେ ଦିନ ରୋଷାଇବାସ ହେବ ନାହିଁ, ଲୋକେ ଗଙ୍ଗାସ୍ନାନ କରିବେ, ପରସ୍ପର ହାତରେ 'ରାଖୀ' ବାନ୍ଧିବେ। ରବୀନ୍ଦ୍ରନାଥ ନିଜେ ଅସ୍ପୃଶ୍ୟଙ୍କ ସଙ୍ଗରେ ବୁଲିଲେ, ଗାଁର ଭଦ୍ର-ଅଭଦ୍ର, ସ୍ପୃଶ୍ୟ-ଅସ୍ପୃଶ୍ୟ ବିଚାର ନକରି ସମସ୍ତଙ୍କ ହାତରେ ରାଖୀ ବାନ୍ଧିଲେ। ରାସ୍ତାରେ ମୁସଲମାନ ଗାଡ଼ିଆଳମାନଙ୍କ ହାତରେ ରାଖୀ ବାନ୍ଧିବାରୁ ସେମାନେ ବିସ୍ମିତ ହୋଇଥିଲେ।

( ୪୯ )

ବଙ୍ଗଚ୍ଛେଦ ବ୍ୟବସ୍ଥାର ଏକ ସପ୍ତାହ ମଧ୍ୟରେ ବଙ୍ଗ ସରକାରଙ୍କର ପ୍ରଧାନ ସେକ୍ରେଟେରୀ କାର୍ଲାଇଲ ସାହେବ ସ୍କୁଲ କଲେଜର ଅଧ୍ୟକ୍ଷ-

ମାନଙ୍କ ନିକଟକୁ ଇସ୍ତାହାର ଦେଲେ ଯେ ଛାତ୍ରମାନେ ସ୍ୱଦେଶୀ ଆନ୍ଦୋଳନରେ ଯୋଗଦାନ କରିପାରିବେ ନାହିଁ ।

କାର୍ଲାଇଲ ଇସ୍ତାହାର ପ୍ରକାଶିତ ହେବାର ( ୨୨ ଅକ୍ଟୋବର ୧୯୦୫ ) ଦୁଇଦିନ ପରେ ନେତାମାନେ ସଭାକରି ସ୍ଥିର କଲେ ଯେ 'ଏହାର ଏକମାତ୍ର ପ୍ରତିକାର ହେଉଛି ଜାତୀୟ ବିଶ୍ୱବିଦ୍ୟାଳୟ ସ୍ଥାପନ କରି ଆମର ଶିକ୍ଷାକୁ ସ୍ୱାଧୀନ କରିବା ।' 'ସରକାରୀ ବିଶ୍ୱବିଦ୍ୟାଳୟ ଓ ସରକାରୀ ଚାକିରୀ ଉଭୟ ତ୍ୟାଗ କରିବାକୁ ହେବ'—ଏପରି ପ୍ରସ୍ତାବ ମଧ୍ୟ ଉଠିଥିଲା । କଲିକତାର ବିଭିନ୍ନ ସ୍ଥାନରେ ଅନୁଷ୍ଠିତ ଅନେକଗୁଡ଼ିଏ ସଭାରେ ସ୍ୱାଧୀନ ଜାତୀୟ-ଶିକ୍ଷା-ପ୍ରତିଷ୍ଠାନ ସ୍ଥାପନ କରିବା ପାଇଁ ଆନ୍ଦୋଳନ ଚାଲିଲା । ରବୀନ୍ଦ୍ରନାଥ ଏକାଧିକ ସଭାରେ ଉପସ୍ଥିତ ରହି ଜାତୀୟ ବିଦ୍ୟାଳୟର ପ୍ରୟୋଜନୀୟତା ସମ୍ପର୍କରେ ଭାଷଣ ଦେଲେ ।

ଅଳ୍ପଦିନ ମଧ୍ୟରେ କଲିକତାରେ ଜାତୀୟ ଶିକ୍ଷା ଧମାଜର ବୈଧ ବ୍ୟବସ୍ଥା ଗ୍ରହଣ କରିବା ପାଇଁ ନେତାମାନଙ୍କର ମନ୍ତ୍ରଣା ସଭା ଆରମ୍ଭ ହେଲା । ସଂବିଧାନ ପ୍ରଣୟନ ସଭାରେ ରବୀନ୍ଦ୍ରନାଥ ଉପସ୍ଥିତ ଥିଲେ । କିନ୍ତୁ ସେ କଥାବାର୍ତ୍ତା ଓ ଆବହାଓ୍ୱାରୁ ବୁଝି ପାରିଲେ ଯେ ଉଦ୍ୟୋକ୍ତାଗଣ ଏକ ନୂଆ ବିଶ୍ୱବିଦ୍ୟାଳୟ ଗଠନ କରି କଲିକତା ବିଶ୍ୱବିଦ୍ୟାଳୟର ପ୍ରତିପକ୍ଷରୂପେ ଠିଆ କରିବାକୁ ଚାହାନ୍ତି—ଶିକ୍ଷାର ଆମୂଳ ସଂସ୍କାର କରି ଭାରତୀୟ ପଦ୍ଧତିରେ ଶିକ୍ଷା ପ୍ରଦାନ କରିବା ଭାବନା ଗୌଣ । ରବୀନ୍ଦ୍ରନାଥଙ୍କ ମତରେ—ମୂଳଦୁଆରୁ ଆରମ୍ଭ କରିବାକୁ ହେବ, ଛୋଟରୁ ବଡ଼ ହେବାକୁ ହେବ; ଅଧୈର୍ଯ୍ୟ ହେଲେ କୌଣସି କାର୍ଯ୍ୟ ହେବ ନାହିଁ । ଅତି ଉତ୍ସାହୀମାନେ ଗଛ ପୋତୁ ପୋତୁ ଫଳ ଆଶା କରନ୍ତି, ଅପେକ୍ଷା କରିବାକୁ ନାରାଜ ।

ରବୀନ୍ଦ୍ରନାଥ କିଛିଦିନ ମଧ୍ୟରେ ବୁଝି ପାରିଲେ ଯେ ତାଙ୍କର ମତ କବିର କବିତ୍ୱ-ଭାବନା ବୋଲି ସମସ୍ତେ ଉପେକ୍ଷା କରୁଛନ୍ତି । ଏକ ପ୍ରକାର ଉତ୍ତେଜନା ମଧ୍ୟରେ ଦୀର୍ଘକାଳ ରହିବା କବିଙ୍କର ପ୍ରକୃତି ବିରୁଦ୍ଧ ଥିଲା—ତାହା ତାଙ୍କର ସ୍ୱଭାବ-ବିରୁଦ୍ଧ ମଧ୍ୟ । ତେଣୁ ସେ ଶାନ୍ତିନିକେତନ ବ୍ରହ୍ମଚର୍ଯ୍ୟାଶ୍ରମ ସଂଗଠନ କାର୍ଯ୍ୟରେ ମନ ଦେଲେ ।

ବ୍ରହ୍ମଚର୍ଯ୍ୟାଶ୍ରମର ଛାତ୍ର ଓ ଅଧ୍ୟାପକଙ୍କ ମଧ୍ୟରେ, ସ୍ୱରାଜର ଭଣି ଆତ୍ମଶାସନ ପ୍ରବର୍ତ୍ତିନ କଲେ, ଶିକ୍ଷକ ଓ ଛାତ୍ରମାନେ ପଲ୍ଲୀ ଆଡ଼କୁ ଦୃଷ୍ଟି ଫେରାଇଲେ, ଗ୍ରାମ ସେବାରେ ମନ ଦେଲେ, ଦାତବ୍ୟ ଭଣ୍ଡାର ଖୋଲିହେଲା, ବିଦ୍ୟାଳୟ ପରିଚାଳନାରେ ହେଡ଼ମାଷ୍ଟର ପ୍ରଥା ଉଠାଇ ଦେଇ ଶିକ୍ଷକମାନଙ୍କ ଉପରେ ସଂଘଗତ ଦାୟିତ୍ୱ ଅର୍ପିତ ହେଲା, ଛାତ୍ରସଂଘ ଉପରେ ଆତ୍ମଶାସନ ଓ ଶୃଙ୍ଖଳା ବିଧାନ ଭାର ପଡ଼ିଲା—ଛାତ୍ର ଓ ଶିକ୍ଷକମାନେ ମିଳିମିଶି ଆଶ୍ରମର ସର୍ବାଙ୍ଗୀନ କଲ୍ୟାଣ କାର୍ଯ୍ୟରେ ବ୍ରତୀ ହେଲେ । ସେ ସବୁର ବିସ୍ତୃତ ଆଲୋଚନା ଏଠାରେ ସମ୍ଭବ ନୁହେଁ ।

(୫୦)

ବୟକଟ୍ ଆନ୍ଦୋଳନ ବନ୍ଦ କରିବା ପାଇଁ ବ୍ରିଟିଶ ସରକାର ରୁଦ୍ରମୂର୍ତ୍ତି ଧାରଣ କଲେ । କାରଣ ବୟକଟ୍ ସଫଳ ହେଲେ ବ୍ରିଟିଶ ବଣିକ ବିପନ୍ନ ହେବେ ଓ ବ୍ରିଟିଶ ବାଣିଜ୍ୟ ଧ୍ୱଂସ ହେଲେ ସାମ୍ରାଜ୍ୟ ରକ୍ଷା କରିହୋଇ ପାରିବ ନାହିଁ । ତେଣୁ ନେତାମାନଙ୍କୁ ଜେଲ ଦେଇ, ଅନେକ ରଖି ଗ୍ରାମ ଓ ସହରରେ ପିଟୁନିଟି ପୋଲିସ ମୁତୟନ କରିହେଲା । ବୟକଟ୍ ଅନ୍ଦୋଳନ ଧ୍ୱଂସ କରିବା ପାଇଁ ସମସ୍ତ ପ୍ରକାର ବୈଧ ଓ ଅବୈଧ ନୀତି ଅବଲମ୍ବନ କରାଗଲା । ସ୍କୁଲ କଲେଜ ଛାତ୍ରମାନେ ଯେପରି ରାଜନୀତିରେ ଯୋଗଦାନ ନ କରନ୍ତି, ତାହା ଦେଖିବା ପାଇଁ ଅଧ୍ୟକ୍ଷମାନଙ୍କୁ କଡ଼ା ହୁକୁମ ଦିଆହେଲା । ପୂର୍ବବଙ୍ଗର ହିନ୍ଦୁମାନଙ୍କ ଉପରେ ସରକାରଙ୍କର କୋପଦୃଷ୍ଟି ବେଶୀ ପଡ଼ିଲା । ସ୍ୱଦେଶୀ ଆନ୍ଦୋଳନରୁ ମୁସଲମାନଙ୍କୁ ଅଲଗା ରଖିବାପାଇଁ ସରକାରୀ କର୍ମଚାରୀ ଓ ସରକାରୀ ଜମକ-ସଭାମାନେ ପ୍ରାଣପଣେ ଚେଷ୍ଟାକଲେ ଓ ସଫଳ ମଧ୍ୟ ହେଲେ । ସ୍ୱାଧୀନତା ଆନ୍ଦୋଳନରେ ଯୋଗଦେବା ମୌଲବୀମାନଙ୍କ ମତରେ ଥିଲା ପାପ । ତଥାପି ଏକଥା ସ୍ୱୀକାର୍ଯ୍ୟ ଯେ କଂଗ୍ରେସ-ବିଶ୍ୱାସୀ ମୁସଲମାନଙ୍କର ଅଭାବ ନଥିଲା ।

ଦେଶବ୍ୟାପୀ ଏହି ବିକ୍ଷୋଭ ଓ ଅସନ୍ତୋଷ ଚାଲିଥିଲା ବେଳେ ପ୍ରିନ୍ସ ଅଫ ୱେଲ୍ସ (୧) ବଙ୍ଗଳା ପରିଦର୍ଶନରେ ଆସିଲେ । ସାଜ୍ଜିତ ପଥରେ ଭ୍ରମଣକଲେ, ବହୁ ସମାରୋହରେ ଆମନ୍ତ୍ରିତ ହେଲେ, ବହୁଦର୍ଶନୀୟ ସ୍ଥାନ ଦେଖିଲେ । କିନ୍ତୁ ବଙ୍ଗଳାର ଲୋକେ କଣ ଚାହାନ୍ତି ତାହା ଜାଣି ପାରିଲେ ନାହିଁ । ରବୀନ୍ଦ୍ରନାଥ ଲେଖି-ଥିଲେ, 'ଦେବତା ବା ମାନବ ଯେ ହେଉ, ଯେଉଁଠାରେ କେବଳ ପ୍ରତାପର ପ୍ରକାଶ ଓ ବଳର ବାହୁଲ୍ୟ, ଯେଉଁଠାରେ ବେତ ଚାବୁକ, ଜେଲ୍ କୋରମାନା, ପିଉନିଟି ପୋଲିସ ଓ ଗୋରା ଗୁର୍ଖାଙ୍କର ପ୍ରାଦୁର୍ଭାବ; ସେଠାରେ ଭୀତ ହସ୍ତ ରହିବା ଓ ମୁଣ୍ଡପାତ ରହିବା ପର ଅମ୍ଭ ଅବମାନନା ଠାରୁ ଅନ୍ତର୍ଯ୍ୟାମୀ ଈଶ୍ୱରଙ୍କର ବଡ଼ ଅବମାନନା ଆଉ ନାହିଁ ।'

(୫୧)

ରବୀନ୍ଦ୍ରନାଥ କେତେବେଳେ ଶିଲାଇଦାହ ଓ କେତେବେଳେ ବୋଲପୁରରେ ରହନ୍ତି—ନାନା କାମରେ କଲିକତା ବି ବେଳେ ବେଳେ ଆସିବାକୁ ପଡ଼େ । 'ଖେୟା'ର କବିତା ଲେଖୁଥାନ୍ତି । ବଙ୍ଗ-ଦର୍ଶନ ପତ୍ରିକାରେ 'ନୌକାଡୁବି' ଉପନ୍ୟାସ ଶେଷ ହୋଇଥାଏ । ତାହା ପରେ ଧାରାବାହିକ ଲେଖାର ତାଗିଦା ନଥାଏ । ପିଲାମାନେ ଶାନ୍ତିନିକେତନରେ ପଢ଼ାପଢ଼ି କରୁଥାନ୍ତି ।

ଏଥି ମଧ୍ୟରେ ଜ୍ୟେଷ୍ଠପୁତ୍ର ରଥୀନ୍ଦ୍ରନାଥ ଓ ଶ୍ରୀଶଚନ୍ଦ୍ରଙ୍କର ପୁତ୍ର ସନ୍ତୋଷଚନ୍ଦ୍ରଙ୍କୁ ଆମେରିକାରେ କୃଷି ଓ ଗୋପାଳନ ପ୍ରଭୃତି ବିଷୟରେ ପଠାଇବାକୁ ସ୍ଥିର କଲେ । ୧୯୦୪ ମସିହାରେ ଏଣ୍ଟ୍ରାନ୍ସ ପାସ କଲାପରେ ରବୀନ୍ଦ୍ର ଓ ସନ୍ତୋଷଚନ୍ଦ୍ରଙ୍କୁ କଲେଜରେ ପଢ଼ାଇବାକୁ ନ ପଠାଇ, ଶାନ୍ତିନିକେତନରେ ଶିକ୍ଷା ଦାନର ବ୍ୟବସ୍ଥା

୧ । ତତ୍‌କାଳୀନ ଭାରତ ସମ୍ରାଟ ଓ ସପ୍ତମ ଏଡ୍‌ୱାର୍ଡ଼ଙ୍କର ପୁତ୍ର ଓ ମହାରାଣୀ ଭିକ୍‌ଟୋରିଆଙ୍କର ପୌତ୍ର ।

କରିଥିଲେ । ବିଦେଶ ଯିବା ପୂର୍ବରୁ ପିଲାମାନେ ଭାରତ ସଂପର୍କରେ ଭଲ ଭାବରେ ଜାଣିବା ଉଚିତ । ତେଣୁ ସତୀଶ ରାୟ, ମୋହିତ ସେନ୍, ଭୂପେନ୍ଦ୍ର ସାନ୍ୟାଲ ଓ ବିଧୁଶେଖର ଶାସ୍ତ୍ରୀ ଏମାନଙ୍କୁ ପଢ଼ାଇଲେ ।

ସେ ସମୟରେ ଧନୀ ଲୋକଙ୍କର ପିଲାମାନେ ମେଧାବୀ ହୋଇଥିଲେ ସିଭିଲ୍‌ସର୍ଭିସ ପରୀକ୍ଷା କିମ୍ବା ସାଧାରଣ ବୁଦ୍ଧି ସମ୍ପନ୍ନ ହୋଇଥିଲେ ବାରିଷ୍ଟର ପଢ଼ିବାକୁ ଯାଉଥିଲେ । ମଧ୍ୟବିତ୍ତ ଶ୍ରେଣୀର ପିଲାମାନେ ଜାପାନରେ ବିସ୍କୁଟ, ସାବୁନ, କୋଠା କାମ ଶିଖିବାକୁ ଯାଉଥିଲେ । ରବୀନ୍ଦ୍ରନାଥ ଏମାନଙ୍କୁ କୃଷି ସଂପର୍କରେ ଶିକ୍ଷା ଦେବାକୁ ପଠାଇଲେ । ଭାରତରେ ପୁଷ୍ଟିକର ଖାଦ୍ୟର ଅଭାବ । ରବୀନ୍ଦ୍ରନାଥ କହୁଥିଲେ ଯେ ପର୍ଯ୍ୟାପ୍ତ ଖାଦ୍ୟ ପାଇଲେ ଲୋକଙ୍କର ଉଦ୍‌ବୃତ୍ତ ଶକ୍ତି ବଳିବ ଓ ତାହାର ଉପରେ ନିର୍ଭର କଲେ ଦେଶର ସର୍ବାଙ୍ଗୀନ ଉନ୍ନତି ସାଧିତ ହେବ । ସେହି ସମସ୍ୟା ସମାଧାନ କରିବା ପାଇଁ ରଥୀନ୍ଦ୍ରନାଥ (୧୭) ଓ ସନ୍ତୋଷଚନ୍ଦ୍ର (୧୮)ଙ୍କୁ ମାର୍କିନ ଯୁକ୍ତରାଷ୍ଟ୍ରରେ କୃଷି ଓ ଗୋପାଳନ ଶିକ୍ଷା ପାଇବା ପାଇଁ ପଠାଇଲେ । କିଛିଦିନ ପରେ କନିଷ୍ଠ ଜାମାତାଙ୍କୁ ବି ଏହି ଉଦ୍ଦେଶ୍ୟରେ ପଠାଇଥିଲେ । ରଥୀନ୍ଦ୍ରନାଥ ପ୍ରଶାନ୍ତ ମହାସାଗର ବାଟେ ଯାତ୍ରା କଲେ ।

(୫୨)

ରଥୀନ୍ଦ୍ରନାଥ ପ୍ରଭୃତିଙ୍କୁ କଲିକତାରେ ଜାହାଜ ଚଢ଼ାଇ ଦେଇ କବି ପୂର୍ବବଙ୍ଗ ଗଲେ । ବରିଶାଲରେ ପ୍ରାଦେଶିକ ସମ୍ମିଳନୀ ହେବାର ଥାଏ (୧୯୦୫ ଏପ୍ରିଲ)—ସଭାପତି କୁମିଲାର ବାରିଷ୍ଟର ଏ.ରସୁଲ । ସେ ହିନ୍ଦୁ-ମୁସଲମାନ ଐକ୍ୟରେ ବିଶ୍ୱାସୀ ଓ ବଙ୍ଗ-ଚ୍ଛେଦର ବିରୋଧୀ ଥିଲେ । ଏହି ରାଜନୈତିକ ସମ୍ମିଳନୀ ସହିତ ପ୍ରଥମ ବଙ୍ଗୀୟ ସାହିତ୍ୟ ସମ୍ମିଳନୀ ଆହୂତ ହୋଇଥାଏ—ରବୀନ୍ଦ୍ର-ନାଥ ତାର ସଭାପତି ।

ବର୍ତ୍ତମାନ ବରିଶାଲ ପୂର୍ବ ପାକିସ୍ତାନ ଅନ୍ତର୍ଗତ ଓ ସେଠାର ପ୍ରାୟ ଅଧିକାଂଶ ଭଦ୍ର ହିନ୍ଦୁ ପରିବାର ଦେଶତ୍ୟାଗୀ । କିନ୍ତୁ ଅର୍ଦ୍ଧ ଶତାବ୍ଦୀ ପୂର୍ବେ ବରିଶାଲ ଥିଲା ବୟ୍କଟ୍ ଆନ୍ଦୋଳନର ପୀଠସ୍ଥଳ । ନେତା ଥିଲେ ଅଶ୍ୱିନୀକୁମାର ଦତ୍ତ । ତାଙ୍କର ଚେଷ୍ଟାରେ ବାଖରଗଞ୍ଜ ଜିଲାର ବଜାରରେ ବିଲାତି ଲବଣ ଓ ଲୁଗାପଟା କିଣା-ବିକା ବନ୍ଦ ହୋଇଥିଲା । ସେ ଥିଲେ ଏହି ପ୍ରାଦେଶିକ ସମ୍ମିଳନୀର ଆବାହକ । ସାହିତ୍ୟ ସମ୍ମିଳନୀର ଉଦ୍ୟୋକ୍ତା ଥିଲେ ଦେବକୁମାର ରାୟଚୌଧୁରୀ—ଲଖୁଟିଆର ତରୁଣ ଜମିଦାର, ସାହିତ୍ୟିକ ଓ କବି—ଦ୍ୱିଜେନ୍ଦ୍ରନାଥ ଠାକୁରଙ୍କର ମାତୁଳ ।

'ଅବସ୍ଥା ଓ ବ୍ୟବସ୍ଥା' ପ୍ରବନ୍ଧରେ ରବୀନ୍ଦ୍ରନାଥ ବଙ୍ଗୀୟ ସାହିତ୍ୟ ସମ୍ମିଳନୀ ଆହ୍ୱାନ କରିବାର ପ୍ରସ୍ତାବ ଦେଇଥିଲେ । ସେ କହିଥିଲେ ଯେ ବଙ୍ଗଚ୍ଛେଦ ହୋଇଥିବାରୁ ସଜ୍ଞାନ ଓ ସପ୍ରଚେଷ୍ଟାରେ ବଙ୍ଗାଳୀଙ୍କର ଚିନ୍ତାର ଐକ୍ୟ, ଭାଷାର ଐକ୍ୟ ଓ ସାହିତ୍ୟର ଐକ୍ୟ ଅକ୍ଷୁଣ୍ଣ ରଖିବାକୁ ହେବ ।

କବିଙ୍କର ସେହି ପ୍ରସ୍ତାବ ଫଳରେ ବଙ୍ଗଳାର ପ୍ରତି ଜିଲ୍ଲାରେ ସାହିତ୍ୟ ସମ୍ମିଳନୀ ଆହ୍ୱାନ କରିବା ଇଚ୍ଛାର ଉଦ୍ଭବ ହୋଇଥିଲା । ବୋଧହୁଏ ସେଇଥିପାଇଁ ଲୋକମାନେ ତାଙ୍କୁ ପ୍ରଥମ ସଭାପତି ମନୋନୀତ କରିଥିଲେ ।

କିନ୍ତୁ ପ୍ରାଦେଶିକ ସମ୍ମିଳନୀ ଅଧିବେଶନ ପଣ୍ଡ ହୋଇଗଲା । ବ୍ରିଟିଶ ସରକାରଙ୍କର ପ୍ରତିନିଧି ମାଜିଷ୍ଟ୍ରେଟ ଇମାର୍ସନ ସାହେବଙ୍କର ଜୁଲମ ଓ ଗୁଣ୍ଡାମୀରେ ସଭା ହୋଇପାରିଲା ନାହିଁ । ନବବର୍ଷର ପ୍ରଥମ ଦିନରେ (ବଙ୍ଗାବ୍ଦ ୧୩୧୩) ପୁଲିସ ଲାଠିରେ ପ୍ରଥମ ରକ୍ତପାତ ହେଲା ଓ ତେରବର୍ଷ ପରେ ପ୍ରାୟ ଏହିଦିନ ଜାଲିଆନା-ଓ୍ୱାଲା ବାଗରେ ଗୁଳି ଫଳରେ ନିରୀହ ଲୋକେ ମୃତ୍ୟୁବରଣ କରିଥିଲେ ।

ବରିଶାଲରୁ ନେତାମାନେ କଲିକତା ଓ କବି ବୋଲପୁର ଫେରିଆସିଲେ । ସ୍ୱଦେଶୀ ଆନ୍ଦୋଳନ ଆରମ୍ଭ ହେବାର କିଛିଦିନ ମଧ୍ୟରେ ନେତାମାନଙ୍କ ମଧ୍ୟରେ କର୍ମପଦ୍ଧତି ସମ୍ପର୍କରେ ମତଭେଦ ଦେଖାଦେଲା । କ୍ରମଶଃ ସେହି ମତଭେଦ ସ୍ପଷ୍ଟ ମତାନ୍ତରରେ

ପରିଣତ ହେଲା । ଖବର କାଗଜରେ ପରସ୍ପର ପ୍ରତି ଅଭିଦ୍ରୋଶିତ ଆକ୍ରମଣ ଚାଲିଲା ।

ରବୀନ୍ଦ୍ରନାଥ ବୋଲପୁରରେ ନିଶ୍ଚିନ୍ତରେ ଶାନ୍ତିରେ ବସି ରହିବେ ବୋଲି ଭାବିଥିଲେ; କିନ୍ତୁ ପାରିଲେ ନାହିଁ । କଲିକତା ଆସି 'ଦେଶ ନାୟକ' ନାମରେ ଏକ ପ୍ରବନ୍ଧ ପଢ଼ିଲେ । ସେଥିରେ ଲେଖିଥିଲେ, 'କଳହ ହେଉଛି ଅକ୍ଷମଙ୍କର ଉତ୍ତେଜନା ପ୍ରକାଶ ଓ ତାହା ଅକର୍ମାଙ୍କର ଆତ୍ମବିନୋଦନ ।' ସେ ସ୍ପଷ୍ଟ କହିଥିଲେ ଯେ, ଦେଶକୁ ସଂଗ୍ରାମରେ ପ୍ରବୃତ୍ତ କରିବାକୁ ହେଲେ ଏକ-ନାୟକତ୍ୱ ଦରକାର । ତେଣୁ ସେ ସୁରେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟଙ୍କୁ ପ୍ରକାଶ୍ୟ ଭାବରେ ଦେଶନାୟକ ରୂପେ ବରଣ କରିବାକୁ ଦେଶବାସୀଙ୍କୁ ଅନୁରୋଧ କଲେ । ସୁରେନ୍ଦ୍ରନାଥଙ୍କୁ ବଙ୍ଗଳାର ଲୋକମାନେ 'ମୁକୁଟହୀନ ରାଜା' ବୋଲି କହୁଥିଲେ । (ଏହି ଘଟଣାର ପ୍ରାୟ ତିରିଶବର୍ଷ ପରେ ଆଉଥରେ 'ଦେଶନାୟକ' ନାମକ ଅନ୍ୟ ଏକ ପ୍ରବନ୍ଧ ଲେଖି ସୁଭାଷଚନ୍ଦ୍ରଙ୍କୁ କବି ଅଭିନନ୍ଦିତ କରିଥିଲେ ଏବଂ ତାଙ୍କ ସମ୍ପର୍କରେ ଯେଉଁ ପ୍ରତ୍ୟୟ ଓ ପ୍ରତ୍ୟାଶା ବ୍ୟକ୍ତ କରିଥିଲେ ପରବର୍ତ୍ତୀ ଘଟଣାରେ ତାହା ଦୈବ-ପ୍ରେରିତ ଭବିଷ୍ୟତ ବାଣୀ ପରି ଅବ୍ୟର୍ଥ ହୋଇଛି । )

କିଛିଦିନ ପରେ ଡନ୍ ସୋସାଇଟିର ଗୋଟିଏ, ସଭାରେ 'ସ୍ୱଦେଶୀ ଆନ୍ଦୋଳନ' ସମ୍ପର୍କରେ ଏକ ଭାଷଣ ଦେଇ ରବୀନ୍ଦ୍ରନାଥ କହିଲେ, 'ଏ ପ୍ରକାର ମତ୍ତ ଅବସ୍ଥାରେ ବେଶୀ କିଛି ପାଇବାର ଆଶା କରାଯାଇ ପାରେନା .... ମୁଁ ମଧ୍ୟ ଏହି ଉତ୍ତେଜନାରୁ ନିସ୍କୃତି ପାଇ ପାରୁନାହିଁ ଏବଂ ତାହା ଅସ୍ୱୀକାର କରିବାର କୌଣସି କାରଣ ଦେଖୁନାହିଁ ।' ଅନ୍ୟ ଗୋଟିଏ ଦିନର ସଭାରେ କହିଥିଲେ 'ବର୍ତ୍ତମାନ ଆମ୍ଭମାନଙ୍କର ଛୋଟ ଛୋଟ ଅନୁଷ୍ଠାନ ଗଢ଼ିବା ଉଚିତ ।' ଏହି ସଭାରେ କବି ପଲ୍ଲୀସମିତି ସ୍ଥାପନ ବିଷୟରେ କହିଥିଲେ,— 'ଆତ୍ମଶକ୍ତି ଚାଳନା କରି କର୍ତ୍ତୃତ୍ୱର ପ୍ରକୃତ ଅଧିକାରୀ ହେବାପାଇଁ ଏ ପ୍ରକାର ପଲ୍ଲୀସମିତି ଆମକୁ ଆରମ୍ଭ କରିବାକୁ ହେବ ।' ଏହି ପଲ୍ଲୀସମିତି ସମ୍ପର୍କରେ ବିସ୍ତୃତ ଯୋଜନା ପ୍ରସ୍ତୁତ କରି ଦେଶବାସୀଙ୍କ ସମ୍ମୁଖରେ ଉପସ୍ଥାପିତ କରିଥିଲେ—ନିଜର ଜମିଦାରୀରେ ତା'ର ପ୍ରଥମ ପରୀକ୍ଷା ଆରମ୍ଭ କଲେ ।

ବଙ୍ଗଚ୍ଛେଦ ହେବାର ଦଶମାସ ପରେ କଲିକତାରେ ଜାତୀୟ ଶିକ୍ଷା ପରିଷଦର କାର୍ଯ୍ୟ ଆରମ୍ଭ ହେଲା (୧୯୦୬ ଅଗଷ୍ଟ ୧୫) । ଦୀର୍ଘକାଳ ଧରି ପରିଷଦର ଶିକ୍ଷାଦର୍ଶ, ପାଠ୍ୟସୂଚୀ ଓ ପଦ୍ଧତି ସମ୍ପର୍କରେ ଆଲୋଚନା ଚାଲିଥିଲା । ରବୀନ୍ଦ୍ରନାଥ ଏ ସମସ୍ତ ସହିତ ଜଡ଼ିତ ଥିଲେ । ଶିକ୍ଷା ସମସ୍ୟା, ଶିକ୍ଷା ସଂସ୍କାର, ଆବରଣ, ଜାତୀୟ ବିଦ୍ୟାଳୟ, ତତଃକିମ୍—ଶୀର୍ଷକ ପ୍ରବନ୍ଧଗୁଡ଼ିକ ଏହି ସମୟରେ ଲିଖିତ ଓ ନାନା ସଭାରେ ପଠିତ ହୋଇଥିଲା । ଏହାପରେ ଜାତୀୟ ବିଦ୍ୟାଳୟର ପାଠ୍ୟକ୍ରମ ଆରମ୍ଭ ହେଲା ଓ ସେଠାରେ କବି ସାହିତ୍ୟ ସମ୍ପର୍କରେ ଚାରୋଟି ବକ୍ତୃତା ଦେଇଥିଲେ । ସେହି ବକ୍ତୃତା ଗୁଡ଼ିକ ତାଙ୍କର 'ସାହିତ୍ୟ' ଗ୍ରନ୍ଥରେ ମୁଦ୍ରିତ ହୋଇଅଛି ।

ବକ୍ତୃତା ଦେବା ଛଡ଼ା ମଧ୍ୟ ବିଦ୍ୟାଳୟ ସହିତ ଅଧିକ ଜଡ଼ିତ ଥିଲେ । ୧୯୦୬-୦୭ ଦୁଇବର୍ଷ ସେ ପରିଷଦର ବଙ୍ଗଳା ଭାଷା ଓ ସାହିତ୍ୟର ପରିଚାଳକ ଓ ପରୀକ୍ଷକ ଥିଲେ । କିନ୍ତୁ କବି ତାଙ୍କର ବିଦ୍ୟାଳୟକୁ ଏହି ଆନ୍ଦୋଳନ ସହିତ ଜଡ଼ିତ କରି ନଥିଲେ । ଆଶ୍ରମ ଥିଲା ରାଜନୀତିଠାରୁ ପୃଥକ୍ ଅନୁଷ୍ଠାନ—ସେ କେବଳ ସମସ୍ତଙ୍କୁ ଆଶ୍ରୟ ହିଁ ଦେଉଥିଲା ।

(୫୩)

କବି ଶାନ୍ତିନିକେତନରେ ଥାନ୍ତି । ୧୯୧୩ ସାଲର ଶେଷ ଭାଗରେ ପ୍ରଧାନ କାର୍ଯ୍ୟ ହେଲା ଗ୍ରନ୍ଥାବଳୀର ସମ୍ପାଦନା ଓ ପ୍ରକାଶନ । ଦଶବର୍ଷ ପୂର୍ବରୁ ମୋହିତଚନ୍ଦ୍ର ସେନଙ୍କ ସମ୍ପାଦିତ କାବ୍ୟଗ୍ରନ୍ଥାବଳୀ ପ୍ରକାଶିତ ହୋଇଥିଲା । ଗ୍ରନ୍ଥାବଳୀର ପ୍ରଥମ ଖଣ୍ଡ 'ବିଚିତ୍ର ପ୍ରବନ୍ଧ' ୧୯୧୪ ସାଲ ବୈଶାଖ ମାସରେ ପ୍ରକାଶିତ ହୋଇଥିଲା । ସେଥିରେ ଲେଖାଥିଲା, 'ଗଦ୍ୟ ଗ୍ରନ୍ଥାବଳୀର ଉପସ୍ୱତ୍ୱ ବୋଲପୁର ବ୍ରହ୍ମଚର୍ଯ୍ୟାଶ୍ରମକୁ ଉତ୍ସର୍ଗ କରାହେଲା ।' ଗଳ୍ପ ଉପନ୍ୟାସ ବ୍ୟତୀତ ଗଦ୍ୟରଚନା ଷୋଳଖଣ୍ଡରେ ପ୍ରକାଶିତ ହୋଇଥିଲା (୧୯୦୭-୧୯୦୯) ।

ଏହାମଧ୍ୟରେ ମହର୍ଷିଙ୍କର ମୃତ୍ୟୁ ହୋଇଯାଇଛି [୧୯୦୭ ଜାନୁୟାରୀ] । ପରିବାରରେ ଅନେକ ପରିବର୍ତ୍ତନ ଘଟିଛି । ଦ୍ୱିଜେନ୍ଦ୍ରନାଥ ଠାକୁର ଶାନ୍ତିନିକେତନର 'ନିଚୁବଙ୍ଗଳା'ରେ ବାସ କରୁଛନ୍ତି; ତାଙ୍କର ପୁଅ ଦ୍ୱିଜେନ୍ଦ୍ରନାଥ ଶାନ୍ତିନିକେତନର ଅନ୍ୟତମ ଅଧିବାସୀ—ସେ ଦ୍ୱିତଳ 'ଶାନ୍ତିନିକେତନ'ର ତଳମହଲରେ ରହୁଥାନ୍ତି । ରବୀନ୍ଦ୍ରନାଥ ନୂଆଘରର ପୂର୍ବଦିଗରେ ନିଜ ପାଇଁ ଗୋଟିଏ ଶ୍ରେଷ୍ଠ ଏକତାଲା ଘର ତିଆରି କଲେ—ପରେ ତା'ର ନାମ ରଖା ହୋଇଥିଲା 'ଦେହଲୀ' ଓ କବି ବହୁବର୍ଷ ଏହି ଘରେ ରହିଥିଲେ । ସନ୍ତାନମାନଙ୍କ ମଧ୍ୟରୁ ବେଲା ସ୍ୱାମୀଗୃହରେ, ରଥୀନ୍ଦ୍ରନାଥ ଆମେରିକାରେ, ମୀରା ଓ ଶମୀନ୍ଦ୍ର ନୂତନ ଘରେ ଥାନ୍ତି ।

୧୩୧୪ ସାଲ ଜ୍ୟେଷ୍ଠ ମାସରେ ମୀରାର ବିବାହ ଦେଲେ । ଜାମାତା ନଗେନ୍ଦ୍ରନାଥ ଗଙ୍ଗୋପାଧ୍ୟାୟ ସାଧାରଣ ବ୍ରାହ୍ମ ସମାଜଭୁକ୍ତ ସୁପୁରୁଷ ଯୁବକ । ଏହି ଉଦ୍ୟମଶୀଳ ସୁଦର୍ଶନ ଯୁବକଟିକୁ ଦେଖି କବି ଆକୃଷ୍ଟ ହୋଇ ଜାମାତା କରିଥିଲେ । ଆଦିସମାଜ ପଦ୍ଧତିରେ ଶାନ୍ତିନିକେତନ ମନ୍ଦିରରେ ବିବାହ ଅନୁଷ୍ଠିତ ହେଲା । କିନ୍ତୁ ଅନେକ ବିଷୟରେ ନଗେନ୍ଦ୍ରନାଥ ତାଙ୍କର ସ୍ୱତନ୍ତ୍ର ପଦ୍ଧତି ପାଳନ କରିଥିଲେ ।

ବିବାହ ପରେ ନଗେନ୍ଦ୍ରନାଥଙ୍କୁ କବି ଆମେରିକାର ଇଲିନୟ ବିଶ୍ୱବିଦ୍ୟାଳୟରେ କୃଷିବିଜ୍ଞାନ ପଢ଼ିବା ପାଇଁ ପଠାଇ ଦେଲେ । ବିଦେଶରେ ରଥୀନ୍ଦ୍ରନାଥ ଓ ଜାମାତା ନଗେନ୍ଦ୍ରନାଥଙ୍କର ବ୍ୟୟଭାର ବହନ କରିବା ପାଇଁ କବିଙ୍କୁ ବହୁତ କଷ୍ଟ ଭୋଗ କରିବାକୁ ପଡ଼ିଥିଲା । ସେତେବେଳକୁ ତାଙ୍କର ଜୀବନ ଖୁବ୍ ଅନାଡ଼ମ୍ବର ଥିଲା । ଗୋଟିଏ ଚାକର ରନ୍ଧନାଦି ସକଳ କାର୍ଯ୍ୟ କରେ, ଖାଇବା ପିଇବା ନିତାନ୍ତ ସାଧାସିଧା; ସାଧାରଣ ବଙ୍ଗାଳୀ ଗୃହସ୍ଥଙ୍କ ପରି ପଥର ଥାଳୀରେ ଖାଉଥିଲେ । ଗୃହସଜ୍ଜା ଥିଲା ଖଣ୍ଡିଏ ସାଧାରଣ ଖଟ—ପାଖରେ ଲେଖା ସରଞ୍ଜାମ, ଡେକ୍ସ ପ୍ରଭୃତି ।

(୫୪)

ଦେଶର ରାଜନୈତିକ ପରିସ୍ଥିତି ଦ୍ରୁତ ବଦଳି ଚାଲିଥାଏ, ନରମ ପନ୍ଥୀ ଓ ଚରମ ପନ୍ଥୀ—ମଡ଼ରେଟ୍ ଓ ଏକ୍‌ଷ୍ଟ୍ରିମିଷ୍ଟ—ଦୁଇ ଦଳ ମଧ୍ୟରେ ମତ ବିଭିନ୍ନତା କ୍ରମଶଃ ସୁସ୍ପଷ୍ଟତର । ସୁରେନ୍ଦ୍ରନାଥ ବନ୍ଦ୍ୟୋପାଧ୍ୟାୟଙ୍କ ସମ୍ପାଦିତ 'ବେଙ୍ଗଲୀ' ଦୈନିକ ପତ୍ରିକା, କାଳୀପ୍ରସନ୍ନ କାବ୍ୟ ବିଶାରଦଙ୍କ ସମ୍ପାଦିତ 'ହିତବାଦୀ' ସାପ୍ତାହିକ ପତ୍ରିକା ନରମପନ୍ଥୀଙ୍କର ମୁଖପତ୍ର ଓ ଶିଶିରକୁମାର ଘୋଷଙ୍କ ସମ୍ପାଦିତ 'ଅମୃତ ବଜାର ପତ୍ରିକା', କୃଷ୍ଣକୁମାର ମିତ୍ରଙ୍କ ସମ୍ପାଦିତ 'ସଞ୍ଜୀବନୀ' ସାପ୍ତାହିକ ପତ୍ରିକା ଚରମପନ୍ଥୀଙ୍କର ମୁଖପତ୍ର । ଏହାଠାରୁ ଅଧିକ ଚରମପନ୍ଥୀ ଥିଲା, ଗିରିଧାରୀ ଅଭ୍ରଖଣିର ମାଲିକ ମନୋରଞ୍ଜନ ଗୁହ ଠାକୁରଙ୍କ ସମ୍ପାଦିତ 'ନବଶକ୍ତି' ସାପ୍ତାହିକ ପତ୍ରିକା । ସଶସ୍ତ୍ର ବିପ୍ଳବବାଦୀଙ୍କର ମୁଖପତ୍ର ରୂପେ 'ଯୁଗାନ୍ତର' ପ୍ରକାଶିତ ହେଲା । ବ୍ରହ୍ମବାନ୍ଧବ 'ସନ୍ଧ୍ୟା' ଦୈନିକ ପ୍ରକାଶ କଲେ । 'ଯୁଗାନ୍ତର' ସାପ୍ତାହିକର ଭାଷା ଓଜସ୍ୱିନୀ—ଶିକ୍ଷିତମାନଙ୍କ ଉଦ୍ଦେଶ୍ୟରେ ଲିଖିତ । 'ସନ୍ଧ୍ୟା' ଦୈନିକ ଖାଣ୍ଟି ବଙ୍ଗଳା ଭାଷାରେ ଲେଖା ହେଉଥାଏ । ତା'ର ପ୍ରଚାରିତ ବିଷୟ ମଧ୍ୟ ବିପ୍ଳବ—କିନ୍ତୁ 'ଯୁଗାନ୍ତର'—ମାର୍କା ନୁହେଁ ।

ଚରମପନ୍ଥୀମାନଙ୍କର ନେତୃସ୍ଥାନୀୟ ବିପିନଚନ୍ଦ୍ର ପାଲଙ୍କର ସମ୍ପାଦନାରେ ଇଂରେଜୀ 'ବନ୍ଦେମାତରଂ' ସମ୍ବାଦପତ୍ର ପ୍ରକାଶିତ ହେଲା । ଏହି ପତ୍ରିକାର ମନ୍ତ୍ର ଥିଲା—**Autonomy absolutely free from British control** । ଅର୍ଥାତ୍ 'ଇଂରେଜ କର୍ତ୍ତୃତ୍ୱରୁ ସମ୍ପୂର୍ଣ୍ଣ ମୁକ୍ତ ହୋଇ ସାଧାରଣତନ୍ତ୍ର ପାଇବା ।' ଏହି ଭାବଧାରାର ପ୍ରବର୍ତ୍ତକ ଥିଲେ ବିପିନଚନ୍ଦ୍ର । ଲେଖକମାନଙ୍କ ମଧ୍ୟରେ ଅରବିନ୍ଦ ଘୋଷ—ବରୋଦା କଲେଜର ଉଚ୍ଚବେତନ ତ୍ୟାଗ କରି କଲିକତା ଜାତୀୟ ଶିକ୍ଷା ପରିଷଦର କଲେଜ ବିଭାଗର ଅଧ୍ୟକ୍ଷ ପଦ ଗ୍ରହଣ କରିଥିଲେ । ତାଙ୍କର ଉଦ୍ଦେଶ୍ୟ ଥିଲା ବଙ୍ଗଳାରେ ବିପ୍ଳବବାଦ ପ୍ରଚାର କରିବା । 'ବନ୍ଦେ ମାତରଂ' ପତ୍ରିକାରେ ମୁଦ୍ରିତ ଅରବିନ୍ଦଙ୍କର

ଲେଖା 'ରାଜଦ୍ରୋହ' ସରକାରଙ୍କର 'ଚକ୍ଷୁଶୂଳ' ହେଲା । ସମ୍ପାଦକ ହିସାବରେ ବିପିନଚନ୍ଦ୍ରଙ୍କୁ ଅଦାଲତରେ ସାକ୍ଷୀ ଦେବାକୁ ପଡ଼ିଲା । ସେ କୌଣସି ପ୍ରକାର ପ୍ରଶ୍ନର ଉତ୍ତର ଦେଲେନାହିଁ । ସେହିଦିନ ଭାରତରେ ସର୍ବପ୍ରଥମ ଅସହଯୋଗ ଆନ୍ଦୋଳନ ଘୋଷଣା କରାଗଲା । ଆଇନତଃ ବିପିନଚନ୍ଦ୍ର ଅଦାଲତ ଅବମାନନା ଫଳରେ ଛ'ମାସ କାରାଦଣ୍ଡ ଭୋଗିଲେ । ଅରବିନ୍ଦ ମୁକ୍ତି ପାଇଲେ ।

ଅରବିନ୍ଦଙ୍କ ବିରୁଦ୍ଧରେ ରାଜଦ୍ରୋହ ଅଭିଯୋଗ ସମ୍ବାଦ ପାଇ ରବୀନ୍ଦ୍ରନାଥ ଶାନ୍ତିନିକେତନରୁ ଅରବିନ୍ଦଙ୍କ ଉଦ୍ଦେଶ୍ୟରେ ରଚିତ 'ନମସ୍କାର' କବିତା ପଠାଇଦେଲେ—ଅରବିନ୍ଦଙ୍କ ମହତ୍ତ୍ୱର ଅପୂର୍ବ ସ୍ୱୀକୃତି ।

ଏପରି ସମୟରେ ଜମିଦାରୀରୁ ଡାକରା ଆସିଲା । ରବୀନ୍ଦ୍ରନାଥ ବୈଷୟିକ ଗଣ୍ଡଗୋଳ ତୁଟାଇବା ପାଇଁ ସେଠାକୁ ଗଲେ ।

କଲିକତାକୁ ଫେରି ଦେଖିଲେ ଯେ ବରହମପୁର ବଙ୍ଗୀୟ ସାହିତ୍ୟ ସମ୍ମିଳନୀର ପ୍ରଥମ ଅଧିବେଶନରେ ସଭାପତିତ୍ୱ କରିବାକୁ ନିମନ୍ତ୍ରଣ ଆସିଛି । ଉଦ୍ୟୋକ୍ତା ବଙ୍ଗଳାର ଦାନବୀର ମଣୀନ୍ଦ୍ରଚନ୍ଦ୍ର ନନ୍ଦୀ । ବରହମପୁର ଯାଇ ରବୀନ୍ଦ୍ରନାଥ ତିନିଦିନ ରହିଲେ ।

(୫୫)

କଲିକତା ଫେରିବା ପରେ ମୁଙ୍ଗେରରୁ ଟେଲିଗ୍ରାମ ପାଇଲେ ଯେ ତାଙ୍କର କନିଷ୍ଠ ପୁତ୍ର ଶମୀନ୍ଦ୍ରଙ୍କୁ କଲେରା ହୋଇଛି । ପୂଜା ଛୁଟିରେ ଶମୀନ୍ଦ୍ର ତା'ର ବନ୍ଧୁ ଶ୍ରୀଶଚନ୍ଦ୍ର ମଜୁମଦାରଙ୍କର ପୁଅ ସରୋଜଚନ୍ଦ୍ର ସହିତ ତାଙ୍କର ମାମୁଁଘର ମୁଙ୍ଗେର ବୁଲି ଯାଇଥିଲା । କବି ଟେଲିଗ୍ରାମ ପାଇ ସେଠାକୁ ଚାଲିଗଲେ । କିନ୍ତୁ ଶମୀନ୍ଦ୍ରଙ୍କୁ ରକ୍ଷା କରାଯାଇ ପାରିଲା ନାହିଁ ।

ରବୀନ୍ଦ୍ରନାଥ ସାନପୁଅକୁ ଖୁବ ସ୍ନେହ କରୁଥିଲେ—ଲୋକେ କହନ୍ତି ଯେ ଚରିତ୍ର ଓ ଚେହେରାରେ କବିଙ୍କ ସହିତ ତାହାର

ଯଥେଷ୍ଟ ସାମଞ୍ଜସ୍ୟ ଥିଲା । କବି ମନରେ ଦାରୁଣ ଆଘାତ ପାଇଲେ । କିନ୍ତୁ ବାହାରେ ତାର କୌଣସି ପ୍ରକାଶ ଦେଖା ଗଲା ନାହିଁ । ଶାନ୍ତିନିକେତନ ଫେରି ଭୂପେନ୍ଦ୍ରନାଥ ସାନ୍ୟାଲଙ୍କୁ ବିଦ୍ୟାଳୟ ପରିଚାଳନା ସମ୍ପର୍କରେ ବିସ୍ତାରିତ ଉପଦେଶ ଦେଇ, ବେଲା ଓ ମୀରାକୁ ନେଇ ଶିଲାଇଦହ ଚାଲିଗଲେ । ରଥୀନ୍ଦ୍ରନାଥ ସେତେବେଳକୁ ଆମେରିକାରେ ।

ଶିଲାଇଦହରେ ପାଞ୍ଚମାସ ରହିଲେ । ଶାନ୍ତିନିକେତନର ପୌଷ-ସାତ ଉତ୍ସବରେ ଯୋଗ ଦେଲେ ନାହିଁ । ମାଘୋତ୍ସବ ସମୟରେ ଦୁଇଦିନ ପାଇଁ କଲିକତା ଆସି ଫେରିଗଲେ । ଉତ୍ସବରେ ନିୟମ ମୁତାବକ ଉପାସନା କରାଇଲେ ଓ ଭାଷଣ ଦେଲେ—ଏହି ଭାଷଣର ନାମ ଥିଲା 'ଦୁଃଖ' ।

(୫୭)

ଜମିଦାରୀରେ ଅବସ୍ଥାନ କାଳରେ ଗ୍ରାମୋଦ୍ୟୋଗରେ ମନ ବଳିଲା । ଏହି ସମୟର ଗୋଟିଏ ଚିଠିରେ ଲେଖିଛନ୍ତି, 'ସଂପ୍ରତି ମୁଁ ପଲ୍ଲୀ ସମାଜ ନେଇ ରହିଛି । ଆମ ଜମିଦାରୀ ମଧ୍ୟରେ ପଲ୍ଲୀ ସଂଗଠନ କାର୍ଯ୍ୟର ଦୃଷ୍ଟାନ୍ତ ଦେଖାଇବି ବୋଲି ମନସ୍ଥ କରିଛି । କାର୍ଯ୍ୟ ଆରମ୍ଭ କରିଦେଇଛି । କେତେଜଣ ପୂର୍ବବଙ୍ଗର ପିଲା ମୋ ସଙ୍ଗରେ ଯୋଗ ଦେଇଛନ୍ତି ।' ଏହି ଯୁବକମାନଙ୍କର ଢାକା ଅନୁଶୀଳନ ସମିତି ସହିତ ଯୋଗାଯୋଗ ଥିଲା । ଏମାନଙ୍କ ମଧ୍ୟରୁ ଜଣେ ହେଉଛନ୍ତି କାଳୀମୋହନ ଘୋଷ—ତାଙ୍କର ନାମ ସହିତ ବିଶ୍ୱଭାରତୀର ଶ୍ରୀନିକେତନ ଗ୍ରାମ ସେବାବ୍ରତ ଅଚ୍ଛେଦ୍ୟ ଭାବରେ ଯୁକ୍ତ ରହିଛି । ଯୁବକ କାଳୀମୋହନ କଲେଜ ତ୍ୟାଗକରି ନାନା ବୈପ୍ଳବିକ ପରିକଳ୍ପନା ନେଇ ବୁରି ବୁଲୁଥିଲେ—ରବୀନ୍ଦ୍ରନାଥ ତାଙ୍କୁ ଗଠନମୂଳକ କାର୍ଯ୍ୟରେ ଆତ୍ମନିୟୋଗ କରିବାକୁ ପ୍ରେରଣା ଦେଲେ । କେବଳ ଦେଶର କାର୍ଯ୍ୟ କରିବା ଉଚିତ ବୋଲି

ଉପଦେଶ ଦେଇ, ରବୀନ୍ଦ୍ରନାଥ କ୍ଷାନ୍ତ ହୋଇ ନଥିଲେ—କାର୍ଯ୍ୟର ଭାର ତାଙ୍କ ଉପରେ ଅର୍ପଣ କଲେ । ଯୁବକମାନଙ୍କୁ ଗଠନମୂଳକ କାର୍ଯ୍ୟରେ ପ୍ରବୃତ୍ତ କଲେ ।

କବି ଶିଲାଇଦହରେ ଥିବା ସମୟରେ ଖବର କାଗଜରେ ଦେଖିଲେ ଯେ ସୁରାଟ କଂଗ୍ରେସ ଅଧିବେଶନ (୧୯୦୭ ଡିସେମ୍ବର) ଉଗ୍ର ଦଳାଦଳି ଯୋଗୁଁ ଭାଙ୍ଗିଯାଇଛି—ସଭା ବି ଅନୁଷ୍ଠିତ ହୋଇ ପାରିନାହିଁ । ସେଠାରେ ନରମପନ୍ଥୀ ଓ ଚରମପନ୍ଥୀଙ୍କର ମତଭେଦ ତର୍କବିତର୍କ ମଧ୍ୟରେ ସୀମାବଦ୍ଧ ନହୋଇ, ଶେଷପର୍ଯ୍ୟନ୍ତ ହାତାହାତି ହୋଇ ସଭା ପଣ୍ଡହେଲା । ବରିଶାଲର ପ୍ରାଦେଶିକ ସମ୍ମିଳନୀ ମାଜିଷ୍ଟ୍ରେଟଙ୍କ ଜୁଲମ୍ ଫଳରେ ବନ୍ଦ ହୋଇଥିଲା । କିନ୍ତୁ ସୁରାଟ ସଭା ପଣ୍ଡକରିବା ପାଇଁ ତୃତୀୟ ପକ୍ଷର ଦରକାର ହୋଇ ନଥିଲା—ଆତ୍ମକଳହରୁ ତାହା ଘଟିଲା ।

ଏହିସବୁ ଘଟଣା ନେଇ ରବୀନ୍ଦ୍ରନାଥ ବିଲାତ ପ୍ରବାସୀ ବନ୍ଧୁ ଜଗଦୀଶଚନ୍ଦ୍ରଙ୍କୁ ଲେଖିଛନ୍ତି, 'ଏଥର କଂଗ୍ରେସର ଯଜ୍ଞ ଭଙ୍ଗ କଥା ତ ଶୁଣିଥିବ—ତାହାପରେ ଦୁଇପକ୍ଷ ପରସ୍ପର ଉପରେ ଦୋଷାରୋପରେ ବ୍ୟସ୍ତ । · କିଛି ଦିନ ହେବ ସରକାରଙ୍କୁ ସୁବିଧା ଓ ସମୟ ମିଳିଛି—ବର୍ତ୍ତମାନ ଆଉ Sedition ସମସ୍ୟା ନାହିଁ । ଯେଉଁ ଟିକକ ଉତ୍ତାପ ଆମ୍ଭମାନଙ୍କ ମଧ୍ୟରେ ଥିଲା—ତାହା ନିଜ ଘରେ ନିଆଁ ଲଗାଇବାରେ ନିଯୁକ୍ତ ହୋଇଛି ।·· ଆମ୍ଭମାନଙ୍କୁ ନିଷ୍ଟ କରିବା ପାଇଁ ଅନ୍ୟ କାହାରି ପ୍ରୟୋଜନ ହେବନାହିଁ—ମର୍ଲି କିମ୍ବା କିଚେନାରେଙ୍କର ମଧ୍ୟ ଦରକାର ହେବନି ଆମେ ନିଜେ ହିଁ ତା ପାରିବୁ ।' ଉଲ୍ଲେଖ କରିବା ବାହୁଲ୍ୟ ଯେ ମନର ତୀବ୍ର ବିରକ୍ତି ଏହି ପତ୍ରରେ ପ୍ରକାଶିତ ହୋଇଛି । ପରେ ଏ ବିଷୟରେ କବି ଗୋଟିଏ ପ୍ରବନ୍ଧ ଲେଖିଥିଲେ ।

( ୫୭ )

ସୁରାଟ କଂଗ୍ରେସର ଯଜ୍ଞଭଙ୍ଗ ହେବାର ଦୁଇମାସ ପରେ ପାବନାରେ ବଙ୍ଗୀୟ ପ୍ରାଦେଶିକ ସମ୍ମିଳନୀ (୧୯୦୮) ହେଲା ।

ପାବନାର ଲୋକମାନେ ରବୀନ୍ଦ୍ରନାଥଙ୍କୁ ସଭାପତି ମନୋନୀତ କଲେ । ସଙ୍ଗେ ସଙ୍ଗେ କବିଙ୍କ ନିକଟକୁ ବେନାମୀ ଚିଠି ଆସିଲା ଯେ ସେ ଯଦି ସଭାପତି ହୁଅନ୍ତି, ତେବେ ପାବନାରେ ସୁରାଟ ଦକ୍ଷ-ଯଜ୍ଞର ପୁନରାଭିନୟ ହେବ । ବିରୋଧୀଦଳର ଧାରଣା ଯେ ରବୀନ୍ଦ୍ରନାଥ ନରମପନ୍ଥୀ । ସେମାନେ ଏପରି ଲୋକ ଚାହୁଁଥିଲେ ଯେ ଇଂରେଜୀକୁ ଚଢ଼ାଗଳାରେ ଗାଳି ଦେଇପାରିବ । ଆଶ୍ଚର୍ଯ୍ୟର ବିଷୟ ଯେ ପୁଲିସ ତାଙ୍କୁ ଚରମପନ୍ଥୀ ଭାବି ତାଙ୍କ ଉପରେ ସତର୍କ ଦୃଷ୍ଟି ରଖିବା ସଙ୍ଗେ ସଙ୍ଗେ ତାଙ୍କର ଚିଠି ଖୋଲୁଥିଲେ । ପ୍ରକୃତରେ ସେ ନରମ ନଥିଲେ କିମ୍ବା ଗରମ ନଥିଲେ—ବିଶେଷ କୌଣସି ମତବାଦର ପୃଷ୍ଠପୋଷକ ନଥିଲେ । ମନକୁ ମୁକ୍ତ ରଖି ସର୍ବଦା ସତ୍ୟକୁ ହିଁ ଦେଖୁଥିଲେ—ଯାହା ମଧ୍ୟରେ ଥିଲା ସର୍ବୋଦୟ ପରିକଳ୍ପନା ।

ପାବନା ପ୍ରାଦେଶିକ ସମ୍ମିଳନୀ (୧୯୦୮ ଫେବୃୟାରୀ) ବସିଲା । କବି ତାଙ୍କର ଭାଷଣ ପାଠକଲେ । କେହି ସଭା ଭଙ୍ଗ କରିବାକୁ ଆଗେଇ ପାରିଲେ ନାହିଁ । 'ସ୍ୱଦେଶୀ ସମାଜ' ପ୍ରବନ୍ଧରେ ଚାରିବର୍ଷ ପୂର୍ବରୁ ଯାହା କହିଥିଲେ ତାହା ଆହୁରି ସ୍ପଷ୍ଟ ଭାବରେ ବୁଝାଇଦେଲେ । ଗ୍ରାମରେ ସମବାୟ ନୀତି ପ୍ରଚଳନ, 'ମିତ ଶ୍ରମିକ' ଯନ୍ତ୍ରର ପରିଚାଳନା, ସଂଘବଦ୍ଧ ଭାବେ ବିଭିନ୍ନ କାର୍ଯ୍ୟାନୁଷ୍ଠାନ, ବିଭିନ୍ନ କୁଟୀରଶିଳ୍ପ ପ୍ରବର୍ତ୍ତନ ପ୍ରଭୃତି ବହୁ ପନ୍ଥା ନିର୍ଦ୍ଦେଶ କଲେ । ଏହି ସମସ୍ତ କାର୍ଯ୍ୟର ଉଦ୍ଦେଶ୍ୟ ହେଉଛି ଶକ୍ତିଲାଭ । ସଂଘବଦ୍ଧ ଶକ୍ତି ଛଡ଼ା କୌଣସି ଜାତି କୌଣସି ସ୍ଥାୟୀ ମର୍ଯ୍ୟାଦା ଓ ସାଫଲ୍ୟ ଲାଭ କରିପାରିବ ନାହିଁ ବୋଲି ସେ ବୁଝାଇ ଦେଲେ ।

ଏଥର ପ୍ରାଦେଶିକ ସମ୍ମିଳନୀର ବୈଶିଷ୍ଟ୍ୟ ହେଉଛି, ରବୀନ୍ଦ୍ରନାଥ ତାଙ୍କର ଭାଷଣ ବଙ୍ଗଳାରେ ପାଠ କରିଥିଲେ । ୧୮୯୫ ଠାରୁ ୧୯୦୭ ପର୍ଯ୍ୟନ୍ତ ସମସ୍ତ ପ୍ରାଦେଶିକ ସମ୍ମିଳନୀର ସଭାପତିଗଣ ଇଂରେଜୀରେ ଭାଷଣ ଦେଇଥିଲେ । ୧୯୦୮ ସାଲରେ ରବୀନ୍ଦ୍ରନାଥଙ୍କର ଭାଷଣ ବଙ୍ଗଳାରେ ପ୍ରଦତ୍ତ ହେଲା । ଏଠାରେ ଉଲ୍ଲେଖଯୋଗ୍ୟ ଯେ ତିରିଶବର୍ଷ ପରେ କଲିକତା ବିଶ୍ୱବିଦ୍ୟାଳୟ

ସମାବର୍ତ୍ତନ ଉତ୍ସବରେ ମଧ୍ୟ କବି ବଙ୍ଗଳାରେ ଭାଷଣ ପାଠ କରିଥିଲେ ।

( ୪୮ )

ପ୍ରାଦେଶିକ ସମ୍ମିଳନୀର ଅଢ଼େଇମାସ ପରେ ଦିନେ ସକାଳେ ଖବର କାଗଜରେ ଦେଖିଲେ ଯେ, ମୁଜାଫରପୁରର ବ୍ୟାରିଷ୍ଟର କେନେଡ଼ିଙ୍କର ସ୍ତ୍ରୀ ଓ କନ୍ୟା ବୋମା ଦ୍ୱାରା ନିହତ ହୋଇଛନ୍ତି (୧୯୦୮ ଏପ୍ରିଲ୩୦) । ହତ୍ୟା କାରୀ ଥିଲେ ଦୁଇଜଣ ବାଳକ, ଖୁଦି-ରାମ୍‌ବସୁ ଓ ପ୍ରଫୁଲ୍ଲଚନ୍ଦ୍ର ଚାକୀ । ଚାକୀ ପୋଲିସ ହାତରେ ଧରା ପଡ଼ିବା ପୂର୍ବରୁ ଆତ୍ମହତ୍ୟା କରିଥିଲେ । ଖୁଦିରାମ ଧରାପଡ଼ିଲେ । ଜଣାଗଲା ଯେ ସେମାନେ କଲିକତାର ପ୍ରେସିଡେନ୍‌ସି ମାଜିଷ୍ଟ୍ରେଟ କିଂସ୍‌ଫୋର୍ଡ ସାହେବଙ୍କୁ ହତ୍ୟା କରିବାକୁ ଯାଇ ଭୁଲବଶତଃ କେନେଡ଼ିଙ୍କର ଘୋଡ଼ାଗାଡ଼ିକୁ ବୋମା ଫିଙ୍ଗିଥିଲେ । ଖୁଦିରାମ ଓ ପ୍ରଫୁଲ୍ଲ ବଙ୍ଗଳାର ବିପ୍ଳବୀ ଦଳର ଲୋକ—ସେହି ଦଳ କିଛିଦିନ ପରେ ଧରାପଡ଼ିଲା ମାଣିକତଲାର ଏକ ପୋଡ଼ା ଘରେ । ସେଠାରୁ ବୋମା ତିଆରିର ସମସ୍ତ ସରଞ୍ଜାମ୍, ରିଭଲଭର, ଛୋରା ପ୍ରଭୃତି ମିଳିଥିଲା ।

ସମସ୍ତ ଦେଶ ସ୍ତମ୍ଭିତ । ମନେ ମନେ ସମସ୍ତେ ପ୍ରଶଂସା କରୁଛନ୍ତି, କିନ୍ତୁ ମୁହଁ ଖୋଲି କହିବାର ସାହସ ନାହିଁ । ଜଣାଗଲା ଯେ ବଙ୍ଗଳାର ରାଜନୀତି ସମ୍ପୂର୍ଣ୍ଣ ନୂତନଧାରା ନେଇଛି । ରାଜନୀତିର ଦଳଗତ ମତ ନେଇ ଯେତେବେଳେ କଂଗ୍ରେସୀ ସଭାରେ ଯୋତା ପିଟାପିଟି ଓ ନେତାଗଣ ପରସ୍ପର ମଧ୍ୟରେ ଗାଳିଗୁଲଜ କରିବାରେ ବ୍ୟସ୍ତ, ରବୀନ୍ଦ୍ରନାଥ ପଲ୍ଲୀ ଅଞ୍ଚଳରେ ପଲ୍ଲୀ ସମିତି ଗଠନରେ ବ୍ୟସ୍ତ ଥିଲେ । ସେହି ସମୟରେ ଅଗ୍ନିମନ୍ତ୍ର ଦୀକ୍ଷିତ ଦୁଃସାହସିକ ଯୁବକଗଣ ଇଂରେଜମାନଙ୍କୁ ତଡ଼ିବା ପାଇଁ ପ୍ରାଣ ପଣ କରିଥାନ୍ତି । ସେମାନେ ବୁଝିଥିଲେ ଯେ ପତ୍ରିକାରେ ପ୍ରବନ୍ଧ ଲେଖି ଓ ସଭାରେ

ବକ୍ତୃତା ଦେଇ କିଛି ହୋଇପାରିବ ନାହିଁ । ତେଣୁ ବିପ୍ଳବୀମାନେ ଚରମପନ୍ଥା ଅବଲମ୍ବନ କଲେ । ସେମାନେ ରବୀନ୍ଦ୍ରନାଥଙ୍କର କବିତା ଆବୃତ୍ତି କରି କହିଲେ—'ଜୀବନ ମୃତ୍ୟୁ, ପାଦର ଭୃତ୍ୟ, ଚିତ୍ତ ଭାବନା ହୀନ' ।

ଫାଶୀ ହୁକୁମ ଶୁଣି ଉଲ୍ଲାସକର ଅଦାଲତରେ ଗାଇଲେ—'ସାର୍ଥକ ଜନମ ମୋହର, ଜନ୍ମିଛି ଏହି ଦେଶେ' ।

ବୋମା ବିସ୍ଫୋରଣ ସମ୍ପର୍କରେ ଆଲୋଚନା କରିବା ଫଳରେ ଲୋକମାନ୍ୟ ତିଲକଙ୍କୁ ଛ'ବର୍ଷ କାରାଦଣ୍ଡ ହେଲା । ସମସ୍ତ ଦେଶ ଅବାକ୍, ସ୍ତବ୍ଧ । ରବୀନ୍ଦ୍ରନାଥ ସ୍ଥିର ରହିପାରିଲେ ନାହିଁ । କଲିକତା ଚାଲିଆସିଲେ । ବାଡ଼ନ୍ ଷ୍ଟ୍ରୀଟ ଚୈତନ୍ୟ ଲାଇବ୍ରେରୀ ହଲରେ ସଭା ଆହୂତ ହେଲା—କବିଙ୍କର ବକ୍ତୃତାର ବିଷୟ ଥିଲା 'ପଥ ଓ ପାଥେୟ' (୧୯୦୮, ମେ ୨୫) । ସଭାପତିତ୍ୱ କଲେ ହୀରେନ୍ଦ୍ରନାଥ ଦତ୍ତ । ସେତେବେଳକୁ ଆଲିପୁର ଅଦାଲତରେ ବୋମା ବିସ୍ଫୋରଣ ମକଦ୍ଦମା ଚାଲୁଥାଏ । ଅରବିନ୍ଦ, ବାରୀନ୍ଦ୍ର ଘୋଷ, ହେମ କାନୁନ୍‌ଗୋ, କାନାଇଲାଲ ଦତ୍ତ, ଉପେନ୍ଦ୍ରନାଥ ବନ୍ଦୋପାଧ୍ୟାୟ, ଉଲ୍ଲାସକର ଦତ୍ତ ପ୍ରଭୃତି ଅଠତିରିଶ ଜଣ ବିଚାରାଧୀନ ଭାବେ ପ୍ରେସିଡେନ୍‌ସି ଜେଲରେ ଅଟକ ଥାନ୍ତି ।

ରବୀନ୍ଦ୍ରନାଥ ବିପ୍ଳବୀ ଯୁବକର୍ମୀମାନଙ୍କ ପ୍ରତି କୌଣସି କଟୁ ବାକ୍ୟ ପ୍ରୟୋଗ କଲେନାହିଁ । ସେ କହିଲେ ଯେ ଜାତି ହିସାବରେ ବଙ୍ଗାଳୀ ବହୁକାଳ ଧରି ଭୀରୁ ଅପବାଦ ପାଇଆସିଛି; ବର୍ତ୍ତମାନ ଘଟଣାର ନ୍ୟାୟ୍ୟ ଅନ୍ୟାୟ୍ୟ ଇଷ୍ଟ ଅନିଷ୍ଟ ବିଚାର ଅତିକ୍ରମ କରି କଳଙ୍କ କ୍ଷାଳନ ପାଇଁ ବଙ୍ଗାଳୀର ମନରେ ଗୋଟିଏ ଆନନ୍ଦ ନ ଜନ୍ମି ରହିପାରେ ନାହିଁ । କିନ୍ତୁ ସେ ହତ୍ୟାକାଣ୍ଡ ବା ଗୁପ୍ତହତ୍ୟା ନୀତି ସମର୍ଥନ କରି ନଥିଲେ । ସେ କହିଥିଲେ ଯେ ମନୁଷ୍ୟ ତପସ୍ୟା ଦ୍ୱାରା ମଙ୍ଗଳ ସୃଷ୍ଟିକରେ, କ୍ରୋଧର ଆବେଗ ଜନିତ ଉତ୍ତେଜନା ଯେ ଶକ୍ତି ନୁହେଁ, ତାହା ଭୁଲିଯାଏ ।

କବି କହିଥିଲେ, 'ଇଂରେଜ ଶାସନ ନାମକ ବାହାରର ବନ୍ଧନକୁ ସ୍ୱୀକାର କରି ଅଥଚ ତାହା ଉପରେ ଜଡ଼ ଭାବରେ ନିର୍ଭର ନ କରି, ସେବାଦ୍ୱାରା, ପ୍ରୀତିଦ୍ୱାରା; ସମସ୍ତ କୃତ୍ରିମ

ବ୍ୟବଧାନ ନିରସ୍ତ କରିବା ଦ୍ୱାରା, ବିଚ୍ଛିନ୍ନ ଭାରତବର୍ଷକୁ ଏକ କରିହେବ । ଏକାନ୍ତ ସଂଗଠନମୂଳକ ସହସ୍ରବିଧ ସୃଜନୀ କାର୍ଯ୍ୟରେ ଭୌଗୋଳିକ ଭୂଖଣ୍ଡକୁ ସ୍ୱଦେଶରୂପେ ଗଢ଼ିବାକୁ ହେବ ଓ ବିଯୁକ୍ତ ଜନସମାଜକୁ ସ୍ୱଜାତି ରୂପେ ସ୍ୱଚେଷ୍ଟାରେ ଉଦ୍‌ବୁଦ୍ଧ କରିବାକୁ ହେବ ।' କବିଙ୍କର ଉକ୍ତି ଆଜି ପରୀକ୍ଷଣରେ ସୁଦ୍ଧା ସତ୍ୟ ନୁହେ କି ? ସେ ଭାରତକୁ ଅଖଣ୍ଡ ସତ୍ତା ରୂପେ ସ୍ୱୀକାର କରିବାକୁ ସମସ୍ତଙ୍କୁ ଆହ୍ୱାନ କରିଥିଲେ । ସେହି ଅଖଣ୍ଡ ସତ୍ତା ହେଉଛି—ଆମେ ଭାରତୀୟ ।

ମହାତ୍ମା ଗାନ୍ଧୀଙ୍କଦ୍ୱାରା ଯେଉଁ ଅହିଂସାର ବାଣୀ ପ୍ରଚାରିତ ହୋଇଥିବାର ଦେଖି ତାହା ଏହି ପ୍ରବନ୍ଧରେ ରବୀନ୍ଦ୍ରନାଥ ସ୍ପଷ୍ଟଭାବରେ ଉଲ୍ଲେଖ କରିଥିଲେ । ସେ କହିଥିଲେ ଯେ ହିଂସାଦ୍ୱାରା ବୃହତ୍ କର୍ମ ସାଧନ ହୁଏ ନାହିଁ—ସମସ୍ତଙ୍କୁ ଦେଇ ସମସ୍ତଙ୍କୁ ସହ୍ୟ କରି ଜାତିର ସର୍ବାଙ୍ଗୀନ ମଙ୍ଗଳ ପଥରେ ଚାଲିବା ହିଁ ହେଉଛି ରାଜନୀତିର ଆଦର୍ଶ । ଜବରଦସ୍ତି କୌଣସି ମଙ୍ଗଳକାର୍ଯ୍ୟ ବା ଉପକାର କରିବା ନୀତିରେ ସେ ବିଶ୍ୱାସ କରୁ ନଥିଲେ ।

ଦେଶ ହିତ ଓ ଦେଶ ସେବାର ଅର୍ଥ ଯେ ପଲ୍ଲୀ ସମାଜର କାର୍ଯ୍ୟ, ସେ କଥା କବି ଅଳ୍ପକାଳ ପୂର୍ବରୁ କହି ଆସୁଥିଲେ । ନିଜର ଜମିଦାରୀରେ ସେ କାର୍ଯ୍ୟ ମଧ୍ୟ ଆରମ୍ଭ କରିଥିଲେ । କିନ୍ତୁ ଦେଖାଗଲା ଯେ ଦେଶର ପୋଲିସ ତାଙ୍କର ପ୍ରତିବାଦୀ । ସାଧାରଣ-ଲୋକେ ପୋଲିସଙ୍କର ଘନ ଘନ ଯିବା ଆସିବା ଫଳରେ ଆତଙ୍କିତ ହୋଇ ଉଠିଲେ । ଯୁବକମାନଙ୍କ ପକ୍ଷରେ କୌଣସି କାର୍ଯ୍ୟ କରିବା ସମ୍ଭବପର ହେଲ ନାହିଁ । ଲୋକମାନେ ଭାବିଲେ—ସୁଖଠାରୁ ସ୍ୱସ୍ତି ଭଲ । ପୋଲିସ ପ୍ରତିଦିନ ଆସି ଖୋଜ୍‌ନେଲେ – କିଏ ଗ୍ରାମକୁ ଆସିଥିଲେ, କାହାଘରେ ବସିଥିଲେ ପ୍ରଭୃତି । ଏଥିରେ ଗ୍ରାମ ଲୋକମାନେ ଭୟ ପାଇଗଲେ । କବିଙ୍କର ଗ୍ରାମସେବା ଉଦ୍ୟୋଗ ବ୍ୟର୍ଥହେଲା ।

(୫୯)

ରବୀନ୍ଦ୍ରନାଥଙ୍କର ଅନ୍ତର୍ଜୀବନରେ ବିରାଟ ପରିବର୍ତ୍ତନ ଆସିଲା । ଅନ୍ତରରେ ଗଭୀର ଆଧ୍ୟାତ୍ମିକ ଭାବ ଦେଖାଦେଲା । ଅନ୍ତରରେ

ସମସ୍ତ ପୃଥିବୀକୁ ଦେଖିବାର ଓ ବୁଝିବାର ଚେଷ୍ଟା ଚାଲିଲା । ଏହି ସମୟରେ ସାଧାରଣ ବ୍ରାହ୍ମସମାଜ ଆହ୍ୱାନରେ କଲିକତା ମନ୍ଦିରରେ ଏକ ଭାଷଣ ପ୍ରସଙ୍ଗରେ ପ୍ରଶ୍ନ କରିଥିଲେ—'ଭାରତର ଇତିହାସ କାହାର ଇତିହାସ' ?

ବଙ୍ଗଦର୍ଶନର ସୂଚନାକାଳରେ କବି ହିନ୍ଦୁତ୍ୱ ବା ହିନ୍ଦୁଜାତୀୟତାବାଦର ସ୍ୱପ୍ନ ଦେଖିଥିଲେ । କିନ୍ତୁ ତାହାମଧ୍ୟରେ ଯେ ଭାରତୀୟ ଆଦର୍ଶର ସମ୍ପୂର୍ଣ୍ଣତା ନାହିଁ—ତାହା ଗତ କେତେ-ବର୍ଷର ରାଜନୈତିକ ସମସ୍ୟାର ଜଟିଳ ଘାତ ପ୍ରତିଘାତରୁ ଉପଲବ୍ଧି କରିଥିଲେ । ତେଣୁ ସଭାରେ କହିଲେ ଯେ, ଭାରତର ଇତିହାସ କାହାରର ସ୍ୱତନ୍ତ୍ର ଇତିହାସ ନୁହେଁ; ଯେଉଁ ଆର୍ଯ୍ୟମାନେ ବୁଦ୍ଧି ଓ ଶକ୍ତି ପ୍ରଭାବରେ ଏକଦା ଏ ଦେଶ ଜୟ କରିଥିଲେ, ଯେଉଁ ଆର୍ଯ୍ୟମାନେ ଅନାର୍ଯ୍ୟମାନଙ୍କ ସହିତ ମିଳିମିଶି ଏକ ନୂତନ ସମାଜ ଗଢ଼ିଥିଲେ ଏବଂ ଯେଉଁ ମୁସଲମାନମାନେ ହିନ୍ଦୁଙ୍କର ଆତ୍ମଘାତୀ ବିରୋଧର ଅବକାଶ ଫଳରେ ଏ ଦେଶରେ ପ୍ରବେଶ କରିଥିଲେ, ଏ ଦେଶରେ ବଂଶ ପରମ୍ପରାକ୍ରମେ ଜନ୍ମ ମୃତ୍ୟୁ ଫଳରେ ଏ ଦେଶର ମାଟିକୁ ନିଜର କରି ପାରିଛନ୍ତି—ଭାରତର ଇତିହାସରେ ସେ ସମସ୍ତଙ୍କର ସ୍ଥାନ ଅଛି । ଇଂରେଜମାନେ ମଧ୍ୟ ଏଥିରେ ଏକ ଅପରିହାର୍ଯ୍ୟ ଅଂଶ ଗ୍ରହଣ କରିଛନ୍ତି । ତେଣୁ କବି ଘୋଷଣା କରିଥିଲେ ଯେ ପଶ୍ଚିମ ସହିତ ପ୍ରାଚ୍ୟକୁ ମିଶିବାକୁ ପଡ଼ିବ ଓ ନିଜର ଶକ୍ତିଦ୍ୱାରା ପଶ୍ଚିମକୁ ଆପଣାର କରିବାକୁ ହେବ । ଆଜି ଅର୍ଦ୍ଧଶତାବ୍ଦୀ ପରେ ଭାରତ ଯେଉଁ ଶକ୍ତି ବଳରେ ପଶ୍ଚିମକୁ ଓ ସମଗ୍ର ପୃଥିବୀକୁ ଆହରଣ କରି ନେଇପାରୁଛି; କବିଙ୍କ ଭାଷାରେ କହିଲେ 'ତାହା ହୀନତ୍ୱ ଦ୍ୱାରା ନୁହେଁ, ମହତ୍ତ୍ୱ ଦ୍ୱାରା; ତୀବ୍ର ଭକ୍ତି ଦ୍ୱାରା ନୁହେଁ, ଦୁଃସାହସିକ କାର୍ଯ୍ୟଦ୍ୱାରା ନୁହେଁ—ତ୍ୟାଗ ଦ୍ୱାରା'—ଶ୍ରେୟକୁ ବରଣ କରି । ରବୀନ୍ଦ୍ରନାଥ ଭବିଷ୍ୟତ ରାଷ୍ଟ୍ରର ଯେଉଁ ସ୍ୱପ୍ନ ଦେଖିଥିଲେ ତାହାର ପ୍ରତିଷ୍ଠା ଅହିଂସା, ସତ୍ୟ ଓ ଶ୍ରେୟ ଉପରେ ପ୍ରତିଷ୍ଠିତ । ଆଜି, ଭାରତକୁ ଏକ ମର୍ମଯୋଗୀ ମହାତ୍ମା ଓ ଏକ ପ୍ରେମଯୋଗୀ କବିର ସ୍ୱପ୍ନକୁ ହିଁ ରୂପାୟିତ କରିବାକୁ ହେବ ।

ଏହି ମନୋଭାବ ଫଳରେ ଲେଖିଲେ 'ପ୍ରାୟଶ୍ଚିତ' ନାଟକ ଓ ସୃଷ୍ଟିକଲେ ଧନଞ୍ଜୟ ବୈରାଗୀ – ଅହିଂସା ସତ୍ୟାଗ୍ରହର ପ୍ରତିମୂର୍ତ୍ତି । ତାହାର ମୁହଁରେ କହିଲେ—ରାଜ୍ୟଟା କେବଳ ରାଜାର ନୁହେଁ, ଅନେକ ପ୍ରଜାର । ଗଣତନ୍ତ୍ରର ଚରମ ଆଦର୍ଶ ହେଉଛି ଏଇଆ—ପ୍ରଜାର ସାର୍ବଭୌମ ଅଧିକାର । ଏହି ତତ୍ତ୍ୱ ଘୋଷିତ ହେଲା ନାଟକର ମାଧ୍ୟମରେ । କିନ୍ତୁ ନାଟକଟି ଜନପ୍ରିୟ ହୋଇ ପାରିଲା ନାହିଁ । କାରଣ ପ୍ରତାପାଦିତ୍ୟଙ୍କୁ କବି ଅତ୍ୟାଚାରୀ ରାଜାରୂପେ ଚିତ୍ରଣ କରିଥିଲେ । ସେତେବେଳେ ବଙ୍ଗଳାର ଆଦର୍ଶ ବୀର ଖୋଜିବାର ଚେଷ୍ଟା ଚାଲିଥାଏ । ମରହଟ୍ଟାମାନଙ୍କର ଶିବାଜୀ—ବଙ୍ଗାଳୀ ବୀରର ଆଦର୍ଶ କିଏ ? ପ୍ରତାପାଦିତ୍ୟ, ସୀତାରାମ, କେଦାର ରାୟ, ସିରା-ଜୌଦ୍ଦଲ, ମୀର କାସୀମ ପ୍ରଭୃତି ସମସ୍ତଙ୍କର ଚରିତ୍ରରେ ମହାନ୍ ଭାବର ସନ୍ଧାନ ଚାଲିଥାଏ । ରବୀନ୍ଦ୍ରନାଥ ପ୍ରତାପାଦିତ୍ୟଙ୍କୁ କୌଣସି ଅଳୀକ ଆଦର୍ଶବାଦରେ ଗଢ଼ି ନଥିଲେ—ତେଣୁ ନାଟକଟି କୌଣସି ପେଷାଦାର ରଙ୍ଗମଞ୍ଚରେ ଅଭିନୀତ ହୋଇ ପାରିଲା ନାହିଁ । କ୍ଷୀରୋଦପ୍ରସାଦଙ୍କର ବାସ୍ତବତାହୀନ ପ୍ରତାପାଦିତ୍ୟ ହିଁ ବଙ୍ଗାଳୀଙ୍କୁ ମୁଗ୍ଧ କରିଥିଲା ।

'ପ୍ରାୟଶ୍ଚିତ' ନାଟକ ଲେଖିବା ସମୟରେ ଅନେକଗୁଡ଼ିଏ ସଙ୍ଗୀତ ଲେଖିଥିଲେ - ତାହାମଧ୍ୟରୁ କେତେଗୁଡ଼ିକରେ 'ଗୀତା-ଞ୍ଜଳୀ'ର କବିତାମାନଙ୍କର ପ୍ରତିଧ୍ୱନି ଶୁଣାଯାଏ । ଜୀବନ ଏକ ଗଭୀର ରସ ଆସ୍ୱାଦନରେ ପ୍ରବୃତ୍ତ—ସଙ୍ଗୀତଗୁଡ଼ିକ ତାହାର ଆଗମନୀ ସଙ୍କେତ ।

'ପ୍ରାୟଶ୍ଚିତ' ନାଟକର ଧନଞ୍ଜୟ ବୈରାଗୀ କବିଙ୍କର ଏକ ଅପୂର୍ବ ସୃଷ୍ଟି । ସେ ମହାତ୍ମାଗାନ୍ଧୀଙ୍କର ଅଗ୍ରଦୂତ ? କବି କଳ୍ପନାର ଲଙ୍ଗଳା ଫକୀର ଭାରତ ସ୍ୱାଧୀନତା ଆଣିବାର ପ୍ରତୀକ ?

ଶାନ୍ତିନିକେତନ ବ୍ରହ୍ମଚର୍ଯ୍ୟାଶ୍ରମରେ ଶତାଧିକ ଛାତ୍ର । ଅଧ୍ୟାପକ ବିଧୁଶେଖର ଓ ନବାଗତ ତରୁଣ ଅଧ୍ୟାପକ କ୍ଷିତିମୋହନ ସେନ । ଉଭୟଙ୍କର ଚେଷ୍ଟାରେ ବର୍ଷା କାଳର ବର୍ଷାମଙ୍ଗଳ ଉତ୍ସବ ଅନୁଷ୍ଠିତ ହେଲା । ତା ପୂର୍ବରୁ ଶମୀନ୍ଦ୍ରନାଥ ଓ ଅନ୍ୟ ଛାତ୍ରମାନେ ଋତୁ-ଉତ୍ସବ କରିଥିଲେ । ରବୀନ୍ଦ୍ରନାଥ କେତୋଟି ଶରତ ଋତୁର ସଙ୍ଗୀତ

ଲେଖିଲେ । ଛାତ୍ରମାନଙ୍କର ଅଭିନୟ ଉପଯୋଗୀ 'ଶାରଦୋତ୍ସବ' ନାଟକ ଲେଖିଲେ ଏବଂ ଶରତ ସଙ୍ଗୀତ ଗୁଡ଼ିକ ନାଟକ ମଧ୍ୟରେ ସଂଯୋଗ କରି ଦେଲେ । 'ଶାରଦୋତ୍ସବ' ରଚନା ପରେ କବି ପ୍ରାୟ ପ୍ରତି ଋତୁ ଉପଯୋଗୀ ନାଟକ ଓ ସଙ୍ଗୀତ ଲେଖିଲେ—ସେହି ଋତୁ-ରଚନା ପର୍ଯ୍ୟାୟରେ କବିଙ୍କର ପ୍ରଥମ ନୈବେଦ୍ୟ ଏହି 'ଶାରଦୋତ୍ସବ' ନାଟକ । କବି ଲେଖିଛନ୍ତି, 'ଶାରଦୋତ୍ସବ ଠାରୁ ଆରମ୍ଭ କରି ଫାଲ୍‌ଗୁନୀ (୧୩ ୫—୧୩୨୨) ପର୍ଯ୍ୟନ୍ତ ଯେତେ ନାଟକ ଲେଖିଛି; ଯେତେବେଳେ ବିଶେଷ ଭାବରେ ମନଯୋଗ ଦେଇ ଦେଖେ, ପ୍ରତ୍ୟେକ ନାଟକର ଗାଥା ଏକ ମନେହୁଏ ।' ଶରତ କାଳରେ ରାଜା ବାହାରିଛନ୍ତି । ବସନ୍ତୋତ୍ସବରେ ରାଜା ବାହାରିଛନ୍ତି—ଫାଲ୍‌ଗୁନୀରେ ନବ ଯୌବନ-ଦଳ ବାହାରିଛନ୍ତି । ବର୍ଷାର ଅଚଳାୟତନ ମଧ୍ୟରେ ପଞ୍ଚକର ମନ ବ୍ୟାକୁଳ ହୋଇଛି ବାହାର ଜଗତକୁ ଯିବା ପାଇଁ । ଏପରିକି 'ଡାକଘର' ନାଟକର ଅମଲର ମନ ମଧ୍ୟ ବାହାର ଜଗତ ପାଇଁ ବ୍ୟାକୁଳ । ଷଡ଼ଋତୁର ସମାବେଶ ହୋଇଛି 'ନଟରାଜ-ଋତୁରଙ୍ଗଶାଳା' ଉତ୍ସବରେ—ତାହା ଅନେକପରେ ଲିଖିତ । ସମସ୍ତ ଲେଖା ମଧ୍ୟରେ କବିଙ୍କର ବାଣୀ ହେଉଛି 'ଚରୈବେତି'—ନିଜର ଆବେଷ୍ଟନୀ ତୁଟାଇ ବାହାରକୁ ଆସିବାର ଅଦମ୍ୟ ଇଚ୍ଛା । କିନ୍ତୁ ତାହା କେବଳ ଶୂନ୍ୟତା ମଧ୍ୟରେ ଗତିଶୀଳ ନୁହେଁ—ଅତୀତ ଓ ବର୍ତ୍ତମାନକୁ ମିଳାଇ ସ୍ୱଚ୍ଛନ୍ଦ ଗତି ନିଖିଳ ସୃଷ୍ଟି ସଙ୍ଗରେ ନିବିଡ଼ତା ଲଭିଛି ଐକ୍ୟତାନରେ । ଏଠାରେ ଗୋଟିଏ କଥା କହି ରଖିବା ଉଚିତ ଯେ ପ୍ରଥମ ଅବସ୍ଥାର ନାଟକ ଗୁଡ଼ିକ ଶାନ୍ତିନିକେତନ ବ୍ରହ୍ମଚର୍ଯ୍ୟାଶ୍ରମର ଛାତ୍ରମାନଙ୍କୁ ଆଖି ଆଗରେ ରଖି ଲେଖା ହୋଇଥିବାରୁ ନାରୀ ଚରିତ୍ର ନାହିଁ । ପରେ ଯେତେବେଳେ ସହଶିକ୍ଷା ପ୍ରବର୍ତ୍ତିତ ହେଲା, ସେତେବେଳେ ନାଟକରେ ନାରୀ ଚରିତ୍ର ସନ୍ନିବେଶିତ ହୋଇଛି ।

(୬୧)

ପୂଜାବକାଶ ସମୟରେ ଶିଲାଇଦହ ଯାଇଥିଲେ । ସେଠାରେ କେତେଜଣ ଆତ୍ମୀୟ ବନ୍ଧୁଙ୍କର ମୃତ୍ୟୁ ସମ୍ବାଦ ପାଇଲେ—ମନରେ

ନାନା ପ୍ରଶ୍ନ । ନିଜର ଶରୀର ବି ଅସୁସ୍ଥ ଓ ଅର୍ଶଯୋଗୁ କଷ୍ଟ ପାଉଥାନ୍ତି । ଛୁଟି ପରେ ଆଶ୍ରମକୁ ଫେରି ଆସିଲେ । ମନ ମଧ୍ୟରେ ଅଧ୍ୟାତ୍ମିକ ଜୀବନ ଲାଭପାଇଁ ତୀବ୍ର ବେଦନା । 'ଶାନ୍ତି ନିକେତନ' ଘରେ ଥାନ୍ତି । କାରଣ 'ନୂତନ ଘର' ଓ 'ଦେହଲି' ଛାତ୍ରୀମାନଙ୍କପାଇଁ ଛାଡ଼ି ଦେଇଥାନ୍ତି । ପ୍ରତିଦିନ ସକାଳେ ଅନ୍ଧାରୁଆ ବେଳେ ମନ୍ଦିରକୁ ଯାନ୍ତି । ଦୁଇ ଚାରିଜଣ ଶିକ୍ଷକ ଓ ଛାତ୍ର ମଧ୍ୟ ଯାଇ ସେଠାରେ ବସନ୍ତି । ସେମାନଙ୍କ ଅନୁରୋଧରେ ଧ୍ୟାନପରେ କିଛି ଉପଦେଶ ଦିଅନ୍ତି । ସେହି ଗୁଡ଼ିକ ଘରକୁ ଫେରି ଲେଖି ପକାନ୍ତି — ଏହି ହେଉଛି 'ଶାନ୍ତିନିକେତନ' ଉପଦେଶ ମାଳା । ସେହି ଭାଷଣ ଗୁଡ଼ିକ ସତର ଖଣ୍ଡରେ ପ୍ରକାଶିତ; ତାହାର ପ୍ରଥମ ଆଠଖଣ୍ଡ ୧୩୧୬ ସାଲ ମାର୍ଗଶୀର ଠାରୁ ବୈଶାଖ ମାସ ପର୍ଯ୍ୟନ୍ତ ପ୍ରତିଦିନର କଥିତ ବାଣୀର ସମାହାର ।

'ଗୀତାଞ୍ଜଳି'ର ସଂଗୀତ ମଧ୍ୟ ପ୍ରାୟ ଗୋଟିଏ ଦୁଇଟି କରି ଏହି ସମୟରେ ଲେଖା । ସଂଗୀତ ରଚନା ସମୟରେ ସୁରର ଗୁଞ୍ଜନ ମଧ୍ୟରେ ତାଙ୍କର ଉପାସନା ହୁଏ; ଧ୍ୟାନ ଓ ଗାନରୁ ଏକ ଅନିର୍ବଚନୀୟ ଭାବରସ ଉପଭୋଗ କରନ୍ତି ।

ଆଧ୍ୟାତ୍ମିକ ପରିବେଶ ମଧ୍ୟରେ ମନୁଷ୍ୟ ସର୍ବଦା ବାସ କରି ପାରେ ନାହିଁ । ଧ୍ୟାନ କରନ୍ତୁ ବା ସଂଗୀତ ଚର୍ଚ୍ଚା କରନ୍ତୁ, 'ଗୋରା' ଉପନ୍ୟାସ ଧାରାବାହିକ ଭାବରେ ଲେଖୁଥିଲେ । ଜମିଦାରୀର ତଦାରଖ୍ ବି କରୁଥାନ୍ତି । ଜୀବନ ବୀଣାର ସବୁମୋଟା ତାର ଗୁଡ଼ିକ ସୁସଜ୍ଜିତ ।

ଏବାଡ଼ କମେ ଶାନ୍ତିନିକେତନରେ ପାଞ୍ଚମାସ ରହିଲେ । ପ୍ରାୟ ପ୍ରତିଦିନ 'ଉପଦେଶ' ଦେଉଥାନ୍ତି । କିନ୍ତୁ କବିଙ୍କ ପକ୍ଷରେ ଏକ ପ୍ରକାର ଭାବନା ଓ ସ୍ଥାନ ନେଇ ଦୀର୍ଘକାଳ ବାସ କରିବା ପୀଡ଼ା-ଦାୟକ । ଧର୍ମ ଉପଦେଶ ଦାନ ଯେ ଅଭ୍ୟାସରେ ପରିଣତ ହୋଇଯିବ ଓ ତାହାର ଫଳ ଯେ ଶ୍ରୋତାଙ୍କ ନିକଟରେ କଲ୍ୟାଣକର ହେବନି, ତାହା କବି ବୁଝିଥିଲେ । ତେଣୁ ଏହି ପରିବେଶରୁ ମୁକ୍ତହେବା ପାଇଁ ତାଙ୍କର ମନ ଚଞ୍ଚଳ ହେଲା । ଏପରି ସମୟରେ କାଲ୍‌କାରୁ କବିଙ୍କୁ ନିମନ୍ତ୍ରଣ ଆସିଲା । କନିଷ୍ଠା କନ୍ୟା ମୀରାର ଦେଢ଼ଶୁର ଉପେନ୍ଦ୍ରନାଥ

କାଲ୍‌କାଷ୍ଟ ଟେଲ୍‌ନାର କମ୍ପାନୀର ଉଚ୍ଚପଦସ୍ଥ କର୍ମଚାରୀ । କବି କାଲ୍‌କାରେ ମଧ୍ୟ ବେଶୀଦିନ ରହି ପାରିଲେ ନାହିଁ । କାରଣ ସେ ସ୍ଥାନ କବିଙ୍କ ପକ୍ଷରେ ଅନୁକୂଳ ନଥିଲା । ସେଠାରେ ଅବସ୍ଥାନ ସମୟରେ 'ପ୍ରାୟଶ୍ଚିତ' ନାଟକର ଭୂମିକା ଲେଖିଥିଲେ ।

ବର୍ଷା ଆରମ୍ଭ ହେବା ସଂଗେ ସଂଗେ ସଦ୍ଧାଚର ଆସିଲେ । କିନ୍ତୁ ସେଠାରେ ମଧ୍ୟ ବେଶୀ ଦିନ ରହି ପାରିଲେ ନାହିଁ । ଖବର ପାଇଲେ ଯେ ରଥୀନ୍ଦ୍ରନାଥ ଆମେରିକାରୁ ଫେରୁଛନ୍ତି ।

ରଥୀନ୍ଦ୍ରନାଥ ୧୯୦୯ ସେପ୍‌ଟେମ୍ବର ମାସରେ ଫେରିଲେ । ବିଦେଶରେ ସାଢ଼େ ତିନିବର୍ଷ ରହିଥିଲେ । ମାର୍କିନ ଯୁକ୍ତରାଷ୍ଟ୍ରର ଇଲିନୟ ବିଶ୍ୱବିଦ୍ୟାଳୟରୁ ତିନି ବର୍ଷିଆ ଗ୍ରାଜୁଏଟ କୋର୍ସ ଶେଷ କରି ବ୍ୟାଚେଲର୍ ଅଫ ସାଏନ୍‌ସ (B.S) ଡିଗ୍ରୀ ନେଇ ଫେରିଲେ । ସେତେବେଳକୁ ତାଙ୍କର ବୟସ ଏକୋଇଶ ବର୍ଷ ।

ଆଶ୍ୱିନ ମାସରେ ପୁଅକୁ ନେଇ କବି ଜମିଦାରୀକୁ ଗଲେ । ତାଙ୍କର ଇଚ୍ଛା ରଥୀନ୍ଦ୍ର ତାଙ୍କର କର୍ମରଥ ସେଠାରେ ଚଳାଇବେ । ନୌକା ଗୃହକୁଞ୍ଜ, ବିଲଖାଲ ଜଳପୂର୍ଣ୍ଣ, ମନରେ ସଂଗୀତର ଆବେଶ—ବେଶ ଏକ ଆତ୍ମତୃପ୍ତି ଭାବ । ଏ ସମସ୍ତ କବିଙ୍କ ଆଖିରେ ପରିପ୍ରେକ୍ଷିତ । ରାସ ପୂର୍ଣ୍ଣିମା ଦିନ ଏକ ପତ୍ରରେ ଲେଖିଲେ ଯେ ରାଖୀବନ୍ଧନକୁ ବର୍ତ୍ତମାନ ସମୟରେ କେବଳ ଏକ ସାମୟିକ ଘଟଣା ସହିତ ଆବଦ୍ଧ ରଖିଲେ ଚଳିବ ନାହିଁ । 'ଏହି ଭେଦ ଅତିକ୍ରମ କରି ଏହି ଦିନକୁ ସମସ୍ତ ଭାରତର ସୁପ୍ରଭାତ ରୂପେ ପରିଣତ କରିବାକୁ ହେବ । ତା ହେଲେ ହିଁ ଏହି ଦିନଟି ହେବ ଭାରତର 'ବଡ଼ଦିନ' ଓ ଏହି ବଡ଼ଦିନରେ ଖ୍ରୀଷ୍ଟ ମହମ୍ମଦଙ୍କର ମିଳନ ହେବ ।'

କେବଳ ବଙ୍ଗଳା କଥା ନୁହେଁ, ହିନ୍ଦୁତ୍ୱ କଥା ନୁହେ — କବିଙ୍କ ମନରେ ସର୍ବଧର୍ମ ସମନ୍ୱୟ ଓ ନିଖିଳ ଭାରତୀୟ ଚିତ୍ତ ଉଦ୍‌ବୋଧନ ଓ ସଂଯୋଗ କଥା ଜାଗ୍ରତ । କବିଙ୍କର ଏପରି କହିବାର ବିଶେଷ କାରଣ ଥିଲା । ଏପର୍ଯ୍ୟନ୍ତ ବଙ୍ଗଳାର ସମସ୍ୟା 'ସର୍ବଭାରତୀୟ ସମସ୍ୟା ହୋଇନି—ବଙ୍ଗାଳୀଙ୍କର ବେଦନା ସକଳ ଭାରତୀୟଙ୍କର

ଚତ୍ତ୍ୱ ସ୍ପର୍ଶ କରିନାହିଁ । ସେଥିପାଇଁ ଏହି ନୂତନ ପ୍ରସ୍ତାବ—ଅତେ ଭାରତୀୟ ।

ଶିଲାଇଦହରୁ ଫେରି କଲିକତାର ଓଭରଟୁନ୍ ହଲରେ 'ତପୋବନ' ସମ୍ପର୍କରେ ଏକ ପ୍ରବନ୍ଧ ପାଠ କଲେ (୧୯୦୯ ଡିସେମ୍ବର୨)। କିଛିଦିନ ପରେ ପୌଷମାସରେ ପଠିତ ଦୁଇଟି ଭାଷଣ ଓ ମାଘୋତ୍ସବର 'ବିଶ୍ୱବୋଧ' ନାମକ ଭାଷଣରୁ କବିଙ୍କ ଧର୍ମବୋଧର ନୂତନ ସୂଚନା ମିଳେ । ତାଙ୍କର ବକ୍ତବ୍ୟ ଥିଲା ଯେ ଇନ୍ଦ୍ରିୟ ଶିକ୍ଷା ବା ଜ୍ଞାନଶିକ୍ଷାରୁ ମନୁଷ୍ୟତ୍ୱ 'ବୋଧ' ଜାଗେ ନାହିଁ । ବିଶ୍ୱବ୍ରହ୍ମାଣ୍ଡ ସହିତ ଚିତ୍ତର ଯୋଗାଯୋଗ, ଆତ୍ମାର ସଂପର୍କ ଅର୍ଥାତ୍ ସଂପୂର୍ଣ୍ଣ ଯୋଗ ହେଉଛି ଶିକ୍ଷାର ମୂଳକଥା । ଏହି 'ବୋଧ' ତପସ୍ୟାର ବାଧା ହେଉଛି ରିପୁ - ପ୍ରବୃତ୍ତିର ଅସଂଯମ । ସେଥିପାଇଁ ଭାରତବର୍ଷ ଏକମାତ୍ର ଦେଶ ଯେଉଁଠାରେ ଜୀବହିଂସା ନ କରିବାର ଉପଦେଶ ଦିଆ ହୋଇଛି ଏବଂ ଜୀବନରେ ତାହା ପ୍ରତିପାଳନ କରାଯାଇଛି । ପ୍ରାଣକୁ ଅତ୍ୟନ୍ତ ତୁଚ୍ଛ କରିବା ଅଭ୍ୟାସ ଆତ୍ମା ପକ୍ଷରେ ଅକଲ୍ୟାଣକର । କବି ଏହିପରି ଭାବରେ ଭାରତୀୟ ଶିକ୍ଷାଦର୍ଶର ମୂଳତତ୍ତ୍ୱକୁ ସ୍ପଷ୍ଟ ଭାବରେ କହିଥିଲେ ।

ଏହି ସମୟରେ ରବୀନ୍ଦ୍ରନାଥ ନିରାମିଷାଶୀ । ଶାନ୍ତିନିକେତନ ବାସକାଳରେ ଅସୁସ୍ଥ ହେଲେ ବି ତାଙ୍କୁ କେହି ମାଛ ମାଂସ ଖୁଆଇ ପାରୁ ନଥିଲେ । ଥରେ ତାଂକର କନିଷ୍ଠା କନ୍ୟା ମୀରା ତାଙ୍କ ପାଇଁ ମାଛ କିଂବା ମାଂସର ଝୋଳ କରି ଆଣିଥିଲା । କବି ବିରକ୍ତ ହୋଇ ତାହା ଫିଙ୍ଗି ଦେଇଥିଲେ । ମହର୍ଷିଙ୍କର ନିଷେଧ । କେଣ୍ଡ୍ରଉଇଲ୍‌ର ଅନୁଜ୍ଞା ମାନି ଚଳୁଥିଲେ ।



ମାଘୋତ୍ସବର (ବଙ୍ଗାବ୍ଦ ୧୩୧୭) କିଛିଦିନ ପରେ ଆଡ଼ମ୍ବର ସହକାରେ କଲିକତାରେ ରଥୀନ୍ଦ୍ରନାଥଙ୍କର ବିବାହ ହେଲା—

ଗଗନେନ୍ଦ୍ରନାଥଙ୍କର ଭଗିନୀ ବିନୟିନୀ ଦେବୀଙ୍କର ବାଲ୍ୟବିଧବା କନ୍ୟା ପ୍ରତିମା ସଙ୍ଗରେ । ଠାକୁର ବଂଶ ଓ ଆଦିବ୍ରାହ୍ମ ସମାଜରେ ଏହା ଏକ ବିପ୍ଳବ—ମହର୍ଷିଙ୍କର ଜୀବଦ୍ଦଶାରେ ଏପରି ବୈପ୍ଳବିକ ସଂସ୍କାରରେ କରିବା ରବୀନ୍ଦ୍ରନାଥଙ୍କ ପକ୍ଷରେ ସମ୍ଭବପର ନଥିଲା ।

ଏହି ବିବାହ ଉପଲକ୍ଷେ ରବୀନ୍ଦ୍ରନାଥ ପୁତ୍ରକୁ 'ଗୋରା' ଉପନ୍ୟାସ ଉତ୍ସର୍ଗ କରିଥିଲେ । ତିନିବର୍ଷ ପୂର୍ବେ ପ୍ରବାସୀ ପତ୍ରିକାର ସଂପାଦକ ରାମାନନ୍ଦ ଚଟ୍ଟୋପାଧ୍ୟାୟ କବିଙ୍କୁ ଅଗ୍ରୀମ ତିନିଶତ ଟଂକା ଦେଇଥିଲେ ଓ ସୁବିଧା ମୁତାବକ ଏକ ଗଳ୍ପ ଲେଖି ଦେବାକୁ ଅନୁରୋଧ କରିଥିଲେ । ତଦନୁସାରେ କବି ୧୯୦୭ ଏପ୍ରିଲଠାରୁ ଗୋରା ଉପନ୍ୟାସ ଲେଖା ଆରମ୍ଭ କରିଥିଲେ ଓ ୧୯୧୦ ମାର୍ଚ୍ଚ ସଂଖ୍ୟାରେ ତାହା ଶେଷ ହୋଇଥିଲା—ଅର୍ଥାତ୍ ପୁରା ତିନିବର୍ଷରେ ଏହା ଲେଖା ହୋଇଥିଲା ।

ଏହି ଦୀର୍ଘ ତିନିବର୍ଷ ମଧ୍ୟରେ କବିଙ୍କ ଜୀବନରେ ନାନା ଘାତ ପ୍ରତିଘାତ, ଶୋକ ସନ୍ତାପ ଘଟିଥିଲା । କିନ୍ତୁ ରାମାନନ୍ଦ ବାବୁଙ୍କ ନିକଟରୁ ଜଣାଯାଏ ଯେ କୌଣସି ମାସରେ ପ୍ରବାସୀକୁ 'ଗୋରା' ପଠାଇବା ବନ୍ଦ ହୋଇ ନଥିଲା । ପ୍ରାୟ ପଚିଶ ବର୍ଷ ପୂର୍ବେ 'ଗୋରା' ଉପନ୍ୟାସ ବଂଗଳା ସମାଜ ଓ ସାହିତ୍ୟରେ ଯେଉଁ ଆଲୋଡ଼ନ ସୃଷ୍ଟି କରିଥିଲା, ତାହା ଆଜିର ବଙ୍ଗାଳୀ ସମାଜ ପକ୍ଷରେ ହୃଦୟଙ୍ଗମ କରିବା ସମ୍ଭବ ନୁହେଁ । କାରଣ 'ଗୋରା'ରେ ଚର୍ଚ୍ଚିତ ଅଧିକାଂଶ ସମସ୍ୟା ଦୂର ହୋଇଛି । କିଂତୁ ଯୁଗସମସ୍ୟା ଦିଗକୁ ବାଦ୍ ଦେଲେ ମଧ୍ୟ 'ଗୋରା' ଉପନ୍ୟାସରେ କେତେକ ଶାଶ୍ୱତ ପ୍ରଶ୍ନର ସାକ୍ଷାତକାର ମିଳେ ।

୧୩୧୬ ସାଲ୍ ଆରମ୍ଭରୁ 'ପ୍ରବାସୀ' ପତ୍ରିକାରେ 'ସଂକଳନ' ନାମରେ ଏକ ଅଂଶ ପ୍ରକାଶିତ ହେଲା । ରବୀନ୍ଦ୍ରନାଥଙ୍କ ହାତରେ ବିଶେଷ କାର୍ଯ୍ୟ ନଥିଲା । ତେଣୁ ସେ ଶାନ୍ତିନିକେତନ ଶିକ୍ଷକମାନଙ୍କୁ ସେହି କାର୍ଯ୍ୟରେ ବ୍ରତୀ କରାଇଲେ । ସେ ବରାବର ବିଲାତି ମାସିକ ପତ୍ରିକା ପଢ଼ୁଥିଲେ । ସାଧନା ଓ ବଙ୍ଗ ଦର୍ଶନ ପତ୍ରିକାରେ ତାଂଙ୍କ ସଂକଳିତ ଅନେକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ଏଥର ଆମପରି ଅର୍ବାଚୀନ ମଧ୍ୟ ସଂକଳନ କାର୍ଯ୍ୟରେ ନିଯୁକ୍ତ ହେଲେ । 'ପ୍ରବାସୀ'କୁ

ପଠାଇବା ପୂର୍ବରୁ ପ୍ରତ୍ୟେକ ରଚନାକୁ କବି ସଂଶୋଧନ କରି ଦେଉଥିଲେ; ବେଳେବେଳେ ନିଜେ ମଧ୍ୟ ଲେଖି ଦେଉଥିଲେ। ଲେଖକ ତିଆରି କରିବାରେ ତାଙ୍କର ପ୍ରବଳ ଚେଷ୍ଟାଥିଲା । କେହି କୌଣସି କାର୍ଯ୍ୟ କରୁଥିବାର ଶୁଣିଲେ ପ୍ରଚୁର ଉତ୍ସାହିତ କରୁଥିଲେ। ବିଧୁଶେଖର ଶାନ୍ତିନିକେତନ ଆସିବା ସମୟରେ ପାରମ୍ପରିକ ପ୍ରାଚୀନ ଶିକ୍ଷାରେ ପଣ୍ଡିତ ଥିଲେ । କବି ତାଙ୍କୁ ପାଲିଶ ପାଖରେ ପ୍ରବୃତ୍ତ କରିଥିଲେ ଓ ଆବଶ୍ୟକୀୟ ପୁସ୍ତକ କିଣି ଦେଇଥିଲେ। ଏ ଧରଣର ବହୁ ଦୃଷ୍ଟାନ୍ତ ଦେଖିବାକୁ ମିଳେ। ବିଦ୍ୟାଳୟ ଶିକ୍ଷକମାନେ କେବଳ ପଢ଼ାଇବେ, ନିଜେ କିଛି ପଢ଼ିବେ ନାହିଁ ବା ଅନ୍ୟ କାର୍ଯ୍ୟ କରିବେ ନାହିଁ ଦେଖିଲେ କବି ବରଦାସ୍ତ କରି ପାରୁନଥିଲେ। ସେ ସର୍ବଦା କହୁଥିଲେ ଯେ ଆଲୋକରୁହିଁ ଆଲୋକ ଜଳାଇ ଦିଆଯାଇ ପାରେ, ଜ୍ଞାନ ତପସ୍ୱୀମାନେହିଁ ଜ୍ଞାନ ବିତରଣ କରି ପାରନ୍ତି ।

ଗ୍ରୀଷ୍ମାବକାଶ ପାଇଁ ବିଦ୍ୟାଳୟ ବନ୍ଦ ହେବା ପୂର୍ବରୁ ପଚିଶ ବୈଶାଖରେ (୧୯୧୧ ମେ'୮) ରବୀନ୍ଦ୍ରନାଥଙ୍କର ପ୍ରଥମ ଜନ୍ମୋତ୍ସବ ପାଳିତ ହେଲା—ପଚାଶ ବର୍ଷ ହେଲା କବିଙ୍କର ଏହି ଅନୁଷ୍ଠାନ ଅତ୍ୟନ୍ତ ଘରୋଇ ଭାବେ ପାଳିତ ହୋଇଥିଲା । ଏହାପରେ ପ୍ରତିବର୍ଷ ଏହି ଦିନଟି ପାଳିତ ହୋଇ ଆସୁଛି ଓ ବର୍ତ୍ତମାନ ସେହି ଦିନଟି ବଙ୍ଗାଳୀ ସମାଜରେ ଏକ ଜାତୀୟ ଦିବସ ହୋଇଛି। ଗ୍ରୀଷ୍ମାବକାଶରେ କବି ସପରିବାରେ ହିମାଳୟର ତିନଧରିଆ ସହରରେ ତିନି ସପ୍ତାହ କଟାଇଲେ ।

କବି 'ଶାନ୍ତିନିକେତନ' ଗୃହର ଉପର ମହଲରେ ଥାନ୍ତି । ପୂର୍ବରୁ କୁହାଯାଇଛି ଯେ, କବିଙ୍କର 'ଦେହଲୀ' ଓ 'ନୂତନ ଘର'ରେ ଛାତ୍ରୀମାନଙ୍କର ବୋର୍ଡିଂ ହୋଇଥିଲା। ଏହି ସମୟରେ 'ଗୀତାଞ୍ଜଳି'ର କବିତା ଲେଖା ଚାଲିଥାଏ । ଏହାଛଡ଼ା 'ଜୀବନ ସ୍ମୃତି' ମଧ୍ୟ ଆରମ୍ଭ କରିଥାନ୍ତି। ନିଜର କାବ୍ୟ ସମ୍ପର୍କରେ ଅଧ୍ୟାପକମାନଙ୍କ ସହିତ ମଧ୍ୟ ଆଲୋଚନା କରୁଥାନ୍ତି। ସେ ସବୁ ଆଲୋଚନା ସମ୍ପର୍କରେ ଅଜିତ କୁମାର ଚକ୍ରବର୍ତ୍ତୀଙ୍କର 'ରବୀନ୍ଦ୍ରନାଥ' ଗ୍ରନ୍ଥରୁ ଆଭାସ ମିଳେ ।

ପୂର୍ବାବକାଶରେ କବି ଶିଲାଇଦହ ଗଲେ । ଏଥର ନୌକାରେ ନରହି କୋଠିବାଡ଼ିରେ ରହିଲେ । ସେଠାରେ ପୁତ୍ର ପୁତ୍ରବଧୂ, କନ୍ୟା ଜାମାତାଙ୍କୁ ନେଇ ନୂତନ ସଂସାର । ଜମିଦାରୀର କୃଷି ଉନ୍ନତି ପାଇଁ ଗବେଷଣାଗାର ସ୍ଥାପିତ ହେଉଥାଏ—କୋଠି ବାଡ଼ିରେ ନୂତନ ଘର ତିଆରି ହେଲା । ବହୁ ବର୍ଷ ପରେ କବି ସତେ ଯେପରି ସଂସାର କ୍ଷେତ୍ରକୁ ପୁଣି ଥରେ ଫେରି ଆସିଲେ । ମନ ମଧ୍ୟରେ ପରିତୃପ୍ତି, ଭାବିଲେ ଆମେରିକା-ଶିକ୍ଷିତ ପୁତ୍ର ଓ ଜାମାତାଙ୍କ ଦ୍ୱାରା ଦେଶର କୃଷି ସମସ୍ୟା ସମାଧାନ ହେବ ଓ ଶାନ୍ତିନିକେତନର ଦୁଗ୍ଧ ସମସ୍ୟା ସମାଧାନ ହେବ ସନ୍ତୋଷଚନ୍ଦ୍ରଙ୍କ ଦ୍ୱାରା । ସନ୍ତୋଷ ସେଠାରେ ଗୋଶାଳା ସ୍ଥାପନ କରୁଥାନ୍ତି । କବିଙ୍କର ସବୁ ସ୍ୱପ୍ନ ସଫଳ ହୋଇନି । ଏହି ପରିବେଶ ମଧ୍ୟରେ କବି 'ରାଜା' ନାଟକ ଲେଖିଲେ—ବଙ୍ଗଳା ସାହିତ୍ୟରେ ଏ ଧରଣର ରଚନା ପ୍ରଥମ ।

ଶାନ୍ତିନିକେତନ ଫେରି ବିଦ୍ୟାଳୟର ନାନା କାର୍ଯ୍ୟରେ ମନ ଦେଲେ । ଗୋଟିଏ ଘଟଣା ବିଶେଷ ଉଲ୍ଲେଖଯୋଗ୍ୟ—ତାହା ହେଉଛି ପୌଷ ଉତ୍ସବରେ ମନ୍ଦିରରେ ଖ୍ରୀଷ୍ଟଙ୍କ ସମ୍ପର୍କରେ ଭାଷଣ । ଗତବର୍ଷ ରାଖୀବନ୍ଧନ ଦିନ ଗୋଟିଏ ପତ୍ରରେ ବଡ଼ଦିନ ଉଦ୍‌ଯାପନାର ଯେଉଁ ପ୍ରସ୍ତାବ କରିଥିଲେ, ତାହା ନିଜେହିଁ ଖ୍ରୀଷ୍ଟ ଜନ୍ମଦିନ ଉପଲକ୍ଷେ ଭାଷଣ ଦେଇ ପାଳନ କଲେ । ଆଦି ବ୍ରାହ୍ମ ସମାଜରେ ଏହା ପୂର୍ବରୁ ଖ୍ରୀଷ୍ଟୋତ୍ସବ ହୋଇ ନଥିଲା । ମହର୍ଷି ଦେବେନ୍ଦ୍ରନାଥ କେଶବଚନ୍ଦ୍ର ସେନ୍‌ଙ୍କର ଖ୍ରୀଷ୍ଟିୟାନ୍ ପଦ୍ଧତି ମୁତାବକ ଉପବାସ ଆଦି ଦେଖି ଆତଙ୍କିତ ହୋଇ ଗୋଟିଏ ଭାଷଣରେ 'ଖ୍ରୀଷ୍ଟଜ୍ୱର' କଥା କହିଥିଲେ । ରବୀନ୍ଦ୍ରନାଥ ଐତିହାସିକ ଖ୍ରୀଷ୍ଟିଆନ୍ ଧର୍ମର ନିୟମକୁ ବାଦ୍‌ଦେଇ ଭକ୍ତ ଖ୍ରୀଷ୍ଟଙ୍କୁ ଗ୍ରହଣ କଲେ । ସେହି ଦିନରୁ ଶାନ୍ତିନିକେତନ ମନ୍ଦିରରେ ଖ୍ରୀଷ୍ଟ ଉତ୍ସବ ପାଳିତ ହେଉଛି ।

ଏହି ବର୍ଷ ଫାଲ୍‌ଗୁନ ମାସରେ ମହାପ୍ରଭୁ ଶ୍ରୀ ଚୈତନ୍ୟଙ୍କର ଆବିର୍ଭାବ ଓ ତିରୋଭାବ ଉପଲକ୍ଷେ କବି ମନ୍ଦିରରେ ଭାଷଣ ଦେଲେ । ଏଣିକି ମହାପୁରୁଷମାନଙ୍କର ଦିବସ ଗୁଡ଼ିକ ପାଳିତ ହେବାର ସ୍ଥିର ହେଲା ।

ଏହି ଘଟଣାରୁ ରବୀନ୍ଦ୍ରନାଥଙ୍କର ଧର୍ମଭାବ କପରି ଭାବରେ ବିବର୍ତ୍ତିତ ହୋଇଛି ତାହାର ଆଭାସ ମିଳେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଯେଉଁ ଐକାନ୍ତିକ ହିନ୍ଦୁ ମନୋଭାବ ଦେଖିବାକୁ ମିଳିଥିଲା ସେଥିରୁ କ୍ରମଶଃ କବି ମୁକ୍ତ ହୋଇଥିଲେ । ସବୁ ଧର୍ମର ଚିନ୍ତାଶୀଳ-ମାନଙ୍କର କଥା ଜାଣିବାକୁ ତାଙ୍କର ମନ ବ୍ୟାକୁଳ ହେଲା । କ୍ଷିତି-ମୋହନ ସେନଙ୍କ ନିକଟରୁ କବୀର ଓ ମଧ୍ୟଯୁଗୀୟ ସନ୍ଥମାନଙ୍କ ସମ୍ବନ୍ଧୀୟ ତଥ୍ୟ ଓ ତତ୍ତ୍ୱ ଜାଣିଥିଲେ । ଧର୍ମର ବିଶେଷତ୍ୱ ଓ ବିଶ୍ୱତ୍ୱ କବିଙ୍କ ମନକୁ ଉଦ୍‌ବେଳିତ କରିଥିଲା ।

(୬୩)

ଶାନ୍ତିନିକେତନରେ ଧର୍ମ ସମ୍ବନ୍ଧୀୟ ଯେଉଁ ପରିବର୍ତ୍ତନ କବିଙ୍କ ମନରେ ଦେଖା ଦେଇଥିଲା ତାହା ନବ-ଯୁଗ-ଧର୍ମର ଆଦର୍ଶ । କଲିକତାର ବ୍ରାହ୍ମସମାଜ ଜରିଆରେ ବୃହତ୍ତର ଜନସମାଜରେ ତାହା ପ୍ରଚାରିତ ଓ ପ୍ରତିଷ୍ଠିତ କରିବା ସମ୍ପର୍କରେ ଚିନ୍ତା କଲାବେଳେ, ଥରେ ମାଘୋତ୍ସବ ସମୟରେ ସାଧାରଣ ବ୍ରାହ୍ମସମାଜ ମନ୍ଦିରରେ ବ୍ରାହ୍ମସମାଜର ସାର୍ଥକତା ସମ୍ପର୍କରେ ଏକ ଭାଷଣ ଦେଲେ । ଗୋରା ଉପନ୍ୟାସ ପଢ଼ି ଲୋକେ ମନେ କରିଥିଲେଯେ ରବୀନ୍ଦ୍ରନାଥ ବ୍ରାହ୍ମସମାଜ ପ୍ରତି କଟାକ୍ଷ କରିଛନ୍ତି । କିନ୍ତୁ ଏହି ପ୍ରବନ୍ଧରେ କବି ବ୍ରାହ୍ମସମାଜର ଭାବାତ୍ମକ ଆଦର୍ଶର ସ୍ୱରୂପ ସ୍ପଷ୍ଟତର କରିଦେଲେ ।

ଏହାପରେ ବ୍ରାହ୍ମଧର୍ମର ଆଦର୍ଶକୁ ସାର୍ଥକ କରିବା ପାଇଁ ଆଦି ବ୍ରାହ୍ମ-ସମାଜର ସଂସ୍କାର ପାଇଁ ମନଦେଲେ । ପ୍ରଥମେ (୧୩୧୮ ସାଲରୁ) ତତ୍ତ୍ୱବୋଧିନୀ ପତ୍ରିକାର ଭାର ଗ୍ରହଣ କଲେ । ପରେ ଏହି ପତ୍ରିକାକୁ ବ୍ରାହ୍ମ ବିଦ୍ୟାଳୟର ମୁଖପତ୍ର ରୂପେ ପ୍ରକାଶ କରିବା ବ୍ୟବସ୍ଥା କଲେ । ଏହି ସମୟରେ ରବୀନ୍ଦ୍ରନାଥ ସାଧାରଣ ବ୍ରାହ୍ମ ସମାଜର ଦଳେ ଉତ୍ସାହୀ ଯୁବକଙ୍କ ସହିତ ପରିଚିତ ହୋଇଥିଲେ ।

୧୩୧୮ (ବଙ୍ଗାବ୍ଦ) ସାଲରେ କବିଙ୍କର ତତ୍ତ୍ୱମୂଳକ ନଅଟି ପ୍ରବନ୍ଧ ପ୍ରକାଶିତ ହେଲା । ଏହି ପ୍ରବନ୍ଧମାନଙ୍କରେ ଧର୍ମର ବୈଶିଷ୍ଟ୍ୟ

ଓ ବିଶ୍ୱଜନୀନତା ଯେ ପରସ୍ପର ବିରୁଦ୍ଧ ନୁହେଁ, ହିନ୍ଦୁ ଧର୍ମର ସର୍ବଶ୍ରେଷ୍ଠ ଆଦର୍ଶ ଓ ଅନ୍ୟାନ୍ୟ ଧର୍ମର ଆଦର୍ଶମଧ୍ୟରେ ଯେ କୌଣସି ଭେଦ ନାହିଁ ଏହି ନବ ସତ୍ୟ ଉଦ୍‌ଭାସିତ ହେଲା । ଧର୍ମ ଏକ ଦେଶ ମଧ୍ୟରେ ଉଦ୍ଭୂତ ଓ ବିଶେଷ ଭାଷା ଜରିଆରେ ପ୍ରକାଶିତ ହେଲେ ବି ବିଶ୍ୱଜନୀନ ହୋଇପାରେ । କବିଙ୍କ ମତରେ ବ୍ରାହ୍ମଧର୍ମ ମଧ୍ୟରେ ସେହି ବିଶ୍ୱଜନୀନ ଧର୍ମବୀଜ ସୁପ୍ତ ଅଛି ।

ସାଧାରଣ ବ୍ରାହ୍ମସମାଜର ଯୁବକମାନଙ୍କର ଉତ୍ସାହ ଓ ସହାୟତା ଫଳରେ କବି ଆଦି ବ୍ରାହ୍ମସମାଜର ଉନ୍ନତି କରିବାକୁ ଆଶାକଲେ । କିନ୍ତୁ ସେହି ସ୍ଥବିର ସମାଜକୁ ପ୍ରାଣଦାନ କରିବା ଯେ ସହଜ ନୁହେଁ, ଏକଥା ବୁଝିବାକୁ କବିଙ୍କୁ ସମୟ ଲାଗିଥିଲା । ମହର୍ଷି ଦେବେନ୍ଦ୍ରନାଥ ଆଦିବ୍ରାହ୍ମ ସମାଜକୁ ନିଜର ପରିବାର ପରିଜନଙ୍କର ଆୟତ୍ତରେ ରଖିବାକୁ ଚାହିଁଥିଲେ । ରବୀନ୍ଦ୍ରନାଥ ଆଦିବ୍ରାହ୍ମ ସମାଜକୁ ବୃହତ୍ତର କ୍ଷେତ୍ରରେ ପ୍ରତିଷ୍ଠିତ କରିବେ ବୋଲି ଭାବିଲେ ସତ୍ୟ; କିନ୍ତୁ ଦେଖାଗଲା ଯେ ଶେଷରେ ସେ କନିଷ୍ଠ ଜାମାତା ଉପରେ ସବୁ ଭାର ଅର୍ପଣ କଲେ । ଆତ୍ମୀୟ ସ୍ୱଜନଙ୍କ ଛଡ଼ା ଅନ୍ୟ କାହାରି ଉପରେ ଭାର ଦେଇ ପାରିଲେ ନାହିଁ । ଏକ ସ୍ୱଭାବ-ଭୀରୁତା ଯୋଗୁଁ ନିଜ ଆୟତ୍ତରୁ ଛାଡ଼ି ପାରିଲେ ନାହିଁ ।

(୭୪)

୧୯୨୧ ମେ ମାସ ରେ କବିଙ୍କର ଷଷ୍ଠିତମ ବର୍ଷ ପୂର୍ତ୍ତିହେବା ଉପଲକ୍ଷେ ଶାନ୍ତିନିକେତନରେ ଜନ୍ମୋତ୍ସବ ପାଳିତ ହୋଇଥିଲା । ଏଥରର ଜନ୍ମୋତ୍ସବ କେତେକ ପରିମାଣରେ ସାର୍ବଜନୀନ ଭାବେ ଅନୁଷ୍ଠିତ ହୋଇଥିଲା ।

ଜନ୍ମୋତ୍ସବ ପରେ ଶିଲାଇଦହରେ କିଛିଦିନ ରହିଲେ । ଅବସ୍ଥାନ କାଳରେ ଲେଖିଲେ 'ଅଚଳାୟତନ' ନାଟକ ।

ରବୀନ୍ଦ୍ରନାଥ ହିନ୍ଦୁଧର୍ମର ଶ୍ରେଷ୍ଠ ଆଦର୍ଶକୁ କେବେ ନିନ୍ଦା କରି ନାହାନ୍ତି । କିନ୍ତୁ ହିନ୍ଦୁସମାଜରେ 'ଧର୍ମ' ନାମରେ ଶତାବ୍ଦୀ

ଶତାବ୍ଦୀ ଧରି ଯେଉଁ ଲୋକାଚାରର ରୂପକ କୁସଂସ୍କାର ଚାଲିଆସୁଛି, ମଣିଷର ମନ ଯାହାର ଚାପରେ ପଙ୍ଗୁ ହୋଇଛି, ସେହି ଆଚାର ସର୍ବସ୍ୱ 'ହିନ୍ଦୁଇଜ୍ମ'କୁ ସେ କୌଣସି ସମୟରେ ଅନୁମୋଦନ କରି ପାରି ନାହାନ୍ତି । 'ଅଚଳାୟତନ' ସେହି ସମାଜବ୍ୟାପୀ ଅନ୍ଧ କୁସଂସ୍କାର ଓ ଲୋକାଚାରର ବିରୁଦ୍ଧରେ ପ୍ରତିବାଦ ଓ ବ୍ୟଙ୍ଗ । 'ତପୋବନ' ପ୍ରବନ୍ଧରେ କିଛିଦିନ ପୂର୍ବରୁ କବି ଯାହା କହିଥିଲେ, ତାହାକୁ ଅଚଳାୟତନର ଭୂମିକା କୁହାଯାଇପାରେ । ସେ କହିଥିଲେ, 'ଆମ ଦେଶରେ ସାଧନା ବର୍ଜିତ ଚିତ୍ତଶକ୍ତି ଯେତେ ମଳିନ ହୋଇଛି, ଏହି ନିରର୍ଥକ ବାହ୍ୟାଡ଼ମ୍ବର ସେତିକି ବୃଦ୍ଧି ପାଇଛି; ଏକଥା ସ୍ୱୀକାର କରିବାକୁ ହେବ । କିନ୍ତୁ ଆମର ଏହି ଦୁର୍ଗତି ସମୟର ଜଡ଼ତ୍ୱକୁ ମୁଁ କୌଣସି ଦିନ ଭାରତବର୍ଷର ଚିରନ୍ତନ ଅଭିପ୍ରାୟ ରୂପେ ଗ୍ରହଣ କରିବି ନାହିଁ ।'

'ଅଚଳାୟତନ' ପ୍ରକାଶିତ ହେଲା ପରେ ଦେଶରେ ଦଳେ ଲୋକ ଖୁବ୍ କ୍ଷୁବ୍ଧ ହୋଇଥିଲେ । ରବୀନ୍ଦ୍ରନାଥ ଗୋଟିଏ ପତ୍ରରେ ତତ୍କାଳୀନ ଜଣେ ବିଶିଷ୍ଟ ସାହିତ୍ୟ ସମାଲୋଚକଙ୍କୁ ଲେଖିଥିଲେ; 'ଅଚଳାୟତନ ଲେଖା ଯଦି କୌଣସି ଚଞ୍ଚଳତା ନ ଆଣେ ତେବେ ଏହି ଲେଖା ବୃଥା ହୋଇଛି ବୋଲି ଭାବିବି । ସଂସ୍କାରର ଜଡ଼ତାକୁ ଆଘାତ କରିବି, ଅଥଚ ତାହା ଆହତ ହେବନାହିଁ—ଏହାକୁ ନିଷ୍ଫଳତା କୁହାଯିବ । · ନିଜ ଦେଶର ଆଦର୍ଶକୁ ଯେଉଁ ବ୍ୟକ୍ତି ଯେଉଁ ପରିମାଣରେ ଭଲପାଏ ସେ ତା'ର ବିକାରକୁ ସେହି ପରିମାଣରେ ଆଘାତ କରିବା ହିଁ ଶ୍ରେୟସ୍କର । ଭଲ ମନ୍ଦ ସମସ୍ତକୁ ନିର୍ବିଚାରରେ ଗ୍ରହଣ କରି ନିଶ୍ଚଳ ହୋଇ ବସିରହିବାକୁ ପ୍ରେମର ପରିଚୟ କହି ପାରିବିନି ।··· ଅନ୍ତରରେ ଯେଉଁସବୁ ମର୍ମାନ୍ତିକ ବନ୍ଧନ ଅଛି, ବାହାରର ଶୃଙ୍ଖଳ ତାହାର ସ୍ଥୂଳ ପ୍ରକାଶ ମାତ୍ର—ଆମର ପାପ ଅଛି ବୋଲି ଶାସ୍ତି ଅଛି···ଯେତେ ଲଢ଼େଇ ତାହା ଏହି ଶାସ୍ତି ସହିତ ଓ ଯେତେ ମମତା ତାହା ଏହି ପାପ ସହିତ ? ମୋ ପକ୍ଷରେ ଏହା ପ୍ରତିଦିନ ଅସହ୍ୟ ହେଉଛି ।' 'ସବୁ ସତ୍ୟ'—ଏ ଉକ୍ତି କେବଳ ମାନସିକ ଜଡ଼ତା ଓ ଶିଥିଳ ଚିନ୍ତାର ଲକ୍ଷଣ ।

ସବୁ ସତ୍ୟ ବୋଲି ସ୍ୱୀକାର କଲେ, ସତ୍ୟର ମର୍ଯ୍ୟାଦା ରହେ ନାହିଁ ।

(୭୫)

କବି ଲେଖିଥିଲେ, 'ମୁଁ ସୁଦୂରର ପିୟାସୀ' । କଥାଟା ନିତାନ୍ତ କବିକଥା ନୁହେଁ । ମନ ସର୍ବଦା ସୁଦୂରର ପିୟାସୀ; ତେଣୁ ଭ୍ରମଣକାହାଣୀ ପଢ଼ନ୍ତି ଓ ଗ୍ରନ୍ଥରେ ଲିଖିତ ଅଭିଯାତ୍ରୀମାନଙ୍କ ସଙ୍ଗରେ ମନେ ମନେ ମାନସରୋବରରେ ବିହାର କରନ୍ତି । ସ୍ଥିର ହୋଇ ବସିରହିବା ସ୍ୱଭାବବିରୁଦ୍ଧ ଓ ଅବସ୍ଥାଚକ୍ରରେ ମଧ୍ୟ ଘର-ବାହାର ହେବାକୁ ପଡ଼େ । ତା ଛଡ଼ା ନୂତନ ଦେଶ ଦେଖିବାର ଇଚ୍ଛା ଓ ନୂତନ ମନୁଷ୍ୟ ମନର ସାହଚର୍ଯ୍ୟ ପାଇବା ପାଇଁ ଚିର ଔତ୍ସୁକ୍ୟ, ଜୀବନର ଶେଷପର୍ଯ୍ୟନ୍ତ ଥିଲା । ନୂତନ ଲୋକ ଦେଖା କରିବାକୁ ଆସିଲେ ଅବଜ୍ଞା କରୁ ନଥିଲେ ଓ କୌଣସି ନୂତନ ସ୍ଥାନ ସମ୍ପର୍କରେ କେହି କହିଲେ, ସେହି ଅଜଣା ଦେଶ ଦେଖିବାକୁ ଉତ୍ସୁକ ହୋଇପଡ଼ୁଥିଲେ ।

ଏହି ସମୟରେ ରବୀନ୍ଦ୍ରନାଥ ପ୍ରଭୃତି ଷ୍ଟିମରରେ ସିଙ୍ଗାପୁର ଯିବାକୁ ଇଚ୍ଛାକଲେ । ପ୍ରସ୍ତାବ ଶୁଣିବା ମାତ୍ରେ କବି ମନ ଛୁଟିଲା । ଭ୍ରମଣ କଳ୍ପନା ଉଠିବା ସଙ୍ଗେ ସଙ୍ଗେ ସମସ୍ତେ ବିଲାତ ଯିବା ସ୍ଥିର ହେଲା ।

ସେତେବେଳେ ରବୀନ୍ଦ୍ରନାଥଙ୍କ ହାତରେ ସାହିତ୍ୟ ସୃଷ୍ଟିର କୌଣସି ବଡ଼ କାର୍ଯ୍ୟ ନାହିଁ । 'ଗୋରା' ଶେଷ ହୋଇଯିବା ପରେ ମଣିଲାଲ ଗାଙ୍ଗୁଲି ଏବଂ ତାଙ୍କର ବନ୍ଧୁଙ୍କ ଅନୁରୋଧରେ କେତୋଟି କ୍ଷୁଦ୍ର ଗଳ୍ପ ଲେଖିଥିଲେ । ଏହି କ୍ଷୁଦ୍ର ଗଳ୍ପ କେତୋଟି ହେଉଛି— 'ରାସମଣିର ପୁଅ' ଓ 'ପଣରକ୍ଷା' । ଗଳ୍ପ ଦୁଇଟି ବିୟୋଗାତ୍ମକ ।

ନାନା କାରଣରୁ କୌଣସି ସ୍ଥାନକୁ ଯାଇ ହେଲାନି । କବିଙ୍କର ମନ ଭାଙ୍ଗି ପଡ଼ିଲା ଓ ଏକା ଶିଲାଇଦହ ଗ୍ଲଲେ । ସେଠାରୁ ଯେଉଁ

ସବୁ ପଦ ଲେଖିଥିଲେ ସେଥିରେ ଘରର ବନ୍ଧନରୁ ମୁକ୍ତହେବାର ପ୍ରବଳ ବ୍ୟାକୁଳତା ପ୍ରକାଶ ପାଇଥିଲା । ଶିଲାଇଦହରେ ଘର ସଂସାର ନେଇ ରହିବା ଚେଷ୍ଟା ବ୍ୟର୍ଥ ହେଲା—ମନରେ ଅଶାନ୍ତି ।

ଗ୍ରୀଷ୍ମାବକାଶ ପରେ ବିଦ୍ୟାଳୟ ଖୋଲିବାରୁ ଶାନ୍ତିନିକେତନ ଫେରିଆସିଲେ । କିନ୍ତୁ ମନରେ ଶାନ୍ତି ନାହିଁ—ବିକ୍ଷିପ୍ତ ଭାବନା । ‘ଘର’ଠାରୁ ଦୂରେଇ ଯିବାର ‘ଡାକ’ ଓ ମୃତ୍ୟୁ ଚିନ୍ତା ମନକୁ ବିଷାଦଗ୍ରସ୍ତ କରିଛି । ମନର ଏହି ଅପ୍ରାକୃତ ଅବସ୍ଥା ଦୂରୀଭୂତ ହେଲା ‘ଡାକଘର’ ନାଟକ ଲେଖିବା ପରେ । ଏହି ନାଟକରେ ରବୀନ୍ଦ୍ରନାଥଙ୍କର ମନର ଉଦାସ ଓ ବିଷାଦ ଭାବର ସ୍ପଷ୍ଟ ପ୍ରତିଫଳନ ।

ରବୀନ୍ଦ୍ରନାଥଙ୍କର ଯେଉଁ ନାଟକ ଦୁଇଟି ବିଶ୍ୱସାହିତ୍ୟରେ ସ୍ଥାନ ପାଇଛି ତାହା ହେଉଛି ‘ରାଜା’ ଓ ‘ଡାକଘର’ । ଏହି ନାଟକ ଦୁଇଟିରେ କୌଣସି ନିର୍ଦ୍ଦିଷ୍ଟ ସମାଜର ଲୋକଚରିତ୍ର ଚିତ୍ରଣ କରାଯାଇ ନାହିଁ । ଏହା ଯେ କୌଣସି ଦେଶର ଯେ କୌଣସି ଲୋକର ମନସ୍ତାତ୍ତ୍ୱିକ ରୂପରେଖ ଦିଏ । କିନ୍ତୁ ସାଧାରଣ ପାଠକ ଓ ସମାଲୋଚକ ପ୍ରଥମେ ଏହାର ଉପାଦେୟତା ହୃଦୟଙ୍ଗମ କରି ପାରି ନଥିଲେ । ଏହି ନୂତନ ସାହିତ୍ୟ ସୃଷ୍ଟି କବିଙ୍କର ମାମୁଲି ନାଟକ ପରିକଳ୍ପନା ସୀମାରେଖା ଅନ୍ତର୍ଗତ ନ ହୋଇଥିବାରୁ, ସେମାନେ ବିଭ୍ରାନ୍ତ ହୋଇଥିଲେ ।

ନାଟକ ଲେଖିବା ପରେ ବନ୍ଧୁମାନଙ୍କ ନିକଟରେ ତାହା ଶୁଣାଇବା ପାଇଁ କଲିକତା ଗଲେ । ପୌଷ ଉତ୍ସବରେ ମଧ୍ୟ ଆସିଲେ ନାହିଁ । ମାଘୋତ୍ସବ କଲିକତାରେ ପାଳନ କଲେ । ଏହି ମାଘୋତ୍ସବରେ କବିଙ୍କର ‘ଜନ-ଗଣ-ମନ ଅଧିନାୟକ’ ସଂଗୀତଟି ବ୍ରହ୍ମସଂଗୀତ ରୂପେ ଗାନ [୧୯୧୨] କରାହୋଇଥିଲା । ପରେ ଏହି ସଂଗୀତଟିକୁ ସ୍ୱାଧୀନ ଭାରତର ଜାତୀୟ ସଂଗୀତ ରୂପେ ଗ୍ରହଣ କରାଗଲା ।

(୭୭)

ରବୀନ୍ଦ୍ରନାଥଙ୍କର ପଚାଶ ବର୍ଷ ପୂର୍ଣ୍ଣ ହେବା ଉପଲକ୍ଷେ କଲିକତା ଟାଉନ ହଲ୍‌ରେ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହେଲା [୧୯୧୨ ଜାନୁୟାରୀ ୨୮ ତାରିଖ] । ଏହି ଉତ୍ସବ ଯୋଗୁ କବିଙ୍କୁ ବହୁ କଟୁକଥା ଶୁଣିବାକୁ ପଡ଼ିଥିଲା । ବଙ୍ଗଳାର ଦଳେ ଲୋକ ଚିରଦିନ ରବୀନ୍ଦ୍ରବିରୋଧୀ । ସେମାନଙ୍କର ଧାରଣା ହେଲା ଯେ, କବିଙ୍କର ସ୍ତାବକଦଳ, ତାଙ୍କର ପ୍ରରୋଚନାରେ ଏହି ସମ୍ବର୍ଦ୍ଧନାର ଆୟୋଜନ କରିଥିଲେ । କିନ୍ତୁ ପ୍ରକୃତରେ ବଙ୍ଗୀୟ ସାହିତ୍ୟ ପରିଷଦର ଉଦ୍ୟୋଗରେ ଏହି ସଭା ଅନୁଷ୍ଠିତ ହୋଇଥିଲା । ସେତେବେଳେ ପରିଷଦର ସଭାପତି ଥିଲେ ଜଷ୍ଟିସ ଶାରଦାଚରଣ ମିତ୍ର ଓ ସମ୍ପାଦକ ରିପନ୍ କଲେଜର [ବର୍ତ୍ତମାନ ସୁରେନ୍ଦ୍ରନାଥ] ଅଧ୍ୟକ୍ଷ ରାମେନ୍ଦ୍ରସୁନ୍ଦର ତ୍ରିବେଦୀ ।

ଦେଶବାସୀଙ୍କ ପକ୍ଷରୁ ରବୀନ୍ଦ୍ର ପ୍ରଭୃତିର ପ୍ରଥମ ସ୍ୱୀକୃତି ମିଳିଲା । ଏହାପୂର୍ବରୁ କୌଣସି ସାହିତ୍ୟିକ ଦେଶବାସୀଙ୍କ ନିକଟରୁ ତାଙ୍କର ପ୍ରାପ୍ୟ ସମ୍ମାନ ପାଇ ନଥିଲେ । ଉତ୍ସବ ପୂର୍ବରୁ ଆୟୋଜନକାରୀମାନେ ଏକ ନିବେଦନରେ ଏହା ପ୍ରକାଶ କରି ରବୀନ୍ଦ୍ରନାଥଙ୍କୁ ଯଥାଯୋଗ୍ୟ ସମ୍ମାନ ଜଣାଇବା ପାଇଁ ଆହ୍ୱାନ କରିଥିଲେ ।

ଜନ୍ମୋତ୍ସବର ପ୍ରାୟ ଦୁଇମାସ ପରେ କବି ଶାନ୍ତିନିକେତନ ଫେରିଆସିଲେ (୧୯୧୨ ଫେବୃୟାରୀ) । ବିଦ୍ୟାଳୟର ଦୁର୍ଦ୍ଦିନ— । ସରକାରଙ୍କ ନିକଟରୁ ଗୋପନ ଇସ୍ତାହାର ପ୍ରକାଶିତ ହୋଇଥାଏ ଯେ ସରକାରୀ କର୍ମଚାରୀଙ୍କର ପିଲାମାନଙ୍କ ପାଇଁ ଶାନ୍ତିନିକେତନ ଉପଯୁକ୍ତ ଶିକ୍ଷାସ୍ଥାନ ନୁହେଁ । ବହୁ ଅଭିଭାବକ ସରକାରଙ୍କର ଏହି ଇସ୍ତାହାର ଫଳରେ ନିଜର ପିଲାମାନଙ୍କୁ ବିଦ୍ୟାଳୟରୁ ନେଇ ଗଲେ । କେତେକବର୍ଷ ଆଗରୁ ଖୁଲନାର ସେନହାଟୀ ଜାତୀୟ ବିଦ୍ୟାଳୟର 'ଜେଲ ଖଟିଥିବା' ଶିକ୍ଷକ ହୀରାଲାଲ ସେନଙ୍କୁ ଶିକ୍ଷକ ଭାବରେ ନିଯୁକ୍ତ ମିଳିଥିବାରୁ ପୋଲିସ ତରଫରୁ ଆପତ୍ତି କଲେ । ତାଙ୍କୁ ବିଦାୟ ଦେବାପାଇଁ କବିଙ୍କ ଉପରେ ନାନା ରୂପ ସନ୍ଦେହ,

ସେଥିରେ ସେ କର୍ଣ୍ଣପାତ କଲେ ନାହିଁ । କିନ୍ତୁ ବୁଝି ପାରିଲେ ଯେ ତାଙ୍କୁ ସ୍କୁଲରୁ ଅନ୍ତର ନକଲେ ବିଦ୍ୟାଳୟକୁ ରକ୍ଷା କରିପାରିବେ ନାହିଁ । ତେଣୁ ତାଙ୍କୁ ବିଦ୍ୟାଳୟରୁ ବିଦାୟ ଦେଲେ । କିନ୍ତୁ ନିଜ ଜମିଦାରି କାର୍ଯ୍ୟରେ ନିଯୁକ୍ତ କଲେ । କାଳୀମୋହନ ଘୋଷ ସରକାରଙ୍କ 'ଚିହ୍ନିତ' ଅନ୍ୟ ଏକ ଶିକ୍ଷକ । ସେ ବିଲାତ ଚାଲିଗଲେ ।

୧୯୧୧ ମସିହା ଜନଗଣନା ସମୟରେ ବ୍ରାହ୍ମମାନେ ହିନ୍ଦୁ କି ନୁହନ୍ତି ଏ ସମ୍ପର୍କରେ ନାନା ତର୍କବିତର୍କ ଦେଖାଦେଇଥିଲା । ନୈଷ୍ଠିକ ବ୍ରାହ୍ମମାନେ ପରିଷ୍କାର କହିଦେଲେ ଯେ, 'ବ୍ରାହ୍ମମାନେ ହିନ୍ଦୁ ନୁହନ୍ତି' । ସେମାନଙ୍କର ମତରେ ବେଦର ଅଭ୍ରାନ୍ତତା, ଗୋରୁଙ୍କର ପବିତ୍ରତା ଓ ବ୍ରାହ୍ମଣଙ୍କର ଶ୍ରେଷ୍ଠତା ସଙ୍ଗେ ସାକାର ଦେବତା ପୂଜା କରିବା ଯଦି ହିନ୍ଦୁଧର୍ମର ଆବଶ୍ୟକୀୟ ସର୍ତ୍ତ ହୋଇଥାଏ, ତେବେ ବ୍ରାହ୍ମମାନେ ନିଜକୁ ହିନ୍ଦୁ କହିବାକୁ ନାରାଜ । ରବୀନ୍ଦ୍ରନାଥ ଏହି ଆଲୋଚନାରେ ଭାଗ ନେଇ କହିଲେ ଯେ, 'ବ୍ରାହ୍ମମାନେ ହିନ୍ଦୁ'— । 'ବ୍ରାହ୍ମ ସମାଜର ଆବିର୍ଭାବ ସମସ୍ତ ହିନ୍ଦୁ ସମାଜ ଇତିହାସର ଅଙ୍ଗ । ବ୍ରାହ୍ମ ସମାଜ, ଆକସ୍ମିକ ବା ଅଦ୍ଭୁତ ଖାପଛଡ଼ା କାଣ୍ଡ ନୁହେଁ ; ଏହା ସ୍ୱତନ୍ତ୍ର ସମାଜ ନୁହେଁ, ଏହା ଏକ ସମ୍ପ୍ରଦାୟ ମାତ୍ର ।' ଏହି ବିଷୟ ନେଇ ବାଦ ପ୍ରତିବାଦ ଚାଲିଲା । ଶେଷରେ ରବୀନ୍ଦ୍ରନାଥ 'ଭାରତବର୍ଷେର ଇତିହାସେର ଧାରା' ପ୍ରବନ୍ଧରେ ଭାରତୀୟ ସାଧନାର ଅନ୍ତର୍ନିହିତ ବାଣୀର ବିଶଦ ବ୍ୟାଖ୍ୟା କରିଥିଲେ । କବିଙ୍କର ମତରେ ସେହି ବାଣୀ ମିଳନବାଣୀ— ଭେଦରବାଣୀ ନୁହେଁ । ଅର୍ଥାତ୍ ଏପର୍ଯ୍ୟନ୍ତ ଲୋକେ ଏହି କଥା ଶୁଣିବାରେ ଅଭ୍ୟସ୍ତ ଥିଲେ ଯେ ହିନ୍ଦୁଧର୍ମ ଓ ସମାଜ ମଧ୍ୟରେ ଭେଦଭାବ ପ୍ରବଳ । କବି ଭାରତ ଇତିହାସରୁ ନାନା ଉଦାହରଣ ଦେଇ ପ୍ରମାଣ କରିଦେଲେ ଯେ ତାହା ଭ୍ରମାତ୍ମକ ଧାରଣା— ଭେଦଭାବ ଢୁଙ୍ଗାଇବା ହିଁ ଥିଲା ଭାରତର ସାଧନା । କବି ଭାରତ ଇତିହାସକୁ ନୂତନ ଦୃଷ୍ଟିଭଙ୍ଗୀରେ ଦେଖାଇ ଦେଲେ । ପ୍ରାୟ ଅର୍ଦ୍ଧ ଶତାବ୍ଦୀ ପୂର୍ବେ ରାଜନାରାୟଣ ବସୁ 'ହିନ୍ଦୁଧର୍ମର ଶ୍ରେଷ୍ଠତ୍ୱ'

ପ୍ରବନ୍ଧରେ ଐକ୍ୟଧର୍ମକୁ ହିନ୍ଦୁଧର୍ମର ବୈଶିଷ୍ଟ୍ୟ ବୋଲି କହିଥିଲେ ।

( ୭୬ )

ଓଏରଚୁନ୍ ହଲରେ ବକ୍ତୃତା ଦେବାର କିଛିଦିନ ପରେ କବିଙ୍କର ବିଲାତ ଯାତ୍ରା କରିବା କଥା । କିନ୍ତୁ ଯାତ୍ରା ପୂର୍ବରୁ କେତେଜଣ ଆତ୍ମୀୟ ବନ୍ଧୁଙ୍କର ଅତି ସମାଦର ଫଳରେ କବି ଅସୁସ୍ଥ ହୋଇପଡିଲେ । କଲିକତା ବନ୍ଦରରେ ଦେଖାକରିବାକୁ ଯାଇ ଲୋକମାନେ ଶୁଣିଲେ ଯେ, କବି ଅସୁସ୍ଥ ଓ ବିଲାତ ଯିବା ବନ୍ଦ ହୋଇଛି । ଡା: ଦ୍ୱିଜେନ୍ଦ୍ରନାଥ ମିତ୍ର କବିଙ୍କର ସହଯାତ୍ରୀ ହେବାର କଥା ଥିଲା । ସେ ଏକା ବିଲାତ ଗଲେ (୧୯୧୨-ମାର୍ଚ୍ଚ ୧୯) ।

ସାମାନ୍ୟ ସୁସ୍ଥ ହେବା ପରେ କବି ଶିଲାଇଦହ ଚାଲିଗଲେ । ସେଠାର ଶାନ୍ତ ପରିବେଶ ମଧ୍ୟରେ ଅନେକଗୁଡ଼ିଏ ସଂଗୀତ ରଚନା କରିଥିଲେ । ଏହାଛଡ଼ା ନିଜର ଅବସର ବିନୋଦନ ପାଇଁ ନିଜର କେତେକ କବିତାର ଇଂରାଜୀ ଅନୁବାଦ କରିଥିଲେ ।

୧୩୧୮ [ବଙ୍ଗାବ୍ଦ] ସାଲ । ବର୍ଷ ଶେଷଦିନ କବି ସମସ୍ତଙ୍କର ଅଜଣାରେ ଶାନ୍ତିନିକେତନରେ ପହଞ୍ଚିଲେ । 'ବର୍ଷର ଶେଷ ସନ୍ଧ୍ୟା' ଓ 'ନବବର୍ଷର ସକାଳେ' [ବଙ୍ଗାବ୍ଦ ୧୩୧୯] ମନ୍ଦିରରେ ଉପାସନା କଲେ । ବିଲାତ ଯିବାର ସବୁ ଆୟୋଜନ ଚାଲିଥାଏ । ହଠାତ୍ ରବୀନ୍ଦ୍ରନାଥଙ୍କର ମନରେ ପ୍ରଶ୍ନ ଉଠିଲା ଯେ କାହିଁକି ବିଲାତ ଯିବେ ? ଅଠରବର୍ଷ ବୟସରେ ଶିକ୍ଷାଲାଭ ଉଦ୍ଦେଶ୍ୟରେ ବିଲାତ ଯାଇ-ଥିଲେ; କିନ୍ତୁ ପଚାଶବର୍ଷରୁ ଊର୍ଦ୍ଧ୍ୱ ବୟସରେ ସେ ପ୍ରଶ୍ନ ତ ନାହିଁ । ତେଣୁ ଏଥର ଯାତ୍ରା ସମ୍ପର୍କରେ କୈଫିୟତ ଖୋଜି ବାହାର କଲେ ଯେ ମାନବଜାତି ସହିତ ଶାନ୍ତିନିକେତନ ବିଦ୍ୟାଳୟର ସମ୍ବନ୍ଧ ସ୍ଥାପନ କରିବା ପାଇଁ ପୃଥିବୀ ପ୍ରଦକ୍ଷିଣ କରିବା ଦରକାର ।

ୟୁରୋପ ପାଇଁ ସଂସ୍କାରମୁକ୍ତ ଚକ୍ଷୁରେ ସତ୍ୟକୁ ବୁଝିବା ପାଇଁ ତୀର୍ଥଯାତ୍ରୀ ପରି ୟୁରୋପ ଯିବେ । ଏହାଛଡ଼ା ଅର୍ଶରୋଗରେ କଷ୍ଟ ପାଉଥିବାରୁ ଇଂଲଣ୍ଡରେ ଚିକିତ୍ସା କରିବା ଉଦ୍ଦେଶ୍ୟ ମଧ୍ୟ ଥିଲା ।

(୭୮)

ରବୀନ୍ଦ୍ରନାଥ ପୁତ୍ର ରଥୀନ୍ଦ୍ରନାଥ ଓ ପୁତ୍ରବଧୂ ପ୍ରତିମା ଦେବୀଙ୍କୁ ସଙ୍ଗରେ ନେଇ ବମ୍ବେ ବାଟେ ବିଲାତ ଗଲେ (୧୯୧୨ ମେ ୧୬) । ଏହି ପଥରେ ଆଗରୁ ଦୁଇଥର ଯାଇଥିଲେ । ସାହିତ୍ୟରେ ତାହାର ଚିହ୍ନ ରହିଛି—'ୟୁରୋପ ପ୍ରବାସୀର ପତ୍ର' [୧୮୮୧] ଓ 'ୟୁରୋପ ଯାତ୍ରୀର ଡାଏରି' [୧୮୯୩]। ଏଥର ଜାହାଜରେ ଥିବା ସମୟରେ କେତେକ ସଙ୍ଗୀତ ରଚନା କରିଥିଲେ ଓ ନିଜ କବିତାର ଇଂରାଜୀ ଅନୁବାଦଗୁଡ଼ିକୁ ସଂଶୋଧନ କରିଥିଲେ । ତାହାଛଡ଼ା 'ତତ୍ତ୍ୱ-ବୋଧିନୀ' ପତ୍ରିକା ପାଇଁ ପତ୍ର-ପ୍ରବନ୍ଧ ଲେଖିଥିଲେ । ସେଗୁଡ଼ିକ 'ପଥେର ସଞ୍ଚୟ' ନାମରେ ପ୍ରକାଶିତ ହୋଇଛି [୧୯୩୯] ।

୧୯୧୨ ଜୁନ ୧୬ ତାରିଖରେ ଲଣ୍ଡନରେ ପହଞ୍ଚିଲେ । ପ୍ରଥମେ ହୋଟେଲରେ ରହିଲେ । କିଛିଦିନ ପରେ ହ୍ୟାମ୍ପଷ୍ଟେଡ଼ହିଦ୍‌ରେ ବସା ଭଡ଼ା ନେଇ ରହିଲେ । ଲଣ୍ଡନରେ ପରିଚିତମାନଙ୍କ ମଧ୍ୟରେ ରୋଦେନଷ୍ଟାଇନ୍ । ତାଙ୍କ ସହିତ ୧୯୧୦ ଖ୍ରୀ:ଅ: ରେ ଯୋଡ଼ାସାଁକୋ ଘରେ ଦେଖା ହୋଇଥିଲା ଓ ପତ୍ର ଜରିଆରେ ବନ୍ଧୁତ୍ୱ ଘନିଷ୍ଠ ହୋଇ ଯାଇଥିଲା । ଲଣ୍ଡନରେ ପ୍ରଥମେ ତାଙ୍କର ସହିତ ଦେଖା କଲେ । ଏହି ସମ୍ପର୍କରେ ରୋଦେନଷ୍ଟାଇନ୍ ତାଙ୍କର ଆତ୍ମଚରିତ (Men & Memories) ପୁସ୍ତକରେ ଯାହା ଲେଖିଛନ୍ତି ତା'ର ମର୍ମାନୁବାଦ ହେଉଛି—

'ମଡର୍ଣ୍ଣ ରିଭ୍ୟୁ' ପତ୍ରିକାରେ ରବୀନ୍ଦ୍ରନାଥ ଠାକୁରଙ୍କର ଗୋଟିଏ ଗଳ୍ପର ଅନୁବାଦ (ଭଗିନୀ ନିବେଦିତାଙ୍କ ଅନୁଦିତ କାବୁଲିବାଲା ?) ପଢ଼ି ମୁଁ ଏତେ ମୁଗ୍ଧ ହୋଇଯାଇଥିଲି ଯେ

ସଙ୍ଗେ ସଙ୍ଗେ ପତ୍ର ଲେଖି (ଗଗନେନ୍ଦ୍ରନାଥଙ୍କୁ ?) ରବୀନ୍ଦ୍ରନାଥଙ୍କର ଅନ୍ୟାନ୍ୟ ଗଳ୍ପଗୁଡ଼ିକ କେଉଁଠାରେ ମିଳିବ ଜାଣିବାକୁ ଚାହିଁଥିଲି । କେତେଦିନ ପରେ ଅଜିତ ଚକ୍ରବର୍ତ୍ତୀଙ୍କଦ୍ୱାରା ଅନୁଦିତ କେତେକ ଗୁଡ଼ିଏ କବିତାର ଗୋଟିଏ ପାଣ୍ଡୁଲିପି ପାଇଲି । କବିତାଗୁଡ଼ିକ ଉଚ୍ଚ ଆଧ୍ୟାତ୍ମପୂର୍ଣ୍ଣ ବା ମିଷ୍ଟିକ୍ ଓ ମନେହେଲା ଗଳ୍ପ ଅପେକ୍ଷା ଅଧିକ ବୈଶିଷ୍ଟ୍ୟପୂର୍ଣ୍ଣ । କବିତାଗୁଡ଼ିକ ପଢ଼ି ଯେତିକି ମୁଗ୍ଧ ହେଲି ସେତିକି ବିସ୍ମିତ ହେଲି । ଏହି ସମୟରେ (ନବବିଧାନ ସମାଜରେ) ପ୍ରମଥଲାଲ ସେନଙ୍କ ସହିତ ମୋର ପରିଚୟ ହେଲା । ସେ ଦିନେ (ତତ୍କାଳୀନ ଲଣ୍ଡନ ପ୍ରବାସୀ) ବ୍ରଜେନ୍ଦ୍ରନାଥ ଶୀଲ ମହାଶୟଙ୍କୁ ମୋ ଘରକୁ ଆଣିଲେ । ମୁଁ ରବୀନ୍ଦ୍ରନାଥଙ୍କୁ ଲଣ୍ଡନ ଆସିବାକୁ ଅନୁରୋଧ କରି ସେମାନଙ୍କୁ ପତ୍ର ଲେଖିବାକୁ ଅନୁରୋଧ କଲି । ତା'ର ପରଦିନ ଶୁଣିଲି ରବୀନ୍ଦ୍ରନାଥ ଠାକୁର ଲଣ୍ଡନ ଆସୁଛନ୍ତି । ସେହିଦିନରୁ ପ୍ରତ୍ୟେକ ଦିନ ତାଙ୍କର ଆଗମନ ପ୍ରତୀକ୍ଷାରେ ରହିଲି ।

'ରବୀନ୍ଦ୍ରନାଥ ଯେଉଁସବୁ ବଙ୍ଗଳା କବିତା ଅନୁବାଦ କରିଥିଲେ ସେ ପାଣ୍ଡୁଲିପିଟି ମୋତେ ଉପହାର ଦେଲେ । ସେହି ସନ୍ଧ୍ୟାରେ ମୁଁ କବିତାଗୁଡ଼ିକ ପଢ଼ି ଅପାର ଆନନ୍ଦ ଅନୁଭବ କଲି ।'

'ମୁଁ ଏହି ମୁକ୍ତାରାଶିର କି ଅର୍ଥ ବୁଝିବି ?—ତେଣୁ ତଦାନୀନ୍ତନ କବି-ଶ୍ରେଷ୍ଠ ୟିଟ୍ସଙ୍କୁ ଏହି ରତ୍ନର ସନ୍ଧାନ ଦେଲି ।··· କବି ୟିଟ୍ସ୍ କବିତାଗୁଡ଼ିକ ପାଠକରି ଏପରି ମୁଗ୍ଧ ହୋଇଯାଇ-ଥିଲେ ଯେ ତାଙ୍କର ପଲ୍ଲୀସ୍ଥ କବି-ନିବାସ ଗ୍ରାମ୍ଭ ରବୀନ୍ଦ୍ରନାଥଙ୍କୁ ଦେଖିବାପାଇଁ ଲଣ୍ଡନ ଚାଲିଆସିଲେ ।'

'ଦୁଇ କବିଙ୍କ ମିଳନ ଫଳରେ ପ୍ରାଚ୍ୟ ଓ ପ୍ରତୀଚ୍ୟର ମିଳନ ବୀଜ ରୋପିତ ହେଲା ।······ସେହି ଦିନରୁ କବି ୟିଟ୍ସ୍ ରବୀନ୍ଦ୍ରନାଥଙ୍କ ପ୍ରତି ଅତ୍ୟନ୍ତ ଶ୍ରଦ୍ଧାବାନ୍ ଥିଲେ ।'

ଅଳ୍ପ କିଛିଦିନ ଭିତରେ ଇଂଲଣ୍ଡର ଶ୍ରେଷ୍ଠ ସାହିତ୍ୟିକ ଓ ମନୀଷୀଗଣଙ୍କ ସହିତ ରବୀନ୍ଦ୍ରନାଥଙ୍କର ପରିଚୟ ହେଲା । ଜୁଲାଇ ୧୨ ତାରିଖରେ ଏକ ସମ୍ବର୍ଦ୍ଧନା ସଭା ଅନୁଷ୍ଠିତ ହେଲା । ଏହି

ସଭାରେ ୟିଟ୍ସ ସଭାପତିତ୍ୱ କରିଥିଲେ । ସେ କହିଥିଲେ, 'ଜଣେ ଅଟିଷ୍ଟର ଜୀବନରେ ସେହିଦିନ ସବୁଠାରୁ ବଡ଼ ଘଟଣା, ଯେଉଁଦିନ ସେ ଏପରି ଏକ ପ୍ରତିଭାନ୍ୱିତ କବିଙ୍କର ରଚନା ଆବିଷ୍କାର କରେ— ଯାହାର ଅସ୍ତିତ୍ୱ ପୂର୍ବରୁ ଜଣା ନଥିଲା । ଆଜି ରବୀନ୍ଦ୍ରନାଥ ଠାକୁରଙ୍କୁ ସମ୍ବର୍ଦ୍ଧନା ଓ ସମ୍ମାନିତ କରିବା ଭାର ମୋ ଉପରେ ପଡ଼ିଥିବାରୁ, ମୋର କବି ଜୀବନର ଏକ ମହତ୍ତ୍ୱ ଘଟଣା ବୋଲି ମନେ କରୁଛି । ତାଙ୍କ ରଚିତ ପ୍ରାୟ ଶହେଟି ଗୀତି କବିତାର ଗଦ୍ୟାନୁବାଦର ଗୋଟିଏ ପାଣ୍ଡୁଲିପି ମୁଁ ଦେଖିଛି । ଆମ୍ଭମାନଙ୍କ ସମସାମୟିକ ଅନ୍ୟ କୌଣସି ବ୍ୟକ୍ତିର ଇଂରେଜୀ ରଚନା ଏହି କବିତା ସଙ୍ଗେ ତୁଳନା କରିଯାଇ ପାରିବ ନାହିଁ ।'

ଶେଷରେ ସ୍ଥିର ହେଲା ଯେ ଗୀତାଞ୍ଜଳି ବା Song-offerings କବିତା ପୁସ୍ତକ ଖଣ୍ଡିକ ଇଣ୍ଡିଆ ସୋସାଇଟିରୁ ପ୍ରକାଶିତ ହେବ ଓ ୟିଟ୍‌ସ୍ ତା'ର ଭୂମିକା ଲେଖିବେ । ଭୂମିକାରେ ୟିଟ୍‌ସ୍ କବିଙ୍କ ସମ୍ପର୍କରେ ଯେଉଁ ତଥ୍ୟ ଲେଖିଥିଲେ, ତାହା ଡା: ଦ୍ୱିଜେନ୍ଦ୍ରନାଥ ମିତ୍ରଙ୍କ ନିକଟରୁ ସଂଗ୍ରହ କରିଥିଲେ । (ଆଶ୍ଚର୍ଯ୍ୟ ଲାଗେ ଯେ ଶେଷବୟସରେ, ୟିଟ୍‌ସ୍‌ଙ୍କର ରବୀନ୍ଦ୍ରନାଥଙ୍କ ପ୍ରତି ଏହି ମାନସିକ ଆକର୍ଷଣ ଲୋପ ପାଇଥିଲା । )

ରବୀନ୍ଦ୍ରନାଥ ଇଂଲଣ୍ଡକୁ ଭଲ ଭାବରେ ଦେଖିବାକୁ ଚାହାନ୍ତି । ତେଣୁ ଯାଇ ଗ୍ରାମାଞ୍ଚଳରେ ବାସ କଲେ । କିନ୍ତୁ ଇଂଲଣ୍ଡର ଗ୍ରାମ ବା କୃଷୀଙ୍କ ସଙ୍ଗରେ ବଙ୍ଗଳାର କୌଣସି ତୁଳନା ହୋଇ ପାରେନା— କବିଙ୍କ ଅନ୍ତରରେ ଘୋର ଦୁଃଖ । ଇଂଲଣ୍ଡର ଶିକ୍ଷାବିଧି ଦେଖିବା ପାଇଁ କେତେକ ବିଦ୍ୟାଳୟ ପରିଦର୍ଶନ କଲେ । ଯାହା ଦେଖୁଥିଲେ ବା ପଢ଼ୁଥିଲେ ତାହା ପତ୍ର-ପ୍ରବନ୍ଧ ଆକାରରେ ଲେଖି ପଠାଇ ଦେଉଥିଲେ । ସେ ଗୁଡ଼ିକ ବର୍ତ୍ତମାନ 'ପଥେର ସଞ୍ଚୟ' ଓ 'ଶିକ୍ଷା' ପୁସ୍ତକରେ ସଂଗୃହୀତ ହୋଇ ରହିଛି ।

ଇଂଲଣ୍ଡରେ ଅବସ୍ଥାନ କାଳରେ ତାଙ୍କ ସଙ୍ଗରେ ରାୟପୁରର କର୍ଣ୍ଣେଲ ନରେନ୍ଦ୍ରପ୍ରସାଦ ସିଂହଙ୍କର ସାକ୍ଷାତ ହେଲା । ତାଙ୍କ ନିକଟରୁ ଶୁଣିଲେ ଯେ ସେ ସ୍କୁଲରେ ଗୋଟିଏ ଘର ଓ କିଛି ଜମି ବିକ୍ରୀ କରିବେ । ଶୁଣିବା ସଙ୍ଗେ ସଙ୍ଗେ କବି ଆଠ ହଜାର ଟଙ୍କା ଦେଇ

ତାହା କିଣି ନେଲେ । କବି ଭାବିଥିଲେ ଯେ ରଥୀନ୍ଦ୍ରନାଥ ସେଠାରେ ରହି ଗବେଷଣାଗାର ଖୋଲି କାର୍ଯ୍ୟ କରିବେ । କିନ୍ତୁ ଶିଲାଇଦହରେ ରହିବାକୁ କବି ଭଲପାଉ ନ ଥିଲେ ।

(୭୯)

ଇଂଲଣ୍ଡରେ ଚାରିମାସ ରହିବା ପରେ ରବୀନ୍ଦ୍ରନାଥ ପୁତ୍ର ଓ ପୁତ୍ରବଧୂଙ୍କୁ ନେଇ ଆମେରିକା ଗଲେ (୧୯୧୨ ନଭେମ୍ବର ୨୮) । ସେ ଦେଶ ତାଙ୍କ ନିକଟରେ ସଂପୂର୍ଣ୍ଣ ଅଜଣା । ନିଉୟର୍କ ମାଶୁଲଘରେ ଦୁଇଘଣ୍ଟା ଅଟକି ରହିବାର ଅଭିନବ ଅଭିଜ୍ଞତା ହେଲା—ସେ କି ଦୁର୍ଯୋଗ ।

ନିଉୟର୍କରୁ ସେମାନେ ସିଧା ଇଲିନୟ ଷ୍ଟେଟରେ ଅର୍ବାନା ସହରକୁ ଗଲେ । ସେଠାରେ ରଥୀନ୍ଦ୍ରନାଥ ଅଧ୍ୟୟନ କରୁଥିଲେ ଓ ସେତେବେଳକୁ ଶାନ୍ତିନିକେତନର ଛାତ୍ର ବଙ୍କିମଚନ୍ଦ୍ର ରାୟ ଓ ସୋମେନ୍ଦ୍ରଚନ୍ଦ୍ର ଦେବବର୍ମା ଛାତ୍ର – ସମସ୍ତେ ପରିଚିତ । ତା ଛଡ଼ା ଜଣେ ଦୁଇଜଣ ଅଧ୍ୟାପକଙ୍କ ସହିତ ପତ୍ର ଜରିଆରେ ପରିଚୟ ଥିଲା । ସେଥିପାଇଁ ଅର୍ବାନା ଚାଲି ଆସିଲେ ।

ଅର୍ବାନା କ୍ଷୁଦ୍ର ସହର । ଜନସଂଖ୍ୟା ଆଠ ଦଶ ହଜାରରୁ ବେଶୀ ନୁହେଁ । କୌଣସିଠାରେ ଗୋଳମାଳ ନାହିଁ । ଖୋଲା ଆକାଶ, ପ୍ରଚୁର ଆଲୋକ, ପବନ, ଅବକାଶ ଅବ୍ୟାହତ – କବି ଆମେରିକାରେ ଅଛନ୍ତି ବୋଲି ଭୁଲିଯାନ୍ତି । ଏଠାରେ ଦୀର୍ଘକାଳ ରହିବା ପାଇଁ କବି ଇଚ୍ଛାକଲେ । ରଥୀନ୍ଦ୍ରନାଥ ବିଶ୍ୱବିଦ୍ୟାଳୟରେ ଜୀବତତ୍ତ୍ୱ ସଂପର୍କରେ ଗବେଷଣା କାର୍ଯ୍ୟରେ ନିଯୁକ୍ତ ହେଲେ । ପ୍ରତିମା ଦେବୀଙ୍କୁ ଘରକାମ ଦେଖିବାକୁ ପଡ଼େ—ଆମେରିକାରେ ଏ ଦେଶ ପରି ଚାକର ଶସ୍ତା ନୁହନ୍ତି, ସୁବିଧାରେ ବି ମିଳନ୍ତି ନାହିଁ । କେବଳ ଶ୍ରମ ସହାୟକ ଯନ୍ତ୍ରପାତି ଓ ଟିଣ ଖାଦ୍ୟଦ୍ରବ୍ୟ ସହଜଲଭ୍ୟ ହୋଇ ଥିବାରୁ ଗୃହସ୍ଥର ଅନେକ ଦୁଃଖ ଲାଘବ ହୋଇଥାଏ ।

ଆମେରିକାର ଲୋକମାନେ ବକ୍ତୃତା ବିଳାସୀ । ସେମାନେ ବକ୍ତୃତା ଦେବାକୁ ଓ ଶୁଣିବାକୁ ଭଲପାନ୍ତି । ଆର୍ବାନାର ଏକେଶ୍ୱରବାଦୀ (Unitarian) ଖ୍ରୀଷ୍ଟୀୟ ଚର୍ଚ୍ଚର ପାଦ୍ରୀ ମିଷ୍ଟର ଭେଇଲ (Vail) ଇଉନିଟି କ୍ଲବରେ ବକ୍ତୃତା ଦେବା ପାଇଁ କବିଙ୍କୁ ଅନୁରୋଧ କଲେ । ସେଠାରେ ପ୍ରତି ରବିବାର ଦିନ ବିଭିନ୍ନ ଧର୍ମାବଲମ୍ବୀଙ୍କର ଗୁରୁମାନଙ୍କ ସଂପର୍କରେ ବକ୍ତୃତା ଓ ଆଲୋଚନା ହୁଏ । ଇଉନିଟେରିୟାନ୍‌ମାନେ ଜାଣିଥିଲେ ଯେ ରବୀନ୍ଦ୍ରନାଥ ବ୍ରାହ୍ମ ସମାଜର ଲୋକ । ଖ୍ରୀଷ୍ଟିୟାନ୍‌ମାନଙ୍କ ମଧ୍ୟରେ ଇଉନିଟେରିୟାନ୍‌ମାନେ ହିନ୍ଦୁମାନଙ୍କ ମଧ୍ୟରେ ବ୍ରାହ୍ମମାନଙ୍କ ପରି ।

କବିଙ୍କ ନିକଟରେ କେତୋଟି ପ୍ରବନ୍ଧର ଅନୁବାଦ ଥିଲା । ତାହାକୁ ସଂଶୋଧନ କରି ସଭାରେ ଶୁଣାଇଥିଲେ । ପାଶ୍ଚାତ୍ୟ ଦେଶରେ ଇଂରାଜୀରେ ଭାଷଣ ଦେବା କବିଙ୍କର ପ୍ରଥମ । ସେ ଭାବି ନଥିଲେ ଯେ ଏ ଗୁଡ଼ିକ ଲୋକଙ୍କୁ ଭଲ ଲାଗିବ । ଆଶ୍ଚର୍ଯ୍ୟର କଥା ଯେ ଲୋକେ ଖୁବ୍ ଆଗ୍ରହର ସହିତ ଶୁଣିଲେ ।

୧୯୧୩ ମସୀହା ଜାନୁୟାରୀ ମାସ ଶେଷ ଆଡ଼କୁ ଆର୍ବାନାରୁ ଶିକାଗୋ ଆସିଲେ । ସେଠାରେ ମଧ୍ୟ କେତେକ ପ୍ରବନ୍ଧ ପାଠ କରିବାକୁ ପଡ଼ିଥିଲା । କିନ୍ତୁ ସେଠାରେ ବେଶୀଦିନ ରହି ପାରିଲେ ନାହିଁ । ନିୟୁୟର୍କ ନିକଟସ୍ଥ ରଚେଷ୍ଟାର ସହରକୁ ଚାଲି ଆସିଲେ । ସେଠାରେ ନାନା ଧର୍ମର ଉଦାରମନା ଲୋକଙ୍କର ସମ୍ମିଳନୀ ବସୁ-ଥାଏ । ନାନା ଦେଶରୁ ବହୁ ଖ୍ୟାତନାମା ଦାର୍ଶନିକ ଓ ତତ୍ତ୍ୱବିଦ୍ ଆସିଥାନ୍ତି—ଏମାନଙ୍କ ମଧ୍ୟରେ ଥିଲେ ଜର୍ମାନ ଦେଶ ବିଶ୍ୱ-ବିଦ୍ୟାଳୟର ଖ୍ୟାତନାମା ଅଧ୍ୟାପକ ରୁଡୋଲ୍‌ଫ ଅୟୁକେନ୍ । ଅୟୁକେନ୍‌ଙ୍କ ସହିତ ଅଜିତକୁମାରଙ୍କର ପରିଚୟ ଥିଲା ଓ ତାଙ୍କ ନିକଟରୁ ରବୀନ୍ଦ୍ରନାଥଙ୍କ ସଂପର୍କରେ ଅୟୁକେନ୍ ଅନେକ ଖବର ସଂଗ୍ରହ କରିଥିଲେ ।

ଜାନୁୟାରୀ ୩୦ ତାରିଖରେ ରବୀନ୍ଦ୍ରନାଥ ଏହି ସମ୍ମିଳନୀରେ 'Race conflict' ବା 'ଜାତିସଂଘ' ସଂପର୍କରେ ଏକ ଭାଷଣ ଦେଲେ । ଆମେରିକାର ଖ୍ୟାତ ପତ୍ରିକା 'ଖ୍ରୀଷ୍ଟିୟାନ ରେଜିଷ୍ଟାର' ମତବ୍ୟକ୍ତ କରିଥିଲା ଯେ ରବୀନ୍ଦ୍ରନାଥଙ୍କର ବକ୍ତୃତା

ମହାସଭାର ସମସ୍ତ ଆଲୋଚନା ମଧ୍ୟରେ ଉଚ୍ଚସ୍ତରର ଥିଲା । ଏମାନଙ୍କ ମତରେ ସଭା ମଣ୍ଡପରେ ରବୀନ୍ଦ୍ରନାଥଙ୍କ ଅପେକ୍ଷା ଅଧିକ ସାହିତ୍ୟ ଖ୍ୟାତି ସମ୍ପନ୍ନ ବା ଅଧିକ ଗୂଢ଼ ତଥ୍ୟପୂର୍ଣ୍ଣ କଥା କହିବାରେ କେହି ସକ୍ଷମ ନଥିଲେ ।

ରଚେଷ୍ଟାରରୁ କବି ବୋଷ୍ଟନ ଗଲେ—ନିକଟରେ କେମ୍ବ୍ରିଜ ସହରରେ ହାର୍ଭାର୍ଡ ବିଶ୍ୱବିଦ୍ୟାଳୟ । ସେଠାରେ କେତେକ ବକ୍ତୃତା ଦେବାକୁ ନିମନ୍ତ୍ରିତ ହେଲେ । ତା ପରେ ନିଉୟର୍କ ବୁଲି ଚିକାଗୋ ହୋଇ ଅର୍ବାନ ଫେରି ଆସିଲେ । ଘୁରି ଘୁରି ଆମେରିକାରେ ଛ ମାସ ବିତିଗଲା ! ବିଲାତ ଫେରିବା ପାଇଁ କବିଙ୍କର ମନ ବ୍ୟାକୁଳ ହେଲା । ରଥୀନ୍ଦ୍ରନାଥଙ୍କର ଜୀବନତତ୍ତ୍ୱ ଗବେଷଣା କାର୍ଯ୍ୟ ବନ୍ଦ ହେଲା !—ଫେରିବା ସ୍ଥିର ହେଲା ।

କବିଙ୍କର କଳ୍ପନା ବିଳାସୀ ମନରେ ଶାନ୍ତିନିକେତନ ସଂପର୍କରେ ନାନା କଳ୍ପନା ଜଳ୍ପନା ଗୁଞ୍ଜୁଥାଏ । ଭାବୁଥାନ୍ତି, ସେଠାରେ ଟେକ୍‌ନିକାଲ ବିଭାଗ ଖୋଲିବେ, ଗବେଷଣାଗାର ସ୍ଥାପିତ ହେବ, ରଥୀନ୍ଦ୍ରନାଥ ଗବେଷଣା କରିବେ; ଭଲ ଡାକ୍ତର-ଖାନା ଦରକାର ଇତ୍ୟାଦି । ଭବିଷ୍ୟତରେ ଶାନ୍ତିନିକେତନରେ ଯେ ଏକ ବିଶ୍ୱବିଦ୍ୟାଳୟ ଗଢ଼ି ଉଠିବ ସେ ସ୍ୱପ୍ନ ବି ଦେଖୁଥାନ୍ତି । ପ୍ରାଚୀନ ଭାରତର କଷାୟବସ୍ତ୍ର ପରିହିତ ବ୍ରହ୍ମଚର୍ଯ୍ୟ ଆଶ୍ରମର ସ୍ୱପ୍ନ ଭାଙ୍ଗି ଯାଉଛି । ପ୍ରାଚୀନ ଭାରତର ଅବାସ୍ତବତାରୁ କବିଙ୍କର ମନ କ୍ରମଶଃ ମୁକ୍ତ ପାଇ ଆଧୁନିକ ହୋଇଛି—ୟୁରୋପ ଓ ଆମେରିକା ଭ୍ରମଣର ପ୍ରତ୍ୟକ୍ଷ ଫଳ ।

ଆମେରିକାରୁ ବହୁ ଚିଠି ଲେଖୁଥିଲେ ଓ ଶିକ୍ଷା ସମସ୍ୟା ଓ ଶିକ୍ଷା ପ୍ରଣାଳୀ ସଂପର୍କରେ ବହୁ ବହି ପଠାଇଥିଲେ—ବେଶୀ ବିଜ୍ଞାନ ବହି । କବିଙ୍କର ଇଚ୍ଛାଥିଲା ଯେ ବିଜ୍ଞାନ ସଂପର୍କୀୟ ବହିଗୁଡ଼ିକ ପଢ଼ି ଛାତ୍ରମାନଙ୍କୁ କେହି ବକ୍ତୃତା ଦେବା ଦରକାର । ମୂଳରୁ ଛାତ୍ରମାନଙ୍କୁ ବିଜ୍ଞାନ ଶିକ୍ଷାଦେବାରେ ଝୁଙ୍କ୍ ଥିଲା । ଶାନ୍ତିନିକେତନ ବ୍ରହ୍ମଚର୍ଯ୍ୟାଶ୍ରମ ଛାତ୍ରମାନଙ୍କ ପାଇଁ ଯେତେବେଳେ ଲ୍ୟାବରେଟେରି ସ୍ଥାପିତ ହୋଇ-ଥିଲା, ସେତେବେଳେ ଭାରତର କୌଣସି ଦେଶୀୟ ସ୍କୁଲରେ ବିଜ୍ଞାନ ପଢ଼ାଇବା ପାଇଁ ବିଜ୍ଞାନଗାର ନଥିଲା ।

(୨୦)

ଆମେରିକାରେ ଥିବା ସମୟରେ ଖବର ପାଇଲେ ଯେ ଇଂରେଜୀ 'ଗୀତାଞ୍ଜଳି' ଇଣ୍ଡିଆ ସୋସାଇଟି ପକ୍ଷରୁ ପ୍ରକାଶିତ ହୋଇଛି ଓ ସମାଦର ଲାଭ କରିଛି ।

ବିଲାତ ଫେରି ଦେଖିଲେ ଯେ ସମ୍ବାଦ ପତ୍ରରେ 'ଗୀତାଞ୍ଜଳି'ର ଉଚ୍ଛ୍ୱସିତ ପ୍ରଶଂଶାପୂର୍ଣ୍ଣ ସମାଲୋଚନା । ଖଣ୍ଡିଏ ପତ୍ରରେ କବି କହିଥିଲେ, 'ଚ୍ୟରିଦିଗରେ ମୋ ନିଜ ନାମରେ ଯେଉଁ ତରଙ୍ଗ ପ୍ରବାହିତ ତାହା ମୋତେ ଭଲ ଲାଗୁନାହିଁ । ଏ ସମ୍ପର୍କରେ ମୋ ମନରେ ଦ୍ୱନ୍ଦ୍ୱ ଚାଲିଛି ।' କବିଙ୍କର ଏ ଦ୍ୱନ୍ଦ୍ୱ ଚିରନ୍ତନ—ସମ୍ମାନ ବୋଝରେ ଚିତ୍ତ ପୀଡ଼ିତ ହୁଏ ଓ ଉପେକ୍ଷା ପାଇଲେ ମନ ମରିଯାଏ । ଏ ସବୁର ଊର୍ଦ୍ଧ୍ୱକୁ ଉଠିବା ପାଇଁ ସଂଗ୍ରାମ କରନ୍ତି । ସଂଗ୍ରାମରେ ଜୟୀ ହୁଅନ୍ତି—ତା ନହେଲେ ନିର୍ବିକାର ଭାବରେ ସାହିତ୍ୟ ସୃଷ୍ଟି କରି ପାରି ନଥାନ୍ତେ ।

ଇଂଲଣ୍ଡ ଫେରି କ୍ୟାକ୍ସଟନ୍ ହଲରେ ଅନେକ ଗୁଡ଼ିଏ ବକ୍ତୃତା ଦେଲେ । ତାହା ଇଂରେଜି 'ସାଧନା' ପୁସ୍ତକରେ ମୁଦ୍ରିତ ହୋଇଛି । ପ୍ରକୃତ ପକ୍ଷେ ସେ ଗୁଡ଼ିକ 'ଧର୍ମ' ଓ 'ଶାନ୍ତିନିକେତନ' ଉପଦେଶ-ମାଳା ମୂଳକଥାର ଭାବ ବ୍ୟାଖ୍ୟାନ—କେତୋଟି ପ୍ରାୟ ଅନୁବାଦ । ରବୀନ୍ଦ୍ରନାଥଙ୍କର ଧର୍ମ ଉପଦେଶଗୁଡ଼ିକ ଉପନିଷଦର ଋଷିମାନଙ୍କର ବାଣୀର ବ୍ୟାଖାନ ହେଲେ ମଧ୍ୟ କବିଙ୍କର ନିଜସ୍ୱ ଭାବନା ଓ ଦୃଷ୍ଟିଭଙ୍ଗୀ ସେମାନଂକ ମଧ୍ୟରେ ଯଥେଷ୍ଟ ଥିଲା । ସେ ଗୁଡ଼ିକ କେବଳ ଉପନିଷଦର ଟୀକା ନୁହେଁ । 'ସାଧନା' ବକ୍ତୃତାରେ; କବିଂକ ଧର୍ମ ସାଧନାରେ, ଉପନିଷଦର ବ୍ରହ୍ମବାଦ ଯେଉଁ ରୂପ ପାଇଛି, ତାହାହିଁ କୁହାଯାଇଛି ।

କବି ବିଲାତରେ ଥିବା ସମୟରେ ରାଜା ଓ ଡାକଘର ନାଟକ ଦୁଇଟି ଅନୁବାଦିତ ହୋଇଥିଲା ଓ ସେଠାରେ ଅଭିନୀତ ମଧ୍ୟ ହୋଇଥିଲା । ଏହି ନାଟକ ଦୁଇଟି ୟୁରୋପର ଶିକ୍ଷିତମାନଙ୍କ ନିକଟରେ ଖୁବ୍ ଆଦୃତ ହୋଇଥିଲା ଓ ୟୁରୋପର ବିଭିନ୍ନ ଦେଶରେ ଏହା ଅନେକ ଥର ଅଭିନୀତ ହୋଇଥିଲା ।

ସାହିତ୍ୟିକ ରବୀନ୍ଦ୍ରନାଥଙ୍କ କଥା କହିଲାବେଳେ ମଣିଷ ରବୀନ୍ଦ୍ରନାଥଙ୍କୁ ଭୁଲି ଯିବାର ନୁହେଁ । ସେ ଅର୍ଶରୋଗରେ ଯେଉଁ ଭୀଷଣ କଷ୍ଟ ପାଉଥିଲେ ତାହା ଅସମ୍ଭବ ଧୈର୍ଯ୍ୟ ସହକାରେ ସହ୍ୟ କରୁଥିଲେ । ୧୯ ୩ ସାଲ ଜୁନ୍‌ମାସରେ ଅସ୍ତ୍ରୋପଚାର କରାଇଲେ । ଡାକ୍ତରଖାନାରେ ପ୍ରାୟ ମାସେ ରହିବାକୁ ପଡ଼ିଥିଲା ।

ଡାକ୍ତରଖାନାରୁ ଛୁଟି ପାଇ ଲଣ୍ଡନସ୍ଥ ଚେଇନେ—ୱ୍ୟାଟସ୍କରେ ବସା ଭଡ଼ା ନେଇ କିଛିଦିନ ରହିଲେ । ବହୁତ ଦିନ ପରେ କାବ୍ୟଲକ୍ଷ୍ମୀଙ୍କ ସହିତ ରବୀନ୍ଦ୍ରନାଥଙ୍କର ସାକ୍ଷାତ ହେଲା । ଆମେରିକାରେ ଥିବା ସମୟରେ ଅଳ୍ପ କେତୋଟି କବିତା ଲେଖିଥିଲେ । କିନ୍ତୁ ସେ ଦେଶ କବିଙ୍କର କବିତା ରଚନା ପ୍ରତି ବୋଧହୁଏ ଅନୁକୂଳ ନଥିଲା । ଲଣ୍ଡନର ଏହି ଭଡ଼ାଘରେ ଗୀତି-ମାଲ୍ୟର କେତେକ ସୁପରିଚିତ ଗୀତ ଲେଖିଥିଲେ । ଭାରତକୁ ଫେରିବା ପୂର୍ବରୁ ରୋଦେନଷ୍ଟାଇନ୍‌ଙ୍କ ଘରେ କିଛିଦିନ ରହିଥିଲେ ।

୧୯୧୩ ମସିହା ସେପ୍‌ଟେମ୍ବର ୪ ତାରିଖରେ କବି କାଳୀମୋହନ ଘୋଷଙ୍କୁ ସଙ୍ଗରେ ନେଇ ଲିଭରପୁରରୁ 'ସିଟି ଅଫ ଲାହୋର' ଜାହାଜ ଚଢ଼ିଲେ । ଏହି ଜାହାଜ ଜିବ୍ରାଲ୍‌ଟର ଦେଇ ଆସେ । ରଥୀନ୍ଦ୍ରନାଥ ଓ ପ୍ରତିମାଦେବୀ ୟୁରୋପ ଭ୍ରମଣରେ ଯାଇଥିଲେ । ନେପଲ୍‌ସଠୁ ଏହି ଜାହାଜ ଚଢ଼ିଲେ । ଫେରିବା ବେଳେ କବି ଜାହାଜରେ ବସି ଅନେକ ଗୁଡ଼ାଏ କବିତା ଲେଖିଥିଲେ । ପୁରା ଏକ ମାସ ପରେ ଅକ୍‌ଟୋବର ୪ ତାରିଖରେ ବମ୍ବେରେ ପହଞ୍ଚିଲେ । ଏହି ବିଦେଶ ଯାତ୍ରା ଥିଲା ପ୍ରାୟ ଏକବର୍ଷ ଚାରିମାସରୁ ବେଶୀ ।

( ୭୧ )

ଏହି ଷୋଳମାସ ମଧ୍ୟରେ ଦେଶରେ ଅନେକ ପରିବର୍ତ୍ତନ ହୋଇଛି—ବଙ୍ଗଚ୍ଛେଦ ରଦ ହୋଇଛି (୧୯୧୨ ଏପ୍ରିଲ),

ବିହାର-ଓଡ଼ିଶା ପୃଥକ୍ ପ୍ରଦେଶ ହୋଇଛି, ଆସାମ ପୁନର୍ବାର ପୃଥକ୍ ହୋଇଛି, ପୂର୍ବ ଓ ପଶ୍ଚିମ ବଙ୍ଗ ମିଳିତ ହୋଇଛି, ଦିଲ୍ଲୀକୁ ରାଜଧାନୀ ସ୍ଥାନାନ୍ତରିତ ହୋଇଛି । ବିପ୍ଳବୀମାନଙ୍କର କାର୍ଯ୍ୟ ପୂର୍ବପରି ଚାଲିଛି ।

ବିଲାତରେ ଥିବା ସମୟରେ ସି. ଏଫ୍, ଏଣ୍ଡ୍ରୁଜ ନାମକ ଜଣେ ପାଦ୍ରୀ ଅଧ୍ୟାପକଙ୍କ ସହିତ କବିଙ୍କର ଦେଖା ହୋଇଥିଲା । ସେ ଥିଲେ ଦିଲ୍ଲୀ ସେଣ୍ଟ ଷ୍ଟିଫେନ୍ସ କଲେଜ୍‌ର ଅଧ୍ୟାପକ । କବି ବିଲାତରେ ଥିବା ସମୟରେ ଏଣ୍ଡ୍ରୁଜ ଓ ତାଙ୍କର ବନ୍ଧୁ ପିୟର୍ସନ୍ ଶାନ୍ତିନିକେତନ ବୁଲି ଆସିଥିଲେ । ସେମାନେ ଏଠାରେ ସ୍ଥାୟୀ ଭାବରେ ରହିବା ପାଇଁ ଇଚ୍ଛା କରିଥିଲେ । କବିଙ୍କର ବ୍ୟକ୍ତିତ୍ୱ, କାବ୍ୟ-ପ୍ରତିଭା ଓ ବିଶେଷତଃ ଦରଦୀ ମନ ସେମାନଙ୍କୁ ମୁଗ୍ଧ କରିଥିଲା ।

କିନ୍ତୁ କବିଙ୍କ ଜୀବନ କେବଳ ପ୍ରଶଂସା ଓ ସ୍ତୁତିଗାନରେ ପୂର୍ଣ୍ଣ ନୁହେଁ । ତାଂକର ଅନୁପସ୍ଥିତି ସମୟରେ ବଂଗଳାରେ କେତେକ ସାମୟିକ ପତ୍ରିକା ରବୀନ୍ଦ୍ରନାଥଂକର ସାହିତ୍ୟ ବସ୍ତୁତନ୍ତ୍ରହୀନ ବୋଲି ପ୍ରମାଣ କରିବାକୁ ଚେଷ୍ଟା କରିଥିଲେ । ଏହାଛଡ଼ା ଦ୍ୱିଜେନ୍ଦ୍ରଲାଲ ରାୟ ଏକ ବ୍ୟଙ୍ଗ ନାଟକ ଅଭିନୟ କରାଇ କବିଙ୍କୁ ହାସ୍ୟାସ୍ପଦ କରିବାକୁ ଚେଷ୍ଟା କରିଥିଲେ । ଅବଶ୍ୟ ବଙ୍ଗାଳୀ ଦର୍ଶକଗଣ ତାହା ସହ୍ୟ କରି ନ ଥିଲେ । ଏ ପ୍ରକାର ଛୋଟ ବଡ଼ ଘଟଣା ଅନେକ ଘଟି ଯାଇଥିଲା । ବିଲାତରୁ କବି ଏକ ପତ୍ରରେ ଲେଖିଥିଲେ, 'ଦେଶକୁ ଫେରିଯିବା ପରେ ପୁଣିଥରେ ଅନେକ ଛୋଟକଥା ଶୁଣିବାକୁ ପଡ଼ିବ, ବିରୋଧ, ବିଦ୍ୱେଷ, ନିନ୍ଦା, ଗ୍ଳାନି କିନ୍ତୁ ଅପ୍ରିୟତାକୁ ଆଡ଼େଇ ଦେଇ ଯାଇ ହେବନି, ତାହାକୁ ଅତିକ୍ରମ କରିପାରିବା ହେଉଛି ପ୍ରକୃଷ୍ଟ ପନ୍ଥା । ଯାହା ଭଲ ଲାଗେନା ତାହା ଆଡ଼େଇ ଦେଇ ଯିବ ନାହିଁ ।'

କଲିକତାରେ ଆସି ଦେଖିଲେ ଯେ ଯାହା ଅନୁମାନ କରିଥିଲେ, ତାହା ଅକ୍ଷରେ ଅକ୍ଷରେ ସତ୍ୟ । ପାରିବାରିକ ଅଶାନ୍ତି କଥା ଶୁଣି ଶୁଣି ମନ ତିକ୍ତ ହୋଇ ଉଠିଲା । ଦୁଇଦିନ ପରେ ଶାନ୍ତିନିକେତନ ଚାଲିଗଲେ । ସେଠାରୁ ଲେଖିଲେ, 'ଏଠାରେ ଏତେ ଆରାମ ପାଉଛି ଯେ ତାହା ବ୍ୟକ୍ତ କରି ପାରୁନାହିଁ ।'

କବି ଶାନ୍ତିନିକେତନରେ ଥାନ୍ତି । ପୂଜାଛୁଟି ପରେ ବିଦ୍ୟାଳୟ ଖୋଲିଲା । ୧୯୧୩ ନଭେମ୍ବର ୧୫ ତାରିଖ ସନ୍ଧ୍ୟାରେ ଖବର ମିଳିଲା ଯେ ରବୀନ୍ଦ୍ରନାଥ ସାହିତ୍ୟରେ ନୋବେଲ୍ ପ୍ରାଇଜ ପାଇଛନ୍ତି ।

କେତେକବର୍ଷ ପୂର୍ବରୁ ସୁଇଡେ଼ନ୍‌ର ବିଖ୍ୟାତ ଶିଳ୍ପପତି ଆଲଫ୍ରେଡ଼ ନୋବେଲ ସୁଇଡ଼ିସ ଏକାଡେ଼ମୀ ହାତରେ କିଛି ଟଙ୍କା ଦେଇଥିଲେ ଓ ସେହି ଟଙ୍କାର ସୁଧରୁ ସାହିତ୍ୟ, ବିଜ୍ଞାନ ପ୍ରଭୃତି ପାଞ୍ଚଟି ବିଷୟରେ ଯୋଗ୍ୟ ବ୍ୟକ୍ତିମାନଙ୍କୁ ପୁରସ୍କାର ଦେବାର ବ୍ୟବସ୍ଥା କରିଥିଲେ । ୧୯୦୧ ମସିହାରୁ ପ୍ରତିବର୍ଷ ପାଞ୍ଚୋଟି ବିଷୟରେ ପୃଥିବୀର ଶ୍ରେଷ୍ଠ ବ୍ୟକ୍ତିଙ୍କୁ ପୁରସ୍କାର ଦିଆହେଉଛି । ରବୀନ୍ଦ୍ରନାଥଙ୍କ ପୂର୍ବରୁ ପ୍ରାଚ୍ୟ ଦେଶରୁ କୌଣସି ଲୋକ କୌଣସି ବିଷୟରେ ପୁରସ୍କାର ପାଇ ନଥିଲେ । ଏହି ପୁରସ୍କାର ଟଙ୍କା ଥିଲା ପ୍ରାୟ ଏକଲକ୍ଷ କୋଡ଼ିଏ ହଜାର ।

ସମସ୍ତ ଦେଶ କବିଙ୍କର ଏହି ସମ୍ମାନରେ ଗୌରବାନ୍ୱିତ ହୋଇଥିଲା । କଲିକତାର ଶିକ୍ଷିତ ଲୋକମାନେ କବିଙ୍କୁ ସମ୍ବର୍ଦ୍ଧନା ଜଣାଇବା ପାଇଁ ଶାନ୍ତିନିକେତନ ଆସିଲେ । ପ୍ରାୟ ପାଞ୍ଚଶହ ନରନାରୀ ସ୍ପେଶାଲ ଟ୍ରେନ୍ ଯୋଗେ ବୋଲପୁରରେ ପହଞ୍ଚିଲେ (୧୯୧୩ ନଭେମ୍ବର ୧୩ତାରିଖ) । ଏମାନେ କବିଙ୍କର ନୋବେଲ୍ ପ୍ରାଇଜ ସମ୍ବାଦ ପାଇଁ ସମ୍ବର୍ଦ୍ଧନାର ବ୍ୟବସ୍ଥା କରୁ ନଥିଲେ । କଲିକତା ଟାଉନହଲ୍‌ରେ କବିଙ୍କୁ ସମ୍ମାନ ଦେଖାଇବାର ଆୟୋଜନ କରିବା ବେଳେ ନୋବେଲ୍ ପ୍ରାଇଜ ପ୍ରାପ୍ତି ସମ୍ବାଦ ପହଞ୍ଚିଥିଲା । ତା ପରେ କଲିକତାର ଉତ୍ସାହୀ ଭଦ୍ରବ୍ୟକ୍ତି ସ୍ଥିରକଲେ ଯେ, ଶାନ୍ତିନିକେତନରେ ହିଁ କବିଙ୍କୁ ସମ୍ବର୍ଦ୍ଧନା ଜଣାଇବା ଉଚିତ ।

ଶାନ୍ତିନିକେତନ ଆମ୍ରକୁଞ୍ଜରେ ଉତ୍ସବ ଅନୁଷ୍ଠିତ ହେଲା । ନାନା ପ୍ରତିଷ୍ଠାନ ଓ ବିଭିନ୍ନ ସମ୍ପ୍ରଦାୟ କବିଙ୍କୁ ମାନପତ୍ର ଦେଲେ । ସେହିଦିନ ଶ୍ରଦ୍ଧା ନିବେଦନ ମଧ୍ୟରେ ବଙ୍ଗାଳୀଙ୍କର କୌଣସି କପଟତା ନଥିଲା । କିନ୍ତୁ କବିଙ୍କ ମନରେ ଯେଉଁ କ୍ଷୋଭ ଥିଲା, ତାହା ହଠାତ୍ ପ୍ରକାଶ କଲେ । ଶୁଣାଯାଏ ଯେ ରବୀନ୍ଦ୍ରନାଥ ଅତ୍ୟନ୍ତ ଭକ୍ତି ଶତି ଖଣ୍ଡିଏ ସେହିଦିନ ପାଇଥିଲେ ଏବଂ ସଭାରେ

ଉପସ୍ଥିତ ଲୋକମାନଙ୍କ ମଧ୍ୟରେ ତାଙ୍କୁ ବରାବର ଅନାଦର କରିଥିବା ଲୋକଙ୍କୁ ଦେଖିବାକୁ ପାଇଲେ । ତେଣୁ କବି ସମ୍ବର୍ଦ୍ଧନା ଆୟୋଜନକୁ କୃତ୍ରିମ ବୋଲି ମନେକଲେ । ସେଥିପାଇଁ ଭାଷଣରେ ଏପରି କଡ଼ା କଥା କହିଲେ ଯେ, କବିଙ୍କର ଭକ୍ତ ଓ ଅଭକ୍ତ ସମସ୍ତେ କ୍ଷୁଣ୍ଣ ଓ ଅସନ୍ତୁଷ୍ଟ ହୋଇ ଫେରିଗଲେ । ତାଙ୍କର ଏହି ଭାଷଣ ସମ୍ପର୍କରେ ସମସାମୟିକ କାଗଜରେ ବହୁତ ଦିନ ପର୍ଯ୍ୟନ୍ତ ଆଲୋଚନା ଚାଲିଥିଲା । କବି ଯାହା କହିଥିଲେ ତାହା ସମ୍ପୂର୍ଣ୍ଣ ମିଥ୍ୟା ନୁହେଁ । କାରଣ ନୋବେଲ୍ ପ୍ରାଇଜ ପାଇବା ପରେ ତାଙ୍କର ବନ୍ଧୁ ପ୍ରଚୁର ବଢ଼ି ହୋଇଥିଲା ।

ଏହି ମାର୍ଗଶୀର ସପ୍ତମୀ ଦିନ ତାଙ୍କର ସ୍ତ୍ରୀ ଓ କନିଷ୍ଠ ପୁତ୍ର ଶମୀନ୍ଦ୍ରଙ୍କର ମୃତ୍ୟୁ ହୋଇଥିଲା । ମନେହୁଏ, ସେମାନଙ୍କର କଥା ସ୍ମରଣ କରି ଦେଶବ୍ୟାପୀ ଏହି ଗୌରବ ଦିନରେ କବିଙ୍କର ମନ ଭାରାକ୍ରାନ୍ତ ଥିଲା ।

କବି ମଧ୍ୟ ମନୁଷ୍ୟ । ଯେତେ ମହତ ଓ ଶାନ୍ତ ହେଲେ ବି ତାଙ୍କର ମନ ମଣିଷର ମନ । ଏଠାରେ ଗୋଟିଏ ଶ୍ରେଷ୍ଠ ଘଟଣା ବିଶେଷ ଉଲ୍ଲେଖଯୋଗ୍ୟ । ଏହି ସମୟରେ (୧୯୧୨-୧୩) ଦକ୍ଷିଣ ଆଫ୍ରିକାରେ ପ୍ରବାସୀ ଭାରତୀୟମାନଙ୍କ ଉପରେ ଅନାଚାର, ଅବିଚାର ବନ୍ଦକରିବା ନିମନ୍ତେ ଉଦ୍ୟାନରେ ଗୁଜରାଟୀ ବ୍ୟାରିଷ୍ଟାର ମୋହନଦାସ କରମଚାନ୍ଦ ଗାନ୍ଧୀ ସତ୍ୟାଗ୍ରହ ଆନ୍ଦୋଳନ ଚାଳନା କରୁଥାନ୍ତି । ସେଠାର ଅବସ୍ଥା ସମ୍ବନ୍ଧରେ ଜାଣିବାପାଇଁ ଗଲେ ରେଭେରଣ୍ଡ ସି.ଏଫ. ଏଣ୍ଡ୍ରୁଜ ଓ ଅଧ୍ୟାପକ ପିୟର୍ସନ—ବେସରକାରୀ ଭାବରେ । ସେତେବେଳକୁ ଏମାନେ ପୁରାପୁରି ଭାବରେ ଆଶ୍ରମ କାର୍ଯ୍ୟରେ ଯୋଗ ଦେଇ ନଥାନ୍ତି—ଯିବାଆସିବା କରୁଥାନ୍ତି, ଆଶ୍ରମ ଛାଡ଼ିବାକୁ ମନ ନାହିଁ । ସେମାନଙ୍କ ନିମନ୍ତେ ବିଦାୟ ସଭା ହେଲା । କବି ଏଣ୍ଡ୍ରୁଜଙ୍କୁ ଏକ ପତ୍ରରେ ଲେଖିଲେ, 'ଆପଣ ଶ୍ରୀଯୁକ୍ତ ଗାନ୍ଧୀ ଓ ଅନ୍ୟ ସମସ୍ତଙ୍କ ସହିତ ଆମ୍ଭମାନଙ୍କ ପକ୍ଷରୁ ଆଫ୍ରିକାରେ ଲଢ଼ୁଛନ୍ତି ।' ବୋଧହୁଏ ଗାନ୍ଧୀଜୀଙ୍କ ସମ୍ପର୍କରେ ରବୀନ୍ଦ୍ରନାଥଙ୍କର ଏହି ହେଉଛି ପ୍ରଥମ ଉଲ୍ଲେଖ ।

(୭୨)

ଏଥର ଶାନ୍ତିନିକେତନ ପୌଷ ସାତ ଉତ୍ସବରେ କବିଙ୍କ ଭାଷଣରେ ନୂତନ ଭାବ ଦେଖିବାକୁ ମିଳିଲା । ସେ କହିଲେ, 'ଏହା ଆଶ୍ରମ, ଏଠାରେ କୌଣସି ଦଳ ନାହିଁ ।' ବଲିତସିବା ପୂର୍ବରୁ ଆଦିବ୍ରାହ୍ମ ସମାଜ ସମ୍ପର୍କରେ ଯେଉଁ ମତାମତ ବ୍ୟକ୍ତ କରିଥିଲେ, ସେଥିରେ ଯେପରି କିଛି ପରିବର୍ତ୍ତନ ଦେଖାଦେଇଛି । କହିଲେ, 'ଧର୍ମକୁ ଏପରି ସ୍ଥାନ ଦେବା ଉଚିତ ଯେ, ସବୁ ଦେଶର ସବୁଲୋକ ତାହାକୁ ନିଜର କରିନେଇ ପାରିବେ । ଏହା କହିବାର ବିଶେଷ ତାତ୍ପର୍ଯ୍ୟ ଥିଲା । କାରଣ ଶାନ୍ତିନିକେତନ ଆଶ୍ରମରେ କେବଳ ହିନ୍ଦୁ ନାହାନ୍ତି—ତିନି ଗୃରିଜଣ ଖ୍ରୀଷ୍ଟିଆନ୍ ଓ ବିଦେଶୀ ଆସିଛନ୍ତି—କାପ୍ଟେନ ପେଟାଭେଲ ଓ ତାଙ୍କର ସ୍ତ୍ରୀ, ଏଣ୍ଡ୍ରୁ୍ୟଜ ଓ ପିୟର୍ସନ । ଶାନ୍ତିନିକେତନର ପରିବେଶରେ ନୂତନତା ଦେଖାଦେଇଛି ।

ପୌଷ ଉତ୍ସବ ପରେ କବି କଲିକତା ଗଲେ । କଲିକତା ବିଶ୍ୱବିଦ୍ୟାଳୟ ପକ୍ଷରୁ କବିଙ୍କୁ ଡକ୍ଟର ଅଫ ଲିଟରେଚର ଉପାଧି ମିଳିଲା । ସେ ସମୟରେ ବିଶ୍ୱବିଦ୍ୟାଳୟର ଗୃନସେଲର୍ ଥିଲେ ଲର୍ଡ଼ ହାର୍ଡିଞ୍ଜ୍, ଭାଇସ ଗୃନ୍ସେଲର ସାର୍ ଆଶୁତୋଷ ମୁଖୋପାଧ୍ୟାୟ । ଏଠାରେ ଉଲ୍ଲେଖ କରିବା କଥା ଯେ ନୋବେଲ୍ ପ୍ରାଇଜ ଘୋଷିତ ହେବା ପୂର୍ବରୁ କଲିକତା ବିଶ୍ୱବିଦ୍ୟାଳୟ କବିଙ୍କୁ ଏହି ଉପାଧିରେ ସମ୍ମାନିତ କରିବାକୁ ସ୍ଥିର କରି ସାରିଥିଲେ । ପ୍ରାୟ ଏକମାସ ପରେ ରାଜଭବନରେ କବିଙ୍କୁ ନୋବେଲ୍ ପୁରସ୍କାର ମାନପତ୍ରାଦି ଅର୍ପଣ କରିବା ପାଇଁ ଏକ ଦରବାର ଆହୂତ ହୋଇ ଥିଲା । ବଙ୍ଗଳାର ନୂତନ ଲାଟ ଲର୍ଡ଼ କାରମାଇକେଲ୍ ସୁଇଡ଼ିଶ ସରକାରଙ୍କ ପକ୍ଷରୁ ଏହି ଅନୁଷ୍ଠାନରେ ପୌରୋହିତ୍ୟ କରିଥିଲେ ।

(୭୩)

ନୋବେଲ୍ ପ୍ରାଇଜ ଘୋଷିତ ହେବାର ପାଞ୍ଚମାସ ପରେ ୧୯୧୪ ଖ୍ରୀ: ଅ: ମେ ମାସରେ ଶ୍ରୀଯୁକ୍ତ ପ୍ରମଥ ଚୌଧୁରୀ 'ସବୁଜ

ପତ୍ର' ନାମକ ନୂତନ ମାସିକ ପତ୍ରିକା ପ୍ରକାଶ କଲେ । ନୂତନ ଯୁଗର ପ୍ରେରଣା, ନବୀନର ଆକର୍ଷଣ ଓ ସାହିତ୍ୟ ସଭରେ ନୂତନ କଥା କହିବାର ଆକର୍ଷଣରେ, କବିଙ୍କର ମନ ଆକୃଷ୍ଟ ହେଲା । ଏହି ସମୟରେ କବି ଗୀତିମାଲ୍ୟର ଗୀତ ଲେଖୁଥାନ୍ତି; ଏଥର ଗୀତ ଲେଖାର ଶେଷ ପାଳି । ଅନେକ କଥା, ଅନେକ ଭାବନା ଅଛି ଯାହା ଗଦ୍ୟ ଛଡ଼ା ପ୍ରକାଶ କରିହେବନି । ନୂତନ ପତ୍ରିକାର ଆବିର୍ଭାବ ଫଳରେ ସୁଯୋଗ ମିଳିଲା । 'ବିବେଚନା ଓ ଅବିବେଚନା' ପ୍ରବନ୍ଧରେ ମନର ରୁଦ୍ଧ ବେଦନା ରୂପ ପାଇଲା । କବି କହିଲେ ଯେ ଦେଶରେ ଏକ ସମୟରେ ଆଗେଇ ଚାଲିବାର ପିପାସା ଦେଖାଦେଇଥିଲା; କିନ୍ତୁ ବର୍ତ୍ତମାନ ବଙ୍ଗାଳୀ ମନୀଷୀଗଣ ପୁଣି ଧରାବନ୍ଧା ଗତରେ ଚାଲିବା ପାଇଁ ଲାଗି ପଡ଼ିଛନ୍ତି । ଚାରିଦିଗରୁ ଦେଖିବାକୁ ମିଳୁଛି ଯେ ଅଗ୍ରସର ହେବାକୁ ଚାହିଁଲେ ଆଗରେ ରହିଛି ବାଧା ଓ ବନ୍ଧନ । ରବୀନ୍ଦ୍ରନାଥ କହିଥିଲେ ଯେ, ଏପରି ସମୟରେ ପିଞ୍ଜୁରୀ ଭାଙ୍ଗିବାକୁ ପରାମର୍ଶ ଦେବା ବିବେଚକଙ୍କର ବୁଦ୍ଧିରେ ଅବିବେଚନାର କାର୍ଯ୍ୟ । ସବୁଜର ଅଭିଯାନ କବିତାରେ ଗାଇଥିଲେ—

'ଘୁଚିଯିବେ ଦେ ଭୁଇ ପୁଁଥି-ପୋଡ଼ୋର କାଛେ,
ପଥେ ଚଲାର ବିଧି ବିଧାନ ଯାଚା
ଆୟୁପ୍ରମୁକ୍ତ, ଆୟେ ରେ ଆମାର କାଞ୍ଚା' ।

ଏପରି ଭାବରେ ନବୀନମାନଙ୍କର ସମ୍ମାନ କେହି କରିନି । ରବୀନ୍ଦ୍ର ସାହିତ୍ୟରେ ନୂତନ ଧାରା ଦେଖାଦେଲା - 'ବଲାକା'ର କବିତା ଗୁଚ୍ଛରେ । 'ବିବେଚନା ଓ ଅବିବେଚନା' ତାହାର ଭୂମିକା ଓ ଟୀକା ମାତ୍ର ।

ନବବର୍ଷରେ (୧୩୨୧ ଏକ ନୂତନ ଘଟଣା ଘଟିଲା । ଏହା ସହିତ କବିଙ୍କର ମାନସପୁତ୍ର ବିଶ୍ୱଭାରତୀର ଇତିହାସ ଜଡ଼ିତ । ତାହା ହେଉଛି ସୁରୁଲ କୋଠି ବାଡ଼ିରେ 'ଗୃହ ପ୍ରବେଶ' । ଦୁଇବର୍ଷ ପୂର୍ବରୁ ରବୀନ୍ଦ୍ରନାଥ ବିଲାତରେ ଥିବା ସମୟରେ ସୁରୁଲର ଘର ଓ ଜମି କିଣା ହୋଇଥିଲା । ପ୍ରାୟ କୋଡ଼ିଏହଜାର ଟଙ୍କା ଖର୍ଚ୍ଚ କରି, ଜଙ୍ଗଲ କାଟି, ଭଙ୍ଗା ଘରକୁ ଆଧୁନିକ ବାସୋପଯୋଗୀ କରାହେଲା ।

ବନ୍ଦୁଲବଣୀ ପାଇଁ ଡାଇନାମୋ ପ୍ରଭୃତି ଆସିଲା—ସେ ଗୁଡ଼ିକ କୁଷ୍ଟିଆ ବ୍ୟବସାୟର ଧ୍ୱଂସାବଶେଷ । ଶିଲାଇଦହରୁ କ୍ରମଶ ପଦ୍ମ, ଗବେଷଣାଗାର, ପାଠାଗାର ସ୍କୁଲ ଅଣାହେଲା—ବୈଜ୍ଞାନିକ ଗବେଷଣା କାର୍ଯ୍ୟ ହୋଇପାରିବ । ବର୍ତ୍ତମାନ ଟଙ୍କାର ଅଭାବ ନାହିଁ—ବିଲାତରୁ ମ୍ୟାକମିଲାନ୍ କମ୍ପାନୀଙ୍କ ଅନୂଦିତ ବହି ବିକ୍ରୀରୁ ପ୍ରଚୁର ଟଙ୍କା ମିଳୁଥାଏ ।

( ୭୪ )

ଗ୍ରୀଷ୍ମାବକାଶରେ କବି ସପରିବାରେ ରାମଗଡ଼ ପାହାଡ଼କୁ ଗଲେ । ଖବରକାଗଜରୁ ବିଜ୍ଞାପନ ଦେଖି ରଥୀନ୍ଦ୍ରନାଥ ନୈନିତାଲ ନିକଟରେ ଏକ ଘର କିଣିଥିଲେ । ଜାଗାଟି କାଠଗୋଦାମ ଠାରୁ ଷୋଳମାଇଲ ଦୂର ।

ନୂତନ ଜାଗାରେ କବିଙ୍କର ମନ ବେଶ୍ ପ୍ରସନ୍ନ । କିନ୍ତୁ ହଠାତ୍ ମନରେ ଅନ୍ଧକାରର ଛାୟା ଦେଖାଦେଲା—ଯେପରି ପୃଥିବୀ ଉପରେ ଏକ ଅନ୍ଧକାର ଦେଖା ଦେଇଛି । 'ବଳାକା'ର କେତୋଟି କବିତାରେ ଏହି ଭାବ ଫୁଟି ଉଠିଛି । 'ସବୁଜେନ୍‌ସେ', 'ଆହ୍ୱାନ' ଓ 'ଶଙ୍ଖ' କବିତା ତିନୋଟି ପଢ଼ିଲେ ତାହା ବୁଝାଯିବ । ୟୁରୋପରେ ପ୍ରଥମ ମହାଯୁଦ୍ଧ ଆସନ୍ନ—କବିଙ୍କର ଲେଖନୀରେ ବୋଧହୁଏ ତା'ର ପୂର୍ବାଭାସ । କିମ୍ବା ଏହା କୌଣସି ଅନ୍ତର୍ଦ୍ୱନ୍ଦ୍ୱ ଓ ଅନ୍ତର୍ବେଦନାର ରୂପାୟନ—ସଠିକ୍ କହିହେବ ନା ।

ଏହି ସମୟରେ ଏଣ୍ଡ୍ରୁଜଙ୍କୁ ନିୟମିତ ପତ୍ର ଦେଉଥାନ୍ତି । ସେହି ସବୁ ପତ୍ର ପଢ଼ିଲେ କବିଙ୍କ ମନର ଜୁଆର ଭଟ୍ଟା ଜଣାପଡ଼େ ।

ମନର ଅବସ୍ଥା ଯେପରି ଥାଉନା କାହିଁକି, ସବୁଜପତ୍ର ପାଇଁ ଗଳ୍ପ, କବିତା ପ୍ରଭୃତି ନିୟମିତ ଲେଖୁଥାନ୍ତି । ନିତ୍ୟ ପୂଜା ନିବେଦନ ପରି 'ଗୀତାଲି'ର ଗୀତ ରଚନା ଚାଲିଥାଏ । ସେହି

ସୃଷ୍ଟି ମଧ୍ୟରେ କବିଙ୍କର ପରମ ମୁକ୍ତି··· ସମସ୍ତ ବିଷାଦ ଦୂରେଇଯାଏ, ସ୍ୱରସାଧନାରେ ମନ ଉଚ୍ଛଳି ହୋଇଉଠେ ।

'ସବୁଜପତ୍ର'ରେ ରବୀନ୍ଦ୍ରନାଥଙ୍କର 'ସ୍ତ୍ରୀର ପତ୍ର' ଗଳ୍ପ ନେଇ ସେ ସମୟରେ ସାହିତ୍ୟିକ ଓ ସମାଜତତ୍ତ୍ୱବିଦ୍‌ମାନଙ୍କ ମଧ୍ୟରେ ଆଲୋଡ଼ନ ଦେଖା ଦେଇଥିଲା । କୌଣସି ଏକ କ୍ଷୁଦ୍ର ଗଳ୍ପକୁ କେନ୍ଦ୍ର କରି ଏପରି ଆଲୋଚନା ଏହା ପୂର୍ବରୁ ବା ପରେ ହୋଇନି । ପୁରାତନ ଜୀର୍ଣ୍ଣ ସଂସ୍କାରକୁ ଭାଙ୍ଗିବାର ଭାବଧାରା ଏହି ଗଳ୍ପରେ ସ୍ପଷ୍ଟ । ନାରୀର ଯେ ଏକ ବ୍ୟକ୍ତିସତ୍ତା ଅଛି, ତାହା ଆମର ସମାଜରେ ଚିରଦିନ ଅସ୍ୱୀକୃତ ହୋଇଛି । ବଙ୍ଗଳା ସାହିତ୍ୟରେ ପ୍ରଥମ କରି ନାରୀ ବିଦ୍ରୋହର ସୂଚନା ମିଳିଲା--ସବୁଜପତ୍ରର ଏହି ଗଳ୍ପରୁ ।

ପାଶ୍ଚାତ୍ୟ ସାହିତ୍ୟରେ ଇବସନ୍‌ଙ୍କର 'ଡଲସ୍ ହାଉସ୍'ର ନୋରା ଚରିତ୍ର ଯେପରି ୟୁରୋପୀୟ ସମାଜକୁ ଚକିତ କରିଦେଇ-ଥିଲା, 'ସ୍ତ୍ରୀର ପତ୍ର', 'ହୈମନ୍ତୀ', 'ବୋଷ୍ଟମୀ' ପ୍ରଭୃତି ଗଳ୍ପ ବଙ୍ଗଳା ସମାଜକୁ ସେହିପରି ରୂଢ଼ ଭାବରେ ଆଘାତ କରିଥିଲା । ଗଳ୍ପୋପନ୍ୟାସ 'ଚତୁରଙ୍ଗ' ଓ ଉପନ୍ୟାସ 'ଘରେ ବାହିରେ' ଏ ଯୁଗର ସାହିତ୍ୟିକ ମହଲରେ କମ୍ ଆଲୋଡ଼ନ ସୃଷ୍ଟି କରିନି । ମୋଟ ଉପରେ ଏହିସବୁ ରଚନା ପାଇଁ ରବୀନ୍ଦ୍ରନାଥଙ୍କୁ ନାମଜାଦା ଲେଖକଙ୍କ ନିକଟରୁ କଠୋର କଥା ଶୁଣିବାକୁ ପଡ଼ିଥିଲା ।

୧୯୧୪ ମସିହା ଜୁଲାଇ ମାସ । ୟୁରୋପର ଏକ କୋଣରେ ପ୍ରଥମ ମହାଯୁଦ୍ଧର ସୂତ୍ରପାତ ହେଲା । କ୍ରମେ କ୍ରମେ ଏହା ସମଗ୍ର ୟୁରୋପକୁ ଗ୍ରାସକଲା । ପଶ୍ଚିମ ଏସିଆରେ ତା'ର ସ୍ଫୁରଣ ଦେଖା ଦେଲା, ଭାରତରେ ବି ତା'ର ସ୍ଫୁଲିଙ୍ଗ ଦେଖା ଦେଇଥିଲା । ରବୀନ୍ଦ୍ରନାଥଙ୍କ ମନରେ ଆଘାତ ଲାଗିଲା । ଶାନ୍ତିନିକେତନର ମନ୍ଦିରରେ ବୁଧବାର ଦିନ ପ୍ରାର୍ଥନା ସଭାରେ କହିଲେ, 'ବିଶ୍ୱପାପର ଯେଉଁ ମୂର୍ତ୍ତି ଆଜ ରକ୍ତବର୍ଣ୍ଣରେ ଦେଖାଦେଇଛି, ସେହି ବିଶ୍ୱପାପକୁ ଦୂର କର ।··· ବିନାଶରୁ ତାହାକୁ ରକ୍ଷା କର ।' କିନ୍ତୁ ତାହାର ପ୍ରାର୍ଥନା କେହି ଶୁଣିନି । ଅଗ୍ନି ଜଳିବାକୁ ଲାଗିଲା; ଧ୍ୱଂସମୁଖରୁ କେହି ମଣିଷ ସଭ୍ୟତାକୁ ରକ୍ଷା କରିପାରିଲା ନାହିଁ । କବି ମନେ

ମନେ ଯୁଦ୍ଧର କାରଣ ସମ୍ପର୍କରେ ଚନ୍ଦ୍ରାକର କହୁଥିଲେ, 'ମଣିଷ ମଧ୍ୟରେ କୌଣସି ବିଚ୍ଛେଦ ନାହିଁ, ସମସ୍ତ ମନୁଷ୍ୟ ଜାତି ଏକ— ସେଥିପାଇଁ ପିତାର ପାପ ପୁତ୍ରକୁ ବହନ କରିବାକୁ ପଡ଼େ, ବନ୍ଧୁର ପାପରେ ବନ୍ଧୁକୁ ପ୍ରାୟଶ୍ଚିତ କରିବାକୁ ପଡ଼େ, ପ୍ରବଳର ଉତ୍ପୀଡ଼ନ ଦୁର୍ବଳକୁ ସହ୍ୟ କରିବାକୁ ପଡ଼େ।.. ସମଗ୍ର ମାନବଜାତିର ପାପ ପାଇଁ ସମସ୍ତଙ୍କୁ ପ୍ରାୟଶ୍ଚିତ କରିବାକୁ ହେବ।'

(୭୫)

କବିଙ୍କର ସ୍କୁଲରେ ରହିବା ସ୍ୱପ୍ନ ଭାଙ୍ଗିଗଲା। ରଥୀନ୍ଦ୍ରନାଥ ପ୍ରଭୃତି ସେଠାରେ ମ୍ୟାଲେରିଆରେ ପଡ଼ିଲେ ଓ ସ୍ଥାନ ତ୍ୟାଗ କରିବା ପ୍ରୟୋଜନ ହେଲା। ଜାମାତା ନଗେନ୍ଦ୍ରନାଥ କିଛିଦିନ ସେଠାରେ ରହିଲେ। କିନ୍ତୁ ପରେ ତାଙ୍କୁ ମଧ୍ୟ ସେ ସ୍ଥାନ ଛାଡ଼ିବାକୁ ପଡ଼ିଥିଲା।

ସମସ୍ତ ପରିବାର ସହିତ କଲିକତାରେ ଆସି ରହିଲେ। ଶିଲାଇଦହ ଓ ସ୍କୁଲରେ ଗ୍ରାମ ସଂସ୍କାରର ପରିକଳ୍ପନା—ଗ୍ରାମରେ ବିଜ୍ଞାନ ସମ୍ମତ କୃଷି ପ୍ରବର୍ତ୍ତନ ଓ ଗୋଧନର ଉନ୍ନତି ସାଧନ— ସମସ୍ତ ଆକାଶ କୁସୁମ। ଶାନ୍ତିନିକେତନରେ ସନ୍ତୋଷ ଚନ୍ଦ୍ରଙ୍କର ଗୋଶାଳାର ଅବସ୍ଥା ମଧ୍ୟ ଅନୁରୂପ। ଗୋଶାଳା ଦେଖିଲେ ଜଲଧାରୀର କଳେଇ ପୁତୁଳ। ସନ୍ତୋଷ ଚନ୍ଦ୍ର ପିଲାଙ୍କୁ ପାଠ ପଢ଼ାନ୍ତି, ଡ୍ରିଲ କରାନ୍ତି ଓ ଅତିଥି ସତ୍କାର କରନ୍ତି।

ଶାନ୍ତିନିକେତନରେ କବିଙ୍କର ମନ ଲାଗୁ ନଥାଏ। ମନେ ହେଉଥାଏ ଯେପରି ବିଦ୍ୟାଳୟ ଉନ୍ନତି କରିପାରୁ ନାହିଁ—ତାଙ୍କର ଭାବଧାରା କେହି ଗ୍ରହଣ କରୁନାହାନ୍ତି। ଏଣ୍ଡ୍ରୁଜ ଓ ପିୟର୍ସନ୍ ପିଲାଙ୍କୁ ଇଂରାଜୀରେ ଧୁରନ୍ଧର କରି ମାଟ୍ରିକୁଲେସନ ପାସ୍ କରାଇବା ପାଇଁ ଆସି ନଥିଲେ। ଆଶ୍ରମରେ ଯୋଗଦାନ କରିବାର ପ୍ରଧାନ ଉଦ୍ଦେଶ୍ୟ—ସେମାନେ ଆଦର୍ଶର ପ୍ରେରଣାରେ ଉଦ୍‌ବୁଦ୍ଧ

ହୋଇଥିଲେ । ଏହିସବୁ ଘଟଣା ନେଇ କବିଙ୍କର ମନ ଖୁବ୍ ବିରକ୍ତ । ତେଣୁ ବାହାରେ ଘୁରି ବୁଲୁଥାନ୍ତି । କିନ୍ତୁ କବି ତୃପ୍ତି ପାଉ ନଥିଲେ ଯେ ସବୁଠାରୁ ବେଶୀ ବାଧା ତାଙ୍କର ମନ ଭିତରେ । ବିଦ୍ୟାଳୟର କୌଣସି ପ୍ରକାର କାର୍ଯ୍ୟରେ ସେ ସନ୍ତୁଷ୍ଟ ନ ଥିଲେ । ମନେ କରୁଥିଲେ, 'ଏଠି ନୁହେଁ, ଅନ୍ୟ କେଉଁଠାରେ·· ଅନ୍ୟ କେଉଁଠାରେ, ଅନ୍ୟ କେଉଁ ଆଦର୍ଶରେ' ତାଙ୍କୁ ଚାଲିବାକୁ ହେବ । ଅର୍ଥାତ୍ ସବୁବେଳେ କଳ୍ପନା କରୁଥିଲେ—'ଘର, ଭଙ୍ଗ, ନୂତନ ଲୋକ ଆଣ !' ଏହି ନୂତନର ମୋହ ବିଦ୍ୟାଳୟକୁ ସୁନ୍ଦର ଭାବରେ ଗଢ଼ି ତୋଳିବାରେ ସାହାଯ୍ୟ କରି ପାରିନି । ଅଥଚ ଏହି ନୂତନତା ପ୍ରତି ଆକର୍ଷଣ ଥିବାରୁ ବିଦ୍ୟାଳୟ ଆଗେଇ ଚାଲିଥିଲା— କୌଣସି ସମ୍ପ୍ରଦାୟ ବା ମତବାଦର ମଠ ବା ମନ୍ଦିର ହୋଇ ନଥିଲା, କବି ମଧ୍ୟ 'ଗୁରୁ' ବା ମହନ୍ତ ପଦରେ ଅଭିଷିକ୍ତ ହୋଇ ନଥିଲେ ।

ପୂଜାବକାଶ ପରେ କବି ଗୟା ଗଲେ । ବାରିଷ୍ଟର ଲେଖକ ପ୍ରଭାତକୁମାର ମୁଖୋପାଧ୍ୟାୟ ସେଠାରେ ଥାନ୍ତି । 'ଗୀତାଲି'ର ଗୀତ ରଚନାରେ କବିଙ୍କର ମନ ପୁରି ରହିଥାଏ । ଏହି ଗୟା ଭ୍ରମଣରେ କବିଙ୍କର ନାନା ପ୍ରକାର ଅଭିଜ୍ଞତା ହୋଇଥିଲା । ସେହି ଅବସ୍ଥାରେ ଷ୍ଟେସନରେ ବସି, ପାଲିଙ୍କିରେ ବସି ଗୀତ ଲେଖିଛନ୍ତି ।

ଗୟାରୁ ଆହ୍ଲାବାଦ ଗଲେ । ଭଣଜା ସତ୍ୟପ୍ରକାଶଙ୍କ ପୁଅ ସୁପ୍ରକାଶ ସେଠାରେ ଥାନ୍ତି । ଚଉଦବର୍ଷ ଆଗରୁ ଦିନେ ଦୁଇଦିନ ପାଇଁ ଆହ୍ଲାବାଦ ଯାଇଥିଲେ । ସେଥର ହୋଟେଲରେ ରହିଥିଲେ । କିନ୍ତୁ ଏଥର ସୁପ୍ରକାଶଙ୍କ ବସାରେ ତିନି ସପ୍ତାହ କଟାଇଲେ । ଗୀତାଲି ରଚନା ଏହିଠାରେ ଶେଷ ହୋଇଥିଲା ଓ 'ବଳାକା' କବିତା ସଂକଳନ ଆରମ୍ଭ ହେଲା—'ଛବି' କବିତା ଏହିଠାରେ ଲେଖା ହୋଇଥିଲା । ସମ୍ପୂର୍ଣ୍ଣ ଅପ୍ରତ୍ୟାଶିତ ଭାବରେ ଭାଉଜ କାଦମ୍ବରୀ ଦେବୀଙ୍କର ଫଟୋ ସୁପ୍ରକାଶଙ୍କର ଘରେ ଦେଖି ଅତୀତ-ସ୍ମୃତି ମନେ ପଡ଼ିଗଲା ଓ ଲେଖିଥିଲେ 'ଛବି' କବିତା ('ବଳାକା'ର ଷଷ୍ଠ କବିତା ) । ପରବର୍ତ୍ତୀ 'ଶାଜାହାନ' କବିତା ମଧ୍ୟ ଏହି ପରିବେଶରେ ଲେଖା ହୋଇଥିଲା ।

ପୌଷ ସାତ ଉତ୍ସବରେ (ବଙ୍ଗାବ୍ଦ ୧୩୨୧) ଯୋଗଦାନ କରିବା ପାଇଁ ଶାନ୍ତିନିକେତନ ଫେରି ଆସିଲେ । ଉତ୍ସବ ପରେ କଲିକତାରେ କିଛିଦିନ ରହି ମାଘୋତ୍ସବ ପରେ ଶିଲାଇଦହ ଗଲେ । କୋଠିବାଡ଼ି ଶୂନ୍ୟ । ଦିନେ ସେଠାରେ ପୁତ୍ର, ପୁତ୍ରବଧୂ ଓ କନ୍ୟା ଜାମାତାଙ୍କୁ ନେଇ ସଂସାର କରିବାର ଯେଉଁ ଆଶା କରିଥିଲେ, ତାହା ବ୍ୟର୍ଥ ହୋଇଛି । ତେଣୁ ଏଥର ନୌକାଘରେ ରହିଲେ ।

ଶିଲାଇଦହରେ ତିନିଜଣ ଶିଳ୍ପୀ ଆସି ପହଞ୍ଚିଲେ—ନନ୍ଦଲାଲ-ବୋଷଙ୍କର ଛାତ୍ରାବସ୍ଥା ଶେଷ ହୋଇ ଯାଇଥାଏ; ସୁରେନ୍ଦ୍ରନାଥ ଓ ମୁକୁଳ ଚନ୍ଦ୍ରଦେ ଛାତ୍ର । ଏ ସମସ୍ତେ ଅବନୀନ୍ଦ୍ରନାଥଙ୍କର ଛାତ୍ର । ଏମାନଙ୍କୁ ସଙ୍ଗରେ ପାଇ କବିଙ୍କର ମନ ପ୍ରସନ୍ନ ହେଲା । ଏହି ତିନିଜଣ ଶିଳ୍ପୀ କବିଙ୍କ ସହିତ ଘନିଷ୍ଠ ଭାବରେ ଜଡ଼ିତ ଥିଲେ ।

ମାଘମାସ ପରେ (୧୯୧୫) କଲିକତା ଫେରି ଆସିଲେ । ସେତେବେଳେ ଡା: ଦ୍ୱିଜେନ୍ଦ୍ରନାଥ ମୈତ୍ର 'ବଂଗୀୟ ହିତ ସାଧନ ମଣ୍ଡଳୀ' ନାମକ ଗୋଟିଏ ଅନୁଷ୍ଠାନ ଗଢ଼ିବାର ଆୟୋଜନ କରୁଥିଲେ । ଉଦ୍‌ବୋଧନ ସଭାକୁ ଡା: ମୈତ୍ର କବିଙ୍କୁ ଡାକି ନେଲେ । ସେଠାରେ ଭାଷଣ ପ୍ରସଙ୍ଗରେ କବି କହିଥିଲେ, 'କାର୍ଯ୍ୟରେ ଲାଗିଲେ ତର୍କ କାଠର ଆକ୍ରମଣ ଜନିତ ପାଣ୍ଡିତ୍ୟର ପଣ୍ଡତାରୁ ରକ୍ଷା ପାଇବ । ...... ଆଜି ଦେଶରେ ପ୍ରଚଣ୍ଡ ଶକ୍ତି ଶିଶୁ ଅବସ୍ଥାରେ ଅଛି ।...... ଆମ୍ଭମାନଙ୍କର ଭୟ ନାହିଁ ।' ଆଜି ଯେଉଁ ପ୍ରଚଣ୍ଡ ଜନଶକ୍ତି ଦେଖା ଯାଉଛି, ସେତେବେଳେ ସେ ଶିଶୁ ମୂର୍ତ୍ତିକୁ ଅନେକ ଲକ୍ଷ୍ୟ କରି ନଥିଲେ । କବି କିନ୍ତୁ ତାହା ଲକ୍ଷ୍ୟ କରି ପାରିଥିଲେ ।

କବି ବୋଲପୁର ଫେରିଲେ (୧୩୨୧ ଫାଲ୍‌ଗୁନ ୧୦) । ସୁରୁଲ ଘରେ ରହିଲେ, ଏହାବି ଶୂନ୍ୟ । ଏହିଠାରେ ରହି 'ଫାଲ୍‌ଗୁନୀ' ନାଟିକା ଲେଖିଥିଲେ । 'ଆଶ୍ରମର ପିଲା ବୁଢ଼ା ସମସ୍ତେ ବସନ୍ତଉତ୍ସବ ପାଇଁ ଏକ ଛୋଟ ନାଟକ ରଚନା କରିବାକୁ ଜିଗର କରିଛନ୍ତି ।' ବାରକ୍‌ପୁରରୁ ବଡ଼ଲାଟଙ୍କର ନିମନ୍ତ୍ରଣ ଆସିଲା—ଶୀତଦିନରେ ସେ ଦିଲ୍ଲୀରୁ ବଙ୍ଗଳାକୁ ଗସ୍ତରେ ଆସିଥାନ୍ତି । କିନ୍ତୁ

କବିଙ୍କର ମନ 'ଫାଲ୍‌ଗୁଣୀ' ସଙ୍ଗୀତ ରଚନାରେ ଏପରି ନିମଗ୍ନ ଥିଲା ଯେ ସେ ନିମନ୍ତ୍ରଣ ବିନମ୍ର ସହକାରେ ପ୍ରତ୍ୟାଖାନ କଲେ । ଫାଲ୍‌ଗୁନୀ ଲେଖା ସରିଲା ।

(୭୨)

କବି ଉତ୍ତର ଭାରତରେ ବୁଲୁଥିବା ବେଳେ ଖବର ପାଇଲେ ଯେ ଗାନ୍ଧିଜୀ ଦକ୍ଷିଣ ଆଫ୍ରିକାରୁ ଭାରତ ଫେରୁଛନ୍ତି । ଭାରତୀୟ-ମାନଙ୍କର ନ୍ୟାଯ୍ୟ ଦାବୀ ଓ ସମ୍ମାନ ବଜାଏ ରଖିବା ପାଇଁ ସେ ଆଫ୍ରିକାରେ ସତ୍ୟାଗ୍ରହ ଆନ୍ଦୋଳନ ଚଳାଉଥିଲେ । ଜେନେରାଲ ସ୍ମାଟସ୍‌ଙ୍କ ସଙ୍ଗେ. ଗୋଟିଏ ଚୁକ୍ତି ହେବା ପରେ ତାହା ସ୍ଥଗିତ ରଖିଲେ । ପ୍ରବାସୀ ଭାରତୀୟମାନଙ୍କର ଅବସ୍ଥା ସମ୍ପର୍କରେ ବିଲାତ ଔପନିବେଶିକ୍ ମନ୍ତ୍ରୀ ଦପ୍ତରରେ ପ୍ରସ୍ତାବ ଦେବା ପାଇଁ ଗାନ୍ଧିଜୀ ବିଲାତ ଗଲେ । ସେତେବେଳେ ସମସ୍ୟା ଥିଲା ତାଙ୍କର ଫିନିକ୍ସ ବିଦ୍ୟାଳୟ—କୋଡ଼ିଏ ପଚିଶଜଣ ଛାତ୍ର, କେତେଜଣ ଶିକ୍ଷକ, ଛାତ୍ରମାନଙ୍କ ମଧ୍ୟରେ ତାଙ୍କର ନିଜ ପୁଅ ବି ଥିଲେ । ତା ଛଡ଼ା ଏପରି ଛାତ୍ର ମଧ୍ୟ ଥିଲେ, ଯେଉଁମାନେ ଆଫ୍ରିକାରେ ଜନ୍ମିଥିଲେ—ଭାରତ ମଧ୍ୟ ଦେଖି ନଥିଲେ । ଭାରତକୁ ସେମାନଙ୍କୁ ପଠାଇବେ ବୋଲି ଭାବିଲେ । କିନ୍ତୁ କେଉଁଠି ଆଶ୍ରୟ ପାଇବେ ? ଗାନ୍ଧିଜୀ ସେତେବେଳେ ଭାରତରେ ସୁପରିଚିତ ନୁହନ୍ତି । ଏଣ୍ଡ୍ରୁଜ ସାହେବ-ଙ୍କର ମଧ୍ୟସ୍ଥତା ଓ ବ୍ୟବସ୍ଥା ଫଳରେ ଆଫ୍ରିକା-ପ୍ରତ୍ୟାଗତ ଛାତ୍ର ଓ ଶିକ୍ଷକମାନେ ଶାନ୍ତିନିକେତନ ଆସିଲେ । ରବୀନ୍ଦ୍ରନାଥ ଖୁସି ହୋଇ ଗାନ୍ଧିଜୀଙ୍କୁ ପତ୍ର ଦେଇଥିଲେ । ଏହି ହେଉଛି କବିଙ୍କର ଗାନ୍ଧିଜୀଙ୍କ ନିକଟକୁ ପ୍ରଥମ ଚିଠି ।

ଇଂଲଣ୍ଡରୁ ଫେରି ଗାନ୍ଧିଜୀ ଓ କସ୍ତୁରି ବାଈ ପିଲାମାନଙ୍କୁ ଓ ଛାତ୍ରମାନଙ୍କୁ ଦେଖିବା ପାଇଁ ଶାନ୍ତିନିକେତନ ଆସିଲେ (୧୯୧୫ ଫେବୃୟାରୀ ୧୭) । କିନ୍ତୁ ଗୋଖେଲଙ୍କର ମୃତ୍ୟୁ ସମ୍ବାଦ ପାଇ

ଦୁଇଦିନ ପରେ ପୁନା ଚାଲିଯିବାକୁ ପଡ଼ିଲା । ରବୀନ୍ଦ୍ରନାଥଙ୍କ ସହିତ ସାକ୍ଷାତ ହୋଇପାରିଲା ନାହିଁ ।

ପୁନାରୁ ଫେରିବା ପରେ କବିଙ୍କ ସହିତ ଗାନ୍ଧିଜୀଙ୍କର ପ୍ରଥମ ସାକ୍ଷାତ ହୋଇଥିଲା ମାର୍ଚ୍ଚ ୬ତାରିଖରେ । ଗାନ୍ଧିଜୀ ଆଶ୍ରମର ଚାଲିଚଳି ଦେଖି ଖୁସି ହୋଇ ପାରିଲେ ନାହିଁ । ଛାତ୍ର ଓ ଅଧ୍ୟାପକମାନଙ୍କୁ ନିଜ କାର୍ଯ୍ୟ ନିଜେ କରିବା ପାଇଁ ଉତ୍ସାହିତ କଲେ ।

ରବୀନ୍ଦ୍ରନାଥ ସୁରୁଲରେ ଥାନ୍ତି । ଉତ୍ସାହୀ ଯୁବକ ଦଳ ତାଙ୍କ ନିକଟରେ ଏହି ଅଭିପ୍ରାୟ ଜଣାଇବା ବେଳେ ସେ ସର୍ବାନ୍ତଃ କରଣରେ ଅନୁମୋଦନ କରିଥିଲେ—ପରୀକ୍ଷା କରି ଦେଖିବାରେ ତାଙ୍କର ଉତ୍ସାହ ବି କମ୍ ନୁହେଁ—ନିଜର ଜୀବନରେ ବହୁ ପରୀକ୍ଷା କରିଛନ୍ତି । ନିମପତ୍ର ପିଇଁ ପାଣି ପିଇବାଠାରୁ ଆରମ୍ଭ କରି ଜଡ଼ାତେଲ ମଖାରୁଟି ଖାଇବା ପର୍ଯ୍ୟନ୍ତ ଅନେକ କଥା କରିଛନ୍ତି ।

ଗାନ୍ଧିଜୀଙ୍କର ଫିନ୍‌କସ୍ ସ୍କୁଲର ଛାତ୍ରମାନେ ନିଜ କାମ ନିଜେ କରୁଥାନ୍ତି । ସେମାନଙ୍କର ଚାକର ପୂଝାରୀ ନଥିଲା । ସେହି ଆଦର୍ଶରେ ଅନୁପ୍ରାଣିତ ହୋଇ ତରୁଣ ଶିକ୍ଷକ ଓ ସ୍କୁଲର ଛାତ୍ରମାନେ ନିଜ କାର୍ଯ୍ୟ ନିଜେ କରିବାକୁ ସ୍ଥିର କଲେ । 'ସବୁ କାର୍ଯ୍ୟରେ ହାତ ଦେଉ ଆମେ' କହି ଚାକର, ପୂଝାରୀ, ମେହେନ୍ତର, ପାଣି ଆଣିବା ଲୋକ ସମସ୍ତଙ୍କୁ ବିଦାୟ କରି ଦିଆହେଲା । ଛାତ୍ର ଓ ଅଧ୍ୟାପକ ମିଶି ସକାଳୁ ଦୁଇଶହ ଜଣ କାର୍ଯ୍ୟରେ ଲାଗିଲେ । ପରିବା କାଟୁ କାଟୁ ଘଣ୍ଟା ବାଜେ । ପଢ଼ିବାକୁ ଓ ପଢ଼ାଇବାକୁ ଯିବାର ଫଳ ଯେ କଣ ହେଉଥିଲା ତାହା ବର୍ଣ୍ଣନା କରିବା ନିଷ୍ପ୍ରୟୋଜନ ।

୧୯୧୫ ମସୀହା ମାର୍ଚ୍ଚ ୧୦ ତାରିଖରେ ଏହି ନୂତନ ପରୀକ୍ଷା ଆରମ୍ଭ ହୋଇଥିବାରୁ ବର୍ତ୍ତମାନ ସେହି ଦିନଟି ଆଶ୍ରମରେ 'ଗାନ୍ଧି ଦିବସ' ରୂପେ ପାଳିତ ହୁଏ ।

ପରଦିନ ଗାନ୍ଧିଜୀ ରେଙ୍ଗୁନ ଚାଲିଗଲେ ଓ କୋଡ଼ିଏ ଦିନ ପରେ ଫେରି ଫିନିକସ୍ ବିଦ୍ୟାଳୟର ଛାତ୍ରମାନଙ୍କୁ ନେଇ କୁମ୍ଭମେଳା ଦେଖିବାକୁ ଗଲେ । ସ୍ଥିର ହୋଇଥିଲା ଯେ ସେମାନେ ଅନ୍ୟ ଜାଗାରେ ରହିବେ । ଶାନ୍ତିନିକେତନ ସଙ୍ଗରେ ମାତ୍ର ଚାରି ମାସର

ସମ୍ବନ୍ଧ । କିନ୍ତୁ ଗାନ୍ଧିଜୀ ସେ କଥା ଜୀବନରେ ଭୁଲିପାରି ନାହାନ୍ତି । ଦିଶଦିନ ପରେ ବଙ୍ଗଳାର ଲାଟ ଲର୍ଡ଼ କାର୍ ମାଇକେଲ ଶାନ୍ତିନିକେତନ ଦେଖିବାକୁ ଆସିଲେ (୧୯୧୫ ମାର୍ଚ୍ଚ ୨୦ ତାରିଖ)। ଏକଥା ଉଲ୍ଲେଖ କରିବାର ବିଶେଷ କାରଣ ଅଛି ।

ତିନିବର୍ଷ ପୂର୍ବରୁ ଯେଉଁ ଶାନ୍ତିନିକେତନରେ ଛାତ୍ର ଭର୍ତ୍ତି କରିବା ବିରୁଦ୍ଧରେ ସରକାରୀ କର୍ମଚାରୀମାନଙ୍କ ନିକଟକୁ ସରକାର ଗୋପନ ଇସ୍ତାହାର ପଠାଇଥିଲେ, ତାର ପ୍ରତିଷ୍ଠାତା ୟୁରୋପୀୟ ସୁଧୀ ସମାଜରେ ସମ୍ମାନ ପାଇଥିବାରୁ ସେ ସ୍ଥାନ ଇଂରେଜ ରାଜପୁରୁଷମାନଙ୍କର ଦୃଷ୍ଟି ଆକର୍ଷଣ କଲେ । ନହେଲେ ଇଂରେଜ ସରକାରଙ୍କର ମାନ ରହିବ କିପରି ?

ବିଶିଷ୍ଟ ଅତିଥିମାନଙ୍କୁ ଆମ୍ରକୁଞ୍ଜରେ ସମ୍ବର୍ଦ୍ଧନା କରାଗଲା । ସେ ସମୟରେ ଶାନ୍ତିନିକେତନ ମନ୍ଦିର ପ୍ରଭୃତିର କିଛି ପରିବର୍ତ୍ତନ ହୋଇଥିଲା । ରବୀନ୍ଦ୍ରନାଥଙ୍କର ଏହି କାର୍ଯ୍ୟ ସମସ୍ତେ ପସନ୍ଦ କରି ନଥିଲେ । ବର୍ତ୍ତମାନ ଆମ୍ରକୁଞ୍ଜରେ କାରମାଇକେଲ୍ ବେଦୀଟି ଅଛି ।

ଗ୍ରୀଷ୍ମ ଛୁଟି ପୂର୍ବରୁ ଆଶ୍ରମରେ 'ଫାଲ୍‌ଗୁନୀ' ନାଟକ ଅଭିନୀତ ହେଲା । ରବୀନ୍ଦ୍ରନାଥ ଅନ୍ଧ ବାଉଲ୍ ଭୂମିକାରେ ଅଭିନୟ କରିଥିଲେ ।

(୬୭)

ସବୁଜପତ୍ର ବାହାରୁ ଥାଏ—କବିଙ୍କର ଛୋଟଗଳ୍ପ ପ୍ରବନ୍ଧ ନିୟମିତ ପ୍ରକାଶିତ ହେଉଥାଏ । କିନ୍ତୁ ତାଙ୍କର ସମସ୍ତ ରଚନା ତ ସମସ୍ତଙ୍କର ପସନ୍ଦ ହୁଏନି; ପାଠକମାନଙ୍କ ମଧ୍ୟରେ ଶିକ୍ଷା ରୁଚି ଓ ବୋଧଶକ୍ତିର ତାରତମ୍ୟ ଅଛି । ଏକଦା ସାହିତ୍ୟ ସମାଲୋଚକ-ମାନେ କହିଥିଲେ ଯେ ରବୀନ୍ଦ୍ରନାଥଙ୍କର କାବ୍ୟ ସୃଷ୍ଟି ଦୁର୍ନୀତି ପ୍ରବୋଚକ । ନୂତନ ସମାଲୋଚନା ଆରମ୍ଭ ହେଲା । ସେମାନେ ପ୍ରମାଣ

କରିବାକୁ ଗୃହିଁଲେ ଯେ କବିଂକର ରଚନା ଅବାସ୍ତବ । ଅର୍ଥାତ୍ ବାସ୍ତବ ଜୀବନ ସଙ୍ଗେ ଧନୀ ପୁଦ୍ର ରବୀନ୍ଦ୍ରନାଥଂକର ସମ୍ପର୍କ କେତେବେଳେ ସମ୍ପୂର୍ଣ୍ଣ ହୋଇ ପାରେନି, ତେଣୁ ତାଂକର ରଚନାରେ ସାରବସ୍ତୁ ନାହିଁ—ଅଛି କେବଳ ରଙ୍ଗ ଢଙ୍ଗ ଓ ସୁର୍ । ଏଥିପାଇଁ ସାମୟିକ ସାହିତ୍ୟରେ କେତେ ସମୁଦ୍ର ମନ୍ଥନ ନ ହୋଇଛି ?

ରବୀନ୍ଦ୍ରନାଥ 'ଫାଲ୍‌ଗୁନୀ' ଲେଖା ପରେ 'ଆମାର ଧର୍ମ' ଓ 'କବିର କୈଫିୟତ' ଲେଖିଥିଲେ । ଏଥର ଲେଖିଲେ 'ବାସ୍ତବ' 'ଲୋକହିତ' ଓ 'ଆମାର ଜଗତ' । ବାସ୍ତବ କହିଲେ କଣ ବୁଝାଏ ତାହାର ବ୍ୟାଖ୍ୟା କଲେ ଓ ଆଦର୍ଶ କଣ ତାହା ମଧ୍ୟ କହିଲେ ।

କିଛିଦିନ ହେବ ଲୋକହିତ ପାଇଁ ଲୋକ-ସାହିତ୍ୟ ସୃଷ୍ଟି କରିବାକୁ ହେବ ବୋଲି ଏକ ଧୂଆଁ ଉଠିଛି । ଏମାନଙ୍କର ବକ୍ତବ୍ୟ ହେଉଛି—ଲୋକ-ସାହିତ୍ୟକୁ ବାସ୍ତବ ଜଗତ ସମ୍ପର୍କିତ କରି ଲେଖିବା ଦରକାର । ଅର୍ଥାତ୍ ରବୀନ୍ଦ୍ର-ସାହିତ୍ୟ ତାହା କରି ପାରିନାହିଁ । କିନ୍ତୁ ଏ ବିଷୟରେ ରବୀନ୍ଦ୍ରନାଥଙ୍କର ମତ ଅନ୍ୟ ପ୍ରକାର । ସେ କହିଲେ ଯେ, ଲୋକ ସାଧାରଣଙ୍କ ପାଇଁ ବିଶେଷ ଭାବରେ ଯେଉଁ ଲୋକ-ସାହିତ୍ୟ ଭଦ୍ରଲୋକମାନେ ଲେଖିବେ ତାହା ସାହିତ୍ୟ ପଦବାଚ୍ୟ ହେବନାହିଁ, ବାସ୍ତବ-ସମ୍ପର୍କିତ ମଧ୍ୟ ହେବ ନାହିଁ । ତା'ର କାରଣ ଲୋକ-ସାହିତ୍ୟ ଚିରଦିନ ଲୋକମାନେ ହିଁ ସୃଷ୍ଟି କରିଛନ୍ତି । ଆତ୍ମାଭିମାନ ଫଳରେ କିମ୍ବା ଦୟା ଦୃଷ୍ଟିରୁ ଏକ ଶ୍ରେଣୀର ଉପଭୋଗ୍ୟ ସାହିତ୍ୟ ଅନ୍ୟ ଶ୍ରେଣୀଦ୍ୱାରା ସୃଷ୍ଟି ହୋଇ ପାରେନାହିଁ ।

ଏ ବିଷୟ ଯେମିତି ବିତର୍କ ଆଜି ବି ଗ୍ଲୁଲିଛି । ରବୀନ୍ଦ୍ରନାଥ ତାଙ୍କର ଜୀବନ ସନ୍ଧ୍ୟାରେ କହିଥିଲେ—

କୃଷାଣେର ଜୀବନେର ଶରିକ ଯେ ଜନ
କର୍ମେ ଓ କଥାୟ ସତ୍ୟ ଆତ୍ମୀୟତା କରେଛେ ଅର୍ଜନ,
ଯେ ଆଛେ ମାଟିର କାଛାକାଛି,
ସେ କବିର ବାଣୀ ଲାଗି କାନ ପେତେ ଆଛି ।
ସାହିତ୍ୟେର ଆନନ୍ଦେର ଭୋଜେ
ନିଜେ ଯା ପାରିନା ଦିତେ, ନିତ୍ୟ ଆମି ଥାକି ତାରି ଖୋଜେ,

ସେଟା ସତ୍ୟ ହୋକ୍,
ଶୁଧୁ ଭଙ୍ଗୀ ଦିୟେ ଯେନ ନା ଭୋଲାୟ ଚୋଖ୍ ।
ସତ୍ୟମୂଲ୍ୟ ନା ଦିୟେଇ ସାହିତ୍ୟେର ଖ୍ୟାତି କରା ଚୁରି
ଭାଲୋ ନୟ, ଭାଲୋ ନୟ, ନକଲ ସେ ସୌଖୀନ ମଜଦୁରି ।

(୬୮)

'ସବୁଜପତ୍ର'ର ଦ୍ୱିତୀୟବର୍ଷର ଆରମ୍ଭରେ କବି 'ଘରେ ବାହିରେ' ନାମକ ଉପନ୍ୟାସ ଅରମ୍ଭ କଲେ । ଗ୍ରେଟଗଳ୍ପ ଲେଖି ଲେଖି ଗୁଡ଼ିଏ ଗଳ୍ପକୁ ମିଶାଇ ଲେଖିଥିଲେ 'ଚତୁରଙ୍ଗ' । ଏ ସମସ୍ତ ହେଉଛି ସମସ୍ୟାମୂଳକ ଓ ମନସ୍ତାତ୍ତ୍ୱିକ ରଚନା । 'ଘରେ ବାହିରେ' ମଧ୍ୟ ସମସ୍ୟା ବହୁଳ ଉପନ୍ୟାସ ।

ଏହି ସମୟରେ ବିଶେଷ ଭାବରେ ଉଲ୍ଲେଖ ଯୋଗ୍ୟ ଘଟଣା ହେଉଛି 'ବିଚିତ୍ରା' କ୍ଲବ୍ ଗଠନ । ଗଗନେନ୍ଦ୍ରନାଥ ପ୍ରଭୃତିଙ୍କର ବିରାଟ ପାରିବାରିକ ଲାଇବ୍ରେରୀ ଉଠି ଆସିଲା 'ବିଚିତ୍ରା' ଭବନର ଏକ ମହଲା ଘରକୁ । ସେଠାରେ ଆଜି ବିଶ୍ୱଭାରତୀ ପ୍ରକାଶନ ବିଭାଗର ଗ୍ରନ୍ଥାଗାର । ଉପର ହଲ୍‌ରେ କ୍ଲବର ମଜଲିସ୍, ସଭା, ଅଭିନୟ ହୁଏ । ଗୃହି ଗୃହି କଲିକତାର ଶିକ୍ଷିତ ସମାଜର ବହୁଲୋକ ଏହାର ସଦସ୍ୟ ହେଲେ । ସେମାନଙ୍କର ଆକର୍ଷଣ ଥିଲା ରବୀନ୍ଦ୍ରନାଥଙ୍କର ମଜଲିସ୍ ଓ ଆଧୁନିକ ସାହିତ୍ୟର ସଦ୍ୟ ପ୍ରକାଶିତ ବହି—ଯାହା ଅନ୍ୟ କେଉଁଠି ସହଜରେ ମିଳିବ ନାହିଁ ।

ଏହି ସମୟରେ ଗୋଟିଏ ଘଟଣା ଉଲ୍ଲେଖ କରେ । କାରଣ ଏହି ଘଟଣା ନେଇ ଦିନେ ଖୁବ୍ ଆନ୍ଦୋଳନ ହୋଇଥିଲା । ବିଷୟଟି ହେଉଛି ରବୀନ୍ଦ୍ରଙ୍କର 'ସାର୍' ଉପାଧି ଲାଭ (୧୯୧୫ ଜୁନ୍ ୩) । ସେ ଯୁଗରେ ଇଂରାଜୀ ନବବର୍ଷ ଓ ରାଜାଙ୍କର ଜନ୍ମ ଦିବସରେ ବ୍ରିଟିଶ ସରକାର ଉପାଧି ଦେଉଥିଲେ । ସାଧାରଣତଃ ବ୍ରିଟିଶ ଉଚ୍ଚ ପଦସ୍ଥ କର୍ମଚାରୀ ଓ ଦେଶର ରାଜଭକ୍ତମାନଙ୍କ ମଧ୍ୟରେ ନାନା

ପ୍ରକାର ସମ୍ମାନ ବିତରଣ ହେଉଥାଏ । ତେବେ ଏ ପର୍ଯ୍ୟନ୍ତ ସାହିତ୍ୟ ପାଇଁ କାହାକୁ 'ସାର୍' ଉପାଧି ଦିଆ ହୋଇ ନଥାଏ, ସେ ଦୃଷ୍ଟିରୁ କବିଙ୍କର ଏହି ସମ୍ମାନ ଲାଭରେ ବୈଶିଷ୍ଟ୍ୟ ଥିଲା । କବି ଗୃହବର୍ଷ ଏହା ବ୍ୟବହାର କରିଥିଲେ—ତାପରେ ଏହାକୁ ବିସର୍ଜନ ଦେଲେ । ସେ କଥା ଯଥା ସ୍ଥାନରେ କୁହାଯିବ ।

ଏଣେ କବିଙ୍କର ଶାନ୍ତିନିକେତନରେ ମନ ଲାଗୁ ନ ଥାଏ । ଗତ କେତେ ମାସ ମଧ୍ୟରେ କଲିକତା, ଗୟା, ଆଲ୍ଲାହାବାଦ, ଆଗ୍ରା, ସୁରୁଲ ଶିଲାଇଦହ ଯିବା ଆସିବା ଫଳରେ ମନ ଯାଯାବର ହୋଇ ଯାଇଥାଏ । କବିତା ବା ସଂଗୀତ ରଚନା ହୋଇ ପାରୁନି; ଲେଖୁଥାନ୍ତି ଉପନ୍ୟାସ ଓ ପ୍ରବନ୍ଧ, ପଢୁଥାନ୍ତି ନାନା ବିଷୟକ ବହି । ଅସଲ କଥା ହେଉଛି ଦୂରକୁ ବୁଲି ଯିବାକୁ ମନ ଛଟପଟ ହେଉଥାଏ । ଅଜଣାକୁ ଜାଣିବା ପାଇଁ ମନର ଏହି ବ୍ୟାକୁଳତା ! ସେଥିପାଇଁ ପୂଜାବକାଶରେ କାଶ୍ମୀର ଭ୍ରମଣରେ ଗଲେ । କିନ୍ତୁ ସେଠାରେ ଦୀର୍ଘକାଳ ରହିବାକୁ ଭଲ ଲାଗିଲା ନାହିଁ । ପନ୍ଦର ଦିନ ପର୍ଯ୍ୟନ୍ତ ନୌକାଘରେ ରହିଲେ; କିନ୍ତୁ ମନ ପ୍ରଫୁଲ୍ଲ ହେଲା ନାହିଁ । ବିଖ୍ୟାତ 'ବଳାକା' କବିତାଟି ଏହିଠାରେ ଲେଖିଥିଲେ । ଆହୁରି ମଧ୍ୟ ସେକ୍ସପୀୟରଙ୍କ ଉଦ୍ଦେଶ୍ୟରେ କବିତା ଲେଖିଥିଲେ—ମହାକବିଙ୍କର ତିନିଶ ବାର୍ଷିକ ଜୟନ୍ତୀ-ଉତ୍ସବ-ସମିତିର ଅନୁରୋଧରେ ।

କାଶ୍ମୀରରୁ ଫେରି ଶିଲାଇଦହ ଗଲେ; ସେଠାରେ ପଲ୍ଲୀ ସଂସ୍କାର କରିବାର ଚେଷ୍ଟା ପୁନର୍ବାର ଆରମ୍ଭ ହେଲା । କେତେକ ମାସ ପୂର୍ବରୁ ସାଧନା ମଣ୍ଡଳୀ ପାଇଁ କାର୍ଯ୍ୟର ଦାୟିତ୍ୱ ନେଇ ଯେଉଁ ସବୁ ଆଲୋଚନା କରୁଥିଲେ ଓ କର୍ମ ପନ୍ଥା ସମ୍ବନ୍ଧରେ ଯେଉଁ ଭାଷଣ ଦେଉଥିଲେ, ତା'ର ପ୍ରୟୋଗ ଆରମ୍ଭ ହେଲା ନିଜ ଜମିଦାରୀରେ । ଏଥର ଆସିଲେ ଅତୁଲଚନ୍ଦ୍ର ସେନ୍ ପ୍ରମୁଖ ଯୁବକଦଳ । ଏହି ସମୟରେ ଗ୍ରାମ ସଂଗଠନ ସମ୍ବନ୍ଧରେ କବି ଯେଉଁ ସବୁ ପତ୍ର ଲେଖିଥିଲେ, ସେଗୁଡ଼ିକ ବର୍ତ୍ତମାନ ଗ୍ରାମସେବକମାନଙ୍କ କାର୍ଯ୍ୟରେ ଲାଗିବ ।

ଏହି ସମୟରେ କଲିକତା ବିଶ୍ୱବିଦ୍ୟାଳୟରେ ଶିକ୍ଷା କମିଶନ ବସିଥିଲା ଓ ଦେଶରେ ଗୃହଆଡ଼େ ଶିକ୍ଷା ପ୍ରଣାଳୀ ନେଇ ଆଲୋଚନା ହେଉଥିଲା । କବିଙ୍କ ମନରେ ଦେଶ ସମ୍ବନ୍ଧରେ ନାନା ପ୍ରଶ୍ନ; ତାହା ମଧ୍ୟରେ ଶିକ୍ଷାର ପ୍ରସାର ଓ ଶିକ୍ଷା ସମସ୍ୟା କଥା ହିଁ ବେଶୀ । ତେଣୁ ଲେଖିଥିଲେ 'ଶିକ୍ଷାର ବାହନ' । କଲିକତାରୁ ଫେରି ରାମମୋହନ ଲାଇବ୍ରେରୀ ହଲରେ ପ୍ରବନ୍ଧଟି ପଢ଼ିଲେ (୧୯୧୮ ଡିସେମ୍ବର ୧୦) । କବିଙ୍କର ବକ୍ତବ୍ୟ ଦେଶୀୟ-ଭାଷା ମାଧ୍ୟମରେ ଯାବତୀୟ ଜ୍ଞାନ-ବିଜ୍ଞାନ ଦେଶ ମଧ୍ୟରେ ବିସ୍ତାର କରିବାକୁ ହେବ । ଏକଥା କହିବା କବିଙ୍କର ନୂଆ ନୁହେଁ—ତେବେ ବି ନୂତନ କରି ନାନା ଦୃଷ୍ଟାନ୍ତ ଦେଇ ସେ ବିଷୟଟିକୁ ସ୍ପଷ୍ଟତର କଲେ । ବଙ୍ଗଦେଶର ଶିକ୍ଷା ବ୍ୟବସ୍ଥା ମଧ୍ୟରେ ଇଂରେଜୀ ଓ ବଙ୍ଗଳାର ଦୁଇଟି ଧାରା ସୃଷ୍ଟି କରିବା ପାଇଁ ସୁପାରିଶ କରି ସେ କହିଥିଲେ 'ଯେ ଗଙ୍ଗା-ଯମୁନା-ଧାରା ଧଳା କଳା ଦୁଇ ସ୍ରୋତରେ ବିଭକ୍ତ ହେଲେ ବି, ଏକ ସଙ୍ଗେ ବହି ଚାଲିବ ।

ଏହି ପ୍ରସଙ୍ଗରେ ପରବର୍ତ୍ତୀ ଯୁଗର ଗୋଟିଏ କଥା ମନେ ପଡ଼ୁଛି । ମୁସଲିମ ଲିଗର ଶାସନ କାଳରେ ଯେତେବେଳେ ଆଜି-ଜୁଲହକ୍ ସାହେବ ଅଖଣ୍ଡ ବଙ୍ଗର ଶିକ୍ଷାମନ୍ତ୍ରୀ (୧୯୩୬), ସେ ସମୟରେ ମଧ୍ୟ କବି ଏହି ପ୍ରସ୍ତାବଟି ପେଶ୍ କରିଥିଲେ । କବିଙ୍କର ସୁପାରିଶ କେହି କେବେ ଗ୍ରହଣ କରିଛନ୍ତି କି ? ଶେଷରେ ବିଶ୍ୱଭାରତୀ ଆନୁକୂଲ୍ୟରେ 'ଲୋକଶିକ୍ଷା ସଂସଦ' ସ୍ଥାପିତ ହୋଇ ବଙ୍ଗଳାରେ ସର୍ବବିଧ ଜ୍ଞାନ-ବିଜ୍ଞାନ ବିତରଣର ଆୟୋଜନ ହୋଇଥିଲା ।

( ୭୯ )

ବାଙ୍କୁଡ଼ାରେ ଭୀଷଣ ଦୁର୍ଭିକ୍ଷ; ସ୍ଥିର ହେଲା ନିରନ୍ନମାନଙ୍କ ପାଇଁ ଅନ୍ନଭିକ୍ଷାକଲ୍ପେ 'ଫାଲ୍‌ଗୁନୀ' ଅଭିନୀତ ହେବ । ଶାନ୍ତିନିକେତନର ଛାତ୍ର, ଶିକ୍ଷକ ଓ ଠାକୁର ପରିବାରର ପୁଅ ଝିଅ

ମିଶି ଅଭିନୟ କଲେ ଯୋଡ଼ାସାଁକୋର ଘରେ । ଏହା ପୂର୍ବରୁ ପିଲମାନେ ମାଘୋତ୍ସବର ସଙ୍ଗୀତ ବୈଠକରେ ଯୋଗ ଦେବାକୁ ଆସିଥିଲେ—କିନ୍ତୁ ନାଟକ ଅଭିନୟ ଏହି ପ୍ରଥମ ।

ମୂଳ ଫାଲ୍‌ଗୁନୀର ଉପକ୍ରମଣିକା ହିସାବରେ କବି ଗୋଟିଏ ଛୋଟ ନାଟ୍ୟାଳାପର ଅବତାରଣା କଲେ; ସେଥିରେ ଅଛି କବି-ଶେଖର ନାମରେ ଏକ ତରୁଣ କବିର ଚରିତ । ରବୀନ୍ଦ୍ରନାଥ ଏହି ଅବତରଣିକାରେ କବିଶେଖର ଓ ମୂଳ ନାଟକରେ ଅନ୍ଧ ବାଉଲ୍—ଏହି ଦୁଇ ଭୂମିକାରେ ଅବତୀର୍ଣ୍ଣ ହେଲେ । ପ୍ରଥମେ ଯାହାଙ୍କୁ ଦେଖାଗଲା ଯୌବନର ଦୃପ୍ତ ହାସ୍ୟୋଜ୍ଜ୍ୱଳ ମୂର୍ତ୍ତିରେ, ନାଟକର ଶେଷ ଭାଗରେ ତାଙ୍କୁ ହିଁ ଦେଖାଦେଲା ବୃଦ୍ଧ ବାଉଲ୍ ବେଶରେ । କବି ନିଜେ ମଞ୍ଚୋପଯୋଗୀ ସାଜସଜ୍ଜା ନିଜର ତିନି ମହଲା ଘରେ କରିଥିଲେ । ଅବନୀନ୍ଦ୍ରନାଥ ରଙ୍ଗରସ ନିଷିକ୍ତ ତୂଳୀର ପରଶରେ ସେହି ମୂର୍ତ୍ତିଟିକୁ ଅମର କରି ରଖିଛନ୍ତି ।

ଅଭିନୟ ପରେ କବି ତାଙ୍କର ଗ୍ରାମୋଦ୍ୟୋଗ କେନ୍ଦ୍ରଗୁଡ଼ିକ ଦେଖିବାକୁ ଶିଳାଇଦହ ଗଲେ । ସେଠାରେ କଲେରା ଆରମ୍ଭ ହୋଇଥାଏ ବୋଲି ଏହା ପୂର୍ବରୁ ହୋମିଓପାଥିକ ଔଷଧ ଓ ଡାକ୍ତର ପଠାଇଥିଲେ । କବିଙ୍କର ଇଂରେଜୀ ଜୀବନୀକାର ଲେଖିଛନ୍ତି ଯେ ଫାଲ୍‌ଗୁନୀ-ଅଭିନୟର ବିରୂପ ସମାଲୋଚନା ବାହାରିବାରୁ କବି ଭାଙ୍ଗି ପଡ଼ିଲେ ଓ ସେଥିପାଇଁ ତାଙ୍କ ସଙ୍ଗରେ ବାଙ୍କୁଡ଼ା ନଯାଇ କଲିକତାରୁ ପଳାଇ ଗଲେ [fled from calcutta] । ଆମ୍ଭମାନଙ୍କର ମନେହୁଏ, ଇଂରେଜୀ ଜୀବନୀକାର ସମସାମୟିକ ସମସ୍ତ ଘଟଣା ଜାଣି ନ ଥିବାରୁ ବିଷୟଟିକୁ ଏପରି ଭାବରେ ବ୍ୟାଖ୍ୟା କରିଛନ୍ତି ।

ଏହି ସମୟରେ, କଲିକତାରେ ଗୋଟିଏ ଘଟଣା ନେଇ ଛାତ୍ର ମହଲରେ ବିକ୍ଷୋଭ ଓ ଆତଙ୍କ ସୃଷ୍ଟି ହୋଇଥାଏ । ରବୀନ୍ଦ୍ର-ନାଥ ସେ ସମ୍ବନ୍ଧରେ କିଛି ନ କହି ରହି ପାରିଲେ ନାହିଁ । କାରଣ ଛାତ୍ରମାନଙ୍କ ସହିତ ତାଙ୍କର ଦୀର୍ଘ ଦିନର ସଂପର୍କ । ବ୍ୟାପାରଟି ସଂକ୍ଷେପରେ କହୁଛି—

ପ୍ରେସିଡେନ୍‌ସି କଲେଜର ଅଧ୍ୟାପକ ଓଟେନ୍ ସାହେବ କ୍ଲାସରେ ପଢ଼ାଉ ପଢ଼ାଉ ଭାରତୀୟମାନଙ୍କ ସଂପର୍କରେ କିଛି କଟୂକ୍ତି କରିଥିଲେ । ଛାତ୍ରମାନେ ପ୍ରତିବାଦ କଲେ । ସେଥିରେ କୌଣସି ଫଳ ହେଲା ନାହିଁ । ପରେ ସିଡ଼ିରେ ଓହ୍ଲାଇଲାବେଳେ ପିଲାମାନେ ତାଙ୍କୁ ପ୍ରହାର କଲେ । ଏହି ଗଣ୍ଡଗୋଳର ନେତା ଥିଲେ ତତ୍କାଳୀନ କଲେଜ ଛାତ୍ର ସୁଭାଷ ଚନ୍ଦ୍ର ବସୁ । ଏହି ଘଟଣା ନେଇ କଲିକତାର ଶିକ୍ଷା ଓ ସରକାରୀ ମହଲରେ ବେଶ୍ ଆଲୋଚନା ହେଉଥାଏ । ରବୀନ୍ଦ୍ରନାଥ 'ଛାତ୍ରଶାସନ' ପ୍ରବନ୍ଧରେ ଏହି ବିଷୟର ଅତି ମନୋଜ୍ଞ ବିଶ୍ଳେଷଣ କରି କହିଛନ୍ତି ଯେ ଛାତ୍ରମାନେ ଯଦି ପ୍ରତିଦିନ ବିଦେଶୀ ଅଧ୍ୟାପକଙ୍କ ନିକଟରୁ ସେମାନଙ୍କର ଦେଶର, ଜାତିର, ଧର୍ମର ଅପମାନକର କଥା ଶୁଣନ୍ତି, ସେମାନେ ଅସହିଷ୍ଣୁତା ପ୍ରକାଶ କରିବା ଉଚିତ । ଯଦି ନକରନ୍ତି ତେବେ ତାହା ହେବ ଲଜ୍ଜା ଓ ଦୁଃଖର ବିଷୟ । ରବୀନ୍ଦ୍ରନାଥ, ଛାତ୍ରମାନେ ଗୁରୁଙ୍କୁ ପ୍ରହାର କରିବା କଥା ସମର୍ଥନ କରି ନାହାନ୍ତି, କରି ପାରନ୍ତେ ନାହିଁ । କିନ୍ତୁ ଅପମାନିତ ଓ ଉପଦ୍ରୁତ ହୋଇ ଛାତ୍ରମାନେ ଯେଉଁ କାଣ୍ଡଟି କରିଥିଲେ ତାହାକୁ ନିନ୍ଦା କରି ମଧ୍ୟ, ଏକଥା କହି ପାରିଲେ ନାହିଁ ଯେ କାର୍ଯ୍ୟଟି ଅସ୍ୱାଭାବିକ । ଜାତୀୟ ଅପମାନ ସହ୍ୟ କରିବାପାଇଁ ସେ କେବେ ବଙ୍ଗାଳିଙ୍କୁ ଉପଦେଶ ଦେଇ ନାହାନ୍ତି—ତାହା ମନୁଷ୍ୟତ୍ୱର ଅପମାନ ।

(୮୦)

ପୂର୍ବରୁ କହିଛି ଯେ କିଛିଦିନ ହେବ କେଉଁଆଡ଼େ ବୁଲି ଯିବା ପାଇଁ ମନ ଉତ୍ସୁକ ଥାଏ । ବହୁଦିନ ହେଲା ଜାପାନ ଦେଖିବାର ଇଚ୍ଛା ଥିଲା । ଜାପାନୀ ପରିବ୍ରାଜକ କାଓୟାଗୁଚି ଅଳ୍ପ କେତେବର୍ଷ ଆଗରୁ ଭାରତ ଭ୍ରମଣରେ ଆସିବା ବେଳେ କବିଙ୍କ ସହିତ ତାଙ୍କର ପରିଚୟ ହୋଇଥିଲା । ୧୯୧୫ ମସିହାର ମଧ୍ୟ-

ଭାଗରେ ତାଙ୍କ ନିକଟରୁ ଏକ ଆମନ୍ତ୍ରଣ ପତ୍ର ମିଳିଲା । ସୁଯୋଗ ମିଳିଲା ୧୯୧୬ ମସିହା ଏପ୍ରିଲ ମାସରେ—ଅପ୍ରତ୍ୟାଶିତ ଭାବରେ ମାର୍କିନ୍ ମୁଲକର ଏକ ବକ୍ତୃତା-ବ୍ୟବସ୍ଥାପକ ପ୍ରତିଷ୍ଠାନ ନିକଟରୁ ଆହ୍ୱାନ ଆସିଲା । ସଂସ୍ଥାର ମାଲିକ ମେଜର୍ ପଣ୍ଡ୍ ଜଣାଇଲେ ଯେ, କବି ଯଦି ସେମାନଙ୍କର ବ୍ୟବସ୍ଥାନୁଯାୟୀ ଯୁକ୍ତରାଷ୍ଟ୍ରର ସହର-ମାନଙ୍କରେ ବକ୍ତୃତା ଦେଇ ପାରନ୍ତି, ତେବେ ବାରହଜାର ଡଲାର ନଗଦ ଦିଆଯିବ । ସେତେବେଳର ବିନିମୟ-ମୂଲ୍ୟ ଅନୁଯାୟୀ ପ୍ରାୟ ଛତିଶ ହଜାର ଟଙ୍କା । ଦେଶର ବାହାରକୁ ଯିବାପାଇଁ ମନ ଏତେ ଉଦଗ୍ରୀବ ଯେ ପୂର୍ବାପର ନଭାବି ରାଜି ହୋଇ ତାର ବାର୍ତ୍ତା ପଠାଇ ଦେଲେ । ସହରରେ ବ୍ୟବସାୟୀମାନଙ୍କର ବ୍ୟବସ୍ଥାରେ ବକ୍ତୃତା ଦେଇ ବୁଲିବା ଯେ କି ବ୍ୟାପାର ତାହା ଠିକ୍ ଜାଣି ନଥିଲେ ।

୧୯୧୬ ଖ୍ରୀଷ୍ଟାବ୍ଦ ମେ ୩ ତାରିଖରେ କଲିକତାରୁ ଜାପାନୀ ଜାହାଜରେ କବି ବାହାରିଲେ । ସଙ୍ଗରେ ଗଲେ ପିୟର୍ସନ୍, ଏଣ୍ଡ୍ରୁଜ୍ ଓ ମୁକୁଲ ଦେ । ମୁକୁଲ ସେତେବେଳକୁ ବାଳକ; ତାଙ୍କର ଶିଳ୍ପ ପ୍ରତିଭା ଓ ବାଳକସୁଲଭ ବ୍ୟବହାର କବିଙ୍କୁ ଖୁବ୍ ଆକୃଷ୍ଟ କରିଥାଏ, ତେଣୁ ସଙ୍ଗରେ ନେଇଗଲେ ବିଦେଶ ।

ମେ ସାତ ତାରିଖରେ କବିଙ୍କର ଜନ୍ମତିଥିରେ ଜାହାଜ ରେଙ୍ଗୁନରେ ପହଞ୍ଚିଲା । ସେ ଦିନ ସକାଳେ ତାଙ୍କର 'ବଳାକା' ଗ୍ରନ୍ଥ ସହଯାତ୍ରୀ ପିୟର୍ସନ୍‌ଙ୍କୁ ଉତ୍ସର୍ଗ କରିଥିଲେ । ରେଙ୍ଗୁନରେ କବିଙ୍କର ଯଥୋଚିତ ସମ୍ବର୍ଦ୍ଧନା ହେଲା । ତା ପରେ ପିନାଙ୍ଗ, ସିଙ୍ଗାପୁର, ହଂକଂ ବନ୍ଦରରେ ଜାହାଜ ରହି ରହି ଚାଲିଲା—ସବୁଠି ମାଲ ବୋଝାଇ ହେଉ ଥାଏ, ଖଲାସ ହେଉଥାଏ । ଜାହାଜ ଘାଟରେ ମାଲ୍ ବୋଝାଇ ଓ ଖଲାସ କାର୍ଯ୍ୟ ଦେଖିବାରେ ଯେ ଏତେ ଆନନ୍ଦ ମିଳିବ, ଏ କଥା ପୂର୍ବରୁ ଭାବି ପାରି ନଥିଲେ । ଶିଳ୍ପୀର ଦୃଷ୍ଟି ହେତୁ ଏହି ସାବଲୀଳ ଶକ୍ତିର କାର୍ଯ୍ୟ କବିଙ୍କ ଆଖିକୁ ସୁନ୍ଦର ଲାଗୁଥିଏ ।

କଲିକତା ବନ୍ଦର ଛାଡ଼ିବାର ଛବିଶ ଦିନପରେ (୨୯ ମେ) ଜାହାଜ କୋବେ ବନ୍ଦରରେ ପହଞ୍ଚିଲା । କବି ଗୁଜୁରାଟୀ ବଣିକ ମୋରାରଜୀଙ୍କ ଘରେ ରହିଲେ । ତାଙ୍କ ଛଡ଼ା ଆହୁରି ଅନେକ କବିଙ୍କୁ ଅତିଥିରୂପେ ପାଇବାକୁ ଉତ୍ସୁକ ଥିଲେ । କୋବେ ପୂର୍ବପୂରି

ବଣିକ-ବନ୍ଦର, କବିଙ୍କ ଆଖିରେ ଖୁବ୍ କୁତ୍ସିତ । ସେଠାରୁ ଓସାକା ହୋଇ ଟୋକିଓ ଆସିଲେ । ଓସାକାରେ ଅବସ୍ଥାନ କାଳରେ କବିଙ୍କୁ ପ୍ରେସ ଆସୋସିଏସନରେ ବକ୍ତୃତା ଦେବାକୁ ହେଲା । ଜାପାନରେ ଏହା ହିଁ ତାଙ୍କର ପ୍ରଥମ ଭାଷଣ । ଟୋକିଓ ମହାନଗରୀରେ ଶିଳ୍ପୀ ଟାଇକ୍ଲାନଙ୍କର ଅତିଥି ହେଲେ । ଟାଇକ୍ଲାନ ଜାପାନର ଅନ୍ୟତମ ଶ୍ରେଷ୍ଠ ଶିଳ୍ପୀ ।

ପୁନରାୟ ବକ୍ତୃତା ଓ ସମ୍ବର୍ଦ୍ଧନାର ପାଲା ଆରମ୍ଭ ହେଲା । ପ୍ରଥମେ ଟୋକିଓ ବିଶ୍ୱବିଦ୍ୟାଳୟରେ ବକ୍ତୃତା, ତା ପରଦିନ ନଗରୀର ବିଖ୍ୟାତ ଉଇନୋ ପାର୍କରେ କବି-ସମ୍ବର୍ଦ୍ଧନା । ଜାପାନ ସରକାରଙ୍କର ବହୁ ଗଣ୍ୟମାନ୍ୟ ଲୋକ ସଭାରେ ଉପସ୍ଥିତ ହୋଇ କବିଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ ।

ମହାନଗରୀରେ ବାସ କଲେ ଜାପାନ ଦେଖା ସମ୍ଭବ ନୁହେଁ । ହାରସାନ୍ କହନ୍ତି ଯେ ଜଣେ ଧନୀଙ୍କର ଆହ୍ୱାନରେ ହାକୋନସ୍ଥ ତାଙ୍କର ପଲ୍ଲୀ ଘରେ ଅତିଥି ହେଲେ । କବି ଲେଖିଛନ୍ତି, 'ରାଜାପରି ଯତ୍ନ ପାଉଛି । ଏପରି ସୁନ୍ଦର ଜାଗା ଅନ୍ୟ କୌଣସିଠାରେ ପାଇବି ବୋଲି ମନେ ହୁଏନା ।'

ଜାପାନରେ କବି ଯେଉଁ କେତୋଟି ବକ୍ତୃତା ଦେଇଥିଲେ ତା ମଧ୍ୟରେ ବିଶେଷ ଉଲ୍ଲେଖଯୋଗ୍ୟ ହେଉଛି **The Nation ଓ the Spirit of Japan** । ଆମ୍ଭମାନଙ୍କର ଆଲୋଚ୍ୟ ସମୟ ହେଉଛି ପ୍ରଥମ ବିଶ୍ୱଯୁଦ୍ଧର ତୃତୀୟବର୍ଷ । ଏହି ସମୟରେ ଜାପାନ ଚୀନକୁ ନାନା ଭାବରେ ଲାଞ୍ଛିତ କରୁଥାଏ । ଚୀନ ମାତ୍ର ଗୁରି ପାଞ୍ଚ ବର୍ଷ ହେବ ବହୁ ଶତାବ୍ଦୀର ବନ୍ଧନରୁ ମୁକ୍ତ ହୋଇ ପ୍ରଜାତନ୍ତ୍ର ଶାସନ ସ୍ଥାପନ କରିଥାଏ—ସେତେବେଳେ ନାନା ଅନ୍ତର୍ଦ୍ୱନ୍ଦ୍ୱ ଫଳରେ କ୍ଷତ ବିକ୍ଷତ । ତା ଉପରେ ଜାପାନର ଆକ୍ରମଣ । ଉଦ୍ଧତଭାବରେ ଏପରି ସବୁ ସର୍ତ୍ତ ଚୀନ ଉପରେ ଦାବୀ କରାଗଲା, ଯାହା ମାନି ନେଲେ ଚୀନର ସାର୍ବଭୌମତ୍ୱ ରକ୍ଷା ଅସମ୍ଭବ । କବି ସମସ୍ତ ଦେଖୁଥାନ୍ତି; ଶୁଣୁଥାନ୍ତି କେଉଁଠି ଶିଳ୍ପରସିକ ଜାପାନର ଆଦର୍ଶବାଦ ! ଗୋଟିଏ ଭାଷଣରେ କବି ଚୀନ ପ୍ରତି ଜାପାନର ଏହି ଅନ୍ୟାୟ ମନୋଭାବର ନିନ୍ଦାକରି କହିଥିଲେ ଯେ ଜାପାନ ପକ୍ଷରେ ପାଶ୍ଚାତ୍ୟବସ୍ତୁ ସମୂହର

ଅନୁକରଣ ଜନିତ ଏହି ସାମ୍ରାଜ୍ୟ ଲୋଲୁପତା ଆଦୌ କଲ୍ୟାଣ-ପ୍ରଦ ହେବ ନାହିଁ, ହେଉ ନାହିଁ ମଧ୍ୟ । କହିବା ବାହୁଲ୍ୟ ଯେ ଜାପାନିଙ୍କ ଯୁଦ୍ଧକାମୀବର୍ଗ ଶାସକଗଣ ପରାଧୀନ ଭାରତର କବିଙ୍କଠାରୁ ଏହି ଅଯାଚିତ ଉପଦେଶ ଶୁଣି ବିରକ୍ତ ହେଲେ । ଜାପାନୀ ସରକାରୀ ମହଲ ଏପରି କଟକଣା କଲେ ଯେ କବିଙ୍କ ପକ୍ଷରେ ସଭାସମିତିରେ ବକ୍ତୃତା ଦେବାର ସମସ୍ତ ସୁବିଧା ବନ୍ଦ ହୋଇଗଲା ।

ଯେଉଁଦିନ ଜାପାନ ତ୍ୟାଗକଲେ, ସେଦିନ ଗୃହକର୍ତ୍ତାଙ୍କ ବ୍ୟତୀତ ଜାହାଜ ଘାଟରେ ତାଙ୍କୁ ବିଦାୟ ଦେବାକୁ କେହି ଉପସ୍ଥିତ ହୋଇ ପାରି ନଥିଲେ । ଅଥଚ ଯେଉଁଦିନ ସେ ପ୍ରଥମେ କୋବେରେ ପଦାର୍ପଣ କରିଥିଲେ ସେଦିନ ସମସ୍ତେ ରାଜ ସମ୍ମାନ ସହକାରେ ତାଙ୍କୁ ସ୍ୱାଗତ କରିଥିଲେ । ଏହା ହିଁ ହେଉଛି ଜାତି ଅଭିମାନର ରୂପ ।

(୮୧)

ଜାପାନରେ ତିନିମାସ ରହି କବି ପିୟର୍ସନ ଓ ମୁକୁଲଙ୍କୁ ସଙ୍ଗରେ ନେଇ ଆମେରିକା ଯାତ୍ରା କଲେ । ଏଣ୍ଡ୍ରୁଜ୍ ପୂର୍ବରୁ ଭାରତ ଫେରି ଆସିଥିଲେ ।

ଜାହାଜ ସିଆଟେଲ୍ ବନ୍ଦର ଛୁଇଁଲା ସେପ୍ଟେମ୍ବର ୧୮ ତାରିଖରେ (୧୯୧୭) । ସେଠାରୁ ବକ୍ତୃତା-ବ୍ୟବସାୟୀ ଶ୍ରୀଯୁକ୍ତ ପଣ୍ଡ୍ କବିଙ୍କର ଦାୟିତ୍ୱ ଗ୍ରହଣ କଲେ । କମ୍ପାନୀର ବ୍ୟବସ୍ଥା ମୁତାବକ ବକ୍ତୃତାର ଆୟୋଜନ ଆରମ୍ଭ ହେଲା । କବି ଭାରତରୁ ଜାହାଜରେ ଆସିବା ସମୟରେ କେତେ ଗୁଡ଼ିଏ ପ୍ରବନ୍ଧ ଲେଖିଥିଲେ ଓ ଜାପାନ-ବାସ କାଳରେ କେତେଗୁଡ଼ିଏ ଲେଖିଲେ । ଏହି ପ୍ରବନ୍ଧ ସବୁ ସଂକଳିତ ହୋଇ 'ପର୍ସନାଲିଟି' ଓ 'ନ୍ୟାସନାଲିଜମ୍' ନାମରେ ଛପା ହେଲା ।

ପ୍ରଶାନ୍ତ ମହାସାଗରରୁ ଆଟଲାଣ୍ଟିକ୍ ମହାସାଗର ପର୍ଯ୍ୟନ୍ତ ସହରମାନଙ୍କରେ ବକ୍ତୃତା ଦେଲେ । ସିଆଟେଲ୍, ପୋର୍ଟଲାଣ୍ଡ,

ସାନଫ୍ରାନ୍‌ସିସ୍‌କୋ, ଲସ୍‌ଏଞ୍ଜେଲସ୍‌, ସାନ-ଡିଏଗୋ ପ୍ରଭୃତି ସହରଗୁଡ଼ିକ ପ୍ରଶାନ୍ତ ମହାସାଗର ନିକଟବର୍ତ୍ତୀ । ସଲ୍‌ଟ ଲେକ୍ ଛୋଇ ଶିକାଗୋ ଆସିଲେ । ପୂର୍ବରୁ ଶିକାଗୋ ଆସିଥିଲେ । କିନ୍ତୁ ସେଇଁ ସବୁ ଅଞ୍ଚଳ ବୁଲିଲେ ତାହା ଥିଲା କବିଙ୍କର ସମ୍ପୂର୍ଣ୍ଣ ଅଜ୍ଞାତ ।

ଦୁଇମାସ ପର୍ଯ୍ୟନ୍ତ ପ୍ରାୟ ପ୍ରତିଦିନ ବକ୍ତୃତା ପୁନରୁକ୍ତି କରି କରି ଶେଷରେ ନିଉୟର୍କରେ ପହଞ୍ଚିଲେ । ସେଠାରୁ ବୋଷ୍ଟନ୍‌, ଇଟ୍‌ଫିଲ ବିଶ୍ୱବିଦ୍ୟାଳୟ ଓ ଅନ୍ୟ କେତୋଟି ସ୍ଥାନ ଭ୍ରମଣ କରିବା ପରେ କବିଙ୍କର ମନ ବିଦ୍ରୋହୀ ହୋଇ ଉଠିଲା । ଅନେକ ଟଙ୍କା ଲୋକସାନ୍ ଦେଇ ଚୁକ୍ତି ରଦ୍ଦ କରି ଦେଲେ । ତାପରେ କଲେରାଡୋ ଦେଇ ସାନ୍‌ଫ୍ରାନ୍‌ସିସ୍‌କୋ ଫେରି ଆସିଲେ । ସେଠାରୁ ପିୟର୍ସନ ଓ ମୁକୁଲଙ୍କୁ ସଙ୍ଗରେ ନେଇ ଜାପାନ ଚାଲି ଆସିଲେ । ଆସିବା ବାଟରେ ହାୱାଇ ଦ୍ୱୀପର ପ୍ରଧାନ ନଗର ହନଲୁଲୁରେ ଦିନେ ରହିଥିଲେ । ଜାପାନ ଫେରିବା ପରେ ପିୟର୍ସନ ସେଠାରେ କିଛିଦିନ ରହିବାକୁ ଚାହିଁଲେ । ପଲ୍‌ ରିଶାର୍‌ ନାମକ ଏକ ଫରାସୀ ସାବୁକଙ୍କ ସହିତ ତାଂକର ଗଭୀର ବନ୍ଧୁତ୍ୱ ହୋଇଥିଲା ।, ତାଂକର 'To the Nations' ନାମକ ଗ୍ରନ୍ଥର ଭୂମିକା କବିଙ୍କ ଦ୍ୱାରା ଲେଖାଇ ନେଇଥିଲେ । ପଲ୍‌ ରିଶାର କେତେକ ବର୍ଷ ପରେ ଶାନ୍ତିନିକେତନ ଆସି କିଛି ଦିନ ରହିଲେ ଓ ବିଶ୍ୱଭାରତୀ ଛାତ୍ରମାନଙ୍କୁ ଫରାସୀ ଶିଖାଇଲେ ।

କବି ସ୍ୱଦେଶକୁ ଫେରି ଆସିଲେ ୧୯୧୭ ମସୀହା ମାର୍ଚ୍ଚ ମାସରେ । ଦେଶ ବାହାରେ ପ୍ରାୟ ଦଶମାସ କଟାଇଥିଲେ ।

ଏହି ବୁଲାବୁଲି ଓ ବିଚିତ୍ର ମଣିଷଙ୍କ ସହିତ ମିଳାମିଶା ଫଳରେ ଜଗତକୁ ନୂତନଭାବରେ ଦେଖିଲେ । ସମସାମୟିକ ପତ୍ରରେ ଲେଖିଛନ୍ତି, 'ମୋର ଦେଶର ଗଣ୍ଡି ଘୁଞ୍ଚି ଯାଇଛି, ସବୁ ଦେଶକୁ ମୋର ହୃଦୟ ମଧ୍ୟରେ ଏକ ଦେଶ କରି ଗଢ଼ିପାରିଲେ ଛୁଟି ପାଇ ପାରିବି' ।

କବିଙ୍କର ୧୯୧୨ ଓ ୧୯୧୬ ସାଲ ବିଦେଶଯାତ୍ରା ମଧ୍ୟରେ ଗୋଟିଏ ପାର୍ଥକ୍ୟ ଥିଲା ।

ପ୍ରଥମଥର ରବୀନ୍ଦ୍ରନାଥ ଯାଇଥିଲେ ତୀର୍ଥଯାତ୍ରୀର ମନୋଭାବ ନେଇ । ବିଦେଶ ପାଇଁ ନେଇ ଯାଇଥିଲେ 'ଗୀତାଞ୍ଜଳି' । ସେଥିରେ ପ୍ରକାଶ ପାଇଛି କବିଙ୍କର ଗଭୀର ଆଧ୍ୟାତ୍ମିକ ପ୍ରବୃତ୍ତି—ୟୁରୋପର ସମସ୍ୟା ପୀଡ଼ିତ ବ୍ୟସ୍ତତା-ପୂର୍ଣ୍ଣ ବ୍ୟକ୍ତି-ଜୀବନର ଉପଜୀବ୍ୟ ଶାନ୍ତିରସ । ସେଠାରୁ ଆଣିଥିଲେ ଅଶାନ୍ତି ଓ ଝଡ଼ ଝଞ୍ଜା – ପ୍ରାଚ୍ୟ ଜୀବନରେ ଯାହାର ବିଶେଷ ପ୍ରୟୋଜନ ଥିଲା । ସାହିତ୍ୟ ଜୀବନରେ ସବୁଜ ପତ୍ରର ଆରମ୍ଭ ହୋଇଥିଲା; ଲେଖିଥିଲେ ନୂତନ ଧରଣର ଗଳ୍ପ, ଉପନ୍ୟାସ ଓ କବିତା ।

ଏଥର ମଧ୍ୟ କବି ଜାପାନ ଓ ଆମେରିକା ଉଦ୍ଦେଶ୍ୟରେ ଏକ ଉଦାରବାଣୀ ବହନ କରି ଯାଇଥିଲେ । ଉଗ୍ର ଜାତୀୟତା-ବୋଧ ପୃଥିବୀକୁ କେଉଁ ଆଡ଼କୁ ନେଇ ଯାଉଛି ସେ ସମ୍ବନ୍ଧରେ ସତର୍କବାଣୀ ଘୋଷଣା କରିଥିଲେ—'ନ୍ୟାସନାଲିଜମ୍' ଗ୍ରନ୍ଥର ସଂକଳିତ ପ୍ରବନ୍ଧାବଳୀରେ । ନ୍ୟାସନାଲିଜମ୍‌ର ଯେ ଗୋଟିଏ ବଡ଼ ଦିଗ ଅଛି, ତାହା ସ୍ୱଦେଶୀ ଆନ୍ଦୋଳନ ସମୟରେ କବି ତାଂକର ବହୁ ରଚନାରେ ସୁନ୍ଦରଭାବରେ ରୂପାୟିତ କରିଥିଲେ । ତେଣୁ ଆଗ୍ରହୀ ବ୍ରଜେନ୍ଦ୍ରନାଥ ଶୀଲ ରବୀନ୍ଦ୍ର-ସମ୍ବର୍ଦ୍ଧନାରେ କହିଥିଲେ, 'ସେଥର ଗୀତାଞ୍ଜଳିରେ ସେଠାର ବ୍ୟକ୍ତିଗତ ଜୀବନର unrest ବା ଅଶାନ୍ତି-ନିବାରଣାର୍ଥେ ଏକ ଶାନ୍ତି ମନ୍ତ୍ର ନେଇ ଯାଇଥିଲେ । ଗାଇଥିଲେ ଭଗବାନଙ୍କ ସହିତ ଆତ୍ମାର ଲୀଳାରେ ହିଁ ଶାନ୍ତି । କିଂତୁ ଏଥର ସେଠାର ସାମାଜିକ ଜୀବନର unrest ବା ଅଶାନ୍ତି ନିବାରଣାର୍ଥେ ଭାରତବର୍ଷର ଚିରସାଧିତ ଶାନ୍ତି ଓ ମୈତ୍ରୀର ରହସ୍ୟ ଉଦ୍‌ଘାଟନ କଲେ । ସେଥର ବ୍ୟକ୍ତିର ନିତ୍ୟ ସହଚର ଭଗବାନ୍‌ଙ୍କୁ ଦେଖାଇଥିଲେ ଓ ଏଥର ସମାଜ-ଜୀବନର ନିତ୍ୟ ସହଚର **The Eternal Individual** ବା ଚିରନ୍ତନ ବ୍ୟକ୍ତିର ମହିମା ଘୋଷଣା କଲେ ।'

(୮୨)

ଜାପାନ ଓ ଆମେରିକା ଭ୍ରମଣ ଶେଷକରି କଲିକତା ଫେରି ଦେଖିଲେ ଯେ ଯୋଡ଼ାସାଁକୋ ଘରେ 'ବିଚିତ୍ରା' ବେଶ୍ ଜମି ଉଠିଛି; ସହରର ବହୁ ରବୀନ୍ଦ୍ର-ଭକ୍ତ କ୍ଲବର ସଦସ୍ୟ ।

ଏ ବିଗରେ ଜାତୀୟତାବାଦୀଗଣ ତାଙ୍କ ଉପରେ ଖଡ଼ଗହସ୍ତ—କାରଣ ସେ ବିଦେଶରେ ନ୍ୟାସନାଲିଜମ୍ ବିରୁଦ୍ଧରେ ବକ୍ତୃତା ଦେଇଛନ୍ତି । ରବୀନ୍ଦ୍ରନାଥ ଯେଉଁ ନ୍ୟାସନାଲିଜମ୍‌ର ନିନ୍ଦା କରିଥିଲେ ତାହା ମାନବଧର୍ମ ବିରୋଧୀ, ଦ୍ୱନ୍ଦ୍ୱ । କେଉଁ ଆଦର୍ଶ ଦୃଷ୍ଟିରୁ କବି ବିଦେଶରେ ଏହା କହିଥିଲେ ତାହା ବିରୁଦ୍ଧବାଦୀ ସମସ୍ତେ ବୁଝି ପାରି ନଥିଲେ । କୌଣସି କୌଣସି କ୍ଷେତ୍ରରେ ଅଳୀକ କାରଣରୁ ବ୍ୟକ୍ତିଗତ ଅସନ୍ତୋଷ ମଧ୍ୟ ଥିଲା । ସାହିତ୍ୟ-ଧ୍ୱଜାଧାରୀମାନଙ୍କର କବିଙ୍କ ଉପରେ କମ୍ ଆକ୍ରୋଶ ନଥିଲା । ଏହି ଅବସ୍ଥାରେ କବିଙ୍କର ସ୍ତାବକ ଦଳ ମଧ୍ୟ ତାଂକର ମନକୁ ଉତ୍‌କ୍ଷିପ୍ତ କରିବାରେ କମ୍ ଦାୟୀ ନଥିଲେ । ସେମାନେ କବିଙ୍କ ନିକଟରେ ବନ୍ଧୁତ୍ୱ ରଖିବା ପାଇଁ ପ୍ରତିପକ୍ଷମାନଙ୍କର କଥାବାର୍ତ୍ତା, ମତାମତ ଅତିରଞ୍ଜିତ କରି କବିଙ୍କୁ ଶୁଣାଉଥିଲେ । ଏହି ଆଳାପ-ଆଲୋଚନା ଶୁଣି କବିଙ୍କର ମନ ପ୍ରଥମେ ଉତ୍ତେଜିତ ଓ ପରେ ଅବସାଦଗ୍ରସ୍ତ ହୋଇପଡ଼ିଲା । ଏହାଛଡ଼ା ବାର୍ଦ୍ଧକ୍ୟଜନିତ 'ଭୟାନକ ସଙ୍ଗହୀନତା' ମଧ୍ୟ ସେ ଅନୁଭବ କରୁଥିଲେ । ଶାନ୍ତିନିକେତନରୁ ଗୋଟିଏ ପତ୍ରରେ ଲେଖି ଥିଲେ, 'ମନଟା ଅତ୍ୟନ୍ତ ଏକୁଟିଆ ହୋଇପଡ଼ୁଛି । କେବଳ ଲେଖାଲେଖି ଦ୍ୱାରା ଏହି ଶୂନ୍ୟତା ପୂରଣ ହେବ ବୋଲି ମନେ ହେଉ ନାହିଁ । ବିଦ୍ୟାଳୟ ମୋର ସଙ୍ଗୀ ।'

ଗ୍ରୀଷ୍ମାବକାଶ ପାଇଁ ବିଦ୍ୟାଳୟ ବନ୍ଦ ହେବାରୁ କଲିକତା ଗଲେ । ବିଚିତ୍ରା ଭବନରେ ମହାସମାରୋହରେ ଜନ୍ମୋତ୍ସବ ପାଳନ କରାହେଲା ।

ମାର୍କିନ ମୁଲକର ଭ୍ରମଣ ଶେଷକରି ଆସିବା ପରଠାରୁ କବିଙ୍କୁ ସବୁଜପତ୍ରରେ ଲେଖିବା ପାଇଁ ପ୍ରମଥ ଚୌଧୁରୀ ତାଗିଦା ଦେଉଥାନ୍ତି, ଫଳରେ 'ପଇଲାନମ୍ବର' (ସବୁଜପତ୍ର ୧୩୨୪ ଆଷାଢ଼) ଗଳ୍ପଟି ଲେଖିଥିଲେ ।

ବିଚିତ୍ରାର ସାନ୍ଧ୍ୟ ବୈଠକରେ ଗଳ୍ପ ଗୁଜବ, ସାହିତ୍ୟ ଆଲୋଚନା, ସଙ୍ଗୀତ ବୈଠକ, ଅଭିନୟାଦି କରି କୌଣସି ପ୍ରକାରେ ଦିନ କଟିଯାଉଥାଏ । କିନ୍ତୁ ସଂସାରରେ ନାନା ସମସ୍ୟା ।

ଜ୍ୟେଷ୍ଠାକନ୍ୟା ବେଲା ମୃତ୍ୟୁ ଶଯ୍ୟାରେ; ଜାମାତା ଶରତଚନ୍ଦ୍ରଙ୍କ ସହିତ କବିଙ୍କର ଭଲ ସଂପର୍କ ନାହିଁ । ରବୀନ୍ଦ୍ରନାଥ ମଝିରେ ବ୍ୟବସାୟ ଆରମ୍ଭ କରିଥିଲେ । ଜାପାନରୁ ଫେରି ଜାଣିଲେ ଯେ ସେହି ବ୍ୟବସାୟରେ ଶନି-ପ୍ରବେଶ କରିଛି । ଫଳରେ ବ୍ୟବସାୟ ସହ ସମସ୍ତ ସଂପର୍କ ତୁଟାଇବାକୁ ପଡ଼ିଲା ।

ଦେଶ ମଧ୍ୟରେ ରାଜନୀତି ଘନେଇ ଉଠିଥାଏ; ଏଠି ସେଠି ସନ୍ତ୍ରାସବାଦୀମାନଙ୍କର ବୋମା ଓ ଗୁଳିର ଶବ୍ଦ ପ୍ରାୟ ଶୁଣା ଯାଉଥାଏ । ମହାଯୁଦ୍ଧ ଚାଲିଥାଏ ଓ ବ୍ରିଟିଶ ସରକାର ଭାରତ ରକ୍ଷା ଆଇନ୍ ଜାରି କରି ପ୍ରାୟ ବାରଶହ ବଂଗାଳୀ ଯୁବକଙ୍କୁ ଜେଲ, ଦୁର୍ଗମସ୍ଥାନ ଅଥବା ଦୁର୍ଗରେ ଅଟକ ରଖିଥାନ୍ତି । ହୋମରୁଲ୍ ଲିଗ୍‌ର ସ୍ଥାପୟିତ୍ରୀ ଆନି ବେସାନ୍ତ ସ୍ୱରାଜ ପ୍ରାପ୍ତି ପାଇଁ ଆନ୍ଦୋଳନ ଆରମ୍ଭ କରିବା ଦ୍ୱାରା ମାନ୍ଦ୍ରାଜ ସରକାର ତାଙ୍କୁ ନଜରବନ୍ଦୀ କଲେ ୧୯୧୭ ମସିହା ଜୁନ୍ ୧୬ ତାରିଖରେ ।

ଏହି ସବୁ ଘଟଣା ଫଳରେ ମନ ଉତ୍ତେଜିତ ହୋଇ ଉଠିଲା । ସରକାରୀ ଦମନ ନୀତିର ପ୍ରତିବାଦ ଓ ବେସାନ୍ତଙ୍କ ପ୍ରତି ସହାନୁଭୂତି ଜଣାଇ ସଂବାଦପତ୍ରରେ ବିବୃତି ପ୍ରକାଶ କଲେ । କଲିକତାର ଲୋକମାନେ ଅନ୍ତରୀଣ ବ୍ୟବସ୍ଥା ବିରୁଦ୍ଧରେ ପ୍ରତିବାଦ କରିବାକୁ ଚାହିଁବାରୁ, ଟାଉନ୍‌ହଲ୍ କର୍ତ୍ତୃପକ୍ଷ ହଲ୍‌ରେ ସଭା କରିବାକୁ ଅନୁମତି ଦେଲେ ନାହିଁ । ପ୍ରଥମେ ରାମ ମୋହନ ହଲ୍‌ରେ ଓ ପରେ ହାରିସନ୍ ରୋଡ଼ର ମୋଡ଼ରେ ଆଲଫ୍ରେଡ଼ ରଙ୍ଗମଞ୍ଚରେ କବି 'କର୍ତ୍ତାର ଇଚ୍ଛାୟ କର୍ମ' ନାମକ ଏକ ଦୀର୍ଘ ପ୍ରବନ୍ଧ ପଢ଼ିଲେ । ସଦ୍ୟଲିଖିତ 'ଦେଶ ଦେଶ ନନ୍ଦିତ କରି, ମନ୍ଦ୍ରିତ ତବ ଭେରୀ' ସଂଗୀତଟି ସଭାରେ ଗାନ କରାଗଲା । କି ଉତ୍ସାହ, ଉତ୍ତେଜନା ! ଏହି ପ୍ରବନ୍ଧରେ ସ୍ୱଦେଶୀ-ଯୁଗର ତେଜୋଦୀପ୍ତ ରବୀନ୍ଦ୍ରନାଥଙ୍କୁ ଆଉଥରେ ଦେଖିବାକୁ ମିଳିଲା ।

ରବୀନ୍ଦ୍ରନାଥ ଯେ କୌଣସି ସମସ୍ୟା ହେଉନା କାହିଁକି, ତା'ର ସମଗ୍ର ରୂପ ଦେଖିବାରେ ଅଭ୍ୟସ୍ତ । ତେଣୁ ଏହି ପ୍ରବନ୍ଧରେ ଇଂରେଜଙ୍କର ଅବିଚାର ସମ୍ବନ୍ଧରେ ତୀବ୍ର ପ୍ରତିବାଦ କରି ମଧ୍ୟ ଗୋଟିଏ ପ୍ରଶ୍ନ ଉତ୍ଥାପନ କରିଥିଲେ—କାହିଁକି ଗୋଟିଏ ଦେଶରେ ବିଦେଶୀ ଶାସନ ସମ୍ଭବ ପର ହୁଏ ? ସେ କହିଲେ ଯେ

ଆମ୍ଭମାନଙ୍କର ଆଗକୁ ଅଗ୍ରସର ହେବାରେ ପ୍ରବଳତର ବାଧା ରହିଛି ଆମର ପଛରେ । ଆମ୍ଭମାନଙ୍କର ଅତୀତ ତାହାର ସମ୍ମୋହନ ଫାଶରେ ବର୍ତ୍ତମାନକୁ ବ୍ୟର୍ଥ ଓ ଭବିଷ୍ୟତକୁ ଦୁଷ୍ପ୍ରାପ୍ୟ କରି ରଖିଛି । କବିଙ୍କ ମତରେ ଯେଉଁ 'ଆତ୍ମ କର୍ତ୍ତୃତ୍ୱ' ମନୁଷ୍ୟର ବୁଦ୍ଧି ଓ ବୋଧିକୁ ମୁକ୍ତ କରେ ନାହିଁ, ତାହାର ସୁଫଳ କେବେହେଁ ଜାତିର ପ୍ରତ୍ୟେକ ବ୍ୟକ୍ତି ଭୋଗକରି ପାରିବେ ନାହିଁ । ସେ ସୁବିଧା କେବଳ ମୁଷ୍ଟିମେୟ ଲୋକଙ୍କ ପାଇଁ । ସେ 'ସ୍ୱାୟତ୍ତ ଶାସନ' କାମ୍ୟ ନୁହେଁ । ଆମ୍ଭମାନଙ୍କର ରାଜନୀତି ଚାଲିଛି ଇଂରାଜୀ କର୍ତ୍ତାଙ୍କର ଇଚ୍ଛାରେ, ଆମ୍ଭମାନଂକର ସମାଜ-ନୀତି ଚାଲିଛି ପୁରାତନ ଦେଶାଚାର, ଲୋକାଚାର ବା ଶାସ୍ତ୍ର କର୍ତ୍ତାଙ୍କର ଇଚ୍ଛାରେ । ଏହି ଦୁଇଟି ସମୂଳେ ଉତ୍ପାଟିତ କରିବାକୁ ଦରକାର ମଣିଷ ମନର ମୁକ୍ତି—ଏହାହିଁ ଥିଲା କବିଙ୍କର ଅସଲ ବକ୍ତବ୍ୟ । କବିଙ୍କର ସାମାଜିକ ମତକୁ ଲକ୍ଷ୍ୟକରି ଏହି ପ୍ରବନ୍ଧ ଉପରେ ମଧ୍ୟ ତୀବ୍ର ସମାଲୋଚନା ହେଲା । ରାଜନୀତି କ୍ଷେତ୍ରରେ ଆମ୍ଭେମାନେ ଯେଉଁ ସ୍ୱାଧୀନତା ଦାବୀ କରୁ ସମାଜନୀତି କ୍ଷେତ୍ରରେ ତାହାର ପ୍ରୟୋଗ ଦେଖିବାକୁ ପ୍ରସ୍ତୁତ ନୋହୁଁ । ତେଣୁ ଆଜି ପର୍ଯ୍ୟନ୍ତ ଆମ୍ଭମାନଙ୍କର ଜୀବନରେ ସଙ୍କଟ ଓ ସମସ୍ୟା ଦେଖା ଦେଉଛି, ଏହିଠାରେ ।

ଏ ସମୟରେ ବଙ୍ଗଳାର ରାଜନୈତିକ ଆକାଶ ମେଘାଚ୍ଛନ୍ନ । ବଙ୍ଗୀୟ ପ୍ରାଦେଶିକ କଂଗ୍ରେସର ଅଭ୍ୟର୍ଥନା ସମିତିର ଉଗ୍ରପନ୍ଥୀ ସଦସ୍ୟଗଣ ବନ୍ଦନୀ ଆନି ବେସାନ୍ତଙ୍କୁ କଲିକତାର ଆଗାମୀ କଂଗ୍ରେସ ଅଧିବେଶନର ସଭାନେତ୍ରୀ କରିବାକୁ ଚାହିଁଲେ । ଅଧିକାଂଶ ସଦସ୍ୟ ସେ ପ୍ରସ୍ତାବ ଗ୍ରହଣ ନ କରିବାରୁ, ଏମାନେ ପୃଥକ୍ ଅଭ୍ୟର୍ଥନା ସମିତି ଗଠନ କରି ରବୀନ୍ଦ୍ରନାଥଙ୍କୁ ତାର ସଭାପତି କଲେ । କେତେକ ଦିନ ପାଇଁ ଦେଶରେ ବିଶେଷତଃ କଲିକତାରେ ପ୍ରବଳ ଉତ୍ତେଜନା ଦେଖା ଦେଇଥିଲା । ଯୋଡାସାଁକୋ ଘରକୁ ନାନା ଲୋକ ଯା ଆସ କରୁଥାନ୍ତି । ଶେଷରେ ନିଖିଳ ଭାରତ କଂଗ୍ରେସ କମିଟି ଆନି ବେସାନ୍ତଙ୍କୁ ସଭାନେତ୍ରୀ କରିବାକୁ ରାଜି ହେଲାପରେ କବି ଅଭ୍ୟର୍ଥନା ସମିତିର ସଭାପତି ପଦ ତ୍ୟାଗ କଲେ । ଧୀରପନ୍ଥୀ ଦଳର ସଭାପତି ରାୟବାହାଦୁର ବୈକୁଣ୍ଠନାଥ ସେନ ଯଥାବିଧି

କାର୍ଯ୍ୟ ଚଳାଇଲେ । ବେସାନ୍ତ ମୁକ୍ତ ପାଇ କଲିକତା ଆସିଲେ (୧୯୧୭ ସେପ୍ଟେମ୍ବର ୫) ଓ କବିଙ୍କ ସହିତ ଦିନେ ଦେଖା କରି ଗଲେ ।

ରାଜନୀତି ଝଡ଼ଝଞ୍ଜା କେତେଦିନ ବା କବିଚିତ୍ତକୁ ଆକ୍ରାନ୍ତ କରିପାରେ ? କଂଗ୍ରେସୀ ଗଣ୍ଡଗୋଳ ତୁଟିଯିବା ପରେ କବିଙ୍କ ମନ ତତ୍‌କ୍ଷଣାତ୍ ଲାଗିଗଲା 'ଡାକଘର' ଅଭିନୟରେ । ବିଚିତ୍ରାର ଉପର ମହଲା ଘରେ (ବର୍ତ୍ତମାନ ସେଠାରେ ବିଶ୍ୱଭାରତୀ ପ୍ରକାଶନ ବିଭାଗର କାର୍ଯ୍ୟାଳୟ) ଦୁଇଦିନ 'ଡାକଘର' ଅଭିନୀତ ହେଲା । ଦିନେ ବିଚିତ୍ରାର ସଦସ୍ୟମାନଙ୍କ ପାଇଁ ଓ ଅନ୍ୟ ଦିନକ ବିଶିଷ୍ଟ ଅତିଥିମାନଙ୍କ ପାଇଁ । ସେ ଦିନ ଆନି ବେସାନ୍ତ, ବାଲଗଙ୍ଗାଧର ତିଳକ, ମଦନ ମୋହନ ମାଲବ୍ୟ, ଗାନ୍ଧିଜୀ ପ୍ରଭୃତି ଅନେକ ଉପସ୍ଥିତ ଥିଲେ । ସେଦିନ ଅଭିନୟର ନୂତନ ଗୀତ ଓ ମଞ୍ଚସଜ୍ଜାର ଉନ୍ନତ ମାନ ଲୋକଙ୍କର ଦୃଷ୍ଟି ଆକର୍ଷଣ କରିଥିଲା ।

୧୯୫୭ ସାଲର ଶେଷଭାଗର ଗୋଟିଏ ଯୋଡ଼ିଏ ଘଟଣା ଉଲ୍ଲେଖ କରୁଛି । ଏହି ସମୟରେ କଲିକତା ବିଶ୍ୱବିଦ୍ୟାଳୟର ଉନ୍ନତି କଳ୍ପେ ଏକ କମିସନ ବସିଥିଲା; ସଭାପତି ଥିଲେ ଇଂଲଣ୍ଡର ଲୀଡ୍‌ସ ବିଶ୍ୱବିଦ୍ୟାଳୟର କୁଳପତି ସାର୍ ମାଇକେଲ୍ ସ୍ୟାଡ଼ଲାର । ସେ ଶାନ୍ତିନିକେତନ ବୁଲି ଆସିଥିଲେ । ସ୍ୟାଡ଼ଲାର ସାହେବ ଶିକ୍ଷା ସମ୍ପର୍କରେ କବିଙ୍କର ମତାମତ ଗ୍ରହିଁବାରୁ କବି କମିସନ୍ ନିକଟକୁ ନିଜର ମତାମତ ଲେଖି ପଠାଇଦେଲେ । ସେଥିରେ ଲେଖିଥିଲେ, 'ଇଂରେଜୀ ଭାଷାକୁ ଦ୍ୱିତୀୟ ଭାଷା ରୂପେ ଭଲ କରି ଶିଖାଇବାକୁ ପଡ଼ିବ । କିନ୍ତୁ ସ୍କୁଲ କଲେଜ ଓ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ମାତୃଭାଷା ମାଧ୍ୟମରେ ସମସ୍ତ ପ୍ରକାରର ଜ୍ଞାନ-ବିଜ୍ଞାନ ଶିକ୍ଷା ଦେବା ଦରକାର ।' ଏକଥା ରବୀନ୍ଦ୍ରନାଥ ବହୁଦିନରୁ କହି ଆସୁଥିଲେ ।

ଅନ୍ୟ ଗୋଟିଏ ଉଲ୍ଲେଖଯୋଗ୍ୟ ଘଟଣା ହେଉଛି ଯେ ୧୯୧୭ ମସୀହା ଶେଷ ଆଡ଼କୁ ତତ୍‌କାଳୀନ ଭାରତ ସଚିବ ସାମୁଏଲ ମଣ୍ଟେଗୁ ସାହେବ ହଠାତ୍ ଭାରତ ଆସିଲେ । ଅଗଷ୍ଟ ମାସରେ ସେ ପାର୍ଲାମେଣ୍ଟରେ ଘୋଷଣା କରିଥାନ୍ତି ଯେ ଭାରତକୁ ଦାୟିତ୍ୱପୂର୍ଣ୍ଣ ସ୍ୱରାଜ୍ୟ ଅଳ୍ପେ ଅଳ୍ପେ ଦିଆଯିବ । ସେହି ଘୋଷଣା

ଅନୁସାରେ ଦେଶର ଅବସ୍ଥା ଦେଖିବାକୁ, ଲୋକଙ୍କର ମତାମତ ଜାଣିବାକୁ ଆସି ପହଞ୍ଚିଲେ । ସେ ସବୁଦଳର ମତାମତ ଶୁଣିଲେ; କିନ୍ତୁ ନିଜେ କିଛି କହିଲେ ନାହିଁ । ରବୀନ୍ଦ୍ରନାଥଙ୍କ ସହିତ ମଣ୍ଟେଗୁଙ୍କର ସାକ୍ଷାତ ହୋଇଥିଲା ବିଚିତ୍ରା ଭବନରେ । ଶୁଣାଯାଏ କବି ଦେଶର ପରିସ୍ଥିତି ସଂପର୍କରେ ମଣ୍ଟେଗୁ ସାହେବଙ୍କୁ ଖଣ୍ଡିଏ ପତ୍ର ଲେଖିଥିଲେ ।

ଯଥା ସମୟରେ ବଙ୍ଗଳାରେ କଂଗ୍ରେସ ଅଧିବେଶନ ଅନୁଷ୍ଠିତ ହେଲା । କବି ପ୍ରଥମ ଦିନ India's Prayer କବିତାଟି ପାଠ କରିଥିଲେ ।

( ୮୩ )

ନୂତନ ବର୍ଷ ଆରମ୍ଭରୁ (୧୯୧୮) କବି ଶାନ୍ତିନିକେତନରେ ଥାନ୍ତି । ଏଠାରେ ସେ ସ୍କୁଲ ମାଷ୍ଟର । ଛାତ୍ରମାନଙ୍କୁ ପଢ଼ାନ୍ତି, ଖାତା ଦେଖନ୍ତି, ସେମାନଙ୍କ ପାଇଁ ପାଠ୍ୟ ପ୍ରସ୍ତୁତ କରନ୍ତି, ମଝିରେ ମଝିରେ ଗୋଟିଏ ଯୋଡ଼ିଏ ଗଳ୍ପ ଲେଖୁଥାନ୍ତି ।

ବୈଶାଖ ମାସରେ କଲିକତା ଗଲେ—ଜନ୍ମ ଉତ୍ସବ ଖୁବ୍ ଜାକଜମକରେ ହେଲା । କେତେକ ଦିନ ପରେ ଖବର ପାଇଲେ ଯେ ପିୟର୍ସନଙ୍କୁ ଚୀନର ପେକିଂ ନଗରୀରେ ଇଂରେଜ ପୋଲିସ୍ ବନ୍ଦୀ କରିଛନ୍ତି ଓ ତାଙ୍କୁ ଇଂଲଣ୍ଡ ଚାଲାନ୍ କରି ନଜରବନ୍ଦୀ କରା ହୋଇଛି । ଏହି ଖବର ପାଇ ଏଣ୍ଡ୍ରୁଜ ସେହି ରାତିରେ ଖବର ବୁଝିବାକୁ ଦିଲ୍ଲୀ ଗଲେ । ସାତ ଦିନ ପରେ ଫେରି ଆସି ଖବର ଦେଲେ ଯେ ବଡ଼ଲାଟ ଚେମସ୍‌ଫୋର୍ଡ ପିୟର୍ସନ୍‌ଙ୍କ ଉପରେ ଖୁବ୍ ବିରକ୍ତ; ସୁତରାଂ କିଛି କରିବାର ଉପାୟ ନାହିଁ ।

ଅନ୍ୟ ଏକ ବଡ଼ ଆଘାତ ହେଲା ମେ ୧୬ ତାରିଖରେ, ଜ୍ୟେଷ୍ଠା କନ୍ୟା ବେଲାର ମୃତ୍ୟୁରେ । ବେଲା ଦୀର୍ଘକାଳ ରୋଗ ଭୋଗ କରିଥିଲେ; ତେଣୁ କବି ଏହି ଆଘାତ ପାଇଁ ପ୍ରସ୍ତୁତ ଥିଲେ ।

ଶେଷ ଦିନ ଝିଅ ଘରେ ପହଞ୍ଚି ଶୁଣିଲେ ଯେ ତାହାର ମୃତ୍ୟୁ ହୋଇଛି । ଘରୁ ଉପରକୁ ବି ଯାଇ ନାହାନ୍ତି । ଯେଉଁ ଗାଡ଼ିରେ ଯାଇଥିଲେ ସେହିଥିରେ ଫେରି ଆସିଲେ । ସେଦିନ ସନ୍ଧ୍ୟାରେ ବିଚିତ୍ରା କ୍ଲବରେ ତାଙ୍କୁ ଦେଖିଛି ଯଥାରୀତି ସାମାଜିକତା ରକ୍ଷା କରିଛନ୍ତି । ଖୁବ୍ ସ୍ୱାଭାବିକ ଭାବରେ କଥାବାର୍ତ୍ତା ବି କରୁଥିଲେ । ବୁଝିଲି କବିଙ୍କ ଜୀବନରେ ଗୀତାଞ୍ଜଳିର ଉତ୍ସ କେତେ ଗଭୀର ।

କିଛିଦିନ ହେବ କବି ନୂତନ ଗଳ୍ପ କବିତା ଲେଖୁଥିଲେ । ପରେ 'ପଳାତକା' ଶୀର୍ଷକ ଗ୍ରନ୍ଥରେ ତାହା ଛପା ହୋଇଥିଲା । ତାଙ୍କର ଆଦରର କନ୍ୟା ବେଲି ଇହଲୋକରୁ ପଳାତକା, ତେଣୁ ଲେଖିଲେ—

ଏହି କଥା ସଦା ଶୁଣି—
'ଗେଛେଚଲେ', 'ଗେଛେଚଲେ' ।
ତବୁ ରାଖି ବଲେ
ବୋଲୋନା 'ସେ ନାହିଁ' ।
ସେ କଥାଟା ମିଥ୍ୟା, ତାଇ
କିଛୁତେଇ ସହେନା ଯେ
ମର୍ମେ ଗିୟେ ବାଜେ ।

ବିଚିତ୍ରା ଭବନର ଉତ୍ସାହ ଉଦ୍ଦୀପନା ସତ୍ତ୍ୱେ ବି କଲିକତାରେ ଭଲ ଲାଗିଲା ନାହିଁ । ପ୍ରଚଣ୍ଡ ଗ୍ରୀଷ୍ମରେ ଶାନ୍ତିନିକେତନ ଫେରିଲେ; ଏକା 'ଦେହଲୀ'ରେ ଥାନ୍ତି—ଦିନ ଯାପନର ଏକମାତ୍ର ସହାୟ ଭୃତ୍ୟ ସାଧୁଚରଣ ।

ଗ୍ରୀଷ୍ମ ଅବକାଶ ପରେ ବିଦ୍ୟାଳୟ ଖୋଲିବାରୁ ପୁନରାୟ ମନପ୍ରାଣ ଢାଳି ଦେଲେ ପିଲାଙ୍କ ପାଠ ପଢ଼ାରେ । ସେହି ସମୟରେ ଭାନୁ ସିଂହର ପତ୍ରାବଳୀ ଲେଖୁଥିଲେ—ଛୋଟ ରାନୁକୁ । ଏହି ଛୋଟ ଝିଅଟି ଘନ ଘନ ପତ୍ର ଲେଖି 'ଭାନୁଦାଦା' ଠାରୁ ଉତ୍ତର ଆଦାୟ କରେ—ବେଲାର ଅଭାବ କିୟତ୍ ପରିମାଣରେ ଦୂର କରିଥିଲା । ଏହି କନ୍ୟାଟି ବର୍ତ୍ତମାନ ସମାଜରେ ସୁପରିଚିତା—ଲେଡ଼ି ରାନୁ ମୁଖାର୍ଜି ।

( ୮୪ )

ଏଥର ଶାନ୍ତିନିକେତନକୁ ଅନେକ ଗୁଡ଼ିଏ ଗୁଜରାଟୀ ଛାତ୍ର ଆସିଲେ । ଏହା ପୂର୍ବରୁ ନେପାଳୀ, ମରାଠୀ, ରାଜସ୍ଥାନୀ ଓ ମାଲୟାଲି ଛାତ୍ର ଆସିଥିଲେ । କିନ୍ତୁ ଅନ୍ୟ କୌଣସି ପ୍ରଦେଶର ଏକ ଭାଷାର ଏତେ ଗୁଡ଼ିଏ ଛାତ୍ର ଏହା ପୂର୍ବରୁ କେବେ ହୋଇ ନାହାନ୍ତି । ନୂତନ ଛାତ୍ରମାନଙ୍କୁ ଦେଖି ଓ ଅଭିଭାବକମାନଙ୍କ ସହିତ କଥାବାର୍ତ୍ତା ହୋଇ କବିଙ୍କ ମନରେ ନୂତନ ଚିନ୍ତାର ଉଦୟ ହେଲ— ଶାନ୍ତିନିକେତନ ବିଦ୍ୟାଳୟକୁ ସର୍ବ ଭାରତୀୟ ଶିକ୍ଷା କେନ୍ଦ୍ର କରିବାକୁ ହେବ । ଦୁଇବର୍ଷ ପୂର୍ବରୁ ଆମେରିକାରୁ ଲେଖିଥିଲେ (୧୯୧୬), 'ଶାନ୍ତିନିକେତନ ବିଦ୍ୟାଳୟକୁ ବିଶ୍ୱ ସହିତ ଭାରତର ଯୋଗସୂତ୍ର ରୂପେ ଗଢ଼ିବାକୁ ହେବ । ଏଠାରେ ସର୍ବଜାତୀୟ ମନୁଷ୍ୟତ୍ୱ ଚର୍ଚ୍ଚାର କେନ୍ଦ୍ର ସ୍ଥାପନ କରିବାକୁ ହେବ—ସ୍ୱଜାତୀୟ ସଂକୀର୍ଣ୍ଣତାର ଯୁଗ ଶେଷ ହୋଇ ଆସୁଛି—ଭବିଷ୍ୟତ ପାଇଁ ବିଶ୍ୱଜାତୀୟ ମହାମିଳନ ଯଜ୍ଞର ପ୍ରତିଷ୍ଠା ହେଉଛି । ତା'ର ପ୍ରଥମ ଆୟୋଜନ ଏହି ବୋଲପୁର ପ୍ରାନ୍ତରରେ ହିଁ ହେବ ।'

ପୌଷପାତ ଉତ୍ସବ ପରଦିନ (୧୩୨୫ ପୌଷ ୮) ମହା-ସମାରୋହରେ ବିଶ୍ୱଭାରତୀର ଭିତ୍ତିପତ୍ତନ ହେଲା, ଏଥିପାଇଁ ଗୁଜୁରାଟୀମାନଙ୍କଠାରୁ ଅନେକ ଟଙ୍କା ପାଇଥିଲେ । ଯେଉଁ ଜାଗାରେ ମାଙ୍ଗଳିକାଦି ପୋତି ବିଶ୍ୱଭାରତୀର ଘର କରିବା କଥା, ଶେଷ ପର୍ଯ୍ୟନ୍ତ ଘର ସେଠାରେ ହେଲା ନାହିଁ—ପିଲାମାନଙ୍କ ରହିବା ପାଇଁ ଲମ୍ବା ଘରଟିଏ ହେଲା । ଭିତ୍ତି ପ୍ରସ୍ତର ତଳେ ପୋତା ହୋଇଥିବା ସୁନା-ରୂପାରେ ମନ୍ତ୍ର-ଲେଖା ଫଳକଟି ବର୍ତ୍ତମାନ ମଧ୍ୟ ମାଟି ତଳେ ଅଛି ।

୧୯୧୮ ମସିହାରୁ ରବୀନ୍ଦ୍ରନାଥ ଶାନ୍ତିନିକେତନରେ । କାମ ଦାମ ନିଜେ ଦେଖନ୍ତି । କାର୍ଯ୍ୟରେ ସହାୟତା କରିବାକୁ ପୁତ୍ରକୁ ଶାନ୍ତିନିକେତନ ଆଣିଲେ । ତା'ପରେ ଦୀର୍ଘ ବତିଶ ବର୍ଷ ଧରି ରଥୀନ୍ଦ୍ରନାଥ ବିଶ୍ୱଭାରତୀର ବର୍ତ୍ତମାନର ଆକାର-ପ୍ରକାର ଆଣିବା ଦିଗରେ ସହାୟତା କରୁଥିଲେ ଓ ସର୍ବଦା ସଚେଷ୍ଟ ଥିଲେ ।

(୮୫)

୧୯୧୭ ଡସେମ୍ବରରେ କଲିକତାରେ କଂଗ୍ରେସ ଅଧିବେଶନ ହେବା ପରେ ଆନି ବେସାନ୍ତ ମାନ୍ଦ୍ରାଜ ଫେରି ଯାଇଥିଲେ । ସେ ସେଠାରେ ଏକ ନୂତନ ଜାତୀୟ ବିଶ୍ୱବିଦ୍ୟାଳୟ ସ୍ଥାପନ ପରି-କଳ୍ପନା କରି ରବୀନ୍ଦ୍ରନାଥଙ୍କୁ ତାହାର ଚ୍ୟାନସେଲର କଲେ । ଏହି ନବ ଗଠିତ ବିଦ୍ୟାୟତନ ପରିକଳ୍ପନା ମଧ୍ୟରେ ଥିଲା—ଇଞ୍ଜିନିୟରିଂ, କମର୍ସ, କୃଷି ପ୍ରଭୃତି ବ୍ୟବହାରିକ ବିଦ୍ୟାଚର୍ଚ୍ଚାର ବ୍ୟବସ୍ଥା ।

କବି ଦକ୍ଷିଣ ଭାରତର ଜାତୀୟ ବିଦ୍ୟାଳୟର ଚ୍ୟାନ୍‌ସେଲର ହୋଇଥାନ୍ତି; ସେଠାକୁ ଥରେ ଯିବା ଦରକାର । ଏହି ସମୟରେ ମହୀଶୂରରୁ ଆହ୍ୱାନ ଆସିଲା । ସରକାରୀ ଆହ୍ୱାନ ନୁହେଁ; ଆହ୍ୱାନ ବାଙ୍ଗାଲୋର ନାଟ୍ୟ-ନିକେତନର । ସେ ସମୟରେ ମହୀଶୂର ରାଜ୍ୟର ଦେଓ୍ୱାନ୍ ଥିଲେ ଜ୍ଞାନଶରଣ ଚକ୍ରବର୍ତ୍ତୀ; ତାଙ୍କରି ଉଦ୍ୟମରେ ଏହା ହୋଇଥିଲା । ୧୯୧୯ ଜାନୁୟାରୀ ମାସରେ କବି ତରୁଣ ଶିଳ୍ପୀ ସୁରେନ୍ଦ୍ରନାଥ କରଙ୍କୁ ସଙ୍ଗରେ ନେଇ ଦକ୍ଷିଣ ଭାରତ ଭ୍ରମଣରେ ଗଲେ ।

ମହୀଶୂର ଓ ବାଙ୍ଗାଲୋରର ନାନା ପ୍ରତିଷ୍ଠାନରେ କବି ଭାରତୀୟ ସଂସ୍କୃତି ସମ୍ବନ୍ଧରେ ଓ ବିଶ୍ୱଭାରତୀର ଆଦର୍ଶ ସମ୍ପର୍କରେ ବହୁ ବକ୍ତୃତା ଦେଇଥିଲେ । ଉଟି'ର ପାହାଡ଼ରେ କିଛିଦିନ ବିଶ୍ରାମ କରି କବି ଏଥର ବାହାରି ପଡ଼ିଲେ । ପାଲଘାଟ, ସାଲେମ୍, ତ୍ରିଚିନାପଲ୍ଲୀ, ଶ୍ରୀରଙ୍ଗପଟ୍ଟମ୍,କୁମ୍ଭକୋନମ୍, ତାଞ୍ଜୋର, ମଦୁରାଇରେ ବକ୍ତୃତା ଦେଇ ଶେଷରେ ମଦନାପଲ୍ଲୀରେ ପହଞ୍ଚିଲେ । ମଦନାପଲ୍ଲୀ ଥିଓସଫିସ୍ଟମାନଙ୍କର ଜାଗା । ଏଠାରୁ ମାନ୍ଦ୍ରାଜ ଯିବାକୁ ଭାବିଥିଲେ; କିନ୍ତୁ ସେତେବେଳକୁ ସେଠାରେ ରବୀନ୍ଦ୍ର-ବିରୋଧୀ ମନୋଭାବ ଖୁବ୍ ତୀବ୍ର । ମାନ୍ଦ୍ରାଜରେ ସେତେବେଳକୁ ବ୍ରାହ୍ମଣମାନଙ୍କର ପ୍ରାଧାନ୍ୟ । ରବୀନ୍ଦ୍ରନାଥଙ୍କ ଉପରେ ତାଂକର କ୍ରୋଧର କାରଣ ହେଉଛି—କବି ବିଠଲଭାଇ ପଟେଲଙ୍କର ଅସବର୍ଣ୍ଣ ବିବାହ ବିଲ୍ ବା ପ୍ରସ୍ତାବ ସମର୍ଥନ କରିଥିଲେ । ସେହି ଅପରାଧରୁ ବ୍ରାହ୍ମଣ-ଶାସିତ ମାନ୍ଦ୍ରାଜ କବିଙ୍କ ପ୍ରତି ଅପ୍ରସନ୍ନ । ଆଜି ସେଠାରେ ଦ୍ରାବିଡ଼

ଖାଜାଗମ୍ ଦଳର ଲୋକେ ଅନ୍ୟ ଭାବରେ ସେ ଦିନର ଓଲଟା କାମରେ ବ୍ୟାପୃତ, ଏହାକୁ ହିଁ କହନ୍ତି କାଳାନ୍ତର । କେତେକ ଦିନ ପରେ କବି ମାନ୍ଦ୍ରାଜ ହୋଇ ଆଦିୟାର ଗଲେ । ସେଠାରେ ବେସାନ୍ତଙ୍କର ନବ ପରିକଳ୍ପିତ ନ୍ୟାସନାଲ ୟୁନିଭରସିଟିର ଗୃନ୍‌ସେଲର ରୂପେ କବି ଶିକ୍ଷା ଓ ସଂସ୍କୃତି ସମ୍ବନ୍ଧରେ ତିନୋଟି ଭାଷଣ ଦେଇଥିଲେ' (୧୯୧୯ ମାର୍ଚ୍ଚ ୧୦-୧୨) । ଏହି ସବୁ ଭାଷଣ ମଧ୍ୟରେ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ ହେଉଛି The centre of Indian Culture ପ୍ରବନ୍ଧ । ଏହା 'ତପୋବନ' ପ୍ରବନ୍ଧ ଅବଲମ୍ବନରେ ଲେଖା ହୋଇଥିଲେ ବି ବିଶ୍ୱଭାରତୀ କଳ୍ପନାର ଆଭାସ ଦେଇଥିଲେ ଏହି ଭାଷଣରେ ।

ଦକ୍ଷିଣ ଭାରତ ଭ୍ରମଣ ଶେଷ କରି କବି କଲିକତା ଫେରିଲେ । ଏମାୟାର ଥିଏଟର ଗୃହରେ ସେ ସର୍ବପ୍ରଥମେ 'ବିଶ୍ୱ-ଭାରତୀ'ର ପରିକଳ୍ପନା ବଙ୍ଗଦେଶ ଆଗରେ ଉପସ୍ଥିତ କଲେ । ପ୍ରବନ୍ଧଟି ଇଂରେଜୀରେ ଲିଖିତ ହୋଇଥିଲା । ସଭାର ବ୍ୟବସ୍ଥାରେ ନୂତନତ୍ୱ ଥିଲା ; ତାହା ହେଉଛି ସଭାରେ ପ୍ରବେଶ ପାଇଁ ମୂଲ୍ୟ ଗ୍ରହଣ । ଏହା ଆମେରିକାରୁ ଶିକ୍ଷା; ଦକ୍ଷିଣ ଭାରତରେ ତାହାର ପ୍ରୟୋଗ କରା ହେଲା । ବସୁ-ବିଜ୍ଞାନ ମନ୍ଦିରରେ ମଧ୍ୟ ଦିନେ ବିଶ୍ୱଭାରତୀ ସମ୍ବନ୍ଧରେ ବକ୍ତୃତା ଦେଲେ । କିନ୍ତୁ ସେଠାରେ ଦ୍ୱାର ମୁକ୍ତ ଥିଲା ।

(୮୬)

ଦକ୍ଷିଣ ଭାରତରେ ଓ କଲିକତାରେ ବକ୍ତୃତା ଶେଷ କରି କବି ଶାନ୍ତିନିକେତନ ଫେରିଲେ । ପ୍ରଚଣ୍ଡ ଗ୍ରୀଷ୍ମକାଳରେ ରହିଲେ 'ଦେହଲୀ' ଘରେ ।

୧୩୨୬ ସାଲର ବୈଶାଖ ମାସରୁ କବି 'ଶାନ୍ତିନିକେତନ' ନାମରେ ଗୋଟିଏ ଗୃରପୃଷ୍ଠାର ପତ୍ରିକା ସମ୍ପାଦନ କରି ପ୍ରକାଶ କଲେ । ଆମେରିକାର 'ଲିନ୍‌କଲ୍‌ନ୍' ସହରରୁ ବିଦ୍ୟାଳୟର

ଗ୍ରନ୍ଥୀମାନଙ୍କ ପାଇଁ ଗୋଟିଏ ମୁଦ୍ରାଯନ୍ତ୍ର ଉପହାର ପାଇଥିଲେ । ତାହାକୁ କେନ୍ଦ୍ର କରି ଛୋଟ ଧରଣର ଗୋଟିଏ ଛାପାଖାନାର ଭିତ୍ତି ପତ୍ତନ ହେଲା (୧୯୧୬) । ଏହି ପତ୍ରିକା ସେଠାରେ ଛାପା ହେଲା । କହିବା ବାହୁଲ୍ୟ ଯେ ଏହି ଚାରି ପୃଷ୍ଠାର ପତ୍ରିକାରୁ ବାରପଣ କବିଙ୍କ ବିଚିତ୍ର ରଚନା ସମ୍ଭାରରେ ପୂର୍ଣ୍ଣ ।

ଶାନ୍ତିନିକେତନରେ ବେଶ ମନ ଦେଇ କାର୍ଯ୍ୟ କରୁଥାନ୍ତି । ହଠାତ୍ ମନରେ ବୈଶାଖୀ ଝଡ଼ ଦେଖାଦେଲା । ତା'ର ପୃଷ୍ଠଭୂମିରେ ରହିଛି ଏ ଦେଶର ପରାଧୀନତାର ଗ୍ଲାନି ଓ ଅସହାୟ ବେଦନା । ସେ ଘଟଣା ସଂକ୍ଷେପରେ କହିବା ଦରକାର ।

ପାଠକଙ୍କର ମନେଥିବ ଯେ ୧୯୧୭ ମସିହା ଶେଷ ଆଡ଼କୁ ଭାରତ ସଚୀବ ମଣ୍ଟେଗୁ ସାହେବ ଭାରତ ଆସିଥିଲେ । ପରେ ଅନେକ ପରାମର୍ଶ ଫଳରେ ୧୯୧୮ ଜୁଲାଇ ମାସରେ ଭାରତର ନୂତନ ଶାସନତନ୍ତ୍ର ଖସଡ଼ା ପ୍ରକାଶିତ ହେଲା । ଏହି ପରିକଳ୍ପନା-ପ୍ରକାଶ ସଙ୍ଗେ ସଙ୍ଗେ ପ୍ରକାଶିତ ହେଲା ସିଡ଼ିଶନ କମିଟିର ନିବେଦନ ବା ରାଉଲେଟ୍ କମିଟିର ରିପୋର୍ଟ । ଏଥିରେ ଥିଲା ଗତ କେତେ ବର୍ଷ ଧରି ଚାଲୁଥିବା ଦେଶର ବିପ୍ଳବାତ୍ମକ ଆନ୍ଦୋଳନର ଇତିହାସ ଓ ସେହି ପ୍ରଚେଷ୍ଟା ଦମନ କରିବା ପାଇଁ କରଣୀୟ ପରାମର୍ଶ ବା ସୁପାରିଶ୍ । ଠିକ୍ ଏହି ସମୟରେ ଏହାକୁ ପ୍ରକାଶ କରିବାର ନିର୍ଦ୍ଦିଷ୍ଟ କାରଣ ଥିଲା । ଇଂରେଜ ଜଗତକୁ ଦେଖାଇବାକୁ ଚାହେଁ ଯେ ଯେଉଁମାନେ ଭାରତରୁ ବ୍ରିଟିସଙ୍କୁ ତଡ଼ିବାକୁ ଏପରି ମାରାତ୍ମକ ଷଡ଼ଯନ୍ତ୍ର ଓ ହତ୍ୟାକାଣ୍ଡରେ ଲିପ୍ତ, ସେମାନଙ୍କୁ ଖୁବ୍ ଶୀଘ୍ର ସ୍ୱାଧୀନତା ଦିଆ-ଯାଇପାରେ ନା । ଧୀରେ ସୁସ୍ଥେ, ଆସ୍ତେ ଆସ୍ତେ ଶାସନ ଦାୟିତ୍ୱ ଦେବା ଦିଗରେ ଇଂରେଜମାନଙ୍କର ଉଦାରତା ମାତ୍ର ପ୍ରକାଶ ପାଉଥାଏ ।

ସିଡ଼ିଶନ୍ କମିଟି ରିପୋର୍ଟରେ ରାଜଦ୍ରୋହ ଦମନ ସମ୍ବନ୍ଧରେ ଯେଉଁ ସବୁ ସୁପାରିଶ୍ ଥିଲା ତାହାରି ଉପରେ ସରକାରୀ ବିଲ୍ ଆସିଲା । ଗାନ୍ଧିଜୀ ରାଜନୀତିରେ ଭଲଭାବରେ ଯୋଗ ଦେଲେ । ସେ ଘୋଷଣା କଲେ ଯେ ଏହି ଆଇନ୍ ଭାରତବାସୀଙ୍କର ନ୍ୟାୟସଂଗତ ଅଧିକାର ଓ ମନୁଷ୍ୟୋଚିତ ସ୍ୱାଚ୍ଛନ୍ଦ୍ୟ-ସ୍ୱାଧୀନତାର

ବରୋଧୀ । ଅତଏବ ଏହ ଆଇନ ମାନ ହେବ ନାହିଁ ଓ ଏଥିପାଇଁ ନରୁପଦ୍ରବ ପ୍ରତରୋଧ କରବାକୁ ହେବ—ଅର୍ଥାତ୍ ଅନ୍ୟାୟ ବରୁଦ୍ଧରେ ଛିଡ଼ାହୋଇ ମାଡ଼ ଖାଇବୁ; କିନ୍ତୁ ମାଡ଼ ମାରବୁ ନାହିଁ (ପ୍ରାୟଶ୍ଚିତ ନାଟକରେ ଧନଞ୍ଜୟ ବୈରାଗୀର ଆଦର୍ଶ) । ଇତପୂର୍ବେ ଆଫ୍ରିକାରେ ଗାନ୍ଧୀ ଏହ ଅସ୍ତ୍ର ପ୍ରୟୋଗ କରଥିଲେ ।

ଅହିଂସା ରାଜନୀତ କଣ, ହରତାଳ କପର ସଫଳ ହୋଇ ପାରେ, ସେତେବେଳେ ଏସବୁ ଅଶ୍ରୁତପୂର୍ବ ରଣନୀତ ଅଧିକାଂଶଙ୍କର ବୁଦ୍ଧିର ଅଗମ୍ୟ ଥିଲ । ଫଳରେ ଗାନ୍ଧିଜୀଙ୍କର ଆନ୍ଦୋଳନ ଆରମ୍ଭ ହେବା ସଙ୍ଗେ ସଙ୍ଗେ ଅନୟନ୍ତ୍ରିତ ଅଶିକ୍ଷିତ ଜନତା ମାତ୍ରାରକ୍ଷା କର ନପାରି ଉପଦ୍ରବ ଆରମ୍ଭ କଲେ । ପଂଜାବର ଇଂରେଜ ଶାସନ ଜନତାର ଏହ ଉପଦ୍ରବକୁ କଠୋର ହସ୍ତରେ ଦମନ କଲେ । ରବୀନ୍ଦ୍ରନାଥ ଦୂରରୁ ସବୁ ନୀରକ୍ଷଣ କରୁଥିଲେ । ସେ ଏପ୍ରିଲ ୧୨ ତାରିଖରେ ଗାନ୍ଧିଜୀଙ୍କୁ ଏକ ଖୋଲା ଚଠିରେ ଜଣାଇଲେ ଯେ ଲୋକଙ୍କର ମନ ଅହିଂସା ମନ୍ତ୍ରରେ ଦୀକ୍ଷିତ ନକର, ଏପର ଭାବରେ ଅହିଂସ ପ୍ରତରୋଧ ଆନ୍ଦୋଳନ ଚଳ ପାରବ ନାହିଁ—ପଦେ ପଦେ ଅନର୍ଥ ଓ ସମସ୍ୟା ସୃଷ୍ଟି ହେବ । ଏହା ମଧ୍ୟରେ ଅମୃତସର ଜାଲିଆନାୱାଲବାଗ୍‌ରେ ନବବର୍ଷ ଦନ (୧୯୧୯ ଏପ୍ରିଲ ୧୩) ମେଳାର ଜନତା ଉପରେ ସରକାରୀ ସୈନ୍ୟ ଅତର୍କିତ ଗୁଳ ଚଳାଇ ହତ୍ୟା କଲ ୩୭୯ ଜଣଙ୍କୁ—ଆହତଙ୍କର ସଂଖ୍ୟା ଅନେକ ବେଶୀ । ଏଡ଼େ ବଡ଼ ନଦାରୁଣ ଘଟଣା ଘଟିଗଲେ ସୁଦ୍ଧା ପଞ୍ଜାବ ବାହାରେ କୌଣସି ଖବର-କାଗଜରେ କୌଣସି ଖବର ପ୍ରକାଶିତ ହେଲନାହିଁ । ସଙ୍ଗେ ସଙ୍ଗେ କଡ଼ା ସାମରକ ଆଇନ୍ ମଧ୍ୟ ଜାରି ହୋଇଥିଲ ।

ପ୍ରାୟ ଦେଢ଼ମାସ କଟିଗଲ । ଲୌହ ପରଦା ଭେଦ କର ଜାଲନ୍‌ଆନାୱାଲବାଗ୍ ହତ୍ୟାକାଣ୍ଡର ଖବର ଦେଶସାରା ରାଷ୍ଟ୍ର ହୋଇଗଲ । କିନ୍ତୁ କେହ୍ କୌଣସି ପ୍ରତବାଦ କରବା ତ ଦୂରର କଥା, ଉଁ ଚୁଁ ଶବ୍ଦ କରବାକୁ ସାହସ କର ନ ଥିଲେ ।

ରବୀନ୍ଦ୍ରନାଥ ଏହ ସମ୍ବାଦ ଶୁଣି ଅସ୍ଥିର ହୋଇ ପଡ଼ିଲେ; ସ୍ଥିର କଲେ ପ୍ରତବାଦ କରବେ । ଶାନ୍ତିନକେତନରୁ କଲିକତା

ସ୍କୁଲ୍ ଆସିଲେ । କବି ରମାନନ୍ଦ ଚଟ୍ଟୋପାଧ୍ୟାୟଙ୍କର ବସାକୁ ଯାଇ ଦିନେ ସକାଳେ ପରାମର୍ଶ କରି ଆସିଲେ । ଏହାପରେ ଦିନେ ସକାଳ ସମ୍ବାଦପତ୍ରରେ ଲୋକେ ଦେଖିଲେ, ରବୀନ୍ଦ୍ରନାଥ ଲର୍ଡ ଚେମସ୍‌ଫୋର୍ଡଙ୍କୁ ଏକ ଖୋଲା ଚିଠିରେ ଜଣାଇ ଦେଇଛନ୍ତି ଯେ ପଞ୍ଜାବ ଅତ୍ୟାଚାରର ପ୍ରତିବାଦରେ ସେ ସରକାର-ପ୍ରଦତ୍ତ ନାଇଟ୍‌ହୁଡ୍ ବା ସାର୍ ଉପାଧି ତ୍ୟାଗ କରିଛନ୍ତି ।

ଦେଶ ଲୋକେ ଅଭିନନ୍ଦନ ଜଣାଇଲେ । ଇଂରେଜ ଖବର-କାଗଜବାଲାମାନେ ଥଟ୍ଟା କଲେ । ବିଦେଶରେ ଖବର ବିସ୍ତୃତ ହେବା-ଦ୍ୱାରା ଶାସକ ସମ୍ପ୍ରଦାୟ କ୍ଷୁବ୍ଧ ହେଲେ ।

ଉପାଧିତ୍ୟାଗର ଏହି ଖୋଲାଚିଠି ଲେଖିବା ପରେ ରବୀନ୍ଦ୍ରନାଥ ବାଳିକା ରାନୁ ଅଧିକାରୀଙ୍କୁ ଲେଖିଛନ୍ତି, 'ତୁମର ଲଫାପାରେ ତୁମେ ଯେତେବେଳେ ମୋର ଠିକଣା ଲେଖ, ମୁଁ ଭାବିଲି ଯେ ଏ ପଦବୀଟା ତୁମର ପସନ୍ଦ ହେଉନି । ତେଣୁ କଲିକତା ଆସି ବଡ଼ଲାଟଙ୍କୁ ଚିଠି ଲେଖିଛି—ମୋର ଏହି ସ୍ତୁର ସାର୍ ପଦବୀ ଫେରାଇ ନେବାକୁ·····ମୋର ହୃଦୟ ମଧ୍ୟରେ ଅନେକ ବ୍ୟଥା ଜମି ରହିଛି, ତାହାର ଭାର ମୋ ପକ୍ଷରେ ଅସହ୍ୟ ହୋଇ ପଡ଼ିଛି—ତେଣୁ ଏହି ଭାର ଉପରେ ଉପାଧିର ଭାର ଆଉ ବହନ କରି ପାରୁନି ।'

( ୮୭ )

ଦେଶ ଉପରେ ବୈଶାଖୀ ଝଡ଼ ବହିଗଲା—କବିଙ୍କ ମନ ଉପରେ ମଧ୍ୟ । ଶାନ୍ତିନିକେତନରେ ବର୍ଷାଦିନ ଆରମ୍ଭ ହୋଇଥାଏ, କବିଙ୍କ ମନରେ ବି ତା'ର ସୂଚନା ଦେଖାଦେଲା । ନାନା କ୍ଷେତ୍ରରେ ନାନା କାର୍ଯ୍ୟରେ ତାଙ୍କୁ ମନ ଦେବାକୁ ପଡ଼ିଲା ।

ଗ୍ରୀଷ୍ମ ଅବକାଶ ପରେ 'ବିଶ୍ୱଭାରତୀ'ରେ ଅଧ୍ୟୟନ, ଅଧ୍ୟାପନା କାର୍ଯ୍ୟ ଆରମ୍ଭ ହେଲା । କବି ସାହିତ୍ୟ କ୍ଲାସ ନେଉଥାନ୍ତି ଓ ଏଣ୍ଡ୍ରୁଜ,

ବିଧୁଶେଖର, ସିଂହଳୀ ମହାସ୍ଥବିର, କପିଳେଶ୍ୱର ମିଶ୍ର ପ୍ରଭୃତି ଯେ ଯାହାର ପାଠ ପଢ଼ାଉଥାନ୍ତି । ଛାତ୍ର ବାହାରର ନୁହନ୍ତି— ଶାନ୍ତିନିକେତନର ଅଧ୍ୟାପକ ଓ ଆଶ୍ରମବାସୀ ହିଁ ଛାତ୍ର ।

ସାହିତ୍ୟ ସୃଷ୍ଟି କ୍ଷେତ୍ରରେ ନୂତନ ପରୀକ୍ଷା ଚାଲିଥାଏ । ରବୀନ୍ଦ୍ରନାଥ ସେତେବେଳେ କବିତା ବା ଛୋଟ ଛୋଟ ଗଳ୍ପ, ରୂପକଥା, ଗୀତ ଲେଖୁଥାନ୍ତି । ଉକ୍ତ ଗଳ୍ପଗୁଡ଼ିକ ପରେ 'ଲିପିକା' ପୁସ୍ତକରେ ସଂକଳିତ ହୋଇଛି । ଏହି ରଚନାଧାରରେ ଗଦ୍ୟ କବିତାର ପ୍ରଥମ ଅନତିସ୍ପଷ୍ଟ କଳଧ୍ୱନି ଶୁଣାଯାଇଛି (ଲିପିକାର କେତେକ ରଚନା ଅତି ପୁରାତନ ଲେଖାର ନୂତନ ରୂପାନ୍ତର) । ନୋବେଲ୍ ପୁରସ୍କାର ଲାଭ ଓ ବିଦେଶ ସଙ୍ଗେ ନାନା ଭାବରେ ଯୋଗ ସ୍ଥାପନ ହେବା ପରଠାରୁ ଶାନ୍ତିନିକେତନରେ ଯେପରି ଦେଶୀ ବିଦେଶୀ ଛାତ୍ର ସଂଖ୍ୟା ବଢ଼ୁଥାଏ, ସେପରି ବଢ଼ୁଛି ରବୀନ୍ଦ୍ରନାଥଙ୍କର ଚିଠିପତ୍ର ଲେଖା ଲେଖି । ସମସ୍ତ ପତ୍ରର ଉତ୍ତର ସେ ନିଜେ ଦିଅନ୍ତି । କବି ଅତି ଦୁଃଖରେ ଖଣ୍ଡିଏ ପତ୍ରରେ ଲେଖିଛନ୍ତି, 'ଥରେ ଥରେ କ୍ଳାନ୍ତ ହୋଇ ଭାବେ ଜଣେ ସେକ୍ରେଟେରି ରଖିବା ଉଚିତ । କିନ୍ତୁ ସେଥି ଅମିରଗିରି କରିବାପାଇଁ ପଇସା ଅଣ୍ଟେନି । କାରଣ ରଥୀର ସଂସାରରେ ଅନଟନ, ମୋ ସ୍କୁଲର ଅବସ୍ଥା ମଧ୍ୟ ତଦ୍ରୂପ । ଅତଏବ ନିଷ୍ଠୁର ହିସାବ ଖାତାର ଡାହାଣ ବାମ ଦିଗକୁ ଦୃଷ୍ଟି ବନ୍ଦ କରି ମନରେ ଶାନ୍ତି ରଖିବାକୁ ଚେଷ୍ଟାକରେ ।

(୮୮)

ପୂଜାବକାଶରେ କବି ସପରିବାରେ ଶିଲଂ ଗଲେ । ବୋଲପୁରଠାରୁ କଲିକତା ଯିବା ରାସ୍ତାରେ ନୌକାରେ ଗଙ୍ଗା ପାରି ହେବା ସମୟରେ କପରି ପାଣିରେ ପଡ଼ିଯାଇ କର୍ଦ୍ଦମାକ୍ତ ହୋଇ ଥିଲେ, ତା'ର ରସାଳ ବର୍ଣ୍ଣନା ଅଛି ଭାନୁସିଂହର ପତ୍ରରେ ।

ଶିଲଂରେ କବି ତିନି ସପ୍ତାହ (୧୯୧୯ ଅକ୍ଟୋବର) ଥିଲେ । ସେପରି କିଛି ଉଲ୍ଲେଖ ଯୋଗ୍ୟ ଘଟଣା ଘଟିନାହିଁ, କିମ୍ବା ରଚନା ବି

ରଚିତ ହୋଇନାହିଁ । ଫେରିବା ସମୟରେ ଗୌହାଟିରୁ ଆସାମ-ବଙ୍ଗ ରେଲପଥ ଦେଇ ସିଲହଟ୍ ଆସିଲେ (ନଭେମ୍ବର ୬) । ସିଲହଟ୍‌ରେ ଖୁବ୍ ସମାରୋହରେ କବି ସମ୍ବର୍ଦ୍ଧନା ହୋଇଥିଲା । ଶିଲଂରୁ ଫେରି ଶାନ୍ତିନିକେତନର ଦେହଲୀ ଘରେ ନ ରହି ନୂତନ ପର୍ଣ୍ଣ କୁଟୀରରେ ରହିଲେ । ପଛୁଆ ମଝିରେ ଦୁଇଟି ଗୃହଘର ହୋଇଥାଏ । କବିଙ୍କର ଇଚ୍ଛା ମାଟି ଘରେ ରହିବେ । ଘରଟିର ଚଟାଣ ପକ୍କା, ଛାତି କଚ୍ଚାଟ; କେବଳ ସ୍ନାନ ଘରଟି ପକ୍କା । ସେ ଘର ଅସ୍ତିତ୍ୱ ଏବେ ନାହିଁ ।

ସେହି ଘରେ କବିଙ୍କର ପରମ ଆନନ୍ଦ । ସଂଧ୍ୟା ପରେ ୟୁରୋପୀୟ ସାହିତ୍ୟ ପଢ଼ି ଆଶ୍ରମବାସୀଙ୍କୁ ଶୁଣାନ୍ତି; ନିଜର ନୂତନ ଲେଖା ବି ପଢ଼ନ୍ତି । ଅନ୍ୟମାନଙ୍କୁ ଆଲୋଚନା କରିବାକୁ କହନ୍ତି ଓ ନିଜେ ବି ଆଲୋଚନାରେ ଯୋଗ ଦିଅନ୍ତି । କୌଣସି କୌଣସି ଦିନ ଛାତ୍ରମାନଙ୍କ ଘରକୁ ଆସି କୌତୁକ-ପ୍ରଦ ଖେଳ ଉଦ୍ଭାବନ କରନ୍ତି । ସକାଳେ ପିଲାମାନଙ୍କର କ୍ଲାସ ନିଅନ୍ତି । ଦ୍ୱିପ୍ରହରରେ 'ଶାନ୍ତିନିକେତନ ପତ୍ରିକା' ପାଇଁ ଲେଖା ଲେଖନ୍ତି । ଏହି ଭାବରେ ଦିନ ଗଡ଼ି ଚାଲେ ।

(୮୯)

ବିଦ୍ୟାଳୟର ଧରାବନ୍ଧା କାର୍ଯ୍ୟ କବିଙ୍କ ପକ୍ଷରେ ଭଲ ଲାଗିବା ସମ୍ଭବ ନୁହେଁ । ମନେ ମନେ ମୁକ୍ତି ଖୋଜୁଥାନ୍ତି । ଆହ୍ୱାନ ଆସିଲା ଗାନ୍ଧିଜୀଙ୍କ ନିକଟରୁ—ଅହମଦାବାଦ ଗୁଜୁରାଟୀ ସାହିତ୍ୟ ସମ୍ମିଳନୀରେ ସଭାପତିତ୍ୱ କରିବା ପାଇଁ । ଅତ୍ୟଧିକ ଗ୍ରୀଷ୍ମ ପାଇଁ ବିଦ୍ୟାଳୟ ତିନିମାସ ଛୁଟି ହେଲା—ଚୈତ୍ର, ବୈଶାଖ, ଜ୍ୟେଷ୍ଠ । କବି ମାର୍ଚ୍ଚ ମାସ ଶେଷ ଆଡ଼କୁ ( ୧୯୨୦) ଅହମଦାବାଦ ଗଲେ—ସଙ୍ଗରେ ଏଣ୍ଡ୍ରୁଜ, ସନ୍ତୋଷଚନ୍ଦ୍ର ମଜୁମଦାର ଓ କିଶୋର ଛାତ୍ର ଶ୍ରୀମାନ ପ୍ରମଥନାଥ ବିଶୀ । କବି ଏହି ବାଳକଟିର ପ୍ରତିଭାରେ ମୁଗ୍ଧ ହୋଇ

ଥିଲେ; ଶ୍ରୀମାନ୍ ଋଷୀ ମାଟ୍ରିକୁଲେସନ ପାସ କରି ବିଶ୍ୱଭାରତୀରେ ପଢ଼ାଶୁଣା କରୁଥାନ୍ତି ଓ କିଛି କିଛି କ୍ଲାସ ମଧ୍ୟ ନେଉଥାନ୍ତି । ଅହମଦାବାଦରେ ଅତିଥି ହେଲେ ଅମ୍ବାଲାଲ ସରାଭାଇଙ୍କର; ଏମାନେ ଅହମଦାବାଦର ବିଖ୍ୟାତ ଧନୀ—କ୍ୟାଲିକୋ ମିଲର ମାଲିକ । କେବଳ ଧନୀ କହିଲେ ଏମାନଙ୍କୁ ଠିକ୍ କରି କୁହାହେବ—ବରଂ ଧନୀମାନଂକ ମଧ୍ୟରେ ଏପରି ଶିକ୍ଷିତ ପରିବାର କମ୍ ଦେଖାଯାଏ କହିଲେ ଚଳେ ।

ଗୁଜୁରାଟରେ ରବୀନ୍ଦ୍ରନାଥଙ୍କର ଏହି ପ୍ରଥମ ପଦାର୍ପଣ । ସାହିତ୍ୟ ସମ୍ମିଳନୀର ବିରାଟ ବ୍ୟବସ୍ଥା ହେଲା ଓ କବି ଇଂରାଜୀରେ ବକ୍ତୃତା ଦେଇଥିଲେ ।

ଅହମଦାବାଦ ନିକଟରେ ଗାନ୍ଧିଜୀଙ୍କର ସାବରମତୀ ଆଶ୍ରମ । କବି ଦିନେ ସନ୍ଧ୍ୟାରେ ସେଠାରେ ପହଞ୍ଚିଲେ ଓ ଆଶ୍ରମରେ ରାତି ଯାପନ କଲେ । ପରଦିନ ସକାଳେ ଆଶ୍ରମ ଉପାସନାରେ ଯୋଗଦାନ କରି ଅମ୍ବାଲାଲଙ୍କ ଗୃହକୁ ଫେରି ଆସିଲେ ।

ଏହାପରେ କାଥିଆୱାଡ଼ ଭ୍ରମଣରେ ବାହାରିଲେ ଓ ନାନା ସ୍ଥାନରେ ବୁଲି ଶେଷରେ ପହଞ୍ଚିଲେ ବମ୍ବେରେ । ସେତେବେଳେ ସେଠାରେ ଜାଲିଆନାୱାଲାବାଗ ହତ୍ୟାକାଣ୍ଡର ସାମ୍ବତ୍ସରିକ ସଭା ହେଉଥାଏ (ଏପ୍ରିଲ ୧୩ ତାରିଖରେ) । ସେ ସଭାର ଅଧିନାୟକ ବମ୍ବେର ବାରିଷ୍ଟର କଂଗ୍ରେସକର୍ମୀ ଜନାବ୍ ମହମ୍ମଦ ଅଲି ଜିନ୍ନା । ତାଙ୍କର ଅନୁରୋଧରେ କବି ସଭାପାଇଁ ଗୋଟିଏ ଭାଷଣ ଲେଖିପଠାଇ ଦେଇଥିଲେ । ରାଜନୀତିର ପରିହାସ ଏପରି ଯେ ଏହି ଜିନ୍ନା ସାହେବ ଦିନେ କଂଗ୍ରେସର ଦୁର୍ଦ୍ଧର୍ଷ ପ୍ରତିଦ୍ୱନ୍ଦୀ ହେଲେ ।

ବମ୍ବେରୁ ବରୋଦା ଆସିଲେ । ଏଠାରେ ଗାଏକୱାଡ଼ଙ୍କର ଅତିଥି । ହାଇକୋର୍ଟରେ କବି-ସମ୍ବର୍ଦ୍ଧନା ହେଲା । କବି ଏଠାରେ ଦିନେ ଅନ୍ତ୍ୟଜ ସମାଜର ଏକ ସଭାରେ ଉପସ୍ଥିତ ହୋଇ ସେମାନଙ୍କର ଶୋଚନୀୟ ଅବସ୍ଥା କଥା ଶୁଣି ଖୁବ୍ ମର୍ମାହତ ହୋଇଥିଲେ ଓ ଲୋକମାନ୍ୟ ତିଲକଙ୍କୁ ଏହି ଅନ୍ତ୍ୟଜ ସମସ୍ୟା ଦୂର କରିବାର ଦାୟିତ୍ୱ ନେବାକୁ ଅନୁରୋଧ କରି ପତ୍ର ଲେଖିଥିଲେ । ତିଲକ

ସେତେବେଳକୁ ମୃତ୍ୟୁ ଶଯ୍ୟାରେ । ବହୁକାଳ ପରେ ଗାନ୍ଧିଜୀ ଏହି ସମସ୍ୟା ସମାଧାନ ପାଇଁ ହରିଜନ ଆନ୍ଦୋଳନ ଆରମ୍ଭ କରିଥିଲେ ।

ବମ୍ବେଦାରୁ ସୁରାଟ ଓ ସେଠାରୁ ବମ୍ବେ ହୋଇ କଲିକତା ଫେରି ଆସିଲେ । ଏହିପରି ଭାବରେ ପଶ୍ଚିମ ଭାରତରେ ଏକ ମାସ କଟିଲା । ସର୍ବତ୍ର କବି ତାଙ୍କର ବିଶ୍ୱଭାରତୀର ଆଦର୍ଶ କଥା ହିଁ ପ୍ରଚାର କରିଥିଲେ ।

(୯୦)

ଗୁଜୁରାଟ ଭ୍ରମଣରୁ ଫେରିବାର କେତେକ ସପ୍ତାହ ମଧ୍ୟରେ କବି ସପରିବାରରେ ବିଲାତ ଭ୍ରମଣରେ ଗଲେ । ଏହା ପୂର୍ବରୁ ଯାଇଥିଲେ ୧୯୧୨-୧୩ ମସୀହାରେ । ତା ପରେ ଚାରିବର୍ଷ ଚାଲିଥିଲା ପ୍ରଥମ ବିଶ୍ୱ ଯୁଦ୍ଧ । ୧୯୧୮ ମସୀହା ନଭେମ୍ବର ମାସରେ ଯୁଦ୍ଧ-ବିରତି ଘୋଷିତ ହେଲା । ତାହା ପରେ ଚାଲିଲା ୟୁରୋପର ଭଙ୍ଗା ଗଢ଼ା ସମସ୍ୟା, କୂଟନୀତିଜ୍ଞମାନଙ୍କର ବୈଠକ—କିଏ କେଉଁ ରାଜ୍ୟ ପାଇବ, କିଏ କାହାର ମିତ୍ରରାଜ୍ୟ ହୋଇ ରହିବ, କାହା ସହିତ କାହାକୁ ମିତ୍ରତା କରିବାକୁ ଦିଆଯିବ ନାହିଁ ଇତ୍ୟାଦି । ପୂର୍ବ ୟୁରୋପରେ ନୂତନ ଗଣଦେବତାର ଅଭ୍ୟୁଦୟ—ବୈଶ୍ୟଙ୍କ ହାତରୁ ଶୂଦ୍ରଙ୍କ ହାତକୁ ଆସୁଥାଏ ରାଜ୍ୟ ବ୍ୟବସ୍ଥା ଭାର—ଶ୍ରମର ନ୍ୟାଯ୍ୟ ମୂଲ୍ୟ ଓ ମର୍ଯ୍ୟାଦା ପାଇବା ପାଇଁ ଆନ୍ଦୋଳନ ।

କବି ୟୁରୋପ ବାହାରିଲେ । ଭାବୁଥାନ୍ତି ଯେ ସେଠାର ଲୋକ-ସମୁଦ୍ରରେ ଯେଉଁ ମନ୍ଥନ ହୋଇ ଯାଇଛି ତାହା ଦେଖିପାରିବେ, ସେ ଦେଶର ମନୀଷୀ ଓ ଭାବୁକଙ୍କ ସଙ୍ଗରେ ଦେଖାକରିବେ ଓ ସେମାନେ ୟୁରୋପର ପୁନର୍ଗଠନ ନେଇ ଯେଉଁ ଚିନ୍ତା କରୁଥାନ୍ତି ସେହି ଚିନ୍ତାର ସ୍ପର୍ଶ ପାଇବେ ।

ବମ୍ବେ ଛାଡ଼ିବାର ଏକୋଇଶ ଦିନ ପରେ ଇଂଲଣ୍ଡ ବନ୍ଦରରେ ଜାହାଜ ପହଞ୍ଚିଲା (୧୯୨୦ ଜୁନ ୫ତାରିଖ) । ଜାହାଜ ଘାଟକୁ ପିଅର୍ସନ

ଆସିଥାନ୍ତି । ତିନି ବର୍ଷ ପରେ ତାଙ୍କ ସାଙ୍ଗରେ ଦେଖା; ୧୯୧୭ ମସିହାରେ ଜାପାନରୁ ଦୁହେଁ ଦୁହିଁଙ୍କଠାରୁ ଅଲଗା ହୋଇଥିଲେ । ସ୍ଥିର ହେଲା ପିୟର୍ସନ କବିଙ୍କର ସେକ୍ରେଟେରୀ କାର୍ଯ୍ୟ କରିବେ ।

ଲଣ୍ଡନରେ ପହଞ୍ଚିବା ପରେ ରୋଦେନ୍‌ଷ୍ଟାଇନ୍ ପ୍ରଭୃତି ପୁରାତନ ବନ୍ଧୁମାନେ ଦେଖା କରିବାକୁ ଆସିଲେ । ଭେଜ୍‌ଉଡି, ପାର୍ଟି ପ୍ରଭୃତି ମାମୁଲି ଭଦ୍ରାଗିରି ଚାଲିଲା । କିନ୍ତୁ ସମସ୍ତଙ୍କ ମଧ୍ୟରେ ଦୂରତ୍ୱ ଭାବ, ଆନ୍ତରିକତାର ସ୍ପର୍ଶ ନାହିଁ । କବି ଗତବର୍ଷ ଜାଲିଆନାୱାଲାବାଗ ହତ୍ୟାକାଣ୍ଡ ପରେ ସମ୍ରାଟ ପ୍ରଦତ୍ତ 'ନାଇଟ୍' ଉପାଧି ତ୍ୟାଗକରି ଯେଉଁ ପତ୍ର ଦେଇଥିଲେ, ତାହା ରାଜଭକ୍ତ ଇଂରାଜୀମାନେ ସହଜ ଭାବରେ ଗ୍ରହଣ କରି ପାରି ନାହାନ୍ତି । ଏହାହିଁ ତାର ପ୍ରମାଣ । ଅକ୍ସଫୋର୍ଡ଼ର ଏକ ସଭାରେ କବିଙ୍କର ବକ୍ତୃତା ଦେବାର କଥା ଓ ରାଜକବି ରବର୍ଟ ବ୍ରିଜସ୍ ସଭାପତି ହେବାର କଥା ହୋଇଥିଲା । କିନ୍ତୁ ଶେଷ ମୁହୂର୍ତ୍ତରେ ସେ ସଭାରେ ଉପସ୍ଥିତ ହେଲେ ନାହିଁ । ରାଜକବି ହୋଇ ରାଜୋପାଧି ତ୍ୟାଗୀର ସଭାକୁ କିପରି ବା ଆସନ୍ତେ ! ଦୁଇମାସ ଇଂଲଣ୍ଡରେ ରହିଲେ; ପୁରାତନ ବନ୍ଧୁମଣ୍ଡଳୀଙ୍କ ଛଡ଼ା ଅନ୍ୟ ଯେଉଁମାନଙ୍କ ସହିତ ପରିଚୟ ହୋଇଥିଲା, ସେମାନଙ୍କ ମଧ୍ୟରେ ସ୍ମରଣୀୟ ହେଉଛନ୍ତି ଆଇରସ୍ କର୍ମଚାରୀ ସାର ହୋରେସ୍ ପ୍ଲାଂକେଟ୍ ଓ ଉଦବାସ୍ତୁ ରୁଷୀୟ ଚିତ୍ରଶିଳ୍ପୀ ନିକୋଲସ ରୋରିଖ । ରୋରିଖଙ୍କର ଛବି ଦେଖି କବି ବିସ୍ମିତ ହୋଇ ଉଚ୍ଛ୍ୱସିତ ପ୍ରଶଂସା କରିଥିଲେ; ସେତେବେଳେ ରୋରିଖ ପ୍ରାୟ ଅଜ୍ଞାତନାମା ଶିଳ୍ପୀ ।

କବି ଯେତେବେଳେ ବିଲାତରେ, ସେତେବେଳେ ପାର୍ଲାମେଣ୍ଟରେ ଭାରତର ଜାଲିଆନାୱାଲାବାଗର ଘଟଣା ନେଇ ଆଲୋଚନା ଚାଲିଥାଏ । ସରକାରୀ ପକ୍ଷରୁ ଯେଉଁ ତଦନ୍ତ କମିଟି ବସିଥିଲା, ଭାରତ ସଚିବ ମଣ୍ଟେଗୁଙ୍କୁ ସେଥିପାଇଁ କିଛି ମନ୍ତବ୍ୟ ଲେଖିବାକୁ ହୋଇଥିଲା । ତାହା ଭାରତୀୟମାନଙ୍କର ଅନୁକୂଳ ଥିବାରୁ ବ୍ରିଟିସ ଜନସାଧାରଣ ମଣ୍ଟେଗୁଙ୍କ ଉପରେ ଖୁବ୍ ବିରକ୍ତ ହୋଇଥାନ୍ତି । ରବୀନ୍ଦ୍ରନାଥ ତାଙ୍କୁ ଧନ୍ୟବାଦ ଦେଇ ଏକ ପତ୍ର ଦେଲେ । ଏହାର ପ୍ରତିକ୍ରିୟା ଭାରତରେ ଦେଖାଦେଲା । ଏହି ଚିଠି

ଲେଖିବା ଫଳରେ ଉଗ୍ର ଜାତୀୟବାଦୀମାନେ ତାଙ୍କୁ ତିରସ୍କାର କଲେ ।

କବି ଦିନେ ଇଣ୍ଡିଆ ଅଫିସ ଯାଇ ମଣ୍ଟେଗୁଙ୍କ ସହିତ ଦେଖାକରି କହିଥିଲେ ଯେ ଭାରତୀୟମାନେ ଜାଲିଅନାୱାଲାବାଗର ହତ୍ୟାକାଣ୍ଡ ଜେନାରାଲ ଡାୟାର ଓ ହତ୍ୟା-ପ୍ରରୋଚକ ଲେଫ୍ଟେନାଣ୍ଟ ଓଡ଼ାୟାରଙ୍କୁ ଶାସ୍ତି ଦେବା ପାଇଁ ଉତ୍ସୁକ ନୁହନ୍ତି; ଘଟଣାଟି ଅନ୍ୟାୟ ହୋଇଛି ବୋଲି କର୍ତ୍ତୃପକ୍ଷ ସ୍ୱୀକାର କରନ୍ତୁ । କିନ୍ତୁ ସେହିଠାରେ ହିଁ ମୁସ୍କିଲ; ଅନ୍ୟାୟ ସ୍ୱୀକାର କରିବାକୁ ଗଲେ ଇଂରେଜଙ୍କର ସମ୍ମାନ ଉପରେ ବାଧା । ମଣ୍ଟେଗୁ କହିଲେ ଯେ ଭବିଷ୍ୟତରେ ଯେପରି ଏପରି ଘଟଣା ନଘଟେ ସେ ଦିଗରୁ ସେମାନେ ହୁସିଆର ରହିବେ ।

ମୋଟକଥା, ଗୁରୁଆଡ଼ର ଆଲୋଚନାରୁ କବି ବୁଝିଲେ ଯେ ବ୍ରିଟିସ ପାର୍ଲାମେଣ୍ଟର ଆଲୋଚନାରେ ଭାରତର କୌଣସି ଲାଭ ହେବ ନାହିଁ । କବି ଗୋଟିଏ ପତ୍ରରେ ଲେଖିଲେ ଯେ ବ୍ରିଟିସ ଅମଲମାନେ ଭାରତୀୟମାନଙ୍କ ଉପରେ ଯେତେ ଦାନବୀୟ ଅତ୍ୟାଚାର କରନ୍ତୁ ନା କାହିଁକି, ଏଥିପାଇଁ ଇଂଲଣ୍ଡର ନିର୍ବାଚକ-ମଣ୍ଡଳୀ ମଧ୍ୟରେ କୌଣସି ଲଜ୍ଜା ବା କ୍ଷୋଭର ସଞ୍ଚାର ହୁଏ ନାହିଁ ।

(୯୧)

ଲଣ୍ଡନରୁ କବି ଫ୍ରାନ୍ସ ଗଲେ (୧୯୨୦ ଅଗଷ୍ଟ ୬ତାରିଖ) । ପ୍ୟାରିସ୍ ଅପରିଚିତ, ଫରାସୀ ଭାଷା ଅଜ୍ଞାତ । ସହାୟ ହେଲେ ସୁଧୀର ରୁଦ୍ର । ସେ ହେଉଛନ୍ତି ଏଣ୍ଡ୍ରୁଜଙ୍କର ବନ୍ଧୁ ଓ ଦିଲ୍ଲୀ ସେଣ୍ଟ ଷ୍ଟିଫେନ୍ସ କଲେଜର ଅଧ୍ୟକ୍ଷ ସୁଶୀଲ ରୁଦ୍ରଙ୍କ ପୁତ୍ର—ପ୍ୟାରିସରେ ଅଧ୍ୟୟନ ଶେଷ କରିବାକୁ ଆସିଥାନ୍ତି । ଏହାଙ୍କୁ ନ ପାଇଥିଲେ କବି ଓ ତାଙ୍କର ସଙ୍ଗୀମାନଙ୍କୁ ଖୁବ୍ ଅସୁବିଧାରେ ପଡ଼ିବାକୁ ହୋଇଥାନ୍ତା ।

ଭାଗ୍ୟକ୍ରମେ କାହାନ୍ (Kahn) ନାମକ ଏକ ଧନୀ ରବୀନ୍ଦ୍ରନାଥ ପ୍ରଭୃତିଙ୍କର ଆତିଥ୍ୟ ଭାର ଗ୍ରହଣ କଲେ । ରହିବା ପାଇଁ ଘର ପାଇଲେ ସହରର ଦୂରରେ—ସୀନ୍ ନଦୀ ତୀରବର୍ତ୍ତୀ ଶାନ୍ତ ପରିବେଶ ମଧ୍ୟରେ, ପରିପାଟିରେ ସଜ୍ଜିତ ବଗିଚା ଓ ଘର ।

ପ୍ୟାରିସ୍‌ରୁ ଦିନେ ମଟରରେ କବି ଫ୍ରାନ୍‌ସର ରଣବିଧ୍ୱସ୍ତ ଅଞ୍ଚଳ ଦେଖିବାକୁ ଗଲେ । ଗୃହଆଡ଼େ ଟେଞ୍ଚପରର କଂକାଳ, ଇତସ୍ତତ କମାଣ ଗୋଳାର ଗର୍ତ୍ତ—ଏ ପର୍ଯ୍ୟନ୍ତ ଲୋକେ ଭଲ ଅବସ୍ଥାକୁ ଆସି ପାରିନାହାନ୍ତି । ଅଧାଭଙ୍ଗା ଘରଦ୍ୱାର, ଚର୍ଚ୍ଚ, କଳ କାରଖାନା । ସେ ଏକ ବିଶାଳ ଶ୍ମଶାନର ମୂର୍ତ୍ତି । ଏହି ଦୃଶ୍ୟ ଦେଖି କବିଙ୍କ ହୃଦୟରେ ନିଦାରୁଣ ଆଘାତ ଲାଗିଲା । ତାଙ୍କର ମନେ ହେଲା ଯେ ଏ କାଳର ମାନବ ସଭ୍ୟତାର ଏହା ହିଁ ପରିଣତି ! ଏହି ସମସ୍ୟାର ସମାଧାନ କଣ ଓ କେଉଁଠି, ଏହି ମର୍ମନୁଦ ପ୍ରଶ୍ନ ହିଁ ତାଙ୍କଠାରେ ସବୁଠାରୁ ବଡ଼ ହୋଇ ଉଠିଲା ।

ସହରତଳିସ୍ଥ କାହାନ୍‌ଙ୍କର ଏହି ସୁନ୍ଦର ଉଦ୍ୟାନଘରେ ଫ୍ରାନ୍‌ସର ବହୁ ମନୀଷୀ ରବୀନ୍ଦ୍ରନାଥଙ୍କ ସହିତ ଦେଖା କରିବାକୁ ଆସିଥିଲେ—ଦାର୍ଶନିକ ଆଁରି ବେର୍ଗସଁ, ଲେଭ୍ରୁନ୍, ସିଲ୍‌ଭ୍ୟା ଲେଭି; କଁତେସ ଦ ନୋଆଇଲସ ପ୍ରଭୃତି ଅନେକ । ବେର୍ଗସଁଙ୍କ ସଙ୍ଗେ କଥାବାର୍ତ୍ତାରୁ ଜଣାଗଲା ଯେ ଏହି ଫରାସୀ ଭାବୁକ ରବୀନ୍ଦ୍ରନାଥଙ୍କ ସମ୍ବନ୍ଧରେ ଅନେକ ସମ୍ବାଦ ରଖନ୍ତି । ଲେଭି ଓ ନୋଆଇଲସ୍‌ଙ୍କ କଥା ପରେ କୁହାଯିବ । ଏହା ମଧ୍ୟରେ ନେଦରଲାଣ୍ଡରୁ ନିମନ୍ତ୍ରଣ ଆସିଲା—ବକ୍ତୃତା ଦେବାକୁ ହେବ । ଓଲନ୍ଦାଜମାନଙ୍କର ଦେଶରେ କବି ପନ୍ଦର ଦିନ ଥିଲେ । ସେଠାରେ ମଧ୍ୟ ସହରଠାରୁ ଦୂରରେ ପଲ୍ଲୀ ପରିବେଶରେ ଏକ ଧନୀଗୃହରେ ଅତିଥି ହୋଇଥିଲେ । ଆମଷ୍ଟରଡାମ୍, ହେଗ୍, ଲାଇଡ଼େନ୍, ୟୁଟ୍ରେକ୍‌ଟ୍, ରଟରଡାମ୍‌ରେ ବକ୍ତୃତା ଦେଲେ । ସମସାମୟିକ ଏକ ଡଚ୍ ଭଦ୍ରଲୋକ ଲେଖିଛନ୍ତି ଯେ କବି ଯେତେବେଳେ ହଲ୍ୟାଣ୍ଡ ଆସିଲେ, ସେତେବେଳେ ଶ୍ରୋତୃମଣ୍ଡଳୀ ମଧ୍ୟରେ ଏପରି ଗୋଟିଏ ଲୋକ ପାଇ ନାହାନ୍ତି ଯେ ତାଙ୍କର ସାହିତ୍ୟ ସମ୍ପର୍କରେ ସମ୍ପୂର୍ଣ୍ଣ ଅଜ୍ଞ । ହଜାର ହଜାର ଲୋକ କବିଙ୍କର ଗ୍ରନ୍ଥ

ଇଂରେଜୀ ବା ଉର୍ଦ୍ଦୁ ଭାଷାରେ ପଢ଼ିଥିଲେ । ଦେଶରେ Spirit of Tagore ନାମରେ ଗୋଟିଏ କଥା ପ୍ରଚଳିତ ହୋଇ ଯାଇଥିଲା ।

କବିଙ୍କୁ ସବୁଠାରୁ ସମ୍ମାନ ଦେଇଥିଲେ ରଟର୍ଡାମବାସୀ । ନଗରର ପ୍ରଧାନ ଚର୍ଚ୍ଚର ବେଦୀ ଉପରେ କବିଙ୍କର ଭାଷଣ ଦେବାର ବ୍ୟବସ୍ଥା ହୋଇଥିଲା । ଏପର୍ଯ୍ୟନ୍ତ କେବେ ହେଲେ କୌଣସି ଅଣଖ୍ରୀଷ୍ଟିୟାନ୍‌ଙ୍କୁ ସେମାନେ ଏ ସମ୍ମାନ ଦେଇ ନାହାନ୍ତି ।

ହଲାଣ୍ଡ୍ ବେଲଜିୟମ ନିକଟବର୍ତ୍ତୀ ଦେଶ । ବେଲଜିୟମ୍‌ର ରାଜଧାନୀ ବ୍ରୁସେଲସ୍‌ର ପ୍ରଧାନ ବିଶ୍ୱବିଦ୍ୟାଳୟର ବିଶାଳ କକ୍ଷରେ କବିଙ୍କର ବକ୍ତୃତା ଦେବାର ବ୍ୟବସ୍ଥା ହୋଇଥିଲା ।

ପ୍ୟାରିସ୍ ଫେରି ଆସିଲେ; କିନ୍ତୁ କେଉଁଠିକି ଯିବେ, କେଉଁଠି ରହିବେ ଠିକ୍ କରି ପାରୁ ନଥାନ୍ତି । ଭାବୁଥାନ୍ତି ଆମେରିକା ଯିବେ । କିନ୍ତୁ ମେଜର ପଣ୍ଡ୍ (ଯେ କି ଗତଥର କବିଙ୍କର ବକ୍ତୃତାର ବ୍ୟବସ୍ଥା କରିଥିଲେ) ଏଥର ଚିଠି ଲେଖିଲେ ଯେ ମାର୍କିନ୍ ମୁଲକରେ କବିଙ୍କର ବକ୍ତୃତା ଦେବାର ବ୍ୟବସ୍ଥା ସମ୍ଭବ ହେବନାହିଁ । ଅସଲ କଥା ହେଉଛି ପଣ୍ଡ୍ ସେତେବେଳକୁ ଦେବାଳିଆ, ବ୍ୟବସ୍ଥା କରିବାର ଅସୁବିଧା ଅନେକ । କିନ୍ତୁ ଏହାଛଡ଼ା ଅନ୍ୟାନ୍ୟ କାରଣ ମଧ୍ୟ ଥିଲା । ତାହା ବୁଝିହେଲା କବିଙ୍କର ଆମେରିକା ଯିବା ପରେ ।

(୯୨)

ହଲାଣ୍ଡ୍‌ର ବନ୍ଦର ରଟର୍ଡାମ୍‌ଠାରୁ କବି ଓ ପିୟର୍ସନ ଆମେରିକା ଗଲେ—ରଥୀନ୍ଦ୍ର ଦୁହେଁ ୟୁରୋପରେ ରହିଲେ, ପରେ ଯିବେ । ନିଉୟର୍କରେ ପହଞ୍ଚି (୧୯୨୦ ଅକ୍‌ଟୋବର ୨୮) ସେମାନେ ହୋଟେଲରେ ରହିଲେ ।

ଆମେରିକା ତ ଆସିଲେ, କିନ୍ତୁ କୌଣସି ଆଡ଼ୁ କୌଣସି ପ୍ରକାର ଆହ୍ୱାନ ନାହିଁ । ଖବରକାଗଜବାଲାମାନେ ମଧ୍ୟ ଖୁବ୍ ହୁସିଆର—କୌଣସି ଉଚ୍ଛ୍ୱାସ ନାହିଁ, ସ୍ୱାଗତ ନାହିଁ । ବ୍ରୁକଲିନ୍

ଓ ନାଉସୂର୍କରେ କେତୋଟି ବକ୍ତୃତା ଦେଲେ ସତ, କିନ୍ତୁ କୌଣସି ଆନ୍ତରିକତାର ଚିହ୍ନ ନାହିଁ । ହାର୍ଭାର୍ଡରେ ବକ୍ତୃତା ଦେଲେ ଓ ଆଉ ଗୋଟିଏ ଯୋଡ଼ିଏ ଜାଗରେ ମଧ୍ୟ ବକ୍ତୃତା ଦେଲେ । କିନ୍ତୁ ଆନ୍ତର୍ଜାତିକତାର ବାର୍ତ୍ତା ବା ବିଶ୍ୱଭାରତୀର ମର୍ମବାଣୀ ଶୁଣିବାର କାହାର ଆଗ୍ରହ ଦେଖାଗଲା ନାହିଁ । ଆଦର୍ଶବାଦରୁ ଆଦର୍ଶକୁ ବାଦ୍ ଦେଇ ଯାହା ଇନ୍ଦ୍ରିୟ ସାହାଯ୍ୟରେ ଦେଖାଯାଏ ଓ ଧରାଯାଏ, ତାହାର ଖବର ସେମାନେ ରଖନ୍ତି । ସେମାନେ 'ପ୍ରାଗ୍‌ମ୍ୟାଟିକ'— 'ମା ଫଳେଷୁ କଦାଚନ' ସେମାନେ ବୁଝନ୍ତି ନାହିଁ । ସେମାନେ କାର୍ଯ୍ୟ କରନ୍ତି ଓ ଫଳ ଗ୍ରହାନ୍ତି । କାର୍ନେଗି-ଗୃହିଣୀଙ୍କ ସହିତ ରବୀନ୍ଦ୍ରନାଥ ଦେଖା କରିବାକୁ ଚାହିଁଲେ । ସେ ଜଣାଇଲେ— ଦେଖା ହେବ ନାହିଁ । ପ୍ରାୟ ମାସେ ପରେ ଧନୀକନ୍ୟାମାନଙ୍କର ଜୁନିୟର ଲିଗ୍ କ୍ଲବ ତରଫରୁ କବିଙ୍କୁ ନିମନ୍ତ୍ରଣ ମିଳିଲା । କିନ୍ତୁ ତାଙ୍କର କଥା କାହାରି କାନରେ ପହଞ୍ଚି ପାରିଲା ନାହିଁ । ସମସ୍ତେ ଯୁଦ୍ଧବଧ୍ୱସ୍ତ ବାସ୍ତୁହରାମାନଙ୍କ ପାଇଁ ଅର୍ଥ ସଂଗ୍ରହରେ ବ୍ୟସ୍ତ । ପୂର୍ବୋକ୍ତ ସଭାପରେ ଅଧ୍ୟାପକ ଉଡ଼ସ୍ କବିଙ୍କୁ ଶାନ୍ତିନିକେତନ ସଂପର୍କରେ ଇଂରାଜୀ ସରକାରଙ୍କର ମନୋଭାବ ଜିଜ୍ଞାସା କଲେ । ଏହି ଗୋଟିଏ ପ୍ରଶ୍ନରୁ କବି ବୁଝି ପାରିଲେ ଯେ ତାହାଙ୍କ ମେଳାର ପଣ୍ଡି ତାଙ୍କୁ ଡାକିବା ପାଇଁ ଆଗ୍ରହ ପ୍ରକାଶ କରି ନଥିଲେ ଓ ତାହାଙ୍କ ମାସାଧିକ କାଳ ତାଂକର କଥା କାହାକୁ ଶୁଣାଇ ବା ବୁଝାଇ ପାରି ନଥିଲେ । ବୁଝିପାରିଲେ ଯେ ତାଂକର 'ସାର୍' ଉପାଧି ତ୍ୟାଗ ଖବର ଆଟଲାଣ୍ଟିକ୍ ମହାସାଗର ପାରି ହୋଇ ଆମେରିକାବାସୀଙ୍କୁ ମଧ୍ୟ ଆହତ କରିଛି । ବିଗତ ମହାଯୁଦ୍ଧର ଅନ୍ତିମ କାଳର ବନ୍ଧୁ ଆମେରିକାବାସୀ ମଧ୍ୟ ରାଜଉପାଧି ତ୍ୟାଗୀ ରବୀନ୍ଦ୍ରନାଥଙ୍କୁ କ୍ଷମା କରି ପାରି ନଥିଲେ । ମାର୍କିନ୍‌ମାନେ ସମସ୍ତେ 'ମିଷ୍ଟର'; କିନ୍ତୁ ଧନାଗମ ହେଲା ମାତ୍ରେ ଇଂଲଣ୍ଡ ଦେଶରେ ଲର୍ଡ ବା ଉଚ୍ଚକଙ୍କ ସଙ୍ଗେ ସଂପର୍କ ପ୍ରତିଷ୍ଠା କରିବାକୁ ବ୍ୟସ୍ତ ହୋଇ ପଡ଼ନ୍ତି । କବି ବୁଝିଲେ ଯେ ମାର୍କିନ ମୁଲକରେ ତାଙ୍କର ବିଶ୍ୱଭାରତୀ ପାଇଁ ଅର୍ଥ ସଂଗ୍ରହ ଚେଷ୍ଟା ବୃଥା ସମୟ ନଷ୍ଟ ମାତ୍ର ।

ସେ ଯାହାହେଉ, ନିଉୟର୍କ ଛାଡ଼ିବା ଆଗରୁ ମାର୍କିନର ସମ୍ମାନ ରକ୍ଷାକଲେ ମୁଷ୍ଟିମେୟ ସାହିତ୍ୟିକ । ସେମାନଙ୍କର 'ପୋଏଟ୍ରି-ସୋସାଇଟି' ତରଫରୁ କବି-ସମ୍ବର୍ଦ୍ଧନାର ବ୍ୟବସ୍ଥା ହେଲା । କବି ଚିକାଗୋ ଯାଇ ଶ୍ରୀମତୀ ମୁଡ଼ିଙ୍କ ଘରେ କିଛିଦିନ ରହିଲେ । ଏହି ମହିଳାଙ୍କର ସ୍ୱାମୀ ଇଲିନୟ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକ ଥିଲେ ଓ ଅଳ୍ପ ବୟସରେ ତାଙ୍କର ମୃତ୍ୟୁ ହୋଇ ଯାଇଥିଲା । ସେ ରବୀନ୍ଦ୍ରନାଥଙ୍କୁ ଖୁବ୍ ଭକ୍ତି କରୁଥିଲେ ।

ଚିକାଗୋରେ ରହିବା ସମୟରେ ଖବର ପାଇଲେ ଯେ ମିଃ ପଣ୍ଡ୍ କବିଙ୍କ ପାଇଁ ବକ୍ତୃତା ଦେବାର ବ୍ୟବସ୍ଥା କରିପାରିଛନ୍ତି । ଟେକ୍‌ସାର ଷ୍ଟେଟ୍‌ରେ ପନ୍ଦରଟି ବକ୍ତୃତା ଦେବାକୁ ହେବ ।

ପନ୍ଦରଟି ଦିନ ପଣ୍ଡ୍ ସାହେବ ସହରରୁ ସହର ବୁଲାଇଲେ—ରାତିରେ ପୁଲମ୍ୟାନ୍ ଗାଡ଼ିରେ ନିଦ୍ରା ଓ ବିଶ୍ରାମ; ଦିନରେ ବକ୍ତୃତା ଓ ଦେଖାସାକ୍ଷାତ । ଟେକ୍‌ସାସ ମାର୍କିନ ଯୁକ୍ତରାଷ୍ଟ୍ରର ଅନଗ୍ରସର ଅଙ୍ଗରାଜ୍ୟ । ତଥାପି ଆରାମ ପାଉଥାନ୍ତି । ନିଉୟର୍କର ଦୁଃସ୍ୱପ୍ନମୟ ସ୍ମୃତି ଏବଂ ବ୍ୟର୍ଥତାର ଗ୍ଲାନି କିଛି ପରିମାଣରେ ପ୍ରଶମିତ ହେଲା ।

କବି 'ମିଲିୟନ' ଡଲାରର ସ୍ୱପ୍ନ ଦେଖି ଆମେରିକା ଆସିଥିଲେ । କିନ୍ତୁ ଆଶାନୁରୂପ ଅର୍ଥ ପାଇଲେ ନାହିଁ । ଏଣେ ଶାନ୍ତିନିକେତନରୁ ଏଣ୍ଡ୍ରୁଜ ପତ୍ର ଲେଖୁଥାନ୍ତି—ଘୋର ଅର୍ଥାଭାବ । ବିଦ୍ୟାଳୟର ସମ୍ପୂର୍ଣ୍ଣ ଦାୟିତ୍ୱ ଏଣ୍ଡ୍ରୁଜଙ୍କ ଉପରେ ଛାଡ଼ିଦେଇ କବି ନିଶ୍ଚିନ୍ତ ଥିଲେ । ଅଭାବ ହେଲେବି ଏଣ୍ଡ୍ରୁଜ ଟଙ୍କା ଯୋଗାଡ଼ କରି ଆଣୁଥିଲେ ।

ଏଥର ଆମେରିକା ଭ୍ରମଣ ସମୟରେ କବିଙ୍କ ସହିତ ଲେନାର୍ଡ଼ ଏଲମ୍‌ହାର୍ଷ୍ଟ ନାମକ ଏକ ଇଂରେଜୀ ତରୁଣଙ୍କର ପରିଚୟ ହେଲା । ଏହି ଅଦ୍ଭୁତକର୍ମା ଯୁବକଟି ଗ୍ରାମସଂସ୍କାର ସମ୍ପର୍କୀୟ କଥାବାର୍ତ୍ତା ଶୁଣି କବିଙ୍କର ଆଦର୍ଶକୁ ରୂପଦାନ କରିବା ପାଇଁ ଆତ୍ମନିବେଦନ କରିବେ ବୋଲି ପ୍ରତିଶ୍ରୁତ ହେଲେ । ଏହାଙ୍କର ତରୁଣୀ ବାନ୍ଧବୀ ଶ୍ରୀମତୀ ଷ୍ଟ୍ରେଟ୍, ଜୁନିୟର ଲୀଗର ବିଶିଷ୍ଟ ସଦସ୍ୟା—ବିଶ୍ୱଭାରତୀକୁ ଅର୍ଥ ସାହାଯ୍ୟ କଲେ । ଏଲମ୍‌ହାର୍ଷ୍ଟଙ୍କ ସହିତ ପରେ

ଏହାଙ୍କର ବିବାହ ହୋଇଥିଲା । ସେତେବେଳେ ମଧ୍ୟ ବହୁବର୍ଷ ଧରି ଶ୍ରୀନିକେତନର କାର୍ଯ୍ୟ ପାଇଁ ନିୟମିତ ଟଙ୍କା ଦେଇଛନ୍ତି ।

ସୁତରାଂ ଆପାତବ୍ୟର୍ଥ ମନେ ହେଲେ ବି କବିଙ୍କର ଏହି ଆମେରିକା ଭ୍ରମଣ ପ୍ରକୃତରେ ବ୍ୟର୍ଥ ହୋଇନି । ଟଙ୍କା ପାଇଛନ୍ତି ଓ ତା'ଠାରୁ ବଡ଼କଥା ଏହି ଯେ ବିଶ୍ୱଭାରତୀର ଏକ ଅକୃତ୍ରିମ ବନ୍ଧୁ ଓ କର୍ମ ସହଯୋଗୀ ଲାଭ କରିଛନ୍ତି ।

ଆମେରିକାରୁ ଇଂଲଣ୍ଡ ଫେରି (୧୯୨୧ ମାର୍ଚ୍ଚ ୨୪) ରବୀନ୍ଦ୍ରନାଥ ସ୍ୱସ୍ତିର ନିଶ୍ୱାସ ମାରିଲେ । ଇଂଲଣ୍ଡ ତ୍ୟାଗ କରି ଯିବା ସମୟରେ ମନେ ହୋଇଥିଲା ଯେ କେବଳ ଏହି ଦ୍ୱୀପବାସୀମାନେ ହିଁ ଆଦର୍ଶହୀନ; କିନ୍ତୁ ସମୁଦ୍ର ପାରିରେ ଯେ ଆଦର୍ଶବାଦର ଆହୁରି ଅଭାବ ସେ ଧାରଣା ସେତେବେଳେ ନଥିଲା ।

ତିନିସପ୍ତାହ ସେଠାରେ ରହି ବିମାନଯୋଗେ ପ୍ୟାରିସ ଆସିଲେ – ଏହା ହିଁ କବିଙ୍କର ଆକାଶ ପଥରେ ବିଚରଣର ପ୍ରଥମ ଅଭିଜ୍ଞତା । ପ୍ୟାରିସର ମ୍ୟୁଜେ ଗିମେ (Guimet) ପ୍ରତିଷ୍ଠାନ ତରଫରୁ କବିଙ୍କର ବକ୍ତୃତା ଦେବାର ବ୍ୟବସ୍ଥା ହେଲା । ଏହି ପ୍ରତିଷ୍ଠାନ ଅନ୍ତର୍ଗତ ପ୍ରାଚ୍ୟ-ବନ୍ଧୁ-ସମିତି (Les Ami de orient) ବିଶ୍ୱଭାରତୀ ପାଇଁ ଅର୍ଥ ସଂଗ୍ରହ କରି ଅତି ମୂଲ୍ୟବାନ୍ ଦୁଷ୍ପ୍ରାପ୍ୟ ଗ୍ରନ୍ଥ ଓ ପତ୍ରିକାଦି କିଣି ଦେଇଥିଲେ । ଏହି କାର୍ଯ୍ୟରେ ଶ୍ରୀ କାଳିଦାସ ନାଗ ପ୍ରଚୁର ସହାୟତା କରିଥିଲେ । ସେତେବେଳେ ସେ ସେଠାରେ ଡକ୍ଟର ଉପାଧି ପାଇଁ ପ୍ରସ୍ତୁତ ହେଉଥାନ୍ତି । ବିଶ୍ୱଭାରତୀ ଗ୍ରନ୍ଥାଗାରରେ ଉକ୍ତ ଅମୂଲ୍ୟ ଗ୍ରନ୍ଥରାଜି ଆଜି ବି ଅଛି ।

ପ୍ୟାରିସ-ବାସ କାଳରେ କବିଙ୍କ ସଙ୍ଗେ ରୋମାଁରୋଲାଁଙ୍କର ସାକ୍ଷାତ ହେଲା । ପୂର୍ବେ ପତ୍ର ବିନିମୟ ହୋଇଥିଲା—ଗୁଣମୁଗ୍ଧ ପରିଚୟ ହୋଇ ନଥିଲା । ପେଟ୍ରିକ୍ ଗେଡିସ୍‌ଙ୍କ ସହିତ ମଧ୍ୟ ଦେଖା ହେଲା । ଏ ମଧ୍ୟ ଜଣେ ଅସାମାନ୍ୟ ଭାବୁକ ଓ କର୍ମୀ । ଗେଡିସ୍‌ଙ୍କ ପ୍ରତିଷ୍ଠିତ ମଁପଲିୟରର ବିଦ୍ୟାୟତନର କବି ପୃଷ୍ଠପୋଷକ ହେଲେ ।

ପ୍ୟାରିସରୁ କବି ଗଲେ ଷ୍ଟ୍ରାସବର୍ଗ; ଅଧ୍ୟାପକ ଲେଭି ସେଠାରେ ଥିଲେ । ମହାଯୁଦ୍ଧ ପରେ ଫ୍ରାନ୍‌ସ ଆଲ୍‌ସେସ ଲରେନ

ଫେରିପାଇ ସେ ଦେଶକୁ ଫରାସୀକରଣ କରିବାରେ ଲାଗିଥାଏ । ଲେଖକଙ୍କର ପାଣ୍ଡିତ୍ୟ ଓ ସୌଜନ୍ୟରେ କବି ଖୁବ୍ ମୁଗ୍ଧ; ତାଙ୍କୁ କଷ୍ଟଦାନ ପାଇଁ ବିଶ୍ୱଭାରତୀ ଆଣିବାକୁ ଭାବିଲେ ।

ଫ୍ରାନ୍ସରୁ କବି ଗଲେ ସୁଇସ୍‌ମାନଙ୍କର ଦେଶକୁ—ଲୁସାର୍ନ୍, ବାସ୍‌ଲ୍, ଜୁରିଚ୍ ପ୍ରଭୃତି ଭ୍ରମଣ କଲେ । ଲୁସାର୍ନ୍ ଆସି ଖବର ପାଇଲେ ଯେ ଜର୍ମାନମାନେ କବିଙ୍କର ଜନ୍ମଦିନ ଉପଲକ୍ଷେ ବିରାଟ ଜର୍ମାନ ସାହିତ୍ୟର ରାଶି ରାଶି ଗ୍ରନ୍ଥ ବିଶ୍ୱଭାରତୀ ପାଇଁ ଉପହାର ଦେଇଛନ୍ତି । ଏହି ସମ୍ବାଦରେ କବି ଖୁବ୍ ଅଭିଭୂତ ହେଲେ—ବିଦେଶୀଙ୍କ ନିକଟରୁ ଏପରି ଅଭାବନୀୟ ଅଭିନନ୍ଦନ ତାଙ୍କର ଆଶାତୀତ ହେଲା ।

ସୁଇସ୍ ଦେଶରୁ କବି ଜର୍ମାନୀର ଡାର୍ମଷ୍ଟାଟ୍ ଓ ହାମବର୍ଗ ହୋଇ ଗଲେ ଡେନମାର୍କ । ଡେନମାର୍କର ରାଜଧାନୀ କୋପେନ-ହେଗେନରେ ପହଞ୍ଚି ଦେଖିଲେ ଯେ ନୋବେଲ୍ ପୁରସ୍କାରପ୍ରାପ୍ତ ଭାରତୀୟ କବିଙ୍କୁ ଦେଖିବାକୁ କି ବିରାଟ ଜନତା । ବିଶ୍ୱ-ବିଦ୍ୟାଳୟରେ ବକ୍ତୃତା ଦେବା ପରେ ଛାତ୍ରମାନେ ମଶାଲ ଜାଳି ଶୋଭାଯାତ୍ରା କରି କବିଙ୍କୁ ହୋଟେଲରେ ପହଞ୍ଚାଇ ଦେଇଗଲେ ଓ ତା ପରେ ଅନେକ ରାତି ପର୍ଯ୍ୟନ୍ତ ପ୍ରାଙ୍ଗଣରେ ଉତ୍ସବ କରିଥିଲେ । କବି ସହାସ୍ୟମୁଖରେ ସେମାନଙ୍କର ଅଭିନନ୍ଦନ ଗ୍ରହଣ କରିଥିଲେ ।

ଡେନମାର୍କରୁ ସୁଇଡେନର ରାଜଧାନୀ ଷ୍ଟକ୍‌ହୋମ ଆସି ଦେଖିଲେ ଯେ ଷ୍ଟେସନରେ ସୁଇଡ଼ିସ୍ ଏକାଡେମୀର ସଦସ୍ୟଗଣ ତାଙ୍କୁ ସ୍ୱାଗତ କରିବାପାଇଁ ଉପସ୍ଥିତ ଓ ବାହାରେ ବିରାଟ ଜନତା । ସୁଇଡ଼ିସମାନେ ଯେଉଁ ଭାରତୀୟ କବିଙ୍କୁ ନୋବେଲ୍ ପ୍ରାଇଜ ଦେଇ ସମ୍ମାନିତ କରିଥିଲେ, ସେ ଆଜି ସେମାନଙ୍କ ମଧ୍ୟରେ ଉପସ୍ଥିତ । ସେହି ଆନନ୍ଦ-ପ୍ରକାଶ ପାଇଁ ସାରା ନଗର ଉଦ୍‌ବେଳିତ ।

କବି ଯେତେବେଳେ ଷ୍ଟକ୍‌ହୋମ ଆସିଥିଲେ ସେତେବେଳେ ମହାନଗରୀରେ ସାମ୍ବତ୍ସରିକ ଲୋକ-ଉତ୍ସବ ଚାଲୁଥାଏ । କବି ଅନୁଷ୍ଠାନଗୁଡ଼ିକରେ ଉପସ୍ଥିତ ହେଲେ; ସୁଦୂର ଉତ୍ତର ୟୁରୋପର ଲୋକ-ନୃତ୍ୟ ଦେଖିବାର ଓ ଲୋକ-ସଙ୍ଗୀତ ଶୁଣିବାର ଅପ୍ରତ୍ୟାଶିତ ସୁଯୋଗ ପାଇଲେ ।

ନୋବେଲ୍ ପ୍ରାଇଜର ନିୟମାନୁସାରେ ପୁରସ୍କୃତ ଲୋକଙ୍କୁ ଅନ୍ତତଃ ଥରେ ଏକାଡେମୀରେ କିଛି କହିବାକୁ ପଡ଼ିଥାଏ । କବିଙ୍କୁ ମଧ୍ୟ ଭାଷଣ ଦେବାକୁ ହେଲା । କବିଙ୍କର ଭାଷଣ ପରେ ଉପ୍‌ସାଲା ଚର୍ଚ୍ଚର ପ୍ରଧାନ ପୁରୋହିତ ବା ଆର୍ଚ୍ଚବିଶପ କହିଥିଲେ ଯେ, ଋଷି ଓ ଶିଳ୍ପୀର ସମନ୍ୱୟ ହୋଇଛି କବିଙ୍କ ମଧ୍ୟରେ—ନୋବେଲ୍ ସାହିତ୍ୟ ପୁରସ୍କାର ଯୋଗ୍ୟପାତ୍ରରେ ଅର୍ପିତ ହୋଇଛି ।

ଆର୍ଚ୍ଚବିଶପଙ୍କର ଅନୁରୋଧରେ କବି ଉପ୍‌ସାଲା ଗଲେ । ସେଠାର ମହାଦେବାଳୟ (Cathedral)ରେ କବିଙ୍କୁ ବକ୍ତୃତା ଦେବାକୁ ହେଲା । ଏହି ନଗରୀର ଆର୍ଚ୍ଚବିଶପ ଉପସ୍ଥିତ ଥାଇ, ଅନ୍ୟ ଧର୍ମାବଲମ୍ବୀ ଲୋକଙ୍କୁ ଚର୍ଚ୍ଚ ଭିତରେ ଉପଦେଶ ଦେବାର ସମ୍ମାନ ଏହା ପୂର୍ବରୁ କାହାରିକୁ ଦିଆଯାଇନି । ରବୀନ୍ଦ୍ରନାଥଙ୍କୁ ସେମାନେ ସେ ସମ୍ମାନ ମଧ୍ୟ ଦେଇଥିଲେ । ସୁଇଡେ଼ନରୁ କବି ଆସିଲେ ଜର୍ମାନୀ । ସେତେବେଳକୁ ଜର୍ମାନୀ ପରାଭୂତ ହୋଇଥିଲା ସତ; କିନ୍ତୁ ଦୁଇଭାଗରେ ବିଭକ୍ତ ହୋଇନଥିଲା । ବର୍ଲିନରେ କବି ଅତିଥି ହେଲେ ଧନକୁବେର ଷ୍ଟାଇନସେନଙ୍କ ଘରେ । ଏଥିପାଇଁ ମଧ୍ୟ କବିଙ୍କୁ ଅନେକ କଥା ଶୁଣିବାକୁ ପଡ଼ିଥିଲା । ଏତେ ଲୋକ ଥାଉଁ ଥାଉଁ ଶୋଷକଗୋଷ୍ଠୀଙ୍କ ସହିତ ରବୀନ୍ଦ୍ରନାଥଙ୍କର ଏତେ ହାର୍ଦ୍ଦିକତା କାହିଁକି ? କିନ୍ତୁ ଅଭିଯୋଗକାରୀମାନେ ଭୁଲିଯାନ୍ତି; ରବୀନ୍ଦ୍ରନାଥଙ୍କ ବଂଶର କଥା, ଆଭିଜାତ୍ୟର କଥା । ଧନୀ ବ୍ୟକ୍ତି ଯଦି ସତ୍କାର ପ୍ରାର୍ଥୀ ହୁଅନ୍ତି ଓ କବି ସେହି ଆତିଥ୍ୟ ଗ୍ରହଣ କରନ୍ତି ସେଥିପାଇଁ ତାଙ୍କୁ ବିଶେଷ ଦୋଷ ଦିଆଯାଇ ପାରିବ ନାହିଁ ।

ବର୍ଲିନ ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦିନ ଯେଉଁ ଭିଡ଼ ହୋଇଥିଲା ତାହା ବର୍ଣ୍ଣନାତୀତ । ପନ୍ଦରହଜାର ଲୋକ ଆରତୀୟ କବିଙ୍କୁ ଦେଖିବା ପାଇଁ ସମବେତ ହୋଇଥିଲେ । ଗୋଟିଏ ଦିନରେ ନିସ୍ତାର ମିଳିଲା ନାହିଁ । କବିଙ୍କୁ ତା ପରଦିନ ମଧ୍ୟ ବକ୍ତୃତା ଦେବାକୁ ପଡ଼ିଥିଲା ।

'ପ୍ରୁଶିୟାନ ଏକାଡେମୀ' ଜର୍ମାନୀର ପ୍ରସିଦ୍ଧ ସୁଧୀ ସମାଜ । ରବୀନ୍ଦ୍ରନାଥ ସେଠାରେ ମଧ୍ୟ ଦିନେ ବକ୍ତୃତା ଦେଇଥିଲେ । ତାପରେ ସେଠାର କର୍ତ୍ତୃପକ୍ଷ କବିଙ୍କର ବଙ୍ଗଳା ଓ ଇଂରେଜୀ କଣ୍ଠ-

ସ୍ୱର ରେକର୍ଡ଼ କରି ରଖିଲେ । ଶୁଣାଯାଏ ଯେ ସେ ରେକର୍ଡ଼ଗୁଡ଼ିକ ବିଶେଷ • ମିଶ୍ର-ଧାତୁରେ ତିଆରି ହୋଇଥିବାରୁ ବହୁତ ଦିନ ପର୍ଯ୍ୟନ୍ତ ନଷ୍ଟ ହୋଇ ନଥିଲା । ଏକାଡେମୀ ସେମାନଙ୍କର ଷାଠିଏ ବର୍ଷର ପତ୍ରିକା ବିଶ୍ୱଭାରତୀକୁ ଦାନ କରିଥିଲେ । ସେଗୁଡ଼ିକ ବିଶ୍ୱଭାରତୀର ଐଶ୍ୱର୍ଯ୍ୟ ।

ବର୍ଲିନରୁ ଆସି ମ୍ୟୁନିଚରେ କିଛିଦିନ ରହିଲେ ଓ ସେଠାରୁ ଗଲେ ଡାର୍ମଷ୍ଟାର୍ଟ । ଡାର୍ମଷ୍ଟାର୍ଟରେ ମନୀଷୀ କାଇଜାରଲିଙ୍ଗ ଥାଆନ୍ତି – ମହାପୁରୁଷ ପୂର୍ବରୁ ଥିଲେ ଡ଼ିଉକ୍, ବର୍ତ୍ତମାନ ହୃତ ସର୍ବସ୍ୱ । ସେ ୧୯୨୦ ମସିହାରେ ଜ୍ଞାନ-ମନ୍ଦିର ନାମକ ଏକ ପ୍ରତିଷ୍ଠାନ ସ୍ଥାପନ କରିଥିଲେ । ଦଶବର୍ଷ ପୂର୍ବେ ତରୁଣ କାଇଜାରଲିଙ୍ଗ ଯେତେବେଳେ ଭାରତ ଭ୍ରମଣରେ ଆସିଥିଲେ (୧୯୧୧) ସେତେବେଳେ କବିଙ୍କୁ ଯୋଡ଼ାସାଁକୋ ଘରେ ଦେଖିଥିଲେ । ସେତେବେଳେ ବିଦେଶୀ-ମାନେ ଯୋଡ଼ାସାଁକୋ ଆସୁଥାନ୍ତି ଅବନୀନ୍ଦ୍ରନାଥଙ୍କର ଗୃହକଳା ସଂଗ୍ରହ ଦେଖିବା ପାଇଁ । କାଇଜାରଲିଙ୍ଗ ରବୀନ୍ଦ୍ରନାଥଙ୍କୁ ଦେଖି ମୁଗ୍ଧ ହୋଇଥିଲେ । ସେଥର ପରିଚୟ ହୋଇ ନଥିଲା ।

ଡାର୍ମଷ୍ଟାର୍ଟରେ କବି ଯେଉଁ ଏକସପ୍ତାହ ଥିଲେ ତାହାର ନାମ ହୋଇଥିଲା Tagore woch; ଅର୍ଥାତ୍ ଠାକୁର-ସପ୍ତାହ । ଗୃହଆଡ଼ୁ ଲୋକେ ପ୍ରଶ୍ନ ନେଇ ଆସୁଥାନ୍ତି, ପ୍ରଶ୍ନ ଲେଖି ମଧ୍ୟ ପଠାଉଥାନ୍ତି । ଅପରାହ୍ନ ସଭାରେ କବି ଉତ୍ତର ଦିଅନ୍ତି । ଦୋଭାଷୀ ବୁଝାଇଦିଏ ।

ଦିନେ ଡାର୍ମଷ୍ଟାର୍ଟ ଶିଳ୍ପ କେନ୍ଦ୍ରର ଶ୍ରମିକମାନଙ୍କ ଆଡ୍ଡାକୁ କବି ଗଲେ । ଘରକୁ କିଏ ଆସିଛି ସେ ବିଷୟରେ ଶ୍ରମିକମାନଙ୍କର ଚିନ୍ତା ନାହିଁ । ସାମନାରେ ବିୟରର ବୋତଲ ଖୋଲା, ଚୁରୁଟ୍ ଧୂଆଁରେ ଘର ଅନ୍ଧକାର—ତାହାରି ମଧ୍ୟରେ କବି ଯାଇ ବସିଲେ । ଧୀରେ ଧୀରେ ଦୁଇ ଗୁରୁପଦ କଥା କହିବା ପରେ ଦେଖାଗଲା ଲୋକଙ୍କ ମଧ୍ୟରେ ଭାବାନ୍ତର । ମଦ ବୋତଲ ଟେବୁଲ ତଳେ ରଖିଲେ, ଚୁରୁଟ ଲୁଚାଇ ପକେଟରେ ରଖିଲେ, ଆସନ ଉପରେ ବସିଲେ— କବି କଣ କହୁଛନ୍ତି ଶୁଣିବା ଲାଗି । କବି ପରେ କହିଥିଲେ ଯେ ତାଙ୍କ ଜୀବନରେ ଏତେବଡ଼ ବିଜୟ ଆଉ କେବେ ହୋଇନି ।

କବିଙ୍କର ମନ ଦେଶକୁ ଫେରିଯିବାକୁ ବ୍ୟାକୁଳ । କିନ୍ତୁ ଅଷ୍ଟ୍ରିୟାର ରାଜଧାନୀ ଭିଏନାରୁ ନିମନ୍ତ୍ରଣ ଆସିଲା । ପ୍ରତ୍ୟାଖ୍ୟାନ କରି ପାରିଲେ ନାହିଁ । ନିକଟରେ ନୂତନ ରାଷ୍ଟ୍ର ଯୁଗୋସ୍ଲୋଭାକିୟା— ସେମାନେ ମଧ୍ୟ କବିଙ୍କୁ ଦେଖିବାକୁ ଚାହାନ୍ତି । ସେଠାର ଜର୍ମାନ ଅଧ୍ୟାପକ ଓିଣ୍ଟରନିଜ ଓ ତାଙ୍କର ଚେକ୍ ଶିଷ୍ୟ ଅଧ୍ୟାପକ ଲେସନୀ ଉଭୟ ରବୀନ୍ଦ୍ର-ଭକ୍ତ ଓ ପ୍ରାଚ୍ୟ ବିଦ୍ୟାରେ ପଣ୍ଡିତ । କବିଙ୍କୁ ପ୍ରାଗ୍ ନଗରୀକୁ ଯିବାକୁ ହେଲା, ସେମାନଙ୍କର ଐକାନ୍ତିକ ଅନୁରୋଧ ଫଳରେ ।

ଆଉ ବୁଲିବାକୁ ଭଲ ଲାଗୁ ନଥାଏ । ସ୍ୱଦେଶରୁ ଯେଉଁସବୁ ପତ୍ର ପାଉଥାନ୍ତି, ତାହା ତାଙ୍କୁ ଉତ୍ତଳା କରୁଥାଏ । କବିଙ୍କର ଦେଶ ଛାଡ଼ିବାର କିଛିଦିନ ପରେ ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନ ଆରମ୍ଭ ହୋଇଥାଏ । ଶାନ୍ତିନିକେତନରେ ବି ଶାନ୍ତି ନାହିଁ । ରାଜନୀତିର ଉତ୍ତେଜନା ଅନେକଙ୍କୁ ସ୍ପର୍ଶ କରିଛି । ୧୯୨୧ ମସିହା ଜୁଲାଇ ମାସରେ କବି ଦେଶକୁ ଫେରି ଆସିଲେ ।

(୯୦)

କବି ଯେତେବେଳେ ବିଦେଶରେ (୧୯୨୦—୨୧) ସେ ସମୟରେ ଭାରତରେ ଆରମ୍ଭ ହୋଇଥାଏ ପ୍ରଥମ ଅସହଯୋଗ ଆନ୍ଦୋଳନ । ଇଂରେଜ-ସରକାର-ପ୍ରଭାବିତ ବିଦ୍ୟାଳୟ, ଅଦାଲତ ଅଫିସ, ବର୍ଜନ କରିବାକୁ ନିର୍ଦ୍ଦେଶ ଦେଇଥାନ୍ତି ଗାନ୍ଧିଜୀ । ଏପରି ଅସହଯୋଗ ଚଳାଇ ପାରିଲେ ବର୍ଷକ ମଧ୍ୟରେ ସ୍ୱରାଜ ମିଳିବ ବୋଲି କହିଥାନ୍ତି ।

ସ୍ୱଦେଶକୁ ଫେରି କବି ଦେଖିଲେ ଯେ ଶାନ୍ତିନିକେତନ ଅସହଯୋଗ ଆନ୍ଦୋଳନର ଏକ ବଡ଼ କେନ୍ଦ୍ର ହୋଇ ପଡ଼ିଛି । କସ୍ମିନ୍ କାଳେ ଯେଉଁମାନେ ରାଜନୀତି ଚର୍ଚ୍ଚା କରନ୍ତି ନାହିଁ ସେମାନେ ଆଜି ଅଗ୍ରଣୀ; ବର୍ଷକ ମଧ୍ୟରେ ସ୍ୱରାଜଲାଭ ପାଇଁ

ସମସ୍ତେ ଉନ୍ମୁଖ । ଭାରତ ସହିତ ବିଶ୍ୱର ଯୋଗସୂତ୍ର ସ୍ଥାପନ ପାଇଁ, ଶାନ୍ତିନିକେତନକୁ ସର୍ବମାନବର ମିଳନସ୍ଥଳ କରିବାର କଳ୍ପନା ନେଇ କବି ବହୁଦେଶ ଭ୍ରମଣ କରିଛନ୍ତି । କିନ୍ତୁ ଏଣେ ଅଧ୍ୟାପକ ଗୁଡ଼ିଏ ମିଶି ଏକ 'ସଂକଟ' ସୃଷ୍ଟି କରିଥାନ୍ତି, ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇ—ଏହାକୁ କହନ୍ତି ଅଦୃଷ୍ଟର ପରିହାସ । ଗାନ୍ଧିଜୀ ବିଦ୍ୟାଳୟ ବର୍ଷକ ପାଇ ବୟକଟ୍ କରିବାକୁ କହିଥିଲେ । କଥାଟା ନୂତନ ନୁହେଁ, ପଢିତ ବି ପୁରାତନ । କିନ୍ତୁ ଆଶାନୁରୂପ ଫଳ ଲାଭ ହେବ କି ? ଜାତିର ଚିତ୍ତାକାଶକୁ କୁହେଳି-ମୁକ୍ତ କରିବା ଆକାଂକ୍ଷାରେ ୟୁନିଭର୍ସିଟି ଇନ୍‌ଷ୍ଟିଚିଉଟ୍ ହଲ୍‌ରେ (୧୯୨୧ ଅଗଷ୍ଟ ୧୫) କବି ଗୋଟିଏ ପ୍ରବନ୍ଧ ପାଠ କଲେ—'ଶିକ୍ଷାର ମିଳନ' । କବିଙ୍କ ମତରେ ୟୁରୋପ ଯେ ଜୟୀ ହୋଇଛି ତାହା ବିଦ୍ୟାର ଜୋରରେ । ସେହି ବିଦ୍ୟାକୁ ଅବହେଳା କଲେ ଦୁଃଖ କମିବ ନାହିଁ, ବରଂ ଅପରାଧ ବଢ଼ିବ । କବି କହିଥିଲେ ଯେ ପ୍ରକୃତରେ ବୁଦ୍ଧି-ଭୀରୁତା ହେଉଛି ଶକ୍ତିହୀନତାର ମୂଳ । ସ୍ୱଜାତିର ଅହମିକାଠାରୁ ମୁକ୍ତିଲାଭ ହେଉଛି ଶିକ୍ଷାର ଅସଲ ଲକ୍ଷ୍ୟ; ଆମ୍ଭମାନଙ୍କ ଦେଶର ବିଦ୍ୟାଳୟଗୁଡ଼ିକୁ ପୂର୍ବ-ପଶ୍ଚିମର ମିଳନ କେନ୍ଦ୍ର କରି ଗଢ଼ିବାକୁ ହେବ ।

ଲୋକେ କବିଙ୍କ ଭାଷଣରୁ ବୁଝିଲେ ଯେ ସେ ଗାନ୍ଧିଜୀଙ୍କର ଅସହଯୋଗ ନୀତିକୁ ସମର୍ଥନ କରୁନାହାନ୍ତି । ଲୋକେ ସେତେବେଳେ ଉନ୍ମତ୍ତ, କବିଙ୍କର କଥା ଶୁଣିବାକୁ ଚାହିଁବେ କାହିଁକି ? କବି 'ସତ୍ୟର ଆହ୍ୱାନ' ପ୍ରବନ୍ଧ ଲେଖି ପୁଣି କଲିକତା ଆସିଲେ । କବି ଗାନ୍ଧିଜୀଙ୍କର ମତ ସ୍ୱୀକାର କରି ମଧ୍ୟ ତାଙ୍କର ମତ ଓ ପଥ ମାନି ନେଇ ପାରିଲେ ନାହିଁ । ସେ କହିଲେ ଯେ ଅରଟରେ ସୂତା କାଟିବାକୁ କହିବା ଓ ଅସହଯୋଗ କରିବାକୁ କହିବା କେବେହେଲେ 'ସତ୍ୟର ଆହ୍ୱାନ' ହୋଇ ନପାରେ । ସ୍ୱରାଜ ପାଇବାର ତତ୍ତ୍ୱ ବହୁବିସ୍ତୃତ, ତାହାର ପ୍ରଣାଳୀ ଦୁଃସାଧ୍ୟ ଓ କାଳ-ସାଧ୍ୟ । ତଥ୍ୟାନୁସନ୍ଧାନ ଓ ବିଶୁଦ୍ଧବୁଦ୍ଧି ଦରକାର । ସେଥିପାଇଁ ଯେଉଁମାନେ ଅର୍ଥନୀତିଜ୍ଞ ସେମାନଙ୍କୁ ଭାବିବାକୁ ପଡ଼ିବ, ଯନ୍ତ୍ରତତ୍ତ୍ୱବିଦ୍‌ଙ୍କୁ ପରିଶ୍ରମ କରିବାକୁ ପଡ଼ିବ, ଶିକ୍ଷାତତ୍ତ୍ୱବିଦ୍, ରାଷ୍ଟ୍ରତତ୍ତ୍ୱବିଦ୍

ସମସ୍ତଙ୍କୁ ଚିନ୍ତା କରିବାକୁ ପଡ଼ିବ ଓ କାର୍ଯ୍ୟ କରିବାକୁ ପଡ଼ିବ— ଅର୍ଥାତ୍ ଦେଶର ଅନ୍ତଃକରଣକୁ ସବୁଦିଗରୁ ଜାଗ୍ରତ କରିବାକୁ ହେବ ।

(୯୪)

ରାଜନୀତିର ଆଲୋଚନା ବା ସମାଲୋଚନା କବି ଜୀବନର ଚରମ୍ କର୍ତ୍ତବ୍ୟ ନୁହେଁ, ପରମ ଆନନ୍ଦ ବି ନୁହେଁ । ରାଜନୀତିର ଉତ୍ତେଜନା ମନରୁ ଅପସରି ଗଲା । ବର୍ଷାର ଆଗମନରେ ବୀଣାପାଣି ଦେଖାଦେଲେ । ଯୋଡ଼ାସାଁକୋ ଘରେ କବି ସୁରର ବୈଭବ ଭିତରେ ବର୍ଷା ମଙ୍ଗଳ ଉତ୍ସବ କଟାଇଲେ (୧୯୨୧ ସେପ୍ଟେମ୍ବର ୨ ଓ ୩ ତାରିଖ) ।

ଏହା ହିଁ ବୋଧହୁଏ ରବୀନ୍ଦ୍ରସଙ୍ଗୀତର ପ୍ରଥମ ପ୍ରକାଶ୍ୟ ବୈଠକ । ଚୃରିଆଡ଼େ ଅସହଯୋଗ ଆନ୍ଦୋଳନର ଉତ୍ତେଜନା— ଠିକ୍ ସେହି ସେହି ସମୟରେ ରବୀନ୍ଦ୍ରନାଥ ସଂଗୀତ ବୈଠକରେ ବ୍ୟସ୍ତ । ଘରେ ବାହାରେ ଲୋକନିନ୍ଦା ମୁଖର ହୋଇ ଉଠିଲା ।

କିଛିଦିନ ପରେ ଗାନ୍ଧିଜୀ କଲିକତା ଆସିଲେ । କଂଗ୍ରେସର ଅଧିବେଶନ ହେଉଥାଏ । ସେ କବିଙ୍କ ସହିତ ଯୋଡ଼ାସାଁକୋ ଘରେ ଦେଖା କରିବାକୁ ଆସିଲେ । ଉଭୟଙ୍କ ମଧ୍ୟରେ ପ୍ରାୟ ଚୃରିଘଣ୍ଟା ଆଲୋଚନା ହେଲା; କି ଆଲୋଚନା ହୋଇଥିଲା ତାହା ପ୍ରକାଶିତ ହୋଇନି । ସେଠାରେ ଉପସ୍ଥିତ ଥିଲେ ଏକମାତ୍ର ଏଣ୍ଡ୍ରୁଜ୍ । ଉଭୟ ଯେତେବେଳେ ଆଲୋଚନାରେ ବ୍ୟାପୃତ, ସେତେବେଳେ ଅତ୍ୟୁତ୍ସାହୀ ଅସହଯୋଗୀଦଳ ଠାକୁର-ଘରର ପ୍ରାନ୍ତରକୁ ଆସି ବିଲାତି ଲୁଗା ପୋଡ଼ି ଜଣାଇ ଦେଇଗଲେ ସେମାନଙ୍କର ଦେଶଭକ୍ତି । କହିବା ବାହୁଲ୍ୟ ଯେ ଗାନ୍ଧିଜୀ ଏମାନଙ୍କର ବ୍ୟବହାରରେ ଖୁବ୍ ଦୁଃଖିତ ହୋଇଥିଲେ ।

କବି ଓ କର୍ମୀଙ୍କ ମଧ୍ୟରେ ମତ ଓ କର୍ମ ପଦ୍ଧତିରେ ସବୁ ପ୍ରକାରର ମିଳନ ହୋଇ ପାରେନା । ସ୍ୱରାଜ ଜିନିଷ କଣ ଓ କେଉଁ ଉପାୟରେ ତାହା ଲାଭ କରି ହେବ, ଲୋକମାନଙ୍କ ନିକଟରେ ତାହା ଅସ୍ପଷ୍ଟ । ଗାନ୍ଧିଜୀ ଠିକଲେ ଶିଖିବା ପାଇଁ ରାଜି; ତେଣୁ ସେ ଚାଲିଲେ ଅନିଶ୍ଚିତ ବିପଦ ମୁଖକୁ । ରବୀନ୍ଦ୍ରନାଥ ଫେରି ଆସିଲେ ତାଙ୍କର ନିରୋଳା ଶାନ୍ତିନିକେତନକୁ, ତାଙ୍କର ଛାତ୍ରମଣ୍ଡଳୀ ନିକଟକୁ । ସେଠାରେ ସେ ଏକ ନୀଡ଼ ମଧ୍ୟରେ ବିଶ୍ୱକୁ ବାନ୍ଧିବା ଉଦ୍ଦେଶ୍ୟରେ ସବୁ ଜାତି ଓ ଧର୍ମର ଲୋକଙ୍କୁ ଆହ୍ୱାନ କରିଛନ୍ତି ।

ବହୁଦିନ ପରେ କବିଙ୍କର ମନ କବିତା ରଚନାରେ ଲାଗିଲା; ତାହା ହେଉଛି ଶିଶୁ ଭୋଲାନାଥ ଲୀଳାମୃତ କଥା । ଆମେରିକାରୁ ଆରମ୍ଭ ହୋଇଥିଲା କର୍ମମୟ ଜୀବନର ଘୂର୍ଣ୍ଣିବାୟୁ, ଦେଶକୁ ଫେରି ଅନେକ ଗଲେ ରାଜନୀତିର ତର୍କ ଜାଲରେ ଓ ବିଶ୍ୱଭାରତୀର ନାନା ପରିକଳ୍ପନା ମଧ୍ୟରେ— କବିଙ୍କର ଭୟ 'ଖେଳର ଚେୟେ ଦାୟିତ୍ୱ ପାଛେ ବଡ଼ ହୟେ ଓଠେ' । ତେଣୁ ଲେଖିଲେ ଶିଶୁର ମନକଥା— 'ଏହି କବିତା ଲେଖିବାର ଏକମାତ୍ର କାରଣ ଥିଲା ବୟସ୍କ ଲୋକଙ୍କର ଦାୟିତ୍ୱ-ବୋଧ ଜୀବନକୁ କିଛି ସମୟ ପାଇଁ ମନରୁ ଘୁଞ୍ଚାଇ ଦେବାର ଇଚ୍ଛା' । ଏହି କବିତାଗୁଡ଼ିକ 'ଶିଶୁ ଭୋଲାନାଥ' ନାମରେ ପ୍ରକାଶିତ ହୋଇଥିଲା ।

ପୂଜାବକାଶ ପୂର୍ବରୁ 'ଋଣଶୋଧ' ନାଟକ ଅଭିନୀତ ହେଲା । ଏହା ନୂତନ ନାଟକ ନୁହେଁ, ଶାରଦୋତ୍ସବର ପରିବର୍ତ୍ତିତ ରୂପ । କବି କେବେ ଏହାକୁ ପୁନର୍ବାର ଛାପି ନାହାନ୍ତି, ଅଭିନୟ ବି କରାଇ ନାହାନ୍ତି ।

ପୂଜା ଛୁଟିରେ ପିୟର୍ସନ ଫେରିଲେ ଓ ସଙ୍ଗରେ ଆସିଲେ ଲେନାର୍ଡ଼ ଏଲମ୍‌ହାର୍ଷ୍ଟ— ତାଙ୍କ ସଙ୍ଗରେ ଆମେରିକାରେ ଦେଖା ହୋଇଥିଲା । ସେ ଆସିଥିଲେ କବିଙ୍କର ଗ୍ରାମୋଦ୍ୟୋଗ ପରିକଳ୍ପନାର ରୂପ ଦେଖିବା ପାଇଁ; ଠେଙ୍କାର ବ୍ୟବସ୍ଥା ମଧ୍ୟ ଆମେରିକାରେ କରି ଆସିଥିଲେ । ବିଦ୍ୟାଳୟ ଖୋଲିବା ପୂର୍ବରୁ ଫ୍ରାନ୍ସରୁ ଆସିଲେ ସସ୍ତ୍ରୀକ ଅଧ୍ୟାପକ ସିଲଭାଁ ଲେଭି (୧୯୨୧ ନଭେମ୍ବର) । ଲେଭି ଆସିବା ଦ୍ୱାରା ବିଶ୍ୱଭାରତୀର ଉଚ୍ଚତର ବିଭାଗ

ଅର୍ଥାତ୍ ବଦ୍ୟା-ଭବନ କାମ ଆରମ୍ଭ ହେଲା । ଏଥର ପୌଷ ଉତ୍ସବରେ ( ୯୨୧ ଡସେମ୍ବର ୨୩) କବ ବଶ୍ୱ-ଭାରତୀ ଅନୁଷ୍ଠାନକୁ ସର୍ବସାଧାରଣଙ୍କ ହାତରେ ଛାଡ଼ଦେଲେ—ଶାନ୍ତନକେତନରେ ବ୍ରହ୍ମଚର୍ଯ୍ୟ ଆଶ୍ରମ ସ୍ଥାପିତ ହେବାର ଠିକ୍ କୋଡ଼ିଏବର୍ଷ ପରେ । ଏପର୍ଯ୍ୟନ୍ତ ସମସ୍ତ ଦାୟିତ୍ୱ ଥିଲା ଏକା ରବୀନ୍ଦ୍ରନାଥଙ୍କର; ବଦ୍ୟାଳୟ ପରିଚାଳନା ବ୍ୟୟର ଅଧିକାଂଶ ସେ ଏକା ବହନ କରି ଆସିଛନ୍ତି । କନ୍ତୁ ଆଉ ସମ୍ଭବ ନୁହେଁ । କବ ତାଂକର ଏପର୍ଯ୍ୟନ୍ତ ପ୍ରକାଶିତ ସମସ୍ତ ବଙ୍ଗଳା ଗ୍ରନ୍ଥର ଲଭାଂଶ ଓ ଅନ୍ୟାନ୍ୟ ସ୍ଥାବର ଅସ୍ଥାବର ସମ୍ପତ୍ତି ବଦ୍ୟାଳୟକୁ ଦାନ କଲେ; ନୋବେଲ୍ ପ୍ରାଇଜ ଟଂକାର ସୁଧ ବଶ୍ୱଭାରତୀ ପାଇବାର ଯଥୋଚିତ ବ୍ୟବସ୍ଥା କରିଦେଲେ ।

ଆଚାର୍ଯ୍ୟ ବ୍ରଜେନ୍ଦ୍ରନାଥ ଶୀଲଙ୍କର ସଭାପତତ୍ୱରେ ସେଦନ ସଭାର ବଶ୍ୱଭାରତୀ ପରଷଦ ଗଠନ ଓ ବଶ୍ୱଭାରତୀ ସଂବଧାନ ପ୍ରଣୟନର ବ୍ୟବସ୍ଥା ହେଲା ।

କବଙ୍କର ଆନ୍ତରକ ବଶ୍ୱାସ ଯେ, ଆନ୍ତର୍ଜାତୀୟ ଆବହାୱାରେ ନ ବଢ଼ିଲେ ଭବଷ୍ୟତର ଶିକ୍ଷା ଅସମ୍ପୂର୍ଣ୍ଣ ରହିବ । ଆଜ ୟୁନେସ୍କୋ (unesco) ଯେଉଁସବୁ ପରକଳ୍ପନା କରୁଛନ୍ତି, ତାହାର ଅନେକ କଛି କବ କଳ୍ପନା କରଥିଲେ । ଖଣ୍ଡିଏ ସମସାମୟିକ ପତ୍ରରେ ଲେଖିଛନ୍ତି, 'ଶାନ୍ତନକେତନରେ ନୂତନ ଯୁଗର ଆବର୍ଭାବ ହେଲା । ଏଠାରେ ଆମ୍ଭମାନଙ୍କର ନବଯୁଗର ଅତଥିଶାଳା ଖୋଲିଛି ।'

ପୌଷ ଉତ୍ସବର ଉତ୍ତେଜନା ପରେ କବ ପଦ୍ମାତୀରରେ କଛିଦନ ବାସ କର ଆସିଲେ । ଗୋଟିଏ ପତ୍ରରେ ଲେଖିଛନ୍ତି, 'ଆମେ ଯେଉଁ ଡଙ୍ଗା ଉପରେ ବାସ କରୁ ସେ ଡଙ୍ଗା ହଲଚଲ ହୁଏନ । ନଦୀର ଜଳ ଦନରାତ ପ୍ରବାହିତ, ତାହାର ଏକ ବାଣୀ ଅଛି । ଏଥିପାଇଁ ନଦୀ ସଙ୍ଗରେ ମୋର ଏତେ ଭାବ ।' ବଧିବଦ୍ଧ ପ୍ରତଷ୍ଠାନ ବା Institution ଗଢ଼ି ମନେ ହେଉଛି ସେ କଣ ସଚଳାୟତନ ହେବ । 'ମୁକ୍ତଧାରା' ନାଟକ ଲେଖିଲେ—ଆଧୁନକ ଜଗତର ଏକାନ୍ତ ଯାନ୍ତ୍ରିକତା ବରୁଦ୍ଧରେ ପ୍ରତବାଦ କର । ମନରେ

ଭୟ ଥିଲା ଯେ ତାଂକର ସୃଷ୍ଟିର ମୁକ୍ତଧାରା ସଂକୀର୍ଣ୍ଣତାର ଧାରା-ଜାଲରେ ଆବଦ୍ଧ ହୋଇ ପାରେ ।

ଆମେରିକାରୁ ଏକ ପତ୍ରରେ ଆଶଙ୍କା ପ୍ରକାଶ କରି ଲେଖିଥିଲେ ଯେ ଯେତେବେଳେ ଶାନ୍ତିନିକେତନରେ ସୁଦକ୍ଷ ବ୍ୟବସାୟୀ-ନବୀସ-ମାନଙ୍କର ପ୍ରାଧାନ୍ୟ ହେବ ସେତେବେଳେ ତାହାର ଜାଗ୍ରତ ଚିନ୍ତାଧାରା ଓ ଚେଷ୍ଟାରୁ ଶାନ୍ତଂ-ଶିବଂ-ଅଦ୍ୱୈତମ୍ ନିର୍ବାସିତ ହେବ ।

ବିଶ୍ୱଭାରତୀର କାର୍ଯ୍ୟ ନାନା ଦିଗରୁ ଚାଲିଛି । କବି ବର୍ତ୍ତମାନ ଶିକ୍ଷାବ୍ରତୀ । ଗୋଟିଏ ଅଭିନବ ବିଶ୍ୱବିଦ୍ୟାଳୟ ଅଙ୍କୁରିତ ହୋଇଛି; ତାହାର ଅନେକ କାର୍ଯ୍ୟ । ଏହିସବୁ କାର୍ଯ୍ୟରେ ସହାୟତା କରୁଥାନ୍ତି ପୁତ୍ର ରଥୀନ୍ଦ୍ରନାଥ । ଅଳ୍ପକାଳ ମଧ୍ୟରେ ଆସିଲେ ଶ୍ରୀ ପ୍ରଶାନ୍ତଚନ୍ଦ୍ର ମହଲାନବୀଶ । ସୁରୁଲର ଶ୍ରୀନିକେତନରେ ଗ୍ରାମସଂସ୍କାରର କାର୍ଯ୍ୟ ଆରମ୍ଭ କରିଦେଲେ ଏଲମ୍‌ହାର୍ଷ୍ଟ ।

ଦେଶ ମଧ୍ୟରେ ଉତ୍ତେଜନାର ଶେଷନାହିଁ । ଗାନ୍ଧିଜୀ ଗୁଜୁରାଟର ବରଦୋଲୀ ତାଲୁକରେ ଖଜଣା-ବନ୍ଦ ଆନ୍ଦୋଳନ ଆରମ୍ଭ କରିବାର ଥାଏ । ରବୀନ୍ଦ୍ରନାଥ ଶାନ୍ତିନିକେତନରେ ନିରୋଳାରେ ରହି ସମସ୍ତ ଖବର ପଢ଼ୁଥାନ୍ତି, ନାନା କଥା ଶୁଣୁଥାନ୍ତି । ସେ ଗୁଜୁରାଟର ଏକ ଖ୍ୟାତନାମା ସାହିତ୍ୟିକଙ୍କୁ ଏକ ଖୋଲା ଚିଠିରେ ଲେଖିଲେ ଯେ ଅହିଂସା ମନ୍ତ୍ରକୁ ଏପରି ଭାବରେ ରାଜନୀତି କ୍ଷେତ୍ରରେ ପ୍ରୟୋଗ କରିବାର ବିପଦ ଅନେକ; ଲୋକଙ୍କର ମନକୁ ପ୍ରସ୍ତୁତ ନକରି ଏ ପ୍ରକାର ଆନ୍ଦୋଳନ ପ୍ରବର୍ତ୍ତନ ଓ ରଣଶିକ୍ଷା ନଦେଇ ଯୁଦ୍ଧକୁ ସୈନ୍ୟ ପଠାଇବା ଏକା କଥା । ଇଂରେଜଙ୍କ ବିରୁଦ୍ଧରେ କ୍ରୋଧ ଉତ୍ତେଜିତ କରି, ଅହିଂସା ମନ୍ତ୍ରଦ୍ୱାରା ସେ ରିପୁକୁ ବଶ କରି ହେବ ନାହିଁ । କ୍ରୋଧ ତାହାର ଇନ୍ଧନ ଖୋଜେ । କବିଙ୍କର ଚିଠି ୧୯୨୨ ଫେବୃୟାରୀ ଛନି ତାରିଖରେ ପ୍ରକାଶିତ ହେଲା । ଉତ୍ତର ପ୍ରଦେଶର ଚୌରିଚୌରାର ପୁଲିସ ଥାନାରେ ଉତ୍ତେଜିତ ଜନତା ଦେଶ ନାମରେ, ଦେଶୀୟ ପୋଲିସ ଓ ଚୌକିଦାରମାନଙ୍କୁ ନୃଶଂସଭାବରେ ହତ୍ୟା କଲେ । ଏହି ଘଟଣାର ଦୁଇଦିନ ପରେ କବି ଦଳେ ଯୁବକଙ୍କୁ ସୁରୁଲ ଗ୍ରାମରେ ଗ୍ରାମସଂସ୍କାର କାର୍ଯ୍ୟରେ ବ୍ରତୀ କରାଇଲେ ।

(୧୯୨୨ ଫେବୃଆରୀ ୬ତାରିଖ) । ସେମାନଙ୍କର ନେତୃତ୍ୱ ନେଇଥାନ୍ତି ଜଣେ ଇଂରେଜ । ଶ୍ରୀନିକେତନରେ ଗ୍ରାମଦ୍ୟୋଗର ଜନ୍ମ ହେଲା ପୂର୍ବ ଓ ପଶ୍ଚିମର ମିଳନ ଫଳରେ । ଅର୍ଥ ଆସିଲା ଆମେରିକାରୁ, ଶକ୍ତି ଓ ବିଜ୍ଞାନ ଇଂଲଣ୍ଡରୁ, କର୍ମକ୍ଷେତ୍ର ହେଲା ବୋଲପୁର ନିକଟବର୍ତ୍ତୀ ଏକ ଗ୍ରାମ ।

(୯୬)

ଦିନ ଗଡ଼ିଯାଏ । କେତେବେଳେ ଶାନ୍ତିନିକେତନରେ ତ କେତେବେଳେ କଲିକତାରେ ବା ଶିଲାଇ ଦହରେ । ଶିଲାଇଦହର ବୈଷୟିକ କାର୍ଯ୍ୟ କବିଙ୍କୁ ଦେଖିବାକୁ ପଡ଼ୁଥାଏ, ବିଶ୍ୱଭାରତୀ କାର୍ଯ୍ୟରେ କିଂବା ସଭାସମିତିରେ ଭାଷଣ ଦେବାକୁ କଲିକତା ଯିବାକୁ ପଡ଼ୁଥାଏ । ଗ୍ରୀଷ୍ମକାଳରେ କବି ଜନବିରଳ ଶାନ୍ତିନିକେତନରେ ରହିଲେ । ଲେଭି ଦମ୍ପତି ନେପାଳରେ, ପିୟର୍ସନ ଓ ଏଲମ୍‌ହାର୍ଷ୍ଟ ପାହାଡ଼ରେ—କବି କବିତା ଲେଖୁଥାନ୍ତି ।

୧୩୨୯ (ବଙ୍ଗାବ୍ଦ) ଭାଦ୍ରମାସରେ ଦ୍ୱିତୀୟ 'ବର୍ଷାମଙ୍ଗଳ' ଅନୁଷ୍ଠିତ ହେଲା କଲିକତାରେ; ପ୍ରଥମେ ରାମମୋହନ ଲାଇବ୍ରେରୀ ହଲରେ ଓ ପରେ ଏକ ସାଧାରଣ ରଙ୍ଗମଞ୍ଚରେ । ଶାନ୍ତିନିକେତନର ଛାତ୍ରଛାତ୍ରୀମାନଙ୍କର ପେଶାଦାରୀ ରଙ୍ଗମଞ୍ଚରେ ଏହା ହିଁ ପ୍ରଥମ ଗୀତାଭିନୟ । ସେତେବେଳେ ଏ ଜିନିଷ ସମାଜରେ ନୂତନ । ଲୋକେ ଜଲସା ଦେଖିବାକୁ ଟିକଟ କାଟି ଆସନ୍ତି । ବିଶ୍ୱଭାରତୀ ପାଇଁ ଅର୍ଥର ପ୍ରୟୋଜନ—ଏହି ଭାବରେ କିଛି ଯୋଗାଡ଼ ହୁଏ । ବିଶ୍ୱଭାରତୀର ବ୍ୟୟ ବଢ଼ି ଚାଲିଛି । ଟଂକା ଯୋଗାଇବାକୁ ହେବ ସେ ଦାୟିତ୍ୱ ରବୀନ୍ଦ୍ରନାଥଙ୍କର । ତେଣୁ ଗଲେ ବକ୍ତୃତା ଭ୍ରମଣରେ । ବମ୍ବେ ପୁନା ହୋଇ ମହୀଶୂର ଗଲେ; ସେତେବେଳେ ସେଠାରେ ବ୍ରଜେନ୍ଦ୍ରନାଥ ଶୀଲ ବିଶ୍ୱବିଦ୍ୟାଳୟର ଉପାଚାର୍ଯ୍ୟ ଥିଲେ । ବାଙ୍ଗାଲୋର ହୋଇ ମାନ୍ଦ୍ରାଜ, କୋଏମ୍ବାଟୁର, ମାଙ୍ଗାଲୋର

ବୁଲି ଗଲେ ସିଂହଳ । ସବୁଠାରେ କେବଳ ବକ୍ତୃତା, ଦେଖା-ସାକ୍ଷାତ, ଆଳାପ-ଆଲୋଚନା । କଲମ୍ବୋ ଭ୍ରମଣ କରି ଗଲେ ନେବାରଏଲିୟା । କିନ୍ତୁ ଶରୀର ଆଉ ଭଲ ରହିଲା ନାହିଁ । କିଛି-ଦିନ ବିଶ୍ରାମ କରିବାକୁ ହେଲା । ଖଣ୍ଡେ ପତ୍ରରେ ଲେଖିଛନ୍ତି, 'ମୁଁ, ଭିକ୍ଷାପାତ୍ର ହାତରେ ଧରି ଦେଶ ଦେଶ ବୁଲି ବୁଲୁଛି । ହାତରେ ନେଇ କହିଲେ ଠିକ୍ ହେବନି, କଣ୍ଠରେ ନେଇ । ଏ ବିଦ୍ୟା ମୋର ଅଭ୍ୟାସ ନୁହେଁ, ତୃପ୍ତିକର ମଧ୍ୟ ନୁହେଁ । ସୁତରାଂ ଦିନଗୁଡ଼ିକ ଯେ ସୁଖରେ କଟୁଛି ତାହା ନୁହେଁ ।····· ଯେତେବେଳେ ମନ କ୍ଳାନ୍ତ ହୋଇ ପଡ଼େ ସେତେବେଳେ ବିଶ୍ୱଭାରତୀ ମରୀଚିକା ପରି ମନେ ହୁଏ ।······'ଆଇଡ଼ିଆ' ଜିନିଷଟି ସଜୀବ, କିନ୍ତୁ କୌଣସି ଅନୁଷ୍ଠାନର ଲୁହା ସିନ୍ଦୁକରେ ତାକୁ ବାନ୍ଧିଲ ରଖା ଯାଏ ନାହିଁ— ମଣିଷର ହୃଦୟରେ ଯଦି ସେ ସ୍ଥାନ ପାଇ ପାରିଲା ତେବେ ବଞ୍ଚିଗଲା ।'

କବି ସିଂହଳରୁ ଭାରତକୁ ଫେରି ଆସିଲେ । ତ୍ରିବାଙ୍କୁଡ଼ ଓ କୋଚିନ ( ଅଧୁନା କେରଳ ) ରାଜ୍ୟଦ୍ୱୟର କେତେକ ସ୍ଥାନରେ ବୁଲି ମାନ୍ଦ୍ରାଜ ଆସିଲେ । ଦକ୍ଷିଣ ଭାରତ ଓ ସିଂହଳ ଭ୍ରମଣରେ ଅଭ୍ୟର୍ଥନା ପାଇଥିଲେ, ଅର୍ଥାଗମ ଖୁବ୍ କମ୍—ଯାହା ପାଇଥିଲେ ବକ୍ତୃତାର ଟିକେଟ୍ ବିକ୍ରୀ ଟଙ୍କା । ତେଣୁ ଲେଖିଥିଲେ 'ଭିକ୍ଷାପାତ୍ର କଣ୍ଠରେ ଧରି' ଘୁରି ବୁଲୁଛି ।

ମାନ୍ଦ୍ରାଜରୁ ବମ୍ବେ ଫେରିଲେ । ଏହିଠାରୁ ହିଁ ଯାତ୍ରା ଆରମ୍ଭ କରିଥିଲେ । ସପ୍ତାହ ଖଣ୍ଡେ ରହିଲେ ଓ ପାର୍ସି ସମାଜରେ ନେତୃସ୍ଥାନୀୟ ଲୋକଙ୍କ ସଙ୍ଗରେ ସାକ୍ଷାତ କଲେ । ବିଶ୍ୱଭାରତୀ ସର୍ବସଂସ୍କୃତି, ସର୍ବଜାତି, ସର୍ବଧର୍ମର ମିଳନ ସ୍ଥଳ ହେବ—ଭାରତୀୟ ସଂସ୍କୃତି ମଧ୍ୟରେ ପାର୍ସି ଧର୍ମ ଓ ସାହିତ୍ୟ ଚର୍ଚ୍ଚାର ବ୍ୟବସ୍ଥା କରିବାକୁ ହେବ —ଏ କଥା ସେହି ସମାଜରେ ନିବେଦନ କଲେ । ପାର୍ସି ସମାଜ ଉଦାର ଭାବରେ କବିଙ୍କୁ ଅର୍ଥ ସାହାଯ୍ୟ ଦେଇଥିଲେ ।

ବମ୍ବେରୁ ଅହମଦାବାଦ ଆସି ଅମ୍ବାଲାଲ ସାରାଭାଇଙ୍କର ଅତିଥି-ହେଲେ, ସେନେ ସାବରମତୀ ଆଶ୍ରମକୁ ମଧ୍ୟ ଯାଇଥିଲେ । ମହାତ୍ମାଜୀ

ଜେଲରେ; ଗତଥର ଯେତେବେଳେ ଆସିଥିଲେ ମହାତ୍ମାଜୀ ଆଶ୍ରମରେ ଥିଲେ ।

(୯୭)

ପୌଷ ଉତ୍ସବ ପୂର୍ବରୁ କବି ତାଙ୍କର ଦକ୍ଷିଣ ଓ ପଶ୍ଚିମ ଭାରତ ଭ୍ରମଣ ଶେଷକରି ଆଶ୍ରମକୁ ଫେରିଥିଲେ (୧୯୨୨ଡିସେମ୍ବର) । ବିଶ୍ୱଭାରତୀର ଦ୍ୱିତୀୟ ବର୍ଷ ଆରମ୍ଭ ହେଲା । ବର୍ତ୍ତମାନ ଏଠାରେ ଅନେକଗୁଡ଼ିଏ ବିଦେଶୀ—ଓ୍ୱିଣ୍ଟରନିଜ୍, ଲେସନୀ, ବଗ୍‌ଦାନୋଭ, କଲିନସ, ଷ୍ଟେଲା କାମରିଶ୍, ବେନୋୟିତ୍, ସାଣ୍ଡା ଫ୍ଲମ୍ । ଏହାଛଡ଼ା ପୂର୍ବରୁ ଅଛନ୍ତି ଏଣ୍ଡ୍ରୁଜ, ପିୟର୍ସନ ଓ ଏଲମ୍‌ହାର୍ଷ୍ଟ । ଶ୍ରୀନିକେତନକୁ ଆସିଥାନ୍ତି ଶ୍ରୀମତୀ ଗ୍ରୀନ ଓ ଆର୍ଥାର ଗେଡ଼ସ—ଅଧ୍ୟାପକ ପେଟ୍ରିକ ଗେଡ଼ସଙ୍କର ପୁଅ । ଏହି ତାଲିକାଟି ଦିଆଗଲା ବିଶ୍ୱଭାରତୀର ବିରାଟ କର୍ମ ପ୍ରଚେଷ୍ଟାର ଆଭାସ ଦେବାପାଇଁ । ବିଦେଶାଗତ ଏହିସବୁ ସାହେବ ମେମମାନେ କିପରି ଭାବରେ, କିପରି ଘରେ ଓ କେଉଁ ଆସବାବ ନେଇ ରହୁଥିଲେ ଭାବିଲେ ଆଜି ଅବାକ୍ ଲାଗେ । ଏମାନଙ୍କର ଦରମା ବି ବେଶୀ ନୁହେଁ—ଶହେ ଟଙ୍କାରୁ ପାଞ୍ଚଶହ ଟଙ୍କା ମଧ୍ୟରେ । ତାହା ସତ୍ତ୍ୱେ ବି ଏହି ବିରାଟ ବ୍ୟୟଭାର କବିଙ୍କୁ ବହନ କରିବାକୁ ହେଉ ଥିବାରୁ ଭିକ୍ଷାପାତ୍ର ନେଇ ମଝିରେ ମଝିରେ ବାହାରି ପଡ଼ନ୍ତି ।

ସାହିତ୍ୟ ସୃଷ୍ଟି ପ୍ରାୟ ମାନ୍ଦା । କେବଳ ସଙ୍ଗୀତ ଲେଖି ଓ ଗାନ କରି ଚିତ୍ତର ମୁକ୍ତି ଖୋଜି ପାଆନ୍ତି—ତାହାପରେ ସମସ୍ତ ସମୟ ଯାଏ ବିଶ୍ୱଭାରତୀର କାମଦାମ ଓ ଭାବନା ଦୁର୍ଭାବନାରେ । ଅନେକ ଗୁଡ଼ିଏ ସଙ୍ଗୀତ ଲେଖା ହୋଇଥିଲା, ଏକତ୍ର ସଞ୍ଚୟନ କରି ସଂଳାପ ଯୋଗ କରି ଏକ ଅଭିନବ ଗୀତ-ନାଟ୍ୟ କରିଦେଲେ । ନଜରୁଲ୍ ଇସଲାମ ମଝିରେ ମଝିରେ କବିଙ୍କ ସହିତ ଦେଖା କରିବାକୁ ଆସନ୍ତି । ଏହି 'ବସନ୍ତ' ପୁସ୍ତକଟି କବି ତାଙ୍କୁ ଉତ୍ସର୍ଗ କରିଥିଲେ (୧୯୧୩

ଫେବୃୟାରୀ ୨୨ )। ନଜରୁଲଙ୍କୁ କବି ଖୁବ୍ ସ୍ନେହ କରୁଥିଲେ। ତାଙ୍କର ଦୁଇଟି ପତ୍ରିକା ପାଇଁ କବିତା ଲେଖି ପଠାଇ ଥିଲେ।

ବିଶ୍ୱଭାରତୀ ପାଇଁ ଅର୍ଥ ଦରକାର। ଟଙ୍କା ଆଣିବାର ଲୋକ କିଏ। କବି ପୁନର୍ବାର ଭ୍ରମଣରେ ବାହାରିଲେ; ପ୍ରଥମେ ଗଲେ କାଶୀ। ସେଠାରେ ପ୍ରବାସୀ ବଙ୍ଗାଳୀଙ୍କର ସାହିତ୍ୟ ସମ୍ମିଳନୀ ହେଉଥାଏ।

କାଶୀ ବିଶ୍ୱବିଦ୍ୟାଳୟରେ ସ୍ନେହ ସୁନୁର ପିତା ଅଧ୍ୟାପକ ଫଣୀନ୍ଦ୍ରନାଥ ଅଧିକାରୀଙ୍କ ଘରେ ରହିଲେ।

ସମ୍ମିଳନୀର ସଭାପତି ରୂପେ କବି ଯେଉଁ ଭାଷଣଟି ଦେଇଥିଲେ ସେଥିରେ ଆଜି ବି ଚିନ୍ତା କରିବାର ଉପାଦାନ ଅଛି। କବି କହିଥିଲେ ଯେ ଭାରତବ୍ୟାପୀ ମିଳନର ବାହନ ପାଇଁ ଗୋଟିଏ ଭାରତୀୟ ଭାଷା କରିବାର କଥା ହେଉଛି। ତାଙ୍କ ମତରେ ଏହା ଦ୍ୱାରା ଯଥାର୍ଥ ସମନ୍ୱୟ ହୋଇ ପାରେନା। ଦଉଡ଼ି ଦ୍ୱାରା ବାନ୍ଧିବା କେବଳ ମିଳନର ପ୍ରୟାସ ମାତ୍ର। ସେ ମିଳନ ଶୃଙ୍ଖଳାର ମିଳନ ଅଥବା ବାଧ୍ୟ ଶୃଙ୍ଖଳାର ମିଳନ ମାତ୍ର। ପ୍ରବାସୀ ବଙ୍ଗାଳୀମାନଙ୍କ ଉଦ୍ଦେଶ୍ୟରେ କହିଥିଲେ ଯେ ସେମାନେ ଯେଉଁ ପ୍ରଦେଶରେ ବାସ କରନ୍ତି, ସେ ପ୍ରଦେଶ ସମ୍ପର୍କରେ ଯେପରି ଉଦାସୀନ ନ ରହନ୍ତି। ସେ କହିଥିଲେ ଯେ ପ୍ରାୟ ଦେଖାଯାଏ ବଙ୍ଗଳାର ବାହାରେ ଯେଉଁଠି ବଙ୍ଗାଳୀ ଥାନ୍ତି, ସେଠାର ଭାଷା ଓ ସାହିତ୍ୟ ସମ୍ପର୍କରେ ସେମାନେ ଉଦାସୀନ। ଏହି ଔଦାସୀନ୍ୟ ବା ଅବଜ୍ଞା ଅଜ୍ଞତାର ନାମାନ୍ତର। ବଙ୍ଗାଳୀର ପ୍ରଧାନ ଶତ୍ରୁ ହେଉଛି ଆତ୍ମ-ଅଭିମାନ।

କାଶୀରୁ ଲକ୍ଷ୍ନୌ ଗଲେ। ଅତୁଲ ସେନଙ୍କର ଘରେ କିଛିଦିନ ରହି କବି ପଶ୍ଚିମ ଭାରତ ଭ୍ରମଣରେ ବାହାରିଲେ। ବମ୍ବେରୁ ଅହମଦାବାଦ ହୋଇ ସିନ୍ଧୁ ପ୍ରଦେଶର ରାଜଧାନୀ କରାଚୀ ଗଲେ। ସେତେବେଳେ ସିନ୍ଧୁ ବମ୍ବେ ପ୍ରେସିଡେନ୍‌ସିର ଅନ୍ତର୍ଗତ। କରାଚୀ ଓ ହାଇଦ୍ରାବାଦ ଭ୍ରମଣ ବିଶ୍ୱଭାରତୀ ପାଇଁ ନିରର୍ଥକ ହୋଇନି— ସିନ୍ଧୀ ବଣିକମାନେ ମୁକ୍ତ ହସ୍ତରେ ଦାନ କରିଥିଲେ।

କରାଚୀରୁ ଷ୍ଟିମରଯୋଗେ କାଠିଆୱାଡ଼ର ପୋରବନ୍ଦର ଆସିଲେ। ସେଠାର ରାଜା ଯଥୋଚିତ ସମ୍ମାନ ଓ ସୌଜନ୍ୟ

ଦେଖାଇଥିଲେ । ଏଥର ଭ୍ରମଣବେଳେ କାଠିଆୱାଡ଼ର ଲୋକ-ସଙ୍ଗୀତ ଓ ଲୋକନୃତ୍ୟ ଦେଖିବାର ବିଶେଷ ସୁଯୋଗ ହୋଇଥିଲା । ଏହି ଲୋକନୃତ୍ୟ କବିଙ୍କୁ ଏତେ ମୁଗ୍ଧ କରିଥିଲା ଯେ ଫେରିଲା-ବେଳେ ଗୋଟିଏ ଗୁଜୁରାଟୀ ନୃତ୍ୟ ପରିବାରକୁ ସଙ୍ଗରେ ଶାନ୍ତିନିକେତନ ଆଣିଥିଲେ । ଝିଅମାନେ ଦୁଇ ହାତରେ ମନ୍ଦିରା ବଜାଇ ନାଚିବା ଓ ଗାଇବା ଦେଖି ଲେଖିଥିଲେ 'ଦୁଇହାତେ କାଲେର ମନ୍ଦିରା ଯେ ସଦାଇ ବାଜେ' ଗୀତଟି ।

ବର୍ଷଶେଷ ପୂର୍ବରୁ ବମ୍ବେରୁ ଶାନ୍ତିନିକେତନ ଫେରିଲେ । ନବବର୍ଷ ଦିନ ରତନ କୋଠିର ଭିତ୍ତି ସ୍ଥାପିତ ହେଲା । ଏହି ଘର ପାଇଁ ପଚିଶ ହଜାର ଟଙ୍କା ପାଇଥିଲେ ସାର୍ ରତନ ଟାଟାଙ୍କ ନିକଟରୁ । ବିଶ୍ୱଭାରତୀରେ ବିଦେଶୀ ଅତିଥିମାନଙ୍କ ବାସଯୋଗ୍ୟ ଭବନ ନିର୍ମିତ ହେଲା ।

( ୯୧ )

୧୯୨୦ ସାଲର ଗ୍ରୀଷ୍ମାବକାଶରେ କବି ଗଲେ ଶିଲଂ; ସେଠାରେ ଲେଖିଲେ 'ଯକ୍ଷପୁରୀ' ନାମକ ନାଟକ । କିଛିଦିନ ପରେ ତାକୁ ହିଁ ନୂତନ ଭାବରେ ଲେଖି 'ରକ୍ତକରବୀ' ନାମରେ ପ୍ରକାଶ କରିଥିଲେ ।

କଲିକତା ଫେରିଲା ବେଳକୁ ଦେଶର ରାଜନୀତି କ୍ଷେତ୍ରରେ ନୂତନ ପରିସ୍ଥିତି ଦେଖା ଦେଇଛି । ଚିତ୍ତରଞ୍ଜନ ଦାଶ ସର୍ବତ୍ୟାଗୀ ହୋଇ ଗାନ୍ଧିଜୀଙ୍କର ଅସହଯୋଗ ଆନ୍ଦୋଳନରେ ଯୋଗ ଦେଇଥାନ୍ତି ।

କେତେ ବର୍ଷ ଗ୍ରାମ-ଉନ୍ନତି ଆନ୍ଦୋଳନ କରି ସେ ଖୁସି ହୋଇ ପାରି ନାହାନ୍ତି । ତେଣୁ ମୋତିଲାଲ ନେହରୁ ପ୍ରଭୃତିଙ୍କ ସହ-ଯୋଗରେ 'ସ୍ୱରାଜ' ଦଳ ଗଠନ କରି ସ୍ଥିର କଲେ ଯେ କାଉନ୍-ସିଲରେ ପ୍ରବେଶ କରି ସେଠାରେ ଇଂରେଜ ସରକାରଙ୍କର ପ୍ରତିପକ୍ଷ ରୂପେ କାର୍ଯ୍ୟ କରିବେ । ଏ ସଂପର୍କରେ ସାମ୍ବାଦିକମାନେ ରବୀନ୍ଦ୍ର-

ନାଥଙ୍କର ମତ ଜାଣିବାକୁ ଚାହିଁଥିଲେ । ସେ କହିଲେ ଯେ ଦଳାଦଳି ପାଇଁ ବା ଦଳାଦଳି ଫଳରେ ଯେଉଁ ଦ୍ୱନ୍ଦ୍ୱ ଉପସ୍ଥିତ ହୁଏ ତାହା ଜୀବନର ଲକ୍ଷଣ । ଗୋଟିଏ ମାତ୍ର କର୍ମପନ୍ଥା ମାନିନେଇ ସମସ୍ତଙ୍କୁ କାର୍ଯ୍ୟ କରିବାକୁ ହେବ—ଏ କଥା ସେ ମାନିବାକୁ ରାଜି ନୁହନ୍ତି । ତେବେ ପରସ୍ପର ପ୍ରତି ହୀନ ଅଭିସନ୍ଧି ଆରୋପ କରିବା ଅସଙ୍ଗତ— ଏହା ବିଶେଷ ଭାବରେ ଉଲ୍ଲେଖ କରିବାର କାରଣ ହେଉଛି, ଏ ମଧ୍ୟରେ ଦୁଇଦଳ ମଧ୍ୟରେ ନିନ୍ଦାବାଦ ଆରମ୍ଭ ହୋଇ ଯାଇଥାଏ ।

'ବିସର୍ଜନ' ଅଭିନୟ ପାଇଁ କଲିକତା ଆସିଲେ । ଏକମାତ୍ର କାରଣ—ବିଶ୍ୱଭାରତୀର ଅର୍ଥ ପ୍ରୟୋଜନ । ଅଭିନୟ ଦେଖି ଦେଶ ଲୋକେ ଟଂକା ଦେବେ । ତେବେ ଏକଥା ମଧ୍ୟ ସତ୍ୟ ଯେ ଅଭିନୟ କରାଇ କବି ନିଜେ ଆନନ୍ଦ ପାନ୍ତି—ଯଦିଓ ତାଂକର ବୟସ ବର୍ତ୍ତମାନ ବାଷଠି ବର୍ଷ । କବି ଜୟସିଂହ ଭୂମିକାରେ ଅଭିନୟ କଲେ । ଦର୍ଶକମାନେ ଯୌବନର ରବୀନ୍ଦ୍ରନାଥଙ୍କୁ ପ୍ରତ୍ୟକ୍ଷ ଭାବରେ ଦେଖିବାକୁ ପାଇଲେ—ନିଜର ସାଜସଜ୍ଜା (Make-up) କବି ନିଜେ କରିଥିଲେ ।

ଶାନ୍ତିନିକେତନ ଫେରିଲେ ଦୁଇମାସ ପରେ । ବିଦ୍ୟାଳୟ ଛାତ୍ରମାନଙ୍କୁ ପଢ଼ାଉଥାନ୍ତି; ବିଦ୍ୟାଳୟ କାର୍ଯ୍ୟରେ ମନୋନିବେଶ କରିବାକୁ ଚେଷ୍ଟା କରୁଥାନ୍ତି । ଏପରି ସମୟରେ ସଂବାଦ ମିଳିଲା ଯେ ପିୟର୍ସନ ଭାରତ ଫେରିବା ବାଟରେ ଇଟାଲୀରେ ଟ୍ରେନ ଦୁର୍ଘଟଣାରେ ନିହତ । ପୁଣି ପାଇଲେ ସୁକୁମାର ରାୟଙ୍କର ମୃତ୍ୟୁ ସଂବାଦ । ଦୁଇଟିଯାକ ଦୁଃସମ୍ବାଦ ସମାନ; ଦୁଇଜଣଯାକ ଥିଲେ କବିଙ୍କର ପରମ ସ୍ନେହର ପାତ୍ର । ବ୍ୟକ୍ତିଗତ ଦୁଃଖ ଆଘାତ ତ ଅଛି । ଦେଶବ୍ୟାପୀ ସମସ୍ୟା କବିଙ୍କର ବିଶେଷ ଉଦ୍‌ବେଗର କାରଣ ହେଲା ।

ଖିଲାଫତ ଆନ୍ଦୋଳନକୁ ସମର୍ଥନ କରି ଅସହଯୋଗ ଆନ୍ଦୋଳନର ଆରମ୍ଭରେ (୧୯୨୦—୨୧) କଂଗ୍ରେସ, ହିନ୍ଦୁ-ମୁସଲମାନ ମିଳନ ସ୍ୱପ୍ନ ଦେଖୁଥିଲେ । ସ୍ୱଦେଶସୀମା ଅତିକ୍ରମ କରି ଏକ ଆନୁଗତ୍ୟ ଭାବ ଓ ଏକ ମଧ୍ୟଯୁଗୀୟ ଧର୍ମ ବିଶ୍ୱାସକୁ ସମର୍ଥନ କରି ନେତାମାନେ ଭାବିଥିଲେ ଯେ ମୁସଲମାନମାନଙ୍କୁ ଦଳକୁ ଆଣିବା ସହଜ ହେବ

ଓ ହିନ୍ଦୁ ମୁସଲମାନ ମିଶି ବ୍ରିଟିଶ ସରକାରଙ୍କୁ ଜବଦ କରିବା ସମ୍ଭବ ହେବ । ପରିଣାମରେ ଦେଖାଗଲା ଯେ ଧର୍ମଚେତନା, ଧର୍ମାନ୍ଧତାରେ ପରିଣତ ହେବାକୁ ବେଶୀ ସମୟ ଲାଗିଲା ନାହିଁ । ନାନା ବିଷୟରେ ମତଭେଦ ଆରମ୍ଭ ହେଲା । ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଫଟାଫଟି ମନୋଭାବ ଦେଖା ଦେଇ ନ ଥିଲା ସତ, କିନ୍ତୁ ବିରକ୍ତ ଭାବ ଦେଖା ଦେଇଥିଲା । ରବୀନ୍ଦ୍ରନାଥ ଏହି ସମୟରେ ଦୁଇଟି ପ୍ରବନ୍ଧ ଲେଖିଲେ—'ସମସ୍ୟା' ଓ 'ସମାଧାନ' । ବହୁବର୍ଷ ବିତି ଯାଇଛି । ଗୋଟିଏ ଜାଗାରେ ଦୁଇଟି ସ୍ୱାଧୀନ ଦେଶର ଉଦ୍ଭବ ହୋଇଛି । କିନ୍ତୁ ରବୀନ୍ଦ୍ରନାଥଙ୍କର ସେ ସମୟର ଭାବନା ଓ ଭାଷଣ ଅନୁଧ୍ୟାନ କଲେ ପାଠକ ଦେଖି ପାରିବେ ଯେ ଆଜି ବି ସେହି ସମସ୍ୟା ରହିଛି—ତାର ସମାଧାନ ବି ତାହା ହିଁ । କାରଣ ଧର୍ମାନ୍ଧତା, ଧର୍ମ ଓ ରାଜନୀତିରେ ସାଲିସ ଆଣିବା, ସିନ୍ଧୁର ବ୍ରହ୍ମପୁତ୍ର ଓ କାଶ୍ମୀରରୁ କୁମାରିକା ପର୍ଯ୍ୟନ୍ତ ଏବେ ବି ନିର୍ମୂଳ ହୋଇନି । ଭାରତର ପୂର୍ବ ଓ ପଶ୍ଚିମ ସୀମାନ୍ତ ସର୍ବଦା ମେଘାଚ୍ଛନ୍ନ, ମୋହାଚ୍ଛନ୍ନ ।

କବି ସେଦିନ କହିଥିଲେ ଯେ ଭାରତବର୍ଷର କଲ୍ୟାଣ ପାଇଁ ହିନ୍ଦୁ ମୁସଲମାନ କେବଳ ମିଳିତ ହେଲେ ଚଳିବ ନାହିଁ, ସମକକ୍ଷ ହେବାକୁ ହେବ । ସମକକ୍ଷ ହେବାକୁ ହେଲେ, 'ମୁସଲମାନଙ୍କ ପକ୍ଷରେ ସଂଘଶକ୍ତି ଗଢ଼ିବାର ସ୍ୱାଧୀନତା ଯେପରି ଦରକାର ହିନ୍ଦୁଙ୍କ ପକ୍ଷରେ ମଧ୍ୟ ସେପରି ଆବଶ୍ୟକ । ସେ ସ୍ପଷ୍ଟ କହିଥିଲେ, ମୁସଲମାନଙ୍କ ମଧ୍ୟରେ ଏକାଠି ହେବା ଯେତେ ସହଜ ହିନ୍ଦୁଙ୍କ ପକ୍ଷରେ ତାହା ସମ୍ଭବ ନୁହେଁ; ହିନ୍ଦୁ ବିପୁଳ, ଅଥଚ ଦୁର୍ବଳ । ଏ କ୍ଷେତ୍ରରେ କେବଳ ଚରଖାରେ ସୂତା କାଟିଲେ ସମସ୍ୟାର ସମାଧାନ ହେବନି । ବିଦେଶୀଙ୍କୁ ବିଦାୟ ଦେଲେ ମଧ୍ୟ ଅଗ୍ନି ଜଳିବ, ଏପରି କି ସ୍ୱଦେଶୀ ରାଜା ହେଲେ ବି ଦୁଃଖ ଓ ଦହନର ନିବୃତ୍ତି ହେବନି । ଆଜିକୁ ଦୁଇଶହ ବର୍ଷ ଆଗରୁ ଚରଖା ଚାଲିଛି, ତନ୍ତ ବନ୍ଦ ହୋଇନି । ତାହା ସଙ୍ଗେ ଅଗ୍ନି ବି ଦାଉ ଦାଉ ହୋଇ ଜଳିଛି । ସେହି ଅଗ୍ନିର ଜ୍ୱଳନ୍ତ ଇନ୍ଧନ ହେଉଛି ଧର୍ମ ଓ କର୍ମରେ ବୁଦ୍ଧିର ଅନ୍ଧତା ।' ଏହି ବୁଦ୍ଧିର ରିପୁ, ସକଳ ଧର୍ମ ମଧ୍ୟରେ ବିଦ୍ୟମାନ । କବିଙ୍କ ମତରେ 'ଦେଶର ମୁକ୍ତି କାର୍ଯ୍ୟ ଖୁବ୍ ବଡ଼ ଅଥଚ ତାର ଉପାୟ ଖୁବ୍ ଛୋଟ ହେବ,

ଏ କଥା ଆଶା କରିବା ଭିତରେ ନ୍ୟୁଟି ରହିଛି । ଏହି ପ୍ରତ୍ୟାଶା ମଧ୍ୟରେ ଅଛି ଫାଙ୍କି ଉପରେ ବିଶ୍ୱାସ; ବାସ୍ତବ ଉପରେ ନୁହେଁ, ନିଜର ଶକ୍ତି ଉପରେ ନୁହେଁ ।' ଗୋଟିଏ କବିତାରେ ଲେଖିଲେ—

ମନେର ମଧ୍ୟେ ନିରବଧି ଶିକଲ ଗଡ଼ାର କାରଖାନା,
ଏକଟା ବାଁଧନ କାଟେ ଯଦି ବଢ଼େ ଉଠେ ଚୁରଖାନା ।
ଲୋକେ ତୋମାର ଭଠିସ ମାଣ୍ଡ ଫଲ ଯେତେ ଗୃହ ଯାତାଯାତ—
ମୁଠୋରେ ତୋର କାଟେବେ ଫୁଟୋ ଆପନ ଭାଁଡ଼ାର ଧାରଖାନା ।

ଏହି ସମୟରେ ଲେଖିଲେ 'ରଥେର ରଶି' (ରଥ ଯାତ୍ରା ଶିରୋନାମାରେ ପ୍ରଥମେ ମୁଦ୍ରିତ ଓ ପରେ 'କାଲେର ଯାତ୍ରା'ରେ ସଂକଳିତ) ନାଟିକା । ସେଥିରେ ଧର୍ମ ମୂଢ଼ତାକୁ ଧିକ୍କାର କରିଛନ୍ତି— ଯେପରି ଯନ୍ତ୍ର ଦାନବର ନିନ୍ଦା କରିଛନ୍ତି 'ମୁକ୍ତଧାରା'ରେ ଓ 'ରକ୍ତକରବୀ'ରେ । ପ୍ରାଚ୍ୟର ବିଶ୍ୱାସ ସନ୍ନ୍ୟାସୀର ମନ୍ତ୍ରରେ ଓ ପାଶ୍ଚାତ୍ୟର ବିଶ୍ୱାସ ବିଜ୍ଞାନର ଯନ୍ତ୍ରରେ । ପ୍ରକୃତରେ ଅନ୍ତଃଶୁଦ୍ଧିର ପ୍ରୟୋଜନ – 'ଭିତରେ ରସ ନା ଜମିଲେ, ବାହିରେ କି ଗୋ ରଙ୍ଗ ଧରେ' । ଭିତରେ ଯେଉଁ ରସ ଜମିଛି ତାହା ସେ ଧର୍ମାନ୍ଧତା ଗରଳ-ପୂର୍ଣ୍ଣ ।

(୯୯)

୧୯୨୩ ମସୀହା ଶେଷଆଡ଼କୁ କବି ଗୁଜରାଟ ଭ୍ରମଣ ସାରି ଫେରିଲେ । ସେଥର ପୋରବନ୍ଦର ଛଡ଼ା ଅନ୍ୟାନ୍ୟ ଦେଶୀୟ ରାଜ୍ୟ ବୁଲି ନାହାନ୍ତି । ଏଥର ରାଜାମାନଙ୍କଠାରୁ ଅନେକ ଟଙ୍କା ପାଇଥିଲେ । ସେହି ଅର୍ଥରେ ନୂତନ କଳାଭବନ ଘରର ଭିତ୍ତି ପଡ଼ିଲା ।

ପୌଷ ଉତ୍ସବ ପରେ ଶାନ୍ତିନିକେତନ ଗଲେ । ସେଠାର ନୂତନ ଆକର୍ଷଣ ହେଉଛି ଅଶ୍ୱତ୍ଥ ଗଛ ଉପରେ ଥିବା କାଠଘର; ଆଶ୍ରମର ଅନ୍ୟତମ ଜାପାନୀ କର୍ମୀ କାସାହାର ତାହା ତିଆରି

କରିଥିଲେ । ନୂଆଘର ତେହଲେ କବିଙ୍କର ସେଠାରେ କିଛିଦିନ ରହିବା ଦରକାର; ନୂତନ ପରିବେଶରେ ସ୍ୱତନର ଆବେଗ କିଛି ପରିମାଣରେ କଟିଯାଏ । ବହୁଦିନ ପରେ ନୂତନ କାବ୍ୟ ସୃଷ୍ଟିର ଆନନ୍ଦମୟ ଆବେଗ । 'ବଲାକା' ପରେ ଦୀର୍ଘକାଳ ସଂଗୀତ ରାଜ୍ୟରେ ବାସ କରିଥିଲେ; ବିବିଧ କର୍ମୋଦ୍ୟମର କ୍ଲାନ୍ତି ମଧ୍ୟରେ ସେହି ସଂଗୀତରେ ହିଁ ପାଆନ୍ତି ଅନ୍ତରର ତୃପ୍ତି । ଏଥର ଯେଉଁ କବିତାଗୁଡ଼ିକ ଲେଖିଲେ ସେଗୁଡ଼ିକ 'ପୂରବୀ' ପୁସ୍ତକର ପ୍ରଥମ ଭାଗରେ ସ୍ଥାନ ପାଇଛି (ମାଘ-ଫାଲ୍‌ଗୁନ ୧୩୩୦) ।

ଏହା ଭିତରେ ଚୀନରୁ କବିଙ୍କୁ ନିମନ୍ତ୍ରଣ ମିଳିଥାଏ । ଚୀନ ଯିବାପୂର୍ବରୁ କଲିକତା ବିଶ୍ୱବିଦ୍ୟାଳୟରେ ସାହିତ୍ୟ ସମ୍ପର୍କରେ ତିନୋଟି ବକ୍ତୃତା ଦେଇଥିଲେ ।

ଚୀନ ଦେଶରେ ପ୍ରଜାତନ୍ତ୍ର ପ୍ରତିଷ୍ଠିତ ହେବା ପରଠାରୁ (୧୯୧୨) ବହୁବର୍ଷ ଧରି ଅଶାନ୍ତି ଚାଲିଥାଏ । ମଝିରେ ଯେତେବେଳେ କିଛିଦିନ ପାଇଁ ଶାନ୍ତି ଥିଲା, ସେହି ସମୟରେ ପେକିଂ ବକ୍ତୃତା ସମିତି ବିଦେଶରୁ କେତେଜଣ ମନୀଷୀଙ୍କୁ ନିମନ୍ତ୍ରଣ କରିଥିଲେ । ପ୍ରଥମବର୍ଷ ଆମେରିକା-ଦର୍ଶନ-ଶାସ୍ତ୍ରଜ୍ଞ ଜନ୍ ଡିଉଇ, ଦ୍ୱିତୀୟବର୍ଷ ଇଂଲଣ୍ଡରୁ ମନୀଷୀ ବାର୍ଟ୍ରାଣ୍ଡ ରସେଲ୍ ଓ ଏଥର ଭାରତରୁ ରବୀନ୍ଦ୍ରନାଥ ।

କବିଙ୍କ ସଙ୍ଗରେ ଗଲେ କ୍ଷିତିମୋହନ ସେନ, ନନ୍ଦଲାଲ ବସୁ ଓ ଏଲମ୍‌ହାର୍ଷ୍ଟ । ତା ଛଡ଼ା କଲିକତା ବିଶ୍ୱବିଦ୍ୟାଳୟର ଅଧ୍ୟାପକ କାଳିଦାସ ନାଗ ।

କଲିକତାରୁ ସେମାନେ ଷ୍ଟିମରରେ ଯାତ୍ରା କଲେ (୧୯୨୪ ମାର୍ଚ୍ଚ ୨୧) । ବାଟରେ ରେଙ୍ଗୁନ୍, ପେନାଙ୍ଗ, ମାଳୟ ଉପଦ୍ୱୀପର କୁଆଲା-ଲମ୍ପୁର ପ୍ରଭୃତି ସ୍ଥାନ ବୁଲି ଦେଖିଥିଲେ । ମାଳୟ ସମ୍ପର୍କରେ କବି ଲେଖିଛନ୍ତି ଯେ ଦେଶଟା ମାଳୟ ଜାତିର ନୁହେଁ; ତାକୁ ଭୋଗ କରି ଭୋଗ କରୁଛନ୍ତି ବ୍ରିଟିଶ ରବର ବଣିଗ୍ମଣ୍ଡଳ ଓ ଚିଣ ଖଣିର ମାଲିକମାନେ । ଶ୍ରମିକ କାର୍ଯ୍ୟ କରନ୍ତି ଚୀନ ଲୋକେ ଓ ଭାରତୀୟ । ମାଳୟୀମାନେ ନିଜ ବାସଭୂମିରେ ପ୍ରବାସୀ—ଦାସତ୍ୱ କରି ବଞ୍ଚନ୍ତି । ଏଲମ୍‌ହାର୍ଷ୍ଟ ଲେଖିଛନ୍ତି ଯେ ଏ ଦେଶରେ ସ୍ୱଜନୈତିକ

ଜାଗରଣ ଦେଖା ଦେଇଛି; କିନ୍ତୁ ବର୍ତ୍ତମାନ ସୁଦ୍ଧା ତାହାର ବଳିଷ୍ଠ ଅଭିବ୍ୟକ୍ତି ହୋଇନି । ଏହା ୧୯୨୪ ମସୀହାର କଥା ।

ସିଙ୍ଗାପୁରରୁ ଜାହାଜ ବଦଳାଇ ଜାପାନୀ ଜାହାଜରେ ଯାଇ ଚୀନରେ ପହଞ୍ଚିଲେ । କାଣ୍ଟନରୁ ସାନୟାତ ସେନ୍‌ଙ୍କର ଦୂତ ଆସିଲେ ଆମନ୍ତ୍ରଣ ଜଣାଇବାକୁ । କାଣ୍ଟନ ଯିବା ସୁବିଧା ହେଲନି, କାହିଁକି ହେଲନି ଜଣାଯାଏ ନି—ହାତରେ ସମୟ ଯଥେଷ୍ଟ ଥିଲା; ପ୍ରାଚ୍ୟର ଦୁଇ ନେତୃସ୍ଥାନୀୟ ପୁରୁଷଙ୍କ ମଧ୍ୟରେ ଦେଖା ହେଲା ନାହିଁ—୧୯୨୮ ମସୀହା ଆରମ୍ଭରେ ସାନାୟାତ ସେନ୍‌ଙ୍କର ମୃତ୍ୟୁ ହେଲା ।

ଚୀନର ବନ୍ଦର ସାଙ୍ଘାଇରେ ପହଞ୍ଚିଲେ ଏପ୍ରିଲ ୧୨ ତାରିଖରେ । ସାଙ୍ଘାଇ ବିଶାଳ ନଗର । ସେଠାରେ ଅନେକ ପ୍ରତିଷ୍ଠାନ ଓ କ୍ଲବ । ଜାପାନୀ, ବ୍ରିଟିସ ଓ ଆମେରିକାନମାନଙ୍କର ଏଠାରେ ଅଧୀନ ପ୍ରଭାବ, ପ୍ରତିପତ୍ତି ଓ ସମ୍ପତ୍ତି । ସ୍ଥାନୀୟ ଏକ ପାର୍ଟିରେ ବହୁ ଗଣ୍ୟମାନ ଲୋକେ କବିଙ୍କୁ ସମ୍ବର୍ଦ୍ଧନା ଜଣାଇଲେ । କବି କହିଲେ ଯେ ଏସିଆର ସାଧକଗଣ ଯୁଗ ଯୁଗ ଧରି ପୃଥିବୀକୁ ସୁନ୍ଦର ଓ ମଧୁର ବାଣୀ ଶୁଣାଇଛନ୍ତି; ଏସିଆ ଆଜି ବି ସେହି ଶ୍ରେଣୀର ଭାବୁକଙ୍କର ପ୍ରତୀକ୍ଷାରେ ଅଛି । ଚୀନ ଓ ଏସିଆର ଅପର ପ୍ରତିବେଶୀ ଜାତି ସମୂହଙ୍କ ସଙ୍ଗେ ଭାରତର ମୈତ୍ରୀପୂର୍ଣ୍ଣ ମିଳନ କରିବା ପାଇଁ କବି ଚୀନର ଯୁବକଙ୍କୁ ଆହ୍ୱାନ ଦେଲେ । ବିଂଶ ଶତାବ୍ଦୀର ଆରମ୍ଭରେ ଜାପାନୀ ଶିଳ୍ପୀ ଓ ଭାବୁକ ଓକାକୁରା କହିଥିଲେ: Asia is one । ରବୀନ୍ଦ୍ରନାଥ ସାରା ଏସିଆର ସେହି ଐକ୍ୟବାଣୀ ବହନ କରି ଚୀନ ଆସିଥିଲେ ।

ସାଙ୍ଘାଇରୁ ଚେକିୟାଙ୍ଗ ପ୍ରଦେଶର ପ୍ରଧାନ ନଗର ହାଂଚୌ ଗଲେ; ସେଠାରେ ବହୁ ପ୍ରାଚୀନ ବୌଦ୍ଧ କୀର୍ତ୍ତି ଅଛି । ସାଥୀମାନେ ତନ୍ନ ତନ୍ନ କରି ଦେଖିଲେ । କବି ଭାରତୀୟ ବୌଦ୍ଧ ଭିକ୍ଷୁ ବୋଧିଜ୍ଞାନଙ୍କର ଧର୍ମସାଧନା କଥା ଉଲ୍ଲେଖ କରି କହିଲେ ଯେ ଅତୀତରେ ଯେପରି ଚୀନ ଓ ଭାରତ ଏକ ସାଧନା-ଡୋରିରେ ବାନ୍ଧି ହୋଇଥିଲେ, ସେହିପରି ଭବିଷ୍ୟତରେ ମଧ୍ୟ ଉଭୟ ଦେଶକୁ ପ୍ରୀତି ଡୋରରେ ବାନ୍ଧିବାକୁ ପଡ଼ିବ । କବିଙ୍କର ସ୍ୱପ୍ନ ସଫଳ କରିଛନ୍ତି

ଜବାହାରଲାଲ ନେହରୁ, ନବଭାରତର ପ୍ରଧାନମନ୍ତ୍ରୀ ରୂପେ—କବି ପ୍ରୟାଣର ଅନେକ ଦିନ ପରେ ।

ସାଂଘାଇକୁ ଫେରି କବି ଜାପାନୀମାନଙ୍କ ସଭାରେ ଯେଉଁ ଭାଷଣ ଦେଲେ ସେଥିରେ ପାଶ୍ଚାତ୍ୟ ସଭ୍ୟତାର ସମାଲୋଚନା ଥିଲା । ପ୍ରାଚ୍ୟ ସମ୍ପର୍କରେ ଅବମାନବୋଧଜାତ ମନୋଭାବ ପ୍ରଦର୍ଶନରୁ ନିବୃତ୍ତ ହେବାପାଇଁ କବି ପଶ୍ଚିମକୁ ଉପଦେଶ ଦେଲେ ।

କବିଙ୍କର ଏହି ବକ୍ତୃତାରେ ୟୁରୋପୀୟମାନେ ଖୁସି ହେଲେ ନାହିଁ । ଯେଉଁ ଚୀନ ଯୁବକମାନେ ପଶ୍ଚିମାଭିମୁଖୀ ସେମାନେ ମଧ୍ୟ କ୍ଷୁବ୍ଧ ହେଲେ । ସମସାମୟିକ କାଗଜରେ କବିଙ୍କ ମତର ସମାଲୋଚନା ହେଲା । କିନ୍ତୁ ସେଥିରେ ଅଶ୍ରଦ୍ଧାର ଚିହ୍ନ ନଥିଲା । କବିଙ୍କ ସଂପର୍କରେ ଇଂରେଜୀ କାଗଜରେ ତୀବ୍ର ସମାଲୋଚନା ଚାଲିଥାଏ । ତାହା ସତ୍ତ୍ୱେ ମଧ୍ୟ ସାଂଘାଇ ଛାଡ଼ିବା ଆଗରୁ ପଚିଶଟି ସମିତି ଆଡ଼ମ୍ବର ସହକାରେ କବି ସମ୍ବର୍ଦ୍ଧନା କରିଥିଲେ ।

ସାଂଘାଇରୁ ୟାଂତ୍‌ସେ ନଦୀପଥରେ ନାନ୍‌କିଂ ଆସିଲେ । ନାନ୍‌କିଂ ବିଶ୍ୱବିଦ୍ୟାଳୟର ବିରାଟ ହଲରେ କବି ବକ୍ତୃତା ଦେଲେ ।

ତା ପରେ ଚାଲିଲେ ପେକିଂ ଅଭିମୁଖେ । ସାନ୍‌ଟୁଙ୍ଗରୁ କବିଙ୍କ ପାଇଁ ଦେହରକ୍ଷୀ ଦଳ ଓ ସ୍ପେଶାଲ ଟ୍ରେନ ଦିଆଗଲା । ଏପ୍ରିଲ ୨୩ ତାରିଖ ସନ୍ଧ୍ୟାରେ ପେକିଂରେ ପହଞ୍ଚି ଦେଖିଲେ ଯେ ଷ୍ଟେସନରେ ବେଶ ଭିଡ଼ । ରାସ୍ତାର ଦୁଇଆଡ଼ୁ ପୁଷ୍ପ ବୃଷ୍ଟି ଓ ମଝିରେ ମଝିରେ ଚୀନ ରୀତିରେ ବାଣଫୁଟା ଚାଲିଛି । ଅଭ୍ୟର୍ଥନା ଦେଖି ବିଦେଶୀ ସମ୍ବାଦପତ୍ର ଲେଖିଥିଲେ ଯେ ଆଗରୁ ପେକିଂକୁ ବହୁଲୋକ ଆସିଛନ୍ତି; କିନ୍ତୁ ଏପରି ଉନ୍ମତ୍ତ ଆବେଗ ଦେଖା ଯାଇନି । ଏହାର କାରଣ କଣ ?

ନାନାସ୍ଥାନରେ କବି ବକ୍ତୃତା ଦେଲେ । ନବୀନ ଚୀନବାସୀ ଭାବୁଥାନ୍ତି ଯେ ରବୀନ୍ଦ୍ରନାଥ ପ୍ରତିକ୍ରିୟାପନ୍ଥୀ ଓ ପ୍ରାଚୀନପନ୍ଥୀ । ସେଥିପାଇଁ କବିଙ୍କୁ ପ୍ରଥମେ ବେଶ୍ ଅସୁବିଧା ଭୋଗିବାକୁ ପଡ଼ିଥିଲା । କିନ୍ତୁ ଯୁବକମାନଙ୍କ ସଙ୍ଗରେ ଯେତିକି ଘନିଷ୍ଠ ଭାବରେ ମିଶିଲେ,

କବିଙ୍କ ମତ ସମ୍ବନ୍ଧରେ ସେମାନଙ୍କର ଧାରଣା ସେତିକି ପରିବର୍ତ୍ତିତ ହେଲା ।

ପ୍ରାୟ ଏକ ସପ୍ତାହ ପେକିଂରେ ରହି, ସହରଠାରୁ ବାରମାଇଲ ଦୂରସ୍ଥ ଆମେରିକାନ ବିଦ୍ୟାଳୟ ସିନ୍-ହୁଆ କଲେଜକୁ ଯାଇ କିଛିଦିନ ବିଶ୍ରାମ କଲେ । ଛାତ୍ରମାନଙ୍କ ସହିତ ଦେଖା ହୁଏ— ସେମାନେ ବହୁ ବିଚିତ୍ର ପ୍ରଶ୍ନ ଲେଖି ପଠାନ୍ତି, କବି ତାର ଉତ୍ତର ଦିଅନ୍ତି । ଏହିପରି ଭାବରେ ଖୁବ୍ ଆନ୍ତରିକତା ସୃଷ୍ଟି ହେଲା ।

ମେ ୮ ତାରିଖରେ କବିଙ୍କ ଜନ୍ମଦିନରେ ପେକିଂରେ ବିରାଟ ଉତ୍ସବ ଅନୁଷ୍ଠିତ ହେଲା । ଚୀନର ଅନ୍ୟତମ ଶ୍ରେଷ୍ଠ ଭାବୁକ ଓ ମନୀଷୀ ହୁ-ଶି ପୌରହିତ୍ୟ କଲେ । ସଭାରେ କବିଙ୍କୁ 'ଚୁ-ଚେନ-ତାନ' ବା 'ମେଘ-ମନ୍ଦ୍ରିତ ପ୍ରଭାତ' ଉପାଧି ପ୍ରଦାନ କରା ହୋଇଥିଲା । ଉତ୍ସବରେ ଚୀନା ଭାଷାରେ 'ଚିତ୍ରା' ଅଭିନୟ ହେଲା ।

ପେକିଂରେ ବାସ କରୁଥିବାବେଳେ ଚୀନର ଭୂତପୂର୍ବ ସମ୍ରାଟ କବିଙ୍କୁ ଦିନେ ନିମନ୍ତ୍ରଣ କଲେ; ସେତେବେଳେ ସମ୍ରାଟ ଥିଲେ ଏକ ପ୍ରକାର ବନ୍ଦୀ । ତାଙ୍କ ନିକଟକୁ କେହି ଯାଇ ପାରୁ ନଥିଲେ । ଏହି ନିର୍ବାସିତ ସମ୍ରାଟ ଜାପାନୀମାନଙ୍କର ଶିଖଣ୍ଡୀ ହୋଇ ହେନେରୀ ପୁ-ଯ୍ୟୀ ନାମରେ ମାନଚୁ-କୁଓ୍ୟୋ ରାଜ୍ୟର ରାଜା ହୋଇଥିଲେ । ୧୯୧୨ ଖ୍ରୀ: ଅ: ର ବିପ୍ଳବ ସମୟରେ ସେ ନିତାନ୍ତ ବାଳକ ଥିବାରୁ ତାଙ୍କୁ ଦୟାକରି ହତ୍ୟା କରାଯାଇ ନଥିଲା । ମେ ୨୦ ତାରିଖରେ କବି ଓ ତାଙ୍କର ସହଯାତ୍ରୀଗଣ ପେକିଂ ତ୍ୟାଗକରି ଅନ୍ୟ କେତୋଟି ଜାଗା ପରିଦର୍ଶନ କରି ସାଂଘାଇ ଫେରିଆସିଲେ ଓ ସେଠାରୁ ନନ୍ଦଲାଲ, ଏଲମ୍‌ହାର୍ଷ୍ଟ ଓ କାଳିଦାସଙ୍କୁ ନେଇ ଜାପାନ ଗଲେ । କ୍ଷିତିମୋହନ ବୌଦ୍ଧ-ସଂସ୍କୃତ କେନ୍ଦ୍ରମାନ ଭଲଭାବରେ ଦେଖିବା ପାଇଁ ଚୀନରେ କିଛିଦିନ ରହିଗଲେ ।

ରବୀନ୍ଦ୍ରନାଥଙ୍କର ଏହି ଜାପାନ-ଆଗମନ ହେଉଛି ତୃତୀୟଥର । ଟୋକିଓର ଗୋଟିଏ ବକ୍ତୃତାରେ କବି ଜାପାନୀ-ମାନଙ୍କର ଉଗ୍ର ଜାତୀୟତା-ବୋଧ ସମ୍ବନ୍ଧରେ ତୀବ୍ର ନିନ୍ଦାବାଦ କରି ସେମାନଙ୍କୁ ସତର୍କ କରିଦେଇ କହିଲେ ଯେ ତୁମ୍ଭେମାନେ ଯଦି ଶାନ୍ତି ଚାହଁ ତେବେ 'ନେଶନ' ରାକ୍ଷସ ବିରୁଦ୍ଧରେ ତୁମ୍ଭମାନଙ୍କୁ

ଲଢ଼ାଇ କରିବାକୁ ହେବ । କହିବା ବାହୁଲ୍ୟ ଯେ କବିଙ୍କ କଥାରେ କୌଣସି ରାଜନୀତିଜ୍ଞ କେବେ ହେଁ କର୍ଣ୍ଣପାତ କରନ୍ତି, ଆଉ ଜାପାନୀମାନେ କରିବେ ! ପ୍ଲେଟୋ ତ ରାଷ୍ଟ୍ରରୁ କବିମାନଙ୍କୁ ନିର୍ବାସିତ କରିବାକୁ କହିଥିଲେ । ତଥାପି ଚୀନ ଦେଶର ଆଦିଗୁରୁ କୁଙ୍ଗଫୁତ୍ସୁ ରାଜାମାନଙ୍କର ଦ୍ୱାର ଦ୍ୱାର ବୁଲିଥିଲେ — ସେମାନଙ୍କର ହିତ ଉଦ୍ଦେଶ୍ୟରେ । ଗେଟେ ଭ୍ୱାଇମାର ଦରବାରକୁ ସଦସ୍ୟ କରିବାପାଇଁ ଅନେକ ଚେଷ୍ଟା କରିଥିଲେ । ରବୀନ୍ଦ୍ରନାଥ ମଧ୍ୟ ତ୍ରିପୁରା ଦରବାର ସଂପର୍କରେ ଅନେକ କଥା ଭାବିଥିଲେ ।

ଜାପାନରେ କବିଙ୍କ ସଙ୍ଗରେ ଭାରତର ଅନ୍ୟତମ ବିପ୍ଳବୀ ରାସବିହାରୀ ବସୁଙ୍କର ଦେଖା ହେଲା । ରାସବିହାରୀ ୧୯୧୬ ଖ୍ରୀ:ଅ:ରେ କଲିକତାରୁ ପଳାଇ ଆସିଲାବେଳେ କବିଙ୍କର ଆତ୍ମୀୟ କହି ପି. ଏନ୍. ଠାକୁର ନାମରେ ସେଠାକୁ ଚାଲି ଆସିଥିଲେ (୧୯୧୬ ଏପ୍ରିଲ ୧୨) । ଜାପାନରେ କବି ବସୁଙ୍କ ସଙ୍ଗରେ ଦେଖାକଲେ । ବ୍ରିଟିସ ଦୂତାବାସର ଚରମାନଙ୍କର ନଜରରେ ପଡ଼ିବେ ବୋଲି ରବୀନ୍ଦ୍ରନାଥ ଏକୁଟିଆ ପାଇଥିଲେ ।

ରବୀନ୍ଦ୍ରନାଥଙ୍କର ଚୀନ ଜାପାନ ଭ୍ରମଣର ଏକ ଅଦ୍ଭୁତ ପ୍ରତିକ୍ରିୟା ଦେଖାଦେଲା ପ୍ରାଚ୍ୟ ଜଗତରେ । କବିଙ୍କର ପ୍ରତ୍ୟାବର୍ତ୍ତନର କେତେକ ମାସପରେ ନାନା ଦେଶର ବିପ୍ଳବୀଗଣ ଏକତ୍ର ହୋଇ ସାଂଘାଇରେ ଏସିଆଟିକ୍ ସୋସାଇଟି ଗଠନ କଲେ । ସମସାମୟିକ ଆମେରିକାନ୍ ସଂବାଦପତ୍ରରୁ ଜଣାଯାଏ, ଉଦ୍ୟୋକ୍ତାଗଣ ସ୍ପଷ୍ଟ ଭାବେ କହିଥିଲେ ଯେ ଏହି ସମ୍ମିଳନୀର ପ୍ରେରଣା ମିଳିଥିଲା ରବୀନ୍ଦ୍ରନାଥ ଠାକୁରଙ୍କର ଏସିଆର ଆଧ୍ୟାତ୍ମବୋଧ ସଂପର୍କୀୟ ଭାଷଣରୁ ।

ଆଧୁନିକ ଯୁଗରେ ରବୀନ୍ଦ୍ରନାଥଙ୍କ ପୂର୍ବରୁ କୌଣସି ଭାରତୀୟ ମନୀଷୀ ଚୀନ ଯାଇ ନଥିଲେ; ଏହି ସମୟରେ ସେ ଭାରତର ଦୂତରୂପେ ଚୀନ ଯାଇ ଭାରତ-ଚୀନ-ମୈତ୍ରୀର ଭିତ୍ତି ପତ୍ତନ କରିଥିଲେ ।

(୧୦୦)

ଗୃରମାସ ମଧ୍ୟରେ ଚୀନ-ଜାପାନ ଭ୍ରମଣ ଶେଷକରି କଲିକତା ଫେରିଲେ (୧୯୨୪ ଜୁଲାଇ ୨୧) । କିନ୍ତୁ ଦେଶରେ ଦୁଇମାସରୁ ଅଧିକ ରହି ପାଇଲେ ନାହିଁ । ଦକ୍ଷିଣ ଆମେରିକାର ପେରୁ ରାଜ୍ୟରୁ ଆହ୍ୱାନ ଆସିଲା । ସେଠାରେ ସେମାନଙ୍କର ସ୍ୱାଧୀନତାର ଶତବାର୍ଷିକ ଉତ୍ସବ ଡିସେମ୍ବର ମାସରେ ହେଉଥାଏ । ଶହେ ବର୍ଷ ପୂର୍ବେ (୧୮୨୪ ଡିସେମ୍ବର ୯ ତାରିଖ) ଆୟ୍ୟା କୁଚ୍ଚୋର ଯୁଦ୍ଧରେ ପେରୁବାସୀମାନେ ସ୍ପେନର ସାମ୍ରାଜ୍ୟବାଦ ଧ୍ୱଂସକରି ସ୍ୱାଧୀନତା ଘୋଷଣା କରିଥିଲେ । ସେହି ଦିନର ସ୍ମୃତିରେ ଏହି ମହୋତ୍ସବ । ପେରୁବାସୀଗଣ ଭାରତୀୟ କବିଙ୍କୁ ସେହି ମହୋ-ତ୍ସବରେ ଯୋଗଦାନ କରିବାକୁ ନିମନ୍ତ୍ରଣ କଲେ ଓ ଯିବା ଆସିବା ସମସ୍ତ ଖର୍ଚ୍ଚ ଦେବାକୁ ରାଜି ହୋଇଥିଲେ ।

କବିଙ୍କ ସଙ୍ଗରେ ଗୃଲିଲେ ରଥୀନ୍ଦ୍ରନାଥ, ପ୍ରତିମା ଦେବୀ, ସେମାନଙ୍କର ପାଳିତା କନ୍ୟା ନନ୍ଦିନୀ ଓ ବିଶ୍ୱଭାରତୀର ଶିଳ୍ପକଳା ଅଧ୍ୟାପକ ଶ୍ରୀ ସୁରେନ୍ଦ୍ରନାଥ କର । ଏମାନେ ୟୁରୋପ ଭ୍ରମଣରେ ଯାଉଥାନ୍ତି । ଯାତ୍ରାର କିଛିଦିନ ପୂର୍ବରୁ କବି ଇନଫ୍ଲୁଏଞ୍ଜାରେ ପଡ଼ିଲେ । ଭଲ ହେବା ପୂର୍ବରୁ ଯାତ୍ରା ଆରମ୍ଭ ହେଲା । ଅସୁସ୍ଥ ଶରୀରରେ କଲମ୍ବୋରେ ଜାହାଜ ଚଢ଼ିଲେ; କେବିନ୍‌ରେ ବସି ଲେଖୁଥାନ୍ତି 'ପଶ୍ଚିମ ଯାତ୍ରୀର ଡାଏରୀ' ଓ କେତେକ କବିତା ।

ପୋର୍ଟ ସୟୂଦରେ ଓହ୍ଲାଇ ନୂତନ ଦେଶ ଇସରାଏଲ ଦେଖିବାକୁ କବିଙ୍କର ଖୁବ୍ ଇଚ୍ଛା ଥିଲା । କିନ୍ତୁ ସମୟାଭାବରୁ ହୋଇ ପାରିଲା ନାହିଁ । ଏ ଦୁଃଖ କବିଙ୍କର ବରାବର ଥିଲା । କବି ଥରେ ବାଲିକ୍ (Balik) ଆସିଥିଲେ; ମିସ୍ ସାଣ୍ଟାଫ୍ଲାଉମ ଏଠାରେ କାର୍ଯ୍ୟ କରୁଥିଲେ । ଅଧ୍ୟାପକ ଲେଭି, ଓ୍ୱିଣ୍ଟରନିଜ୍ ଉଭୟ ଇହୁଦୀ । କବିଙ୍କର ଇଚ୍ଛା ଇହୁଦୀମାନଙ୍କ ନୂତନ ଦେଶର କାର୍ଯ୍ୟ ଦେଖିବେ । ଫ୍ରାନ୍ସରୁ ଦକ୍ଷିଣ ଆମେରିକାର ଆର୍ଜେଣ୍ଟାଇନାଗାମୀ ଜାହାଜ ଚଢ଼ିଲେ । ଏଲମ୍‌ହାର୍ଷ୍ଟ କବିଙ୍କ ସଙ୍ଗରେ ସେକ୍ରେଟାରୀ ଭାବରେ ଗଲେ । ଜାହାଜ କ୍ୟାବିନ୍‌ରେ ଲେଖା ଗୃଲିଥାଏ

କବିତା । ବନ୍ଦର ଗୁଡ଼ିକର ଗୃହ ପାଞ୍ଚ ଦିନ ପରେ ଦେହ ଖରାପ ହେଲା, ବିଛଣା ଛାଡ଼ି ଗତି ନାହିଁ—କ୍ୟାବିନ୍‌ରେ ବନ୍ଦୀ ଦିନ, ନିଦ୍ରାହୀନ ରାତି କଟୁଥାଏ । ତେବେ ବି ବିଛଣାରେ ଶୋଇ ଶୋଇ କବିତା ଲେଖୁଥାନ୍ତି । ତିନି ସପ୍ତାହ ଜାହାଜରେ କଟିଲା । ଆର୍ଜେଣ୍ଟାଇନାର ରାଜଧାନୀ ଓ ବନ୍ଦର ବୁଏନୋସ୍ ଏୟାରିସ୍‌ରେ ପହଞ୍ଚିଲା ବେଳକୁ ଶରୀର ଖୁବ୍ ଦୁର୍ବଳ, ଡାକ୍ତରମାନେ କହିଲେ ଯେ ଏ ଅବସ୍ଥାରେ ପେରୁଯାତ୍ରା ଅସମ୍ଭବ । ପଥ ଦୂର ଓ ଦୁର୍ଗମ । ଡାକ୍ତରଙ୍କ ନିଷେଧ ଅନୁଯାୟୀ ପେରୁଯାତ୍ରା ବନ୍ଦ ହେଲା । ବୁଏନୋସ୍ ଏୟାରିସ ଦକ୍ଷିଣ ଆମେରିକାର ବୃହତ୍ତମ ନଗରୀ । ସହରଠାରୁ କୋଡ଼ିଏ ମାଇଲ ଦୂରରେ ସାନ୍ ଇସିଡ୍ରୋ ନାମକ ପଲ୍ଲୀର ଏକ ଉଦ୍ୟାନ-ଗୃହରେ କବିଙ୍କର ରହିବା ବ୍ୟବସ୍ଥା ହେଲା । କବିଙ୍କୁ ବୁଝାଇ ଦିଆଗଲା ଯେ ପେରୁର ଉତ୍ସବ ଗୋଟିଏ ଯୁଦ୍ଧର ସ୍ମରଣ ଦିନ ମାତ୍ର, ତାହା ମଧ୍ୟରେ କୌଣସି ଆଦର୍ଶବାଦ ନାହିଁ । ଏହି ସବୁ ଯୁକ୍ତି ଦେଖାଇ କବିଙ୍କୁ ନିବୃତ୍ତ କରିବାରେ ସ୍ଥାନୀୟ ରାଜଦୂତାବାସର କୌଣସି ଚାଲ୍ ଥିଲା କି ନାହିଁ ସେକଥା ସ୍ପଷ୍ଟ ନୁହେଁ । ପରେ ୧୯୨୬ ମସିହାରେ ୟୁରୋପ ଯିବାବେଳେ ଏହି ସ୍ୱାସ୍ଥ୍ୟ ଦୃଷ୍ଟିରୁ ସୋଭିଏଟ୍ ଋଷିଆ ଯିବା ବନ୍ଦ ହୋଇଥିଲା ।

ଦକ୍ଷିଣ ଆମେରିକା ଭ୍ରମଣ ଫଳରେ ବଙ୍ଗଳା ସାହିତ୍ୟ ଦୁଇଖଣ୍ଡି ବହି ପାଇଲା, 'ଯାତ୍ରୀ' ଓ 'ପୂରବୀ' । ତାହା ସଙ୍ଗେ ସଙ୍ଗେ କବି ପାଇଲେ ଜଣେ ଅକୃତ୍ରିମ ବନ୍ଧୁ—ଶ୍ରୀମତୀ ଭିକ୍ଟୋରିଆ ଓକାମ୍ପୋଙ୍କୁ । ଏହାଙ୍କ ସେବା ଯତ୍ନରେ ପ୍ରବାସ ଦିନଗୁଡ଼ିକ କଟିଲା । 'ବିଜୟା' ନାମରେ ପୂରବୀ କାବ୍ୟ ଖଣ୍ଡିକ ଓକାମ୍ପୋଙ୍କୁ ଉତ୍ସର୍ଗ କରିଥିଲେ । ମୃତ୍ୟୁର କିଛିଦିନ ଆଗରୁ ଭିକ୍ଟୋରିୟାଙ୍କ କଥା କହୁଥିଲେ ।

ଆର୍ଜେଣ୍ଟାଇନାରୁ ଫେରିବା ବାଟରେ ଇଟାଲୀର ଜେନୋଆ ବନ୍ଦରରେ ଓହ୍ଲାଇଲେ । ରଥୀନ୍ଦ୍ରନାଥ ପ୍ରଭୃତି ୟୁରୋପ ଭ୍ରମଣ ଶେଷକରି ସେଠାରେ କବିଙ୍କର ସାଥୀ ହେଲେ ।

ଇଟାଲୀରେ ସେ ସମୟରେ ମୁସୋଲିନୀଙ୍କର ଅପ୍ରତିହତ ପ୍ରତାପ । ରବୀନ୍ଦ୍ରନାଥଙ୍କୁ ସ୍ୱାଗତ ଜଣାଇବା ପାଇଁ ମିଲାନ୍

ନଗରରେ ଆୟୋଜନ ହୋଇଥିଲା । ସଂସ୍କୃତ ପଣ୍ଡିତ ଅଧ୍ୟାପକ ଫର୍ମିକ ଖୁବ୍ ଉତ୍ସାହର ସହିତ କବିଙ୍କର ଦୋଭାଷୀ ଓ ସଙ୍ଗୀ ହେଲେ । ଅନେକ ସହରରୁ ଆମନ୍ତ୍ରଣ ଆସିଲା । କିନ୍ତୁ କବିଙ୍କର ଶରୀର ଭଲ ନଥିବାରୁ ସବୁ ପ୍ରତ୍ୟାଖ୍ୟାନ କଲେ । ଭେନିସ ଆସି ଜାହାଜ ଧରି ସ୍ୱଦେଶକୁ ଫେରି ଆସିଲେ (୧୯୨୮ ଫେବୃୟାରୀ ୧୭ ତାରିଖ) ।

(୧୦୧)

କବି ଦେଶରୁ ପାଞ୍ଚମାସ ଅନୁପସ୍ଥିତ ଥିଲେ (୧୯୨୪ ସେପ୍ଟେମ୍ବର ୨୪—୧୯୨୫ ଫେବୃୟାରୀ ୧୭) । ଏ ମଧ୍ୟରେ ଦେଶର ରାଜନୀତି କ୍ଷେତ୍ରରେ ଅନେକ ଜଟିଳ ସମସ୍ୟା ଦେଖା ଦେଇଛି । ୧୯୨୪ ଅକ୍ଟୋବର ୨୪ ତାରିଖରେ ସରକାର ବେଙ୍ଗଲ ଅର୍ଡିନାନ୍ସ ପାସ କରି ସ୍ୱରାଜ ଦଳର ୭୨ ଜଣ କର୍ମୀଙ୍କୁ ଗିରଫ କରି ନଜରବନ୍ଦୀରେ ରଖିଥିଲେ । ରବୀନ୍ଦ୍ରନାଥ ବିଦେଶରେ ଥାଇ ଏ ଖବର ପାଇଥିଲେ । ଆର୍ଜେଣ୍ଟିନାରୁ ପତ୍ର-କବିତାରେ ଲେଖିଥିଲେ—

ଘରେର ଖବର ପାଇନେ କିଛୁଇ, ଗୁଜବ ଶୁନି ନାକି
କୁଲିଶପାଣି ପୁଲିସ ସେଥାୟ ଲାଗାୟ ହାଁକା ହାଁକି ।
ଶୁନଛି ନାକି ବାଂଲା ଦେଶେର ଗାନ ହାସି ସବ ଠେଲେ
କୁଲୁପ ଦିୟେ କରେଛେ ଆକଣ୍ଠ ଆଲିପୁରେର ଜେଲେ ।

ବେଲଗାଁଓ କଂଗ୍ରେସ ଅଧିବେଶନରେ ଗାନ୍ଧିଜୀ ସଭାପତି; ସଭାରେ ସ୍ଥିରହେଲା ଅସହଯୋଗ ନୀତି ସ୍ଥଗିତ ରହିବ । କଂଗ୍ରେସ ଗଠନମୂଳକ କର୍ମପନ୍ଥା ଗ୍ରହଣ କରିବ—ସେ କାର୍ଯ୍ୟ ହେଉଛି ସୂତାକଟା, ଖଦଡ଼ ପ୍ରଚାର ଓ ନିଶା ନିବାରଣ । ରବୀନ୍ଦ୍ରନାଥ ଶାନ୍ତିନିକେତନ ଫେରି ଦେଖିଲେ ଯେ ୯୦ଟି ଚରଖା ଓ ତକଲି ସେଠାରେ ଚାଲୁଥାଏ—ପଣ୍ଡିତ ବିଧୁଶେଖର ଓ ନନ୍ଦଲାଲ ଚରଖା

କାନ୍ତୁଥାନ୍ତି । କବି କୌଣସି ମନ୍ତବ୍ୟ ଦେଲେ ନାହିଁ । ବରଂ ସମସ୍ତଙ୍କୁ କାର୍ଯ୍ୟ କରୁଥିବାର ଦେଖି ଖୁସି ହେଲେ ।

ଗ୍ରୀଷ୍ମାବକାଶରେ କବି ଶାନ୍ତିନିକେତନରେ ଥାନ୍ତି । ଗାନ୍ଧିଜୀ କଲିକତା ଆସିଥାନ୍ତି; ଶାନ୍ତିନିକେତନ ଆସିଲେ କବିଙ୍କ ସଙ୍ଗରେ ଦେଖା କରିବାକୁ । ସଙ୍ଗରେ ମହାଦେବ ଦେଶାଇ ଓ ସତୀଶଚନ୍ଦ୍ର ଦାଶଗୁପ୍ତ ପ୍ରଭୃତି କେତେଜଣ ଆସିଲେ । କବିଙ୍କ ସହିତ ଚରଖା ନୀତି ସମ୍ପର୍କରେ ଦୁଇଦିନ ଆଲୋଚନା ହୋଇଥିଲା । କହିବା ବାହୁଲ୍ୟ ଯେ କେହି କାହାକୁ ନିଜ ମତରେ ଦୀକ୍ଷିତ କରି ପାରିଲେ ନାହିଁ ।

କବିଙ୍କର ନୂତନ କିଛି ଲେଖିବାର ପ୍ରେରଣା ଖୁବ୍ କମ୍; 'ପୂରବୀ' କାବ୍ୟ ପରେ କବିତା ଲେଖାରେ ପୂର୍ଣ୍ଣଚ୍ଛେଦ ପଡ଼ିଥାଏ ।

ଏହି ସମୟରେ କଲିକତାର ସାଧାରଣ ରଙ୍ଗମଞ୍ଚରେ 'ପ୍ରଜାପତି ନିର୍ବନ୍ଧ' ଅଭିନୟ କରିବା କଥା ସ୍ଥିର ହେଲା । କବି ଏହାକୁ 'ଚିରକୁମାର ସଭା' ନାମରେ ପୂରାପୂରି ନୂଆ ନାଟକ ଆକାରରେ ଲେଖିଦେଲେ । କଲିକତାର ସାଧାରଣ ରଙ୍ଗମଞ୍ଚରେ ନାଟକ ଖୁବ ଆଦୃତ ହୋଇଥିଲା । କବି ପ୍ରଥମ ରାତିର ଅଭିନୟ ଦେଖିବାକୁ ଉପସ୍ଥିତ ଥିଲେ । ଅଭିନୟ ଦେଖି ଖୁବ ଉତ୍ସାହ ପାଇଲେ । ଆଉ ଦୁଇଟି ନାଟକ ଲେଖିଲେ—'କର୍ମଫଳ' ଗଳ୍ପକୁ ଅବଲମ୍ବନକରି 'ଶୋଧ ବୋଧ' ଓ ସବୁଜପତ୍ରରେ ପ୍ରକାଶିତ 'ଶେଷେର ରାତି' ଗଳ୍ପକୁ ଅବଲମ୍ବନ କରି 'ଗୃହ ପ୍ରବେଶ' । ଏ ଦୁଇଟି ସାଧାରଣ ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା ।

ଏହି ସବୁ ପୁରୁଣା ଲେଖାକୁ ଅବଲମ୍ବନ କରି ନାଟକ ଲେଖିବା ଛଡ଼ା ଏ ଯୁଗର ଗୋଟିଏ ରଚନା ବିଶେଷ ଭାବରେ ଉଲ୍ଲେଖ-ଯୋଗ୍ୟ । ତାଙ୍କର ବନ୍ଧୁ କାଇଜର୍‌ଲିଙ୍ଗ ବିବାହ ସମ୍ପର୍କରେ ଗୋଟିଏ ବହି ସମ୍ପାଦନା କରୁଥାନ୍ତି । ଭାରତୀୟ ବିବାହର ଆଦର୍ଶ ସମ୍ପର୍କରେ ଗୋଟିଏ ପ୍ରବନ୍ଧ ଲେଖିଦେବାକୁ ଅନୁରୋଧ ଆସିଲା । ତେଣୁ ଲେଖିଲେ 'ଭାରତୀୟ ବିବାହ' ଓ ଇଂରେଜୀରେ ଅନୁବାଦ କରି ଜର୍ମାନୀ ପଠାଇ ଦେଲେ । ତାହା କାଇଜର୍‌ଲିଙ୍ଗଙ୍କର Das Ehe Buch ଶୀର୍ଷକ ଜର୍ମାନ ତର୍ଜମାରେ ପ୍ରକାଶିତ ହେଲା ।

ସେହି ବହିର ଇଂରେଜୀ ଅନୁବାଦ ମଧ୍ୟ ପ୍ରକାଶିତ ହୋଇଛି । ଭାରତୀୟ ବିବାହରେ ପ୍ରେମର ସ୍ଥାନ, ନାରୀର ସ୍ଥାନ ଇତ୍ୟାଦି ବହୁ ଜଟିଳ ବିଷୟରେ କବି ଆଲୋଚନା କରିଛନ୍ତି । ଏହି ପ୍ରବନ୍ଧ ବିଷୟ ଉଲ୍ଲେଖ କରିବାର କାରଣ ହେଉଛି, କିଛିଦିନ ପରେ ଲେଖିଥିବା 'ଯୋଗାଯୋଗ' ଓ 'ଶେଷ କବିତା' ନାମକ ଦୁଇଟି ଉପନ୍ୟାସ ଓ 'ମହୁଆ' କାବ୍ୟ ଏହି ପ୍ରେମତତ୍ତ୍ୱ ଉପରେ ପ୍ରତିଷ୍ଠିତ ।

ସ୍ୱରାଜ୍ୟ-ସାଧନାର ସମସ୍ୟା ସମ୍ପର୍କରେ ବି ଲେଖନୀ ଧରିବାକୁ ହୁଏ; ଲେଖିଲେ 'ଚରଖା' ଓ 'ସ୍ୱରାଜ ସାଧନ' । ଆଜିଠାରୁ କୋଡ଼ିଏ ବର୍ଷ ପୂର୍ବେ ଲିଖିତ ହେଲେ ମଧ୍ୟ ଓ ଦେଶରେ ଅନେକ ପରିବର୍ତ୍ତନ ହୋଇଥିଲେ ବି, ଏହି ଦୁଇଟି ପ୍ରବନ୍ଧରେ କବି ଯେଉଁ କଥା କହିଛନ୍ତି ତାହା କାଳାନ୍ତରରେ ଅଗ୍ରାହ୍ୟ ହୋଇନି । ସ୍ୱରାଜ-ସାଧନ ପ୍ରବନ୍ଧରେ, ଧର୍ମ ବିଷୟରେ, ରାଷ୍ଟ୍ରୀୟ ନିରପେକ୍ଷତା ସମ୍ବନ୍ଧରେ କବି ଯେଉଁ କଥା କହିଥିଲେ, ତାହା ଭାରତ ସ୍ୱାଧୀନ ହେଲେବି, ଭାରତୀୟ ସଂବିଧାନରେ ଧର୍ମ ନିରପେକ୍ଷତା ଘୋଷିତ ହେଲେ ବି, ଦେଶର ଜନସାଧାରଣ ଏପରି କି ବହୁ ନେତୃସ୍ଥାନୀୟ ବ୍ୟକ୍ତି ଆଜି ପର୍ଯ୍ୟନ୍ତ କାୟମନୋବାକ୍ୟରେ ଗ୍ରହଣ କରିନାହାନ୍ତି । ଧର୍ମବିଦ୍ୱେଷର ବିଷବାଷ୍ପ ଓ କୋଳାହଳ ଆଜି ମଧ୍ୟ ଦେଶର ଆକାଶ ପବନକୁ ବିଷାକ୍ତ କରୁଛି ।

(୧୦୨)

୧୯୨୫ ମସିହାର ଶେଷଆଡ଼କୁ ଇଟାଲୀରୁ କାର୍ଲୋ ଫର୍ମିକି ବିଶ୍ୱଭାରତୀର ଅଧ୍ୟାପକ ହୋଇ ଆସିଲେ ଓ ଆହୁରି ମଧ୍ୟ ଆସିଲେ ତରୁଣ ଅଧ୍ୟାପକ ଯୋସେଫ ତୁଚି । ସଙ୍ଗରେ ଅନେକଗୁଡ଼ିଏ ମୂଲ୍ୟବାନ ଇଟାଲୀୟ ଗ୍ରନ୍ଥ ଆଣିଥିଲେ—ବହିଗୁଡ଼ିକ ମୁସୋଲିନୀଙ୍କର ଦାନ । ତୁଚିଙ୍କର ଦରମା ଇଟାଲୀ ସରକାର ବହନ କଲେ ।

ଇଟାଲୀରେ ମୁସୋଲିନୀ ସର୍ବୋଚ୍ଚ କର୍ତ୍ତା । ଗତବର୍ଷରେ ଦେଶର ବିଶେଷ ଉନ୍ନତି କରିଥାନ୍ତି ସତ୍ୟ, କିନ୍ତୁ ଆପଣା ଶକ୍ତି ଅକ୍ଷୁଣ୍ଣ ରଖିବା ପାଇଁ ଓ ଏକଚ୍ଛତ୍ର ଶାସନ ବଳବତ୍ତର କରିବା ପାଇଁ ବହୁ କୁକର୍ମ ମଧ୍ୟ କରିଥିଲେ । ରାଜନୈତିକ ହତ୍ୟାକାଣ୍ଡର ଗୋପନ-ପ୍ରରୋଚକ ଭାବରେ ଆନ୍ତର୍ଜାତିକ ବଦନାମ ଅର୍ଜନ କରିଥାନ୍ତି । ତେଣୁ ଦେଶ ବିଦେଶର ସାଧୁ ବ୍ୟକ୍ତିଙ୍କର ପ୍ରଶଂସାପତ୍ର ଖୋଜୁଥିଲେ ।

ଫର୍ମିକି ବିଶ୍ୱଭାରତୀକୁ ନିମନ୍ତ୍ରିତ ହୋଇ ମୁସୋଲିନୀଙ୍କର ଭାରତ-ପ୍ରୀତି ପ୍ରଚାର ପାଇଁ ଆସିଲେ । କବି ଏହି ଗ୍ରନ୍ଥରାଶି ପାଇ ମୁସୋଲିନୀଙ୍କୁ ଧନ୍ୟବାଦ ଜଣାଇ ଟେଲିଗ୍ରାମ କଲେ । ସେତେବେଳେ ରବୀନ୍ଦ୍ରନାଥ ମୁସୋଲିନୀଙ୍କର କବି-ପ୍ରୀତି ଓ ଭାରତ-ପ୍ରୀତିର କାରଣ ବୁଝି ପାରି ନଥିଲେ । ଫର୍ମିକିଙ୍କର ଶାନ୍ତିନିକେତନ ଆସିବାର ତିନିଦିନ ପରେ ବଙ୍ଗଲାଟ ଲର୍ଡ଼ ଲିଟନ ଆସିଲେ; ସେ ସିଉଡ଼ି ଦରବାରକୁ ଯାଉଥିଲେ, ଯିବାବେଳେ ବାଟରେ କବିଙ୍କ ସହିତ ଦେଖାକରି ଗଲେ । ଏହି ଘଟଣା ଦେଖି ଜଣେ କି ପତ୍ର ପ୍ରେରକ ସମ୍ବାଦପତ୍ରରେ ଦୁଃଖପ୍ରକାଶ କରିଥିଲେ । ଏହି ଲାଟ-ସମାଗମ କବିଙ୍କର ଆକାଂକ୍ଷିତ ନଥିଲା, ଅଯାଚିତ ଥିଲା—ଏକଥା ହୁଏତ ସେ ଭାବି ନଥିଲେ ।

ଏହିବର୍ଷ (୧୯୨୫) ଡିସେମ୍ବର ମାସରେ କଲିକତାରେ ପ୍ରଥମ ଭାରତୀୟ ଦର୍ଶନ ସମ୍ମେଳନ ହେଲା—ସଭାପତି ରବୀନ୍ଦ୍ରନାଥ । ସେ ଦାର୍ଶନିକ ନୁହନ୍ତି, ଏକଥା ସର୍ବଜନବିଦିତ । ତାହା ସତ୍ତ୍ୱେ ବି ଦାର୍ଶନିକଗଣ କାହିଁକି ରବୀନ୍ଦ୍ରନାଥଙ୍କୁ ଏହି ପଦପାଇଁ ମନୋନୀତ କରିଥିଲେ ତା'ର କାରଣ ଅଛି । କେତେକ ବର୍ଷ ଆଗରୁ ଦର୍ଶନ ଶାସ୍ତ୍ରର ତରୁଣ ଅଧ୍ୟାପକ ରାଧାକୃଷ୍ଣନ ରବୀନ୍ଦ୍ରନାଥଙ୍କ ସମ୍ପର୍କରେ ଖଣ୍ଡିଏ ବହି ଲେଖିଥିଲେ ଓ ତା'ର ନାମ ଦେଇଥିଲେ The Philosophy of Rabindranath Tagore—ଅର୍ଥାତ୍ ଧୀମାନ୍ ଅଧ୍ୟାପକ ସ୍ୱୀକାର କରିଥିଲେ ଯେ ରବୀନ୍ଦ୍ର-ନାଥଙ୍କର ନିଜର ଏକ ଦର୍ଶନ ଅଛି । ବୋଧହୁଏ ଏଇଥିପାଇଁ

କବିଙ୍କୁ ଦର୍ଶନ ସମ୍ମିଳନୀରେ ସଭାପତି ହେବାପାଇଁ (୧୯୨୫ ଡିସେମ୍ବର ୧୯) ଡାକରା ପଡ଼ିଲା ।

(୧୦୩)

ଲକ୍ଷ୍ନୌରୁ କବିଙ୍କୁ ନିମନ୍ତ୍ରଣ ଆସିଲା; ସେଠାରେ ନିଖିଳ ଭାରତ ସଂଗୀତ ସମ୍ମିଳନୀ ହେଉଥାଏ । ଛତ୍ରମଞ୍ଜିଲୀର ନବାବୀ ଅମଳର ପ୍ରାସାଦରେ ରହିଲେ । ସେଠାରେ ଖବର ପାଇଲେ ଯେ ଶାନ୍ତି-ନିକେତନରେ ତାଙ୍କର ବଡ଼ଭାଇ ଦ୍ୱିଜେନ୍ଦ୍ରନାଥଙ୍କର ମୃତ୍ୟୁ ହୋଇଛି (୧୯୨୬ ଜାନୁୟାରୀ ୧୮) । ଏହି ସମ୍ବାଦ ପାଇ କବିଙ୍କୁ ଶୀଘ୍ର ଫେରି ଆସିବାକୁ ପଡ଼ିଲା । ଦ୍ୱିଜେନ୍ଦ୍ରନାଥଙ୍କର ଜ୍ୟେଷ୍ଠପୁତ୍ର ଦ୍ୱୀପେନ୍ଦ୍ର-ନାଥଙ୍କର କେତେକବର୍ଷ ଆଗରୁ ମୃତ୍ୟୁ ହୋଇଥିଲା । ତେଣୁ ସାଂସାରିକ ଓ ସାମାଜିକ ଅନେକ ବିଷୟରେ କବିଙ୍କୁ ସୁବ୍ୟବସ୍ଥା କରିବାକୁ ହେବ ।

ଏହାମଧ୍ୟରେ ଢାକା ବିଶ୍ୱବିଦ୍ୟାଳୟରୁ କବିଙ୍କୁ ନିମନ୍ତ୍ରଣ ଆସିଲା; ଏଲ୍ମର୍ଷ୍ଟ ଓ ଟୁଚି ମଧ୍ୟ ନିମନ୍ତ୍ରିତ ହୋଇଥିଲେ । କବିଙ୍କ ସଙ୍ଗରେ ଶାନ୍ତିନିକେତନର କେତେକ ଶିକ୍ଷକ ଗଲେ—କାରଣ କବି ଢାକାରୁ ପୂର୍ବବଙ୍ଗର କେତୋଟି ସ୍ଥାନ ବୁଲିବାର ଥାଏ । ଏହି ଭ୍ରମଣ ବ୍ୟବସ୍ଥା କରିବାକୁ ସେମାନେ ସଙ୍ଗରେ ଗଲେ । ଅନ୍ୟ କେତେକ ଶିକ୍ଷକ ଆଗରୁ ମଧ୍ୟ ଯାଇଥିଲେ ।

ଢାକାରେ କବି ନବାବ ବାହାଦୁରଙ୍କ ନୌକାଘରେ ରହିଲେ । ସେଠାରେ କବିଙ୍କର ଭାଷଣର ବିଷୟ ଥିଲା 'The Philosophy of Art' । ଢାକାରେ କବି ପ୍ରଚୁର ସମ୍ମାନ ପାଇଥିଲେ; ଖ୍ୟାତିଲାଭ ପରେ ପୂର୍ବବଙ୍ଗରେ ତାଙ୍କର ଏହି ପ୍ରଥମ ଓ ଶେଷ ପରିଭ୍ରମଣ ।

ଢ଼ାକାରେ ସାତଦିନ ରହି କବି ମୟମନସିଂହ ଗଲେ । ସେଠାରେ ପାଞ୍ଚଦିନ କଟାଇଲେ, ସଭା ସମିତିର ଅନ୍ତ ନାହିଁ ।

କୁମିଲ୍ଲା ଆସିଲେ । ସେତେବେଳେ ସେଠାରେ ଅଭୟ ଆଶ୍ରମର କର୍ମୀଗଣ ହିନ୍ଦୁ-ମୁସଲମାନ ନିର୍ବିଶେଷରେ ସମାଜସେବା କରି ସବୁ ସମ୍ପ୍ରଦାୟଙ୍କର ଶ୍ରଦ୍ଧା ଆକର୍ଷଣ କରିଥିଲେ । କବି ସେମାନଙ୍କର ଉତ୍ସବରେ ଯୋଗଦାନ କଲେ । ଅଭୟ ଆଶ୍ରମର ଅନ୍ୟତମ ପ୍ରଧାନ କର୍ମୀ ସୁରେଶଚନ୍ଦ୍ର ବନ୍ଦୋପାଧ୍ୟାୟ ସେତେବେଳେ ପୂର୍ବବଙ୍ଗର ସକଳ ଶ୍ରେଣୀର ଲୋକଙ୍କର ଶ୍ରଦ୍ଧାର ପାତ୍ର ।

ଅନେକଦିନ ରହିବା ପରେ କୁମିଲ୍ଲାରୁ ଅଗରତଲା ଆସିଲେ । କିଶୋର ସାହିତ୍ୟ ସମାଜ ତରଫରୁ କବି-ସମ୍ବର୍ଦ୍ଧନା ହୋଇଥିଲା । ଏଥର କବି ମଣିପୁରୀ ନୃତ୍ୟ ଦେଖିବାର ବିଶେଷ ସୁବିଧା ପାଇଥିଲେ । କବି ମଣିପୁରୀ ପୁରୁଷଙ୍କର ନୃତ୍ୟ ଦେଖି ମୁଗ୍ଧ ହୋଇ ଜଣେ ଖ୍ୟାତନାମା ନୃତ୍ୟଶିଳ୍ପୀଙ୍କୁ ସଙ୍ଗରେ ନେଇ ଫେରିଲେ । ସେହି ଦିନରୁ ଶାନ୍ତିନିକେତନରେ ମଣିପୁରୀ ନୃତ୍ୟ-ଶିକ୍ଷା ଆରମ୍ଭ ହେଲା । ଶାନ୍ତିନିକେତନ ଛାତ୍ରଛାତ୍ରୀଙ୍କ ଜରିଆରେ ଏହି ନୃତ୍ୟକଳା ଭାରତର ନାନା ସ୍ଥାନରେ ବ୍ୟାପୀ ଯାଇଛି ।

ପୂର୍ବବଙ୍ଗ ଭ୍ରମଣ ଶେଷକରି କବି କଲିକତା ଫେରିଲେ ୧୯୨୬ ମସିହା ମାର୍ଚ୍ଚ ମାସର ଆରମ୍ଭରେ । ଏଥର ଭ୍ରମଣ ଶେଷ ଆଡ଼କୁ କବିଙ୍କ ଅନ୍ତରରେ ସଙ୍ଗୀତର ଅପୂର୍ବ ପ୍ରେରଣା । କବି-ଜୀବନରେ ସଙ୍ଗୀତର ଧାରା ସର୍ବଦା ପ୍ରବାହିତ, କେତେବେଳେ ସ୍ରୋତସ୍ୱିନୀର ପ୍ଳାବନ ତ କେତେବେଳେ ଅନ୍ତଃସଲିଳା ଫଲ୍‌ଗୁ ।

(୧୦୪)

ପୂର୍ବବଙ୍ଗ ଭ୍ରମଣ ଶେଷ କରି କବି କଲିକତା ଫେରିଲେ । ଦେଶର ରାଜନୈତିକ ଅବସ୍ଥା କ୍ରମେ ମନ୍ଦ ଆଡ଼କୁ ଗତି କରୁଛି । ବେଶ୍ ବୁଝାଯାଉଛି ଯେ, ଖିଲାଫତ୍-ଆଶ୍ରିତ ହିନ୍ଦୁ-ମୁସଲମାନ ବନ୍ଧୁତ୍ୱ ରହିପାରିବ ନାହିଁ । ହଠାତ୍ କଲିକତାରେ ହିନ୍ଦୁ-ମୁସଲମାନ ଦଙ୍ଗା ଆରମ୍ଭ ହୋଇଗଲା—ଚୈତ୍ର ମାସର ପ୍ରଚଣ୍ଡ

ଗରମ (୧୩୩୨) । ମସଜିଦ ସାମନାରେ ବାଜା ବଜାଇବା ଯୋଗୁ ଆର୍ଯ୍ୟସମାଜ ସଙ୍ଗେ କଳହର ସୂତ୍ରପାତ—ତାହାର ପରିଣତି ହେଲା ସାଧାରଣ ହିନ୍ଦୁ-ମୁସଲମାନଙ୍କ ଦଙ୍ଗା ହେଙ୍ଗାମ । ଇସଲାମ ଧର୍ମର ବିଶୁଦ୍ଧତା ରକ୍ଷା କରିବାକୁ ହେଲେ ମସଜିଦ ସାମନାରେ ବା ନିକଟରେ ଗାଇବା ବଜାଇବା ବନ୍ଦକରିବା ନିତାନ୍ତ ଦରକାର; ହିନ୍ଦୁଙ୍କ ପକ୍ଷରେ ଠିକ୍ ସେହି କାରଣରୁ ବାଜା ବଜାଇବା ଜରୁରି । ବିଦେଶୀ ସରକାର ଦୁଇପକ୍ଷର ବିବାଦ ଲଗାଇଦେଇ ଦୂରରୁ ଥାଇ ଦେଖୁଥାନ୍ତି ଓ କ୍ଲବ୍‌ରେ ବସି ଭାରତୀୟମାନଙ୍କର ସ୍ୱାଧୀନତା ସଂଗ୍ରାମର ପରିଣତି ନେଇ ହସୁଥାନ୍ତି ।

କବି ଯୋଡ଼ାସାଁକୋ ଘରେ ଥାନ୍ତି; ସ୍ୱଚକ୍ଷୁରେ ଦେଖିଛନ୍ତି ଯେ ଭୀତତ୍ରସ୍ତ ଦୀନଦରିଦ୍ର ମୁସଲମାନମାନେ ପ୍ରାଣଭୟରେ ତାଙ୍କ ଘରେ ଆଶ୍ରୟ ନେଉଥାନ୍ତି । କବି ଏସବୁ ଦେଖି ଶୁଣି ବିରକ୍ତହୋଇ ଖଣ୍ଡିଏ ପତ୍ରରେ ଲେଖିଛନ୍ତି, 'ଏହି ମୋହମୁଗ୍ଧ ଧର୍ମବିଶ୍ୱାସୀଙ୍କଠାରୁ ସିଧାସଳଖ ନାସ୍ତିକତା ଖୁବ୍ ଭଲ ।··· ଆଜି ମିଛ ଧର୍ମକୁ ପୋଡ଼ି ଜାଳି ଭାରତ ଯଦି ଖାଣ୍ଟି ଧର୍ମ, ଖାଣ୍ଟି ନାସ୍ତିକତା ହାସଲ କରେ, ତେବେ ଭାରତ ପ୍ରକୃତରେ ନବଜୀବନ ଲାଭ କରିପାରିବ ।' କିଛିଦିନ ପରେ ରବୀନ୍ଦ୍ରନାଥ 'ଧର୍ମଦ୍ରୋହ' ଶୀର୍ଷକ ଏକ କବିତା ଲେଖିଥିଲେ ।

ଶାନ୍ତିନିକେତନ ଫେରିଲେ । ବର୍ଷ ଶେଷ ଓ ନବବର୍ଷ (୧୩୩୩) ଉଦ୍‌ଯାପିତ ହେଲା । ଜନ୍ମୋତ୍ସବ ଉପଲକ୍ଷେ ଆଶ୍ରମ-ବାସୀମାନେ 'କଥା ଓ କାହାଣୀ'ର ପୂଜାରିଣୀ କବିତାଟିର ମୁକାଭିନୟ ବ୍ୟବସ୍ଥା କରିଛନ୍ତି ଜାଣି କବି ଏହାକୁ ଏକ ଶ୍ରେଷ୍ଠ ନାଟିକା ଆକାରରେ ଲେଖିଦେଲେ—'ନଟୀର ପୂଜା' । ଜନ୍ମଦିନ ସନ୍ଧ୍ୟାରେ ଅଭିନୟ ହେଲା । ଶ୍ରୀ ନନ୍ଦଲାଲ ବସୁଙ୍କର ବାଳିକା କନ୍ୟା ଗୌରୀ ନଟୀ ଭୂମିକାରେ ନୃତ୍ୟ କରିଥିଲେ । କେତେକ ମାସ ପରେ କଲିକତା ରଙ୍ଗମଞ୍ଚରେ 'ନଟୀର ପୂଜା'ର ପୁନରଭିନୟ ହେଲା । ଗୌରୀଙ୍କ ଅତୁଳନୀୟ ନୃତ୍ୟଭଙ୍ଗୀରେ କଲିକତାର ଦର୍ଶକ ମୁଗ୍ଧ ହୋଇଥିଲେ । ଘଟଣାଟି ବିଶେଷ ଭାବରେ ଉଲ୍ଲେଖ କରିବାର କାରଣ ହେଉଛି ଯେ ସେହି ସମୟଠାରୁ ଶିକ୍ଷିତ ସମାଜର

ଧାରଣା ହେଲ ଯେ ନୃତ୍ୟ ଭିତରେ ଉନ୍ନତ ଭାବପ୍ରକାଶ ଅସମ୍ଭବ ନୁହେଁ ଓ ନୃତ୍ୟ ପେଶାଦାର ବାଇଜୀମାନଙ୍କର ଏକଚାଟିଆ କଳା ନୁହେଁ । ଫଳରେ ବଙ୍ଗ ଦେଶରେ ଭଦ୍ରଘରର କୁମାରୀ କନ୍ୟାମାନଙ୍କ ମଧ୍ୟରେ ନୃତ୍ୟର ପ୍ରଚଳନ ହେଲା । ଆଜି ତାହା ସାରା ଦେଶରେ ବ୍ୟାପି ଯାଇଛି ।

ପୂର୍ବରୁ କୁହାଯାଇଛି ଯେ ପୂର୍ବବଙ୍ଗ ଭ୍ରମଣ ଶେଷ କରି କବି ସଙ୍ଗୀତ ଲେଖା ଆରମ୍ଭ କରିଥାନ୍ତି—ସେହି ଧାରାରେ 'ନଟୀର ପୂଜା'ର ସଙ୍ଗୀତଗୁଡ଼ିକ ରଚିତ । ଅନ୍ୟାନ୍ୟ ସଂଗୀତଗୁଡ଼ିକ 'ବୈକାଲୀ' ଶିରୋନାମାରେ 'ପ୍ରବାସୀ' ମାସିକ ପତ୍ରରେ (ଆଷାଢ଼-କାର୍ତ୍ତିକ ୧୩୩୩) ଧାରାବାହିକ ଭାବରେ ପ୍ରକାଶିତ ହୋଇଥିଲା ।

(୧୦୪)

ଜନ୍ମୋତ୍ସବ ପରେ କବି ପୁନରାୟ ୟୁରୋପ ଗଲେ । ଏଥର ଯାଉଥାନ୍ତି ଇଟାଲି । ଅଧ୍ୟାପକ ଫର୍ମିକି ସ୍ୱଦେଶକୁ ଫେରି ଯାଇ କବିଙ୍କୁ ନିମନ୍ତ୍ରଣ ପଠାଇଥିଲେ । କିନ୍ତୁ କବିଙ୍କର ଭାର ନେଇଥିଲେ ମୁସୋଲିନୀ । ଅର୍ଥାତ୍ ସରକାରୀ ନିମନ୍ତ୍ରଣ ମିଳିଥିଲା ବେସରକାରୀ ଲଫାପାରେ । କବିଙ୍କର ବିଶ୍ୱାସ ଯେ ଆମନ୍ତ୍ରଣ ଫର୍ମିକିଙ୍କର । ତାହାର ଅନ୍ତରାଳରେ ଯେଉଁ ଉଦ୍ଦେଶ୍ୟ ଥିଲା ତାହା ଦେଖିବି ଦେଖିଲେ ନାହିଁ—କିଛିଟା ଭ୍ରମଣ ନିଶାରେ, କିଛିଟା ଅନ୍ୟାନ୍ୟ କାରଣରୁ । ଇଟାଲି ଯିବା ସ୍ଥିର ହେଲା । କବି ମୁସୋଲିନୀଙ୍କର ନିମନ୍ତ୍ରଣ ଗ୍ରହଣ କରିବା ଦେଖି ଅନେକ ବିସ୍ମିତ ଓ ବିରକ୍ତ ହୋଇଥିଲେ । ସମ୍ବାଦ-ପତ୍ରରେ ମଧ୍ୟ ସମାଲୋଚନା କରିଥିଲେ ।

ବମ୍ବେରୁ ଇଟାଲି ଜାହାଜରେ କବିଙ୍କ ପାଇଁ ଛଅଟି କ୍ୟାବିନର ବ୍ୟବସ୍ଥା ହୋଇଥିଲା । ସଙ୍ଗରେ ଗଲେ—ସସ୍ତ୍ରୀକ ରଥୀନ୍ଦ୍ରନାଥ, ଗୌରଗୋପାଳ ଘୋଷ ଓ ସସ୍ତ୍ରୀକ ପ୍ରଶାନ୍ତଚନ୍ଦ୍ର ମହଲାନବୀଶ । ଏଥର ୟୁରୋପ ଭ୍ରମଣରେ ପ୍ରଶାନ୍ତଚନ୍ଦ୍ର ଓ ତାଙ୍କର ପତ୍ନୀ ରାଣୀଦେବୀ (ନିର୍ମଳ କୁମାରୀ) କବିଙ୍କର ସର୍ବଦା ସାଥୀ ଥିଲେ ।

କବି ନେପଲ୍‌ସରେ ପହଞ୍ଚିବା ପରେ ସ୍ପେଶାଲ ଟ୍ରେନ୍‌ଯୋଗେ ତାଙ୍କୁ ରୋମ୍ ନିଆଗଲା; ରୋମର ସେଖ ହୋଟେଲରେ କବି ସରକାରୀ ଅତିଥି ହେଲେ । ତାଙ୍କର ସ୍ଥାନୀୟ ଅଭିଭାବକ ଥିଲେ ଫର୍ମିକ— କାର୍ଯ୍ୟ ଥିଲା ଫାସିଷ୍ଟ-ବିରୋଧୀ ଲୋକମାନଙ୍କୁ କବିଙ୍କ ନିକଟକୁ ଯିବାକୁ ନ ଦେବା ।

ରୋମରେ ପହଞ୍ଚିବା ମାତ୍ରେ କବିଙ୍କର ମଧୁମୟ ବାଣୀ ଶୁଣିବା ପାଇଁ ସାମ୍ବାଦିକମାନେ ମଧୁମାଛି ପରି ଘେରିଗଲେ । କବି କହୁଥିଲେ ଯେ ମୁଁ ବର୍ତ୍ତମାନ ବିଶ୍ୱାସ କରି ପାରୁନାହିଁ ଯେ ଯେଉଁ ଦେଶକୁ ଶେଲି, କୀଟସ୍, ବାଇରନ୍, ଗେଟେ, ବ୍ରାଉନିଂଙ୍କର କାବ୍ୟ ମଧ୍ୟ ଦେଇ ଦେଖାଯାଏ, ସେହି ଦେଶକୁ ଆସିଛି ।

ମୁସୋଲିନୀଙ୍କ ସଙ୍ଗେ ସାକ୍ଷାତ ଓ କଥାବାର୍ତ୍ତା କରି, ରୋମର ନାନାସ୍ଥାନ ଦେଖି ଫାସିଷ୍ଟ ମତବାଦର ଯେଉଁ ରୂପ କବିଙ୍କ ନିକଟରେ ପ୍ରକାଶ ପାଇଲା, ସେ ମଧ୍ୟରେ "ସେପରି କିଛି ନିନ୍ଦନୀୟ ଦେଖିବାକୁ ପାଇଲେ ନାହିଁ । କର୍ମ କ୍ଷେତ୍ରରେ କଲ୍ୟାଣେଚ୍ଛୁ ସ୍ୱେଚ୍ଛାଚାରୀ ଓ ଦଳା-ଦଳି ଭିତରେ ଘୂର୍ଣ୍ଣିମାନ ଲୋକତନ୍ତ୍ର—ଉଭୟ ମଧ୍ୟରେ କେଉଁ ଜିନିଷଟି ଭଲ ଓ କାମ୍ୟ ସେ ବିଷୟରେ କବି ମନ ସ୍ଥିର କରି ପାରିଲେ ନାହିଁ । ତଥାପି ରୋମରେ ଯାହା ଦେଖିଲେ ବା ଫର୍ମିକ ସାହେବ ତାଙ୍କୁ ଯାହା ଦେଖାଇଲେ ଓ ବୁଝାଇଲେ, ସେଥିରୁ ଏହି ସିଦ୍ଧାନ୍ତ ହେଲା ଯେ ଶୃଙ୍ଖଳିତ ଇଟାଲୀୟମାନଙ୍କ ଉପରେ କୋଠର ଶାସନ ଚାଲିଛି । ସେଥିରେ ସେମାନେ ସୁଖୀ କି ଦୁଃଖୀ ତାହା ବୁଝିବାର ଉପାୟ ନାହିଁ । କାରଣ ଦେଶର ଜୁଲମ୍ ଅନେକ ବଢ଼ିଛି— ତତ୍ପରତା ବି ବଢ଼ିଛି । ସାମ୍ବାଦିକମାନଙ୍କ ଆଗରେ ଅସ୍ପଷ୍ଟ ଭାବରେ ଦୁଇଚାରିପଦ କହିଲେ—ତାହା ସରକାରୀ ଓ ବେସରକାରୀ କାଗଜରେ ଅତିରଞ୍ଜିତ କରି କବିଙ୍କର ମୁସୋଲିନୀ-ପ୍ରଶସ୍ତି ରୂପେ ପ୍ରଚାରିତ ହେଲା । ସମ୍ବାଦ ପତ୍ରରେ ଇଟାଲୀୟ ଭାଷାରେ କ'ଣ ପ୍ରକାଶ ହୋଇଛି ଜାଣିବାର ଉପାୟ ନଥିଲା; ସାଥୀମାନଙ୍କ ମଧ୍ୟରେ କେହି ସେ ଭାଷା ଜାଣି ନଥିଲେ ।

ରୋମରେ କବିଙ୍କର ନାନା ଭାବରେ ସମ୍ବର୍ଦ୍ଧନା ହେଲା; ଗୋଟିଏ ବକ୍ତୃତା-ସଭାରେ ମୁସୋଲିନୀ ଓ ତାଙ୍କର ସହକର୍ମୀମାନେ

ଶ୍ରୋତାରୂପେ ଉପସ୍ଥିତ ଥିଲେ । ଅବଶେଷରେ ପ୍ରାଚୀନ ରୋମାନ ସମ୍ରାଟଙ୍କ ସମୟରେ ନିର୍ମିତ କଲୋସିୟମ୍‌ରେ ପଚାଶ ଷାଠିଏ ହଜାର ଲୋକ ଜମା ହୋଇ କବିଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ ।

ରୋମରେ ଚଉଦ ଦିନ କଟିଲା । ମଝିରେ ଦିନେ କବିଙ୍କ ବିଶେଷ ଅନୁରୋଧରେ ଅଧ୍ୟାପକ ବେନେଡେଟୋ କ୍ରୋଚେଙ୍କୁ ନେପଲ୍‌ସରୁ ଡକାଇ ଆଣି କବିଙ୍କ ସହିତ ସାକ୍ଷାତ କରାଇବାର ବ୍ୟବସ୍ଥା ହୋଇଥିଲା । କ୍ରୋଚେ ଫାସିଷ୍ଟ ନୀତିର ତୀବ୍ର ସମାଲୋଚକ ଥିବାରୁ ତାଙ୍କୁ ଅଧ୍ୟାପନା କାର୍ଯ୍ୟରୁ ବିଚ୍ୟୁତ କରି ନେପଲ୍‌ସରେ ନଜରବନ୍ଦୀ ଭାବରେ ରଖାଯାଇଥିଲା । କ୍ରୋଚେଙ୍କ ମତ ସହିତ ରବୀନ୍ଦ୍ରନାଥଙ୍କ ମତର ଅନେକ ସାମ୍ୟ ଦେଖାଯାଏ—ତାଙ୍କର ନନ୍ଦନତତ୍ତ୍ୱ ଓ ଐତିହାସିକ ବିଗ୍ରହତତ୍ତ୍ୱ କବି ଭଲଭାବରେ ଜାଣି-ଥିଲେ ।

ରୋମ ପରେ ଫ୍ଲରେନ୍‌ସ ଓ ଟୁରିନ ହୋଇ କବି ସୁଇସ-ମାନଙ୍କର ଦେଶକୁ ଆସିଲେ; ସେଠାରେ ଭିଲେନୁଭ୍ ପଲ୍ଲୀରେ ରୋମାଁ ରୋଲାଁ ବାସ କରୁଥାନ୍ତି । ଭିଲେନୁଭ୍ ଗ୍ରାମ ହେଲେ ବି ସ୍ଥାନଟି ରସିକମାନଙ୍କର ତୀର୍ଥକ୍ଷେତ୍ର । କବି ଏକ ଭଲ ହୋଟେଲରେ ରହିଲେ । କବି ଯେଉଁ କୋଠରୀରେ ରହିଥିଲେ, ସେ ଘରେ ଭିକ୍ଟୋର ହ୍ୟୁଗୋ ବହୁଦିନ ବାସ କରିଥିଲେ ବୋଲି ଶୁଣାଯାଏ । ରୋମାଁ ରୋଲାଁଙ୍କର ଘର ନିକଟରେ । ତାଙ୍କ ସାନ୍ନିଧ୍ୟ ଫଳରେ ସ୍ଥାନଟି କବିଙ୍କ ପକ୍ଷରେ ଆହୁରି ରମଣୀୟ ମନେ ହେଲା । ଏଠାରେ କବି ବାର ଦିନ ରହିଥିଲେ ।

ଇଟାଲୀୟ କାଗଜପତ୍ରରେ ରବୀନ୍ଦ୍ରନାଥଙ୍କର ଫାସିଷ୍ଟପ୍ରୀତି ଓ ମୁସୋଲିନୀ-ପ୍ରଶସ୍ତି ପାଠକରି ରୋମାଁ ରୋଲାଁ ଆଶ୍ଚର୍ଯ୍ୟ ହୋଇ-ଯାଇଥିଲେ । ରବୀନ୍ଦ୍ରନାଥଙ୍କ ପକ୍ଷରେ ଇଟାଲୀର ଆଭ୍ୟନ୍ତରୀଣ ସମ୍ବାଦ ରଖିବା ସମ୍ଭବ ନୁହେଁ ବୁଝି ରୋଲାଁ କବିଙ୍କୁ ତାହାର ଅସଲ ରୂପ ବୁଝାଇ ଦେଇଥିଲେ ଓ ଯେଉଁସବୁ ପଳାତକ ଅଧ୍ୟାପକ ଓ ମନୀଷୀ ଦେଶତ୍ୟାଗୀ ହୋଇଥିଲେ ସେମାନଙ୍କ ମଧ୍ୟରୁ କେତେକଙ୍କ ସଙ୍ଗରେ ପରିଚୟ କରାଇ ଦେଇଥିଲେ । କବିଙ୍କର ମୋହ ଛୁଟିଲା—କିନ୍ତୁ ଡେରିରେ ।

କବିଙ୍କର ମନ ମୋହାଚ୍ଛନ୍ନ ହେବାକୁ ଯେତେ ସମୟ ଲାଗେ, ମୋହମୁକ୍ତ ହେବାକୁ ତା'ଠାରୁ ବେଶୀ ସମୟ ଲାଗେନାହିଁ । ଏଣ୍ଡ୍ରୁଜଙ୍କୁ ଖଣ୍ଡିଏ ପତ୍ରରେ ଇଟାଲୀ ଓ ମୁସୋଲିନୀଙ୍କ ସମ୍ପର୍କରେ ତାଙ୍କର ମତ ଜଣାଇଥିଲେ—ପତ୍ର ଖଣ୍ଡିକ ମାଞ୍ଚେଷ୍ଟର ଗାର୍ଡ଼ିୟନରେ ଛପା ହୋଇଥିଲା । ସେହି ପତ୍ର ପାଠକରି ମୁସୋଲିନୀ ଓ ତାଙ୍କର ଉପଗ୍ରହମାନେ ରବୀନ୍ଦ୍ରନାଥଙ୍କ ଉପରେ କ୍ଷିପ୍ତ ହୋଇଉଠିଲେ – ଗାଳିବର୍ଷଣ ଚାଲିଲା । ସୌଭାଗ୍ୟର କଥା ଯେ ଭିଲେନ୍ୟୁଭ୍ ପଲ୍ଲୀରେ ରୋମାଁ ରୋଲାଁଙ୍କ ସହିତ ସାକ୍ଷାତ ଫଳରେ କବି ରୋଲାଁଙ୍କର ମତାମତ ଜାଣିବାର ଅବକାଶ ପାଇଥିଲେ । ନଚେତ୍ ୟୁରୋପୀୟ ମନୀଷୀ ସମାଜରେ କବି ବଦନାମ୍ ଅର୍ଜନ କରିଥାନ୍ତେ ।

(୧୦୭)

ଭିଲେନ୍ୟୁଭ୍‌ର ମାନସ-ତୀର୍ଥରେ କବିଙ୍କ ସଙ୍ଗରେ ଫରାସୀ, ଜର୍ମାନୀ ପ୍ରଭୃତି ଅନେକ ଦେଶର ମନୀଷୀମାନଙ୍କର ଦେଖା ହେଲା । ମନ ଖୋଲ୍ ପ୍ରସଙ୍ଗ—କିଛିଦିନ ପୂର୍ବରୁ ଢେର୍ ଅସ୍ୱସ୍ତି ଭିତରେ ଦିନ କାଟୁଥିଲେ ।

ଜୁରିଚ୍, ଭିଏନା ଓ ପ୍ୟାରିସ ଦେଇ ଶେଷରେ ଇଂଲଣ୍ଡ ଆସିଲେ; ଲଣ୍ଡନରୁ ସିଧା ମଟର ଯୋଗେ ଡେଭନସାୟାରର ଟଟ୍‌ନିସ ଗ୍ରାମକୁ ଚାଲିଗଲେ । ସେଠାରେ ଗତବର୍ଷ ଏଲମହାର୍ଷ୍ଟ ଗୋଟିଏ ବିଦ୍ୟାଳୟ ଆରମ୍ଭ କରିଥାନ୍ତି; ପ୍ରତିଷ୍ଠାନର ନାମ ଦେଇଥାନ୍ତି ଡାର୍ଟିଂଟନ ହଲ—ଶାନ୍ତିନିକେତନ ଓ ଶ୍ରୀନିକେତନର ଆଦର୍ଶରେ ନୂତନ ଧରଣର ଶିକ୍ଷା ବ୍ୟବସ୍ଥା ହେଉଥାଏ । ଏଲମହାର୍ଷ୍ଟ ତାଙ୍କର ଆମେରିକାନ ବାନ୍ଧବୀଙ୍କୁ ବିବାହ କରି ବିପୁଳ ଧନର ଅଧିକାରୀ ହୋଇଥାନ୍ତି; ସେହି ଧନ ଖର୍ଚ୍ଚ କରି ବହୁ ହିତକର କାର୍ଯ୍ୟ କରୁଥାନ୍ତି ।

ଇଂଲଣ୍ଡରୁ କବି ମଧ୍ୟ-ୟୁରୋପ ଗଲେ—ଏ ଅଞ୍ଚଳକୁ କବିଙ୍କର ଏହା ହେଉଛି ଦ୍ୱିତୀୟ ଭ୍ରମଣ । ସଙ୍ଗରେ ପ୍ରଶାନ୍ତ ଚନ୍ଦ୍ର ଓ ତାଙ୍କର

ସ୍ତ୍ରୀ ରାଣୀ ଦେବୀ । ରବୀନ୍ଦ୍ରନାଥ ଅସୁସ୍ଥ ଥିବାରୁ ବୁଲି ବୁଲି କରିପାରୁ ନଥାନ୍ତି ।

ନରଓ୍ୱେ ଆସିଲେ । ଗତଥର ସ୍ୱିଡେନ ଆସିଥିଲେ, ନରଓ୍ୱେ ଯାଇପାରି ନଥିଲେ । ଏ ମଧ୍ୟରେ ଅଧ୍ୟାପକ ଷ୍ଟେନ କୋନୋଙ୍କ ଜରିଆରେ ନରଓ୍ୱେ ସହିତ ଘନିଷ୍ଠତା ହୋଇଛି । ସେ ବିଶ୍ୱଭାରତୀର ତୃତୀୟ ବିଦେଶୀ ଅଧ୍ୟାପକ—୧୯୧୪-୧୫ ଖ୍ରୀ: ଅ:ରେ ଶାନ୍ତିନିକେତନରେ ଥିଲେ । କବିଙ୍କୁ ନିଜ ଦେଶକୁ ନେବାକୁ ତାଙ୍କର ଖୁବ୍ ଆଗ୍ରହ । କବିଙ୍କର ନିଜର ଆଗ୍ରହ ବି କିଛି କମ୍ ନୁହେଁ । କାରଣ ନରଓ୍ୱେର ସାହିତ୍ୟିକ ଇବସନ୍‌ଙ୍କର ନାଟକ ତାଙ୍କର ଖୁବ୍ ପ୍ରିୟ ଥିଲା ଓ କବିଙ୍କ ଉପରେ ଇବସନ୍‌ଙ୍କର ପ୍ରଭାବ ପଡ଼ିଥିଲା ବୋଲି ବିଶ୍ୱାସ କରାଯାଏ । ଏଥର ସେହି ଇବସନ୍‌ଙ୍କର ଦେଶ ଦେଖାହେଲା । ଏହାପରେ ସୁଇଡେନ ଓ ଡେନମାର୍କରେ କିଛିଦିନ ରହି କବି ମଧ୍ୟ-ୟୁରୋପ ଭ୍ରମଣରେ ଗଲେ । ଏହି ନିରନ୍ତର ଭ୍ରମଣ ଫଳରେ ମନ ମଧ୍ୟରେ ସଙ୍ଗୀତ ଲେଖାର ପ୍ରେରଣା ଆସିଲା । ପୂର୍ବବଙ୍ଗ ଭ୍ରମଣ ସମୟରୁ ଯାହା ଆରମ୍ଭ ହୋଇଥିଲା, ଗୁରି ମାସ ପରେ ହଠାତ୍ ତା'ର ସ୍ଫୁରଣ । ବାଲ୍‌ଟିକ୍ ସାଗର ପାରିହେବା ସମୟରେ ସଙ୍ଗୀତ ଲେଖୁଥିଲେ । ସେ ଗୀତ ପଦ୍ମା ତୀରରେ କମ୍ବା ଶାନ୍ତିନିକେତନ ପଡ଼ିଆରେ ଲେଖା ଯାଇ ପାରିଥାନ୍ତା; ବୈଦେଶିକ ପରିବେଶର କୌଣସି ପ୍ରଭାବ ସେଥିରେ ନାହିଁ । ଏହାପରେ ବହୁଦିନ ଧରି ସଙ୍ଗୀତ ରଚନା ଗ୍ଲିଲା ।

ହାମ୍‌ବର୍ଗ, ବର୍ଲିନ୍, ମ୍ୟୁନିଚ୍, ନ୍ୟୁରନ୍‌ବର୍ଗ, ଡ୍ୟୁସେଲ୍‌ଡରଫ, ଷ୍ଟୁଟ୍‌ଗାର୍ଟ ପ୍ରଭୃତି ବୁଲିଲେ । ସବୁସ୍ଥାନରେ ବକ୍ତୃତା ଦେଉଥାନ୍ତି । ଅସଂଖ୍ୟ ଲୋକଙ୍କ ସହିତ ପରିଚୟ—ତାରି ମଝିରେ ସମୟ ପାଇଲେ ସଙ୍ଗୀତ ରଚନା କରନ୍ତି । କବି ମନର ଏହାହିଁ ଅବ୍ୟକ୍ତ ଆନନ୍ଦ ।

ଏ ମଧ୍ୟରେ ସାଂସାରିକ ଦୁର୍ଭାବନା ନଥାଏ । ରଥୀନ୍ଦ୍ରନାଥ ଅସୁସ୍ଥ ହୋଇ ବର୍ଲିନର ନର୍ସିଂହୋମରେ ଥାନ୍ତି; ସେ କାହାକୁ ନ ଜଣାଇ ଏକ କଠିନ ଅସ୍ତ୍ରୋପଚାର କରାଇଥାନ୍ତି । କବି ତାଙ୍କୁ ଦେଖିବାକୁ ଗଲେ, ରଥୀନ୍ଦ୍ରନାଥଙ୍କୁ ସୁସ୍ଥ ଦେଖି ଚେକୋସ୍ଲୋଭାକିୟା ଗ୍ଲିଗଲେ । ରାଜଧାନୀ ପାଖରେ ଚାରିଦିନ ରହିଲେ; ସେଠାରେ

ତାଙ୍କର ସାଥୀ ଥିଲେ ବିଶ୍ୱଭାରତୀର ପ୍ରଧାନ ଅଧ୍ୟାପକ ଓ୍ୱିଣ୍ଟରନିଜ୍ ଓ ଅଧ୍ୟାପକ ଲେସନୀ ।

ହୃତସର୍ବସ୍ୱ ଅଷ୍ଟ୍ରିୟାର ରାଜଧାନୀ ଭିଏନା ଦେଇ ଯେତେବେଳେ ହଙ୍ଗେରୀର ରାଜଧାନୀ ବୁଦାପେଷ୍ଟରେ ପହଞ୍ଚିଲେ ସେତେବେଳେ କବିଙ୍କର ଶରୀର ସହ୍ୟଶକ୍ତିର ଶେଷ ସୀମାରେ । ଏ ବୟସରେ ଏତେ ବୁଲିବା ସହ୍ୟ ହେଉଛି କେଉଁଠି; ତଥାପି ବକ୍ତୃତା ଦେଲେ । ଶେଷରେ ଡାକ୍ତରମାନଙ୍କ ପରାମର୍ଶରେ ବାଧ୍ୟହୋଇ ବାଲାଟନ୍ ହ୍ରଦ କୂଳରେ ଏକ ସ୍ୱାସ୍ଥ୍ୟ ନିବାସରେ ଆଶ୍ରୟ ନେଲେ । ଏଠାରେ ଏହି ଯାତ୍ରା ସମୟର ଶେଷ ସଂଗୀତ ଗୁଡ଼ିକ ଲେଖିଥିଲେ । ସେଠାରେ କବି ଗୋଟିଏ ବୃକ୍ଷ ରୋପଣ କରିଥିଲେ; ଲୋକଙ୍କ ଯତ୍ନ ଫଳରେ ତାହା ବର୍ତ୍ତମାନ ମଧ୍ୟ ଅଛି । ବାଲାଟନ୍‌ରେ ପହଞ୍ଚି ହାତରେ ସେପରି କାମ ନାହିଁ । ପ୍ରଶାନ୍ତଚନ୍ଦ୍ରଙ୍କ ତରଫରୁ ହୋଇଥିବା ବ୍ୟବସ୍ଥାନୁଯାୟୀ 'ଲେଖନ' ଓ 'ବୈକାଳୀ' ନିଜର ହସ୍ତଲିପିରେ ଛାପିବା ପାଇଁ ଲେଖିଥିଲେ—ପ୍ରଥମ ବହିଟି କବିଙ୍କର ଜୀବିତକାଳରେ ପ୍ରସ୍ତୁତ ହୋଇଥିଲା, ଦ୍ୱିତୀୟଟି (ପ୍ରବାସୀରେ ପ୍ରକାଶିତ 'ବୈକାଳୀ' ଠାରୁ ପୃଥକ ନୁହେଁ) କବିଙ୍କର ଦେହ ତ୍ୟାଗର ବହୁବର୍ଷ ପରେ ଖୁବ୍ କମ୍ ସଂଖ୍ୟାରେ ମିଳୁଥିଲା ।

ଶରୀର ସାମାନ୍ୟ ଭଲ ହେବା ସଙ୍ଗେ ସଙ୍ଗେ ଯୁଗୋସ୍ଲୋଭିଆ ଗଲେ । ବେଲଗ୍ରେଡ୍ ବିଶ୍ୱବିଦ୍ୟାଳୟରେ ଦୁଇଦିନ ବକ୍ତୃତା ଦେଲେ । ଏହାପରେ ବୁଲଗେରିଆର ସୋଫିୟାରେ ବକ୍ତୃତା ଦେଇ ରୁମାନିଆର ବୁଖାରେଷ୍ଟରେ ପହଞ୍ଚିଲେ । ରାଜା, ରାଜପରିବାର ଓ ସାହିତ୍ୟିକ ମହଲର ଅପ୍ୟାୟନ ଓ ଭୋଜସଭାରେ ପାଞ୍ଚଦିନ କଟାଇଲେ । ବିରାମ ନାହିଁ କି ବିଶ୍ରାମ ନାହିଁ । ବୁଖାରେଷ୍ଟରୁ ଆସି କୃଷ୍ଣ ସାଗରର ଏକ ବନ୍ଦରରେ ଜାହାଜ ଚଢ଼ିଲେ । ଇସ୍ତାମ୍ବୁଲ ଘାଟରେ ପହଞ୍ଚି ଜାହାଜ ଦୁଇଦିନ ରହିଲା । ବିଶ୍ୱବିଦ୍ୟାଳୟ ଓ ଅନ୍ୟାନ୍ୟ ପ୍ରତିଷ୍ଠାନରୁ ଆମନ୍ତ୍ରଣ ଆସିଲା । କିନ୍ତୁ ଶରୀର ଏତେ କ୍ଳାନ୍ତ ଯେ ଜାହାଜ ଛାଡ଼ି ଯିବାକୁ ଇଚ୍ଛା ହେଲାନାହିଁ ।

ଗ୍ରୀସର ପିରସ୍ ବନ୍ଦରରେ ଓହ୍ଲାଇ ଏଥେନ୍ସ ଉପରେ ଥରେ ଆଖି ବୁଲାଇ ଅଣିଲେ; ଗ୍ରୀକ୍ ସରକାର କବିଙ୍କୁ ରାଜକୀୟ ଉପାଧିରେ ସମ୍ମାନିତ କରିଥିଲେ ।

ଏଥେନ୍ସଠାରେ ମହଲାନବୀଶ-ଦମ୍ପତି କବିଙ୍କ ନିକଟରୁ ବିଦାୟ ନେଲେ । ସେମାନେ ୟୁରୋପର ଅନ୍ୟାନ୍ୟ ଅଞ୍ଚଳ ବୁଲିବାର ଥାଏ । କବି ଫେରିବା ବାଟରେ ମିଶରର ବନ୍ଦର ଆଲେକଜାଣ୍ଡ୍ରିୟାରେ ଓହ୍ଲାଇ ସେଠାରୁ କାଏରୋ ଗଲେ ।

କାଏରୋର ସମ୍ବର୍ଦ୍ଧନା ସଭାରେ ଏକ ମିଶରୀୟ-ସଙ୍ଗୀତ-ବୈଠକ ଅନୁଷ୍ଠିତ ହେଲା । କବିଙ୍କର ମନେ ହେଲା ଯେ ଆରବ-ପାରସ୍ୟ ଗାନର ରାଗ ରାଗିଣୀରେ ଏକ କ୍ଲାନ୍ତିମୂର୍ତ୍ତି ଅଛି । ପୂର୍ବ ଏସିଆରେ ଭାରତର ଧର୍ମ, ସାହିତ୍ୟ ଓ ସଂସ୍କୃତିର ଅନେକ କିଛି ପରିପ୍ରସ୍ଥ ଲାଭ କରିଥିଲା । କିନ୍ତୁ ସେଠାରୁ ଭାରତକୁ ଏପରି କିଛି ମିଳିନ ଯାହା ସ୍ମରଣୀୟ । ପଶ୍ଚିମ ଏସିଆରୁ ଭାରତ ଯେ କେବଳ ଧର୍ମ ପାଇଥିଲା ତା ନୁହେଁ, ପାଇଥିଲା ଶିଳ୍ପକଳା, ସଂସ୍କୃତି ଓ ସଙ୍ଗୀତର ଅନେକ ରାଗରାଗିଣୀ । କାଏରୋରେ ସଙ୍ଗୀତ ଶୁଣି କବି ସେହିସବୁ କଥା ଭାବୁଥିଲେ ।

କାଏରୋର ବିଖ୍ୟାତ ମ୍ୟୁଜିଅମ୍‌ରେ ପ୍ରାଚୀନ ମିଶରର କୀର୍ତ୍ତି-କଳାପ ଅତି ଯତ୍ନ ସହକାରେ ରକ୍ଷିତ । ଯାଦୁଘରେ ଏହି ସବୁ କୀର୍ତ୍ତି ଓ ସ୍ମୃତି ଦେଖି କବି ଲେଖିଥିଲେ, 'ମନେ ମନେ ଭାବେ ଯେ ବାହାରେ ମଣିଷ ସାଢେ ତିନି ହାତ; କିନ୍ତୁ ଭିତରେ ସେ କେଡ଼େ ପ୍ରକାଣ୍ଡ ।' ମିଶରର ରାଜା ଫୁୟାଦ୍ ଦିନେ କବିଙ୍କୁ ନିମନ୍ତ୍ରଣ କରିଥିଲେ ଓ ବିଶ୍ୱଭାରତୀ ପାଇଁ ଅତି ମୂଲ୍ୟବାନ ଆରବୀ ଗ୍ରନ୍ଥରାଜି ଉପହାର ଦେଇଥିଲେ ।

ଫେରିବା ବାଟରେ ସୁଏଜ ବନ୍ଦରରେ ଦେଶରୁ ଆସିଥିବା ଚିଠିପତ୍ର ପାଇଲେ । ତାହା ମଧ୍ୟରେ ସତ୍ୟେନ୍ଦ୍ରଚନ୍ଦ୍ରଙ୍କର ମୃତ୍ୟୁ ସମ୍ବାଦ ଥିଲା । ଆଶ୍ରମ ପ୍ରତିଷ୍ଠା ଦିନରୁ ସେ ଏକାଧାରରେ ଥିଲେ ଛାତ୍ର ଓ ଶିକ୍ଷକ । କବିଙ୍କର ଏକନିଷ୍ଠ ଭକ୍ତମାନଙ୍କ ମଧ୍ୟରେ ଅନ୍ୟତମ ।

(୧୦୬)

ୟୁରୋପରେ ସାଢ଼େ ଆଠ ମାସ କଟାଇ ପୌଷ ଉତ୍ସବ ବେଳକୁ କବି ଶାନ୍ତିନିକେତନ ଫେରିଲେ (୧୯୨୬ ଡିସେମ୍ବର ୧୮) । ବିଦେଶରେ ଥିଲାବେଳେ ସଂଗୀତ ରଚନା କରିଥିଲେ ଓ ଶେଷ ଆଡ଼କୁ ଲେଖିଥିଲେ 'ପତ୍ରଧାରା' । ଶ୍ରୀମତୀ ନିର୍ମଳକୁମାରୀ ମହଲାନବୀଶଙ୍କୁ ଲିଖିତ ସେହି ପତ୍ରଗୁଡ଼ିକ 'ପଥେ ଓ ପଥେର ପ୍ରାନ୍ତେ' ଗ୍ରନ୍ଥରେ ସଂକଳିତ ହୋଇଛି । (ୟୁରୋପ ଭ୍ରମଣକାଳରେ ତାଙ୍କର ସେବାଯତ୍ନ କବିଙ୍କୁ ମୁଗ୍ଧ କରିଥିଲା) । ଦେଶକୁ ଫେରି ଦେଖିଲେ ଶାନ୍ତି ନାହିଁ । ହିନ୍ଦୁ ମୁସଲମାନ ମିଳନ ଆଶା ମରୀଚିକା ମାତ୍ର । କୁଆଡ଼େ ଗଲା ୧୯୨୧ ମସିହାର ସୌହାର୍ଦ୍ଦ୍ୟ ସ୍ୱପ୍ନ ! ବଡ଼ଦିନ ଛୁଟିରେ ଗୌହାଟିରେ କଂଗ୍ରେସ ଅଧିବେଶନ ବସୁଥାଏ; ନେତୃବୃନ୍ଦ ସମସ୍ତେ ସେଠାରେ ଉପସ୍ଥିତ । ଦିଲ୍ଲୀରେ ସେହି ସମୟରେ ସ୍ୱାମୀ ଶ୍ରଦ୍ଧାନନ୍ଦ ଏକ ମୁସଲମାନ ଯୁବକର ଗୁଳିରେ ନିହତ ହେଲେ । ଯେଉଁ ଦିଲ୍ଲୀରେ ପାଞ୍ଚବର୍ଷ ପୂର୍ବେ ହିନ୍ଦୁମୁସଲମାନ ମିଳନ ଉତ୍ସବ ଉପଲକ୍ଷେ ଜୁମା ମସଜିଦ ଉତ୍ତରରୁ ସ୍ୱାମୀ ଶ୍ରଦ୍ଧାନନ୍ଦ ଉଭୟ ସମ୍ପ୍ରଦାୟଙ୍କ ନିକଟରେ ମିଳନ ମନ୍ତ୍ର ବ୍ୟାଖ୍ୟା କରିଥିଲେ ସେହିଠାରେ ସେ ଢାଳିଦେଲେ ନିଜର ରକ୍ତ । ଏହା ହିଁ ହେଉଛି ରାଜନୀତି - ଧର୍ମର ଉପରେ ଯାହାର ସ୍ଥାନ ! କିଛିଦିନ ପୂର୍ବରୁ ଗାନ୍ଧିଜୀ ଶାନ୍ତିନିକେତନ ବୁଲି ଆସିଥିଲେ । କିନ୍ତୁ କବି ସେତେବେଳେ ଦେଶରେ ନଥିଲେ ।

ରବୀନ୍ଦ୍ରନାଥ ଆଶ୍ରମବାସୀଙ୍କୁ ଏକ ଭାଷଣ ପ୍ରସଙ୍ଗରେ କହିଥିଲେ ଯେ ମୁସଲମାନ ସମାଜ ଈଶ୍ୱରଙ୍କ ନାମରେ ଯେତେବେଳେ ସ୍ୱଧର୍ମୀମାନଙ୍କୁ ଡାକ ଦିଅନ୍ତି ସେତେବେଳେ ସେମାନେ ଉତ୍ତର ପାନ୍ତି, ଏକତ୍ର ହୁଅନ୍ତି; କିନ୍ତୁ ହିନ୍ଦୁ ଯେତେବେଳେ ଡାକେ ସେତେବେଳେ ହିନ୍ଦୁ ଉତ୍ତର ଦେବା ଦୂରରେ ଥାଉ ପାଖକୁ ଆସନ୍ତି ନାହିଁ । 'ଯେ ଦୁର୍ବଳ ସେ ପ୍ରବଳକୁ ପ୍ରଲୁବ୍ଧ କରି ପାପ ପଥକୁ ଟାଣି ଆଣେ । ପାପର ପ୍ରଧାନ ଆଶ୍ରୟ ଦୁର୍ବଳ ମଧ୍ୟରେ ବିଦ୍ୟମାନ । ଦୁର୍ବଳତାକୁ ପୋଷି ରଖିଲେ ସେଠାରେ ଅତ୍ୟାଚାର ଆପେ ଦେଖାଦିଏ— କେହି

ବାଧା ଦେଇ ପାରେ ନାହିଁ ।' ଦେଶବ୍ୟାପୀ ଉତ୍ତେଜନା ସମୟରେ କବି ଦେଶବାସୀଙ୍କୁ ଶାନ୍ତ ଭାବରେ ସମସ୍ୟାର ସମାଧାନ ବିଷୟରେ ଚିନ୍ତା କରିବାକୁ ଉପଦେଶ ଦେଉଥିଲେ ।

ରାଜନୀତିର ଉତ୍ତେଜନା ମନରୁ ଲିଭିଗଲା । ମନ ରୂପ ରସର ସୃଷ୍ଟିରେ ନିବିଷ୍ଟ ହେଲା—କଲିକତାରେ 'ନଟୀର ପୂଜା' ଅଭିନୟ କରାଇଲେ । ହିଂସାର ଉନ୍ମତ୍ତ ଦେଶରେ ବୁଦ୍ଧଙ୍କର ବାଣୀ ଶୁଣାଇବାର ଉପଯୁକ୍ତ ନାଟକ 'ନଟୀର ପୂଜା'—କିନ୍ତୁ ଶୁଣୁଛି କିଏ ? ସାଧାରଣ ମଣିଷ ନିକଟରେ ନିତ୍ୟଧର୍ମ ଅପେକ୍ଷା ଗୁରୁତର ହେଲା ଦଳଗତ ଧର୍ମ ବା ଦଳାଦଳି ।

'ନଟୀର ପୂଜା' ଅଭିନୟ ପରେ କବି ମଗ୍ନ ହେଲେ ନଟରାଜଙ୍କର ଧ୍ୟାନରେ—ଲେଖିଲେ 'ନଟରାଜ—ଋତୁରଙ୍ଗଶାଳା' । ଷଡ଼ଋତୁର ଆନନ୍ଦରୂପ ଓ ପ୍ରକାଶ ଥିଲା ଏହି କବିତା ଓ ସଙ୍ଗୀତର ବିଷୟ । ଏହାପରେ ଆରମ୍ଭ କଲେ ଋତୁରଙ୍ଗଶାଳାର ଅସଲ ନଟ ନଟୀ ତରୁଲତାର ବନ୍ଦନା—'ବୃକ୍ଷ ବନ୍ଦନା'ରେ ତା'ର ସୂତ୍ରପାତ । ଅଲଗା ଅଲଗା ଭାବରେ ବହୁ ତରୁଲତା ଓ ପୁଷ୍ପର ବନ୍ଦନା ଚାଲିଲା । ପରେ ଏହି କବିତାଗୁଚ୍ଛ 'ବନବାଣୀ' ନାମରେ ସଂକଳିତ ହୋଇଥିଲା ।

( ୧୦୮ )

ଶାନ୍ତିନିକେତନର ନିରବଚ୍ଛିନ୍ନ ଶାନ୍ତିମୟ ଜୀବନରେ ପୁନର୍ବାର ବାଧା ଦେଖାଦେଲା । ଭରତପୁରରେ ହିନ୍ଦୀ ସାହିତ୍ୟ ସମ୍ମିଳନୀ; ରବୀନ୍ଦ୍ରନାଥଙ୍କୁ ସଭାପତିତ୍ୱ କରିବାକୁ ଅନୁରୋଧ କରି ଭରତପୁରର ମହାରାଜା କିଷନ ସିଂହ ଲୋକ ପଠାଇଲେ । ଚୈତ୍ରମାସର ପ୍ରଚଣ୍ଡ ଗରମରେ କବି ଯିବାକୁ ସ୍ୱୀକୃତ ହେଲେ । ଭରସା ଯେ, ବିଶ୍ୱଭାରତୀ ପାଇଁ ମହାରାଜଙ୍କ ନିକଟରୁ ଯଦି କିଛି ମିଳିଯାଏ । ଏଥର କବିଙ୍କ ସଙ୍ଗରେ ଯାଇଥାନ୍ତି ପ୍ରଭାତକୁମାର ମୁଖୋପାଧ୍ୟାୟ ।

ଭରତପୁରର ରାଜପ୍ରାସାଦରେ କବିଙ୍କ ପାଇଁ ସ୍ଥାନ କରି ଦିଆଗଲା । ହିନ୍ଦୀ ସାହିତ୍ୟ ସମ୍ମିଳନୀ ବିରାଟ ବ୍ୟାପାର; କେତେ

ହଜାର ଲୋକ ସମବେତ ହୋଇଥିଲେ କହିବା କଠିନ । ରବୀନ୍ଦ୍ରନାଥ ଇଂରେଜୀରେ ଭାଷଣ ଦେଲେ । ଏହାପୂର୍ବରୁ ହିନ୍ଦୀକୁ ଭାରତର ରାଷ୍ଟ୍ରଭାଷା କରିବାର ପ୍ରଶ୍ନ ଉଠିଥାଏ । ତେଣୁ କବି କହିଲେ ଯେ, ଭାଷା କେବଳ ରାଷ୍ଟ୍ରୀୟ ପ୍ରୟୋଜନର ତାଗିଦାରେ 'ରାଷ୍ଟ୍ରୀୟ' ହୁଏନାହିଁ, ସାହିତ୍ୟ ଦିଗରୁ ତାହାର ଯୋଗ୍ୟତା ଦେଖିବାକୁ ହେବ ।

ଭରତପୁରର ଦ୍ରଷ୍ଟବ୍ୟ ସ୍ଥାନଗୁଡ଼ିକ କବି ବୁଲି ଦେଖିଲେ । ସହରଠାରୁ ଦୂରରେ ବିଶାଳ ଏକ ଜଳାଶୟର ପ୍ରାକୃତିକ ଦୃଶ୍ୟ ମନୋରମ ବୋଲି କବିଙ୍କୁ ସେଠାକୁ ନିଆଯାଇଥିଲା । ଜଳରେ ନାନାଜାତିୟ ଅସଂଖ୍ୟ ପକ୍ଷୀଙ୍କର କଳରବ; ଏ ସମସ୍ତ ଦେଖି ଖୁବ୍ ଭଲ ଲାଗୁଥାଏ । କିନ୍ତୁ ହଠାତ୍ ଦେଖିଲେ ଯେ ଗୋଟିଏ ଫଳକରେ ଏକ ଜଙ୍ଗିଲାଟ ବା କେଉଁ ସାହେବ କେତେହଜାର ପକ୍ଷୀ ମାରିଛନ୍ତି ତା'ର ତାଲିକା । ଏହା ଦେଖି କବିଙ୍କର ମନ ଏତେ ବ୍ୟଥିତ ହେଲା ଯେ, ସେ ସଙ୍ଗେ ସଙ୍ଗେ ସେହି ସ୍ଥାନ ତ୍ୟାଗ କରିଥିଲେ । ପକ୍ଷୀ ମାରିବା ବିରୁଦ୍ଧରେ ଆଦିକବିଙ୍କର ଅମରବାଣୀ ରାମାୟଣରେ ପ୍ରଥମେ ଘୋଷିତ ହୋଇଥିଲା । ଜମିଦାର ରବୀନ୍ଦ୍ରନାଥଙ୍କ ହସ୍ତରେ ନୋଟିସ ଜାରି ହୋଇଥିଲା—ତାହା ବି ଏହି ବିଷୟରେ । ତାଙ୍କ ଜମିଦାରୀର ଇଲାକାରେ କୌଣସି ଶିକାରୀ, ଏପରି କି କୌଣସି ରାଜକର୍ମଚାରୀ ପକ୍ଷୀ ମାରି ପାରୁ ନଥିଲେ ।

ଭରତପୁରରୁ ଜୟପୁର ହୋଇ କବି ଅହମଦାବାଦ ଆସିଲେ । ଏଠାରେ ଅମ୍ବାଲାଲ ସରାଭାଇଙ୍କର ଘରେ କିଛିଦିନ ଆରାମରେ ରହିଥିଲେ । କିନ୍ତୁ ସଭା ସମିତିର ଅନ୍ତ ନାହିଁ, ନାନା ଜାଗାରେ ବକ୍ତୃତା । ସରାଭାଇଙ୍କର ଘରେ ଥିବାବେଳେ, ରବୀନ୍ଦ୍ର-ସାହିତ୍ୟ ସମ୍ପର୍କରେ ଅଧ୍ୟାପକ ଟମ୍ପସନଙ୍କ ଲିଖିତ ଓ ସଦ୍ୟପ୍ରକାଶିତ ଇଂରାଜୀ ଗ୍ରନ୍ଥ କବିଙ୍କ ହାତରେ ପଡ଼ିଲା । ବହି ଖଣ୍ଡିକ ପଢ଼ି ତାଙ୍କୁ ଆଦୌ ଭଲ ଲାଗିଲା ନାହିଁ । ଖଣ୍ଡିଏ ପତ୍ରରେ ତାଙ୍କର ଅସନ୍ତୋଷ ପ୍ରକାଶିତ ହୋଇଥିଲା । (୧୩୩୪ ଭାଦ୍ର ମାସରେ 'ବିଚିତ୍ରା'ରେ ଶ୍ରୀ ନୀହାରରଞ୍ଜନ ରାୟ ଏହି ଗ୍ରନ୍ଥର ତୀବ୍ର ସମାଲୋଚନା କରି ଗୋଟିଏ ପ୍ରବନ୍ଧ ଲେଖିଲେ । ତାହାପୂର୍ବରୁ 'ବାଣୀବିନୋଦ

ବନ୍ଦୋପାଧ୍ୟାୟ' ନାମକ ଛଦ୍ମ ନାମରେ 'ପ୍ରବାସୀ'ରେ ରବୀନ୍ଦ୍ରନାଥ ମଧ୍ୟ ନିଜର ଅଭିମତ ବ୍ୟକ୍ତ କରିଥିଲେ) । ଟମସନ୍ ସାହେବଙ୍କ ଗ୍ରନ୍ଥରେ ଭୁଲ ଥିଲା, ଅଶିଷ୍ଟତା ମଧ୍ୟ କିଛି ଥିଲା—ତାହା ସତ୍ତ୍ୱେ ଏକଥା କୁହାଯାଇପାରେ ଯେ ଟମସନ ରବୀନ୍ଦ୍ରନାଥଙ୍କୁ ଶ୍ରଦ୍ଧା କରୁଥିଲେ । କିନ୍ତୁ ବଙ୍ଗଳା ଭାଷା ଓ ସାହିତ୍ୟ ଜ୍ଞାନ ତାଙ୍କର ଯଥୋଚିତ ନଥିଲା, ଖ୍ରୀଷ୍ଟିୟାନ୍ ଓ ଇଂରେଜ ହିସାବରେ କେତେ ଗୁଡ଼ିଏ ବଦ୍ଧମୂଳ ସଂସ୍କାର ବି ଥିଲା—ହୁଏତ ଲେଖକଙ୍କର ଅଜ୍ଞାତ-ସାରରେ ଜାତିଗତ ଅଭିମାନ ପ୍ରକାଶ ପାଇଥିଲା ।

ଅହମଦାବାଦରୁ ଏପ୍ରିଲ ୧୧ତାରିଖରେ ଶାନ୍ତିନିକେତନ ଫେରିଲେ ଓ ଯଥା ସମୟରେ ବର୍ଷ ଶେଷ ଓ ନବବର୍ଷ ଉତ୍ସବରେ ଯୋଗଦେଲେ ।

(୧୦୯)

ଗ୍ରୀଷ୍ମାବକାଶରେ କବି କଲିକତା ଆସିଲେ—ଉଦ୍ଦେଶ୍ୟ ଶିଲଂ ଯିବେ । ଏ ମଧ୍ୟରେ ପ୍ରବର୍ତ୍ତକ ସଂଘର ଆହ୍ୱାନରେ ଚନ୍ଦନ-ନଗରରେ ସେମାନଙ୍କର ବାର୍ଷିକ ଉତ୍ସବରେ ଯୋଗ ଦେବାକୁ ପଡ଼ିଥିଲା ।

ଅମ୍ବାଲାଲ ସରାଭାଇଙ୍କର ଏକାନ୍ତ ଅନୁରୋଧରେ କବି ଶିଲଂ ଗଲେ । ସରାଭାଇଙ୍କର ଘରପାଖରେ କବିଙ୍କ ରହିବାପାଇଁ ଖଣ୍ଡିଏ ଘରର ବ୍ୟବସ୍ଥା ହୋଇଥିଲା ।

ଏଥର ଶିଲଂ ଜନସଭାରେ ବକ୍ତୃତା ଦେଇବାକୁ ହୋଇନି, ଖଣ୍ଡିଏ ଉପନ୍ୟାସ ଲେଖୁଥାନ୍ତି । 'ବିଚିତ୍ରା' ନାମକ ନୂତନ ପତ୍ରିକା ମହା ଆଡ଼ମ୍ବରରେ ଆଷାଢ଼ ମାସରୁ ପ୍ରକାଶିତ ହେବାର କଥା—ଗଳ୍ପଟି ସେହି ପତ୍ରିକା ପାଇଁ ଲେଖୁଥାନ୍ତି । ପ୍ରକୃତରେ ଗଳ୍ପଟି ବିଚିତ୍ରା ଉଦ୍ଦେଶ୍ୟରେ ଯେତେ ନୁହେଁ, ତା ଅପେକ୍ଷା ବେଶୀ ନିଜ ପାଇଁ । ଅର୍ଥର ପ୍ରୟୋଜନୀୟତା ଯେପରି ରହିଛି, ତାହାଠାରୁ

ବେଶୀ ଭାଗିଦା ହେଉଛି ଅନ୍ତରର ପ୍ରେରଣା—ନବନବୋନ୍ମେଷ-ଶାଳିନୀ ପ୍ରତିଭାର ନୂତନ ଆତ୍ମପ୍ରକାଶ ପାଇଁ । ନୂତନ ଆଖ୍ୟାୟିକାର ପ୍ରଥମ ନାମ ଦିଆ ହୋଇଥିଲା 'ତିନପୁରୁଷ'—ପରେ ହୁଏ 'ଯୋଗାଯୋଗ' ।

(୧୦)

ଚୀନ ବୁଲିବା ପରେ ବି କବିଙ୍କର ମନ ମାଳୟ, ଇଣ୍ଡୋନେସିଆ, ଇଣ୍ଡୋଚୀନ ପ୍ରଭୃତି ବୃହତ୍ତର ଭାରତ ଭୂମିର ପରିଚୟ ପାଇବା ପାଇଁ ଖୁବ୍ ଉତ୍ସୁକ । ସେ ସବୁ ଦ୍ୱୀପ ଓ ଦେଶ ସଙ୍ଗରେ ଭାରତର ଯେଉଁ ଯୋଗାଯୋଗ ଥିଲା ତାହାକୁ ପୁନଃପ୍ରତିଷ୍ଠିତ କରିବାକୁ ହେଲେ ସେ ଦେଶ ସଂପର୍କରେ ନୂତନ ତଥ୍ୟ ସଂଗ୍ରହ କରିବା ଜରୁରୀ । ଏକଦା ସେଠାରେ ହିନ୍ଦୁ ଓ ବୌଦ୍ଧ ଧର୍ମ ପ୍ରଚଳିତ ହୋଇଥିଲା । ଏବେ ବି ବର୍ମାଠାରୁ କାମ୍ବୋଡ଼ିଆ ପର୍ଯ୍ୟନ୍ତ ଭୂଭାଗରେ ବୌଦ୍ଧ ଧର୍ମ ଜୀବନ୍ତ । କବିଙ୍କର ଇଚ୍ଛା ଯେ ଚୀନଦେଶ ସହିତ ଭାରତର ସାଂସ୍କୃତିକ ଯୋଗାଯୋଗ ସଂପର୍କରେ ବିଶ୍ୱ-ଭାରତୀରେ ଗବେଷଣା ଚାଲୁ ଓ ବୃହତ୍ତର ଭାରତ ସଙ୍ଗେ ଯୋଗା-ଯୋଗର ପଥ ଉନ୍ମୋଚିତ ହେଉ । ଏହି ବୃହତ୍ତର ଭାରତ ଦେଖିବା ଆକାଂକ୍ଷାରେ, ଜାଣିବା ଆଗ୍ରହରେ କବି ଗଲେ ମାଳୟ, ଜାଭା ଓ ବାଲି ଦ୍ୱୀପକୁ । ଦାନବୀର ଯୁଗଲ କିଶୋର ବିରଲା ଏଥର ମଧ୍ୟ କବି ଓ ତାଙ୍କର ସହଯାତ୍ରୀମାନଙ୍କର ବ୍ୟୟ ଭାର ବହନ କରିଥିଲେ—ଯେପରି ଚୀନ ଭ୍ରମଣ ସମୟରେ କରିଥିଲେ ।

କବିଙ୍କ ସାଙ୍ଗରେ ଗଲେ ଅଧ୍ୟାପକ ବାକେ ଓ ତାଙ୍କର ପତ୍ନୀ । ଏମାନେ ଡଚ୍—କିଛିଦିନ ହେବ ଶାନ୍ତିନିକେତନରେ ରହି ରବୀନ୍ଦ୍ରସଙ୍ଗୀତ ଓ ପ୍ରାଚ୍ୟ ସଙ୍ଗୀତ ସମ୍ବନ୍ଧରେ ତଥ୍ୟ ସଂଗ୍ରହ ଓ ଗବେଷଣା କରୁଥାନ୍ତି । ଏହାଛଡ଼ା ଶିଳ୍ପୀ ସୁରେନ୍ଦ୍ରନାଥ କର ଓ କଳାସ୍ରଷ୍ଟା ଧୀରେନ୍ଦ୍ରକୃଷ୍ଣ ଦେବବର୍ମା ମଧ୍ୟ ସାଙ୍ଗରେ ଗଲେ । ମାଳୟ

ଦ୍ୱୀପକୁ ପ୍ରଥମେ ଯିବାକୁ ଥିବାରୁ ଆରିୟାମ ୱିଲିୟମସ୍ ତାଙ୍କର ଅଗ୍ରଦୂତ ହିସାବରେ ଆଗରୁ ଯାଇ। କରିଥାନ୍ତି । (ଆରିୟମ୍ ୱିଲିୟମସ୍ ହେଉଛନ୍ତି ସୁପରିଚିତ ଦେଶ ସେବକ ଗାନ୍ଧିପନ୍ଥୀ ଆର୍ଯ୍ୟନାୟକମ୍ । ସେ ଦୀର୍ଘକାଳ ବିଶ୍ୱଭାରତୀ ସଙ୍ଗେ ନାନା ଭାବରେ ସଂପୃକ୍ତ ଥିଲେ, ମୂଳତଃ ସେ ସିଂହଳୀ-ତାମିଲ) । କଲିକତା ବିଶ୍ୱବିଦ୍ୟାଳୟ ପକ୍ଷରୁ କବିଙ୍କ ସଙ୍ଗରେ ଗଲେ ଶ୍ରୀ ସୁନୀତିକୁମାର ଚଟ୍ଟୋପାଧ୍ୟାୟ । ସୁନୀତି ବାବୁ ରବୀନ୍ଦ୍ରନାଥଙ୍କର ଏହି ଭ୍ରମଣର ବିଶଦ ବର୍ଣ୍ଣନା ଲିପିବଦ୍ଧ କରିଛନ୍ତି 'ଦ୍ୱୀପମୟ ଭାରତ' ଗ୍ରନ୍ଥରେ ।

୧୯୨୭ ଖ୍ରୀ: ଅ: ଜୁଲାଇ ୨୧ ତାରିଖରେ କବି ସଦଳବଳେ ସିଂହାପୁରରେ ପହଞ୍ଚିଲେ । ବାକେ-ଦମ୍ପତି କବିଙ୍କର ଅଭ୍ୟର୍ଥନାର ବ୍ୟବସ୍ଥା କରିବାକୁ ଯବଦ୍ୱୀପକୁ ଗଲେ । ସେ ଦେଶ ସେତେବେଳେ ଡଚ୍‌ମାନଙ୍କର ଅଧୀନରେ ।

ସିଂହାପୁରରେ କବିଙ୍କର ପାଞ୍ଚ ଛଅ ଦିନ କଟିଲ—ସଭା ସମିତି, ବକ୍ତୃତା, ଅପରିଚିତଙ୍କ ସହିତ ପରିଚୟ ଘଟିଲା । ସିଂହାପୁରର ଭାରତୀୟମାନେ ଅଧିକାଂଶ ଶ୍ରମଜୀବୀ । ସେମାନଙ୍କର ଦେଶ ହିନ୍ଦୁସ୍ଥାନରୁ ଏକ ଅଭିଜାତ ବଂଶୀୟ ସର୍ବଜନମାନ୍ୟ ବ୍ୟକ୍ତି ଆସିଛନ୍ତି ଶୁଣି, କବିଙ୍କୁ ଦେଖିବାକୁ ଆସି ପହଞ୍ଚିଲେ । କବିଙ୍କର ସେହି ସୌମ୍ୟ ମୂର୍ତ୍ତି ଓ ପରିଣତ ବାର୍ଦ୍ଧକ୍ୟର ସୌନ୍ଦର୍ଯ୍ୟ ଅତୁଳନୀୟ । ତାହା ଦେଖି ସେମାନେ ମୁଗ୍ଧ— ଆନନ୍ଦରେ ଉଚ୍ଛ୍ୱସିତ ।

ସିଂହାପୁରରୁ ମାଳୟ ଗଲେ । ମାଳୟବାସୀମାନେ ଅଧିକାଂଶ ମୁସଲମାନ । ମାଳୟ, ଦେଶୀୟ ସୁଲତାନମାନଙ୍କର ଶାସନାଧୀନ ଅନେକ ଗୁଡ଼ିଏ ଛୋଟ ଛୋଟ ରାଜ୍ୟ—ବ୍ରିଟିସ ସରକାରଙ୍କର ନିୟନ୍ତ୍ରଣାଧୀନ । ଦେଶର ଅସଲ ମାଲିକ ହେଉଛନ୍ତି ରବର ବଗିଚା ଓ ଟିଣ ଖଣିର ମାଲିକ ଶ୍ୱେତାଙ୍ଗ ଇଂରେଜ । ଭାରତୀୟ, ଚୀନା ଓ ମାଳୟବାସୀମାନେ ସେମାନଙ୍କର ବଗିଚା ଓ ଖଣିରେ କୁଲି, ମଜୁରିଆ ବା କିରାଣୀ ।

ମାଲକ୍କା ବନ୍ଦରରେ ଓହ୍ଲାଇବାପରେ ମାଳୟ-ଉପଦ୍ୱୀପ ପରିଭ୍ରମଣ ଆରମ୍ଭ ହେଲା । ଛବିଶ ଦିନ ଧରି ସହରରୁ ସହର ବୁଲିଲେ—ଟ୍ରେନରେ, ମଟରରେ । ଏହାରି ମଧ୍ୟରେ 'ଜାଭାଯାତ୍ରୀର

ପତ୍ର' ଧାରାବାହିକ ଭାବରେ ଲେଖୁଥାନ୍ତି । ଖଣ୍ଡିଏ ପତ୍ରରେ ଲେଖିଛନ୍ତି, 'କ୍ଳାନ୍ତ ହୋଇ ପଡ଼ୁଛି । ଦିନ ମଧ୍ୟରେ ଦୁଇ ତିନି ପ୍ରକାର ପ୍ରୋଗ୍ରାମ । ନୂଆ ନୂଆ ଜାଗାରେ ବକ୍ତୃତା ନିମନ୍ତ୍ରଣ । ···· ଚାଲିଛି ଉଜାଣି ସ୍ରୋତରେ, ପଦେ ପଦେ ବେଦମ୍ ହେଉଛି । ପଥ ସୁଦୀର୍ଘ, ପାଥେୟ ସ୍ୱଳ୍ପ । ଅର୍ଜନ କରି କରି ଗର୍ଜନ କରି କରି, ହୋଟେଲ୍‌ରେ ଡଲାର ବର୍ଜ୍ଜନ କରି କରି ଚାଲିଛି । ମୋର ଭ୍ରମଣ ହେଉଛି—ପାଦ ଚଳେଇବା ସଙ୍ଗେ ସଙ୍ଗେ ଗଳା ଚଳେଇବା ।'

ମାଳୟ ଦ୍ୱୀପର ରବର ବଗିଚା ଓ ଖଣି ମାଲିକମାନେ ଏ ପର୍ଯ୍ୟନ୍ତ ଭାରତକୁ କୁଲି ସଂଗ୍ରହର ସ୍ଥାନ ବୋଲି ଜାଣିଥିଲେ । ସେଠାରୁ ଜଣେ ଲୋକ ଆସି, ଦେଶ ବ୍ୟାପୀ ସମ୍ମାନ ପାଉଛନ୍ତି ଦେଖି, ଇଂରେଜ ଧନୀମାନେ ସହ୍ୟ କରି ପାରିଲେ ନାହିଁ । କବିଙ୍କ ନାମରେ ସେମାନେ ଦୁର୍ନାମ ପ୍ରଚାର କରିବା ଆରମ୍ଭ କରିଦେଲେ । ଦକ୍ଷିଣ-ଭାରତୀୟ ଜଣେ ତରୁଣ ସାମ୍ବାଦିକ ଏହାର କଡ଼ା ଜବାବ ଦେଲେ । ଇଂରେଜୀ ପତ୍ରିକାବାଲମାନେ କିପରି ଭାବରେ କବିଙ୍କର ଲେଖା ବିକୃତ କରନ୍ତି, ତାହାର କଦର୍ଥ କରନ୍ତି ଓ କବିଙ୍କୁ ହୀନ ପ୍ରମାଣ କରନ୍ତି; ତାହା ପ୍ରମାଣ କରିଦେଲେ ଏହି ତରୁଣ ସାମ୍ବାଦିକ । କବିଙ୍କର ମୂଳ ଲେଖା ଖୋଜି ଛପାଇ ଦେବାରୁ ସମସ୍ତେ ଚୁପ୍ ହୋଇ ଯାଇଥିଲେ ।

ମାଳୟରୁ ଯବ ଦ୍ୱୀପ ହୋଇ ବାଲି ଦ୍ୱୀପକୁ ଗଲେ । କବିଙ୍କର 'ଜାଭାଦ୍ୱୀପର ପତ୍ର'ରୁ ବାଲି ଦ୍ୱୀପର ବିବରଣୀ ମିଳେ । ପୁଙ୍ଖାନୁପୁଙ୍ଖ ବର୍ଣ୍ଣନା ମିଳେ ସୁନୀତି କୁମାର ଚାଟାର୍ଜିଙ୍କର 'ଦ୍ୱୀପମୟ ଭାରତ' ଗ୍ରନ୍ଥରୁ । ହିନ୍ଦୁଧର୍ମ ଓ ସଂସ୍କୃତି ବାଲିଦ୍ୱୀପରେ ଅତ୍ୟନ୍ତ ବିକୃତ ଅବସ୍ଥାରେ ଥିଲେ ବି ବଞ୍ଚି ରହିଥାଏ । ଏକ ସମୟରେ ମାଳୟ ଓ ପାଖାପାଖି ଦ୍ୱୀପ ଗୁଡ଼ିକ ହିନ୍ଦୁ ଭାରତର ଅନ୍ତର୍ଭୁକ୍ତ ଥିଲା । ବାଲି ଦ୍ୱୀପରେ ବର୍ତ୍ତମାନ ତାର ସଙ୍କେତ ରହିଛି । ଭାରତ ସହିତ ବାଲି ଦ୍ୱୀପର ଲୁପ୍ତ ଆତ୍ମିକ-ସମ୍ବନ୍ଧ ପୁନଃପ୍ରତିଷ୍ଠିତ କରିବା କଥା କବି ଚିନ୍ତା କରୁଥାନ୍ତି । ମାଳୟ ଓ ଇଣ୍ଡୋନେସିଆ, ଦୂର ପ୍ରାଚ୍ୟ ଓ ଭାରତ ମଧ୍ୟରେ ସଂଯୋଜକ । ଆଧୁନିକ ଯୁଗରେ ରବୀନ୍ଦ୍ରନାଥଙ୍କ ପୂର୍ବରୁ ବୋଧହୁଏ କୌଣସି ଭାରତୀୟ ଭାରତ ସହିତ ସମ୍ପର୍କ

ପ୍ରତିଷ୍ଠା ଉଦ୍ଦେଶ୍ୟରେ ଏହି ଦ୍ୱୀପମାନଙ୍କୁ ଯାଇ ନାହାନ୍ତି । ଏ ଯୁଗରେ ରବୀନ୍ଦ୍ରନାଥ ଚୀନ ସହିତ ଭାରତର ସଂପର୍କ ପ୍ରତିଷ୍ଠା କରିବାରେ ଯେପରି ପଥ ପ୍ରଦର୍ଶକ, ଇଣ୍ଡୋନେସିଆ ସଂଗରେ ବନ୍ଧୁତ୍ୱ ସ୍ଥାପନ କରିବାରେ ସେହିପରି ଅଗ୍ରଣୀ ।

ବାଲିଦ୍ୱୀପରୁ କବି ଓ ତାଙ୍କର ସହଯାତ୍ରୀମାନେ ଯବ ଦ୍ୱୀପକୁ ଆସିଲେ । ବାଲି ଦ୍ୱୀପକୁ ଯିବା ପୂର୍ବରୁ ବାଟାଭିଆରେ (ବର୍ତ୍ତିମାନ ଜାକର୍ତ୍ତା) କିଛିଦିନ ରହିଥିଲେ—ଏଥର ଭଲ ଭାବରେ ଦେଖିବା ପାଇଁ ଆସିଲେ । ଯବ ଦ୍ୱୀପର ବନ୍ଦର ସୁରବାୟାଠାରୁ ଯାତ୍ରା ଆରମ୍ଭ ହେଲା । ସୁରକର୍ତ୍ତାରେ ସେ ଦେଶର ସବୁଠାରୁ ବଡ଼ ରାଜ-ପରିବାର ବାସ କରନ୍ତି । ରାଜାମାନେ ହୃତସର୍ବସ୍ୱ ହୋଇଥିଲେ ବି ହତଶ୍ରୀ ହୋଇ ନଥାନ୍ତି; ଜାଭାର ସଂସ୍କୃତିକୁ ସେମାନେ ବଞ୍ଚାଇ ରଖିଛନ୍ତି । ଏଠାରେ କବି ଯବ ଦେଶୀୟ ନୃତ୍ୟ ଦେଖିଲେ—ନୃତ୍ୟର ନିଜସ୍ୱ ଭଙ୍ଗୀ କବିଙ୍କୁ ମୁଗ୍‌ଧ କଲା । ରାଜପରିବାରର କନ୍ୟାମାନେ ଯେଉଁ ନୃତ୍ୟ ଅନୁଶୀଳନ କରନ୍ତି ତାହାର କାହାଣୀ ମହାଭାରତ ଓ ରାମାୟଣରୁ ଗୃହୀତ । ଯଦିଓ ସେମାନେ ମୁସଲମାନ ତଥାପି ଧର୍ମ ଏଥିରେ ପ୍ରତିବନ୍ଧକ ହୁଏନି । ଧର୍ମ ସଙ୍ଗରେ ସଂସ୍କୃତିର ବିରୋଧ ଏମାନେ କଳ୍ପନା କରିପାରନ୍ତି ନାହିଁ ।

ଯୋଗ୍ୟକର୍ତ୍ତା ସହରରେ ମଧ୍ୟ ଡିନିଦିନ କଟାଇଲେ । ଏଠାରୁ ସମସ୍ତେ ମିଶି ବରବୁଦୂରର ମନ୍ଦିର ଦେଖିବାକୁ ଗଲେ । ସଙ୍ଗରେ ଥିଲେ ଜଣେ ଡଚ୍ ପଣ୍ଡିତ । କବିଙ୍କୁ ସମସ୍ତ ବୁଝାଇ ଦେଖାଇଥିଲେ । କବି ବରବୁଦୂର ସମ୍ପର୍କରେ ଗୋଟିଏ କବିତା ଲେଖିଥିଲେ ଓ ତାର ଇଂରେଜୀ, ଡଚ୍ ଓ ଜାଭା ଭାଷାରେ ଅନୁବାଦ ସମସାମୟିକ ପତ୍ରିକାରେ ପ୍ରକାଶିତ ହୋଇଥିଲା ।

ଯବ ଦ୍ୱୀପରେ ତିନିସପ୍ତାହ ରହି ସେପ୍‌ଟେମ୍ବର ମାସର ଶେଷ ଆଡ଼କୁ କବି ସିଙ୍ଗାପୁର ଯାତ୍ରା କଲେ । ଜାହାଜରେ ଯିବା ସମୟରେ 'ସାଗରିକା' କବିତାଟି ଲେଖିଥିଲେ । ଭାରତ ସହିତ ଦ୍ୱୀପମୟ ଭାରତର ସାଂସ୍କୃତିକ ସମ୍ପର୍କର ସୁଦୀର୍ଘ ଇତିହାସ ଓ ତାହାକୁ ପୁନର୍ଜୀବିତ କରିବାର ଇଚ୍ଛା ବା ଅଭିଳାଷ ଏହି କବିତାରେ ରୂପକ-କାହାଣୀ ଆକାରରେ କୁହାଯାଇଛି ।

ସିଦ୍ଧାମରେ ବାଂକକ୍ ଛଡ଼ା ଅନ୍ୟ କୁଆଡ଼େ ଯାଇନାହାନ୍ତି । ରାଜା ଓ ରାଜପରିବାରରୁ ଯଥେଷ୍ଟ ସମ୍ମାନ ପାଇଥିଲେ ।

ଏଥର ଫେରିବା କଥା । ଜାହାଜରେ ବସି କବିତା ଲେଖୁଥାନ୍ତି । ଏହି ସମୟର ଅଧିକାଂଶ କବିତା 'ପରିଶେଷ' ଗ୍ରନ୍ଥରେ ସଂକଳିତ ହୋଇଛି ।

(୧୧୧)

ମାଲୟ ଓ ପୂର୍ବଦ୍ୱୀପପୁଞ୍ଜରେ ଭ୍ରମଣ କରି ସାଢ଼େ ତିନିମାସ ପରେ ଭାରତ ଫେରିଲେ (୧୯୨୭ ଅକ୍ଟୋବର ୨୭) । ଦେଶକୁ ଫେରି ଦେଖିଲେ ଯେ ମାଲୟ ଯାତ୍ରା ପୂର୍ବରୁ ରଚିତ ଓ 'ବିଚିତ୍ରା'ରେ ପ୍ରକାଶିତ 'ସାହିତ୍ୟ ଧର୍ମ' ପ୍ରବନ୍ଧଟିକୁ କେନ୍ଦ୍ର କରି ସମସାମୟିକ ପତ୍ରିକାରେ ବେଶ ବାଦ ପ୍ରତିବାଦ ଚାଲିଛି । ଏହି କେତେମାସ ଭିତରେ ଯାହା କିଛି ଘଟଣା-ଅଘଟଣା ଘଟିଥିଲା, ତାହା ବନ୍ଧୁମହଲରୁ ଶୁଣିଲେ । ଏହି ସମୟର ପତ୍ରିକାରେ ସାହିତ୍ୟର ସୁରୁଚି ଓ କୁରୁଚି ସମ୍ପର୍କରେ ସାହିତ୍ୟିକଗଣ ପରସ୍ପର ସହିତ ମସୀଯୁଦ୍ଧ କରୁଥିଲେ । କବି ସେଥିରୁ ଏକାବେଳକେ ନିର୍ଲିପ୍ତ ରହିପାରିଲେନି; ତାଙ୍କ ଦେହରେ ମଧ୍ୟ କାଳି ଛିଟାର ଦାଗ ଲଗିଥିଲା । କିନ୍ତୁ 'ଏହି ବାହ୍ୟ' । କବିଙ୍କର ମନ ସଂଗୀତର ସ୍ୱର ଧ୍ୱନିରେ ମଜ୍ଜିଗଲା । 'ଋତୁରଙ୍ଗ ଶାଳା'ରେ ଅନେକ ପରିବର୍ତ୍ତନ ଓ ସଂଯୋଜନା କଲେ । 'ଋତୁରଙ୍ଗ' ନାମ ଦେଇ ତାହାକୁ ଗୀତାଭିନୟ ଉପଯୁକ୍ତ କଲେ । କଲିକତାରେ ଏହା ଅଭିନୀତ ହେଲା । ନୃତ୍ୟକଳାରେ ଜାଭାର ନୃତ୍ୟ ଓ ସାଜସଜ୍ଜାର ପ୍ରଭାବ ବେଶ ସ୍ପଷ୍ଟ । ରଙ୍ଗମଞ୍ଚର ରୂପାୟନରେ ମଧ୍ୟ ଜାଭାର ପ୍ରଭାବ ଦେଖାଦେଲା । ଏ ସବୁର ରୂପକାର ଥିଲେ ଶିଳ୍ପୀ ସୁରେନ୍ଦ୍ରନାଥ କର । ପରେ ବଙ୍ଗଳାର ସୌଖୀନ ମଞ୍ଚରେ ଏହାର ଅନିବାର୍ଯ୍ୟ ପ୍ରଭାବ ଦେଖା ଦେଇଛି ।

କବିଙ୍କର ଜାଭାଯାତ୍ରାର ଅନ୍ୟ ଏକ ପ୍ରତ୍ୟକ୍ଷ ଫଳ ହେଉଛି ଏ ଦେଶରେ ବାଟିକ୍ (ବାଟିକ୍ ?) ଶିଳ୍ପର ପ୍ରବର୍ତ୍ତନ । ବାଲି ଓ

ଯବ ଦ୍ୱୀପ ଭ୍ରମଣ କଲେ ସଙ୍ଗୀ ଥିଲେ ଶିଳ୍ପୀ ସୁରେନ୍ଦ୍ରନାଥ କର । ସେ ଏହି ବିଦ୍ୟାଟି ଆୟତ୍ତ କରି କଳାଭବନରେ ଶିକ୍ଷା ଦେବାର ବ୍ୟବସ୍ଥା କଲେ । କଳାଭବନ ଛାତ୍ରଛାତ୍ରୀଙ୍କ ଜରିଆରେ ଭାରତର ନାନା ସ୍ଥାନରେ ଏହା ପ୍ରଚାର ଲାଭ କରିଛି ଓ ମଧ୍ୟବିତ୍ତ ଘରର କନ୍ୟାମାନଙ୍କର ଗୋଟିଏ ଭଲ ଆୟ ପନ୍ଥା ଖୋଲିଯାଇଛି ।

କବି କେତେବେଳେ ଶାନ୍ତିନିକେତନରେ ତ କେତେବେଳେ କଲିକତାରେ ରହୁଥାନ୍ତି । 'ଯୋଗାଯୋଗ' ଉପନ୍ୟାସ ଲେଖା ଚାଲିଥାଏ; ନୂତନ ଉପନ୍ୟାସ 'ଶେଷେର କବିତା' ଆରମ୍ଭ କଲେ । ଲୋକେ ଭାବିଥିଲେ ଯେ କବି 'ଯୋଗାଯୋଗ' ଉପନ୍ୟାସରେ ଅବିନାଶ ଘୋଷାଲଙ୍କର ତିନିପୁରୁଷର କାହାଣୀ ଶୁଣାଇବେ— ଶୁଣାଇବାର ଇଚ୍ଛା ମଧ୍ୟ ତାଙ୍କର ଥିଲା । କିନ୍ତୁ ବୟସ ବଢ଼ୁଛି । ଭାବୁଥାନ୍ତି କୌଣସି ଶାନ୍ତ ଅବକାଶରେ, ଅନନ୍ୟମନା ହୋଇ 'କୁମୁଦିନୀ-ଅବିନାଶ' ଆଖ୍ୟାନଟି ସମ୍ପୂର୍ଣ୍ଣ କରିଦେବେ— କିନ୍ତୁ ସେ ଅବକାଶ ପାଇନାହାନ୍ତି । ମନେହୁଏ ଯେ କବିଙ୍କ ପକ୍ଷରେ ଏହି ମର୍ମନ୍ତୁଦ କାହାଣୀର ସୃଜନ ବେଦନା ବହନ କରି ଚାଲିବା କଠିନ ହୋଇପଡ଼ିଥିଲା । ତେବେ ବର୍ତ୍ତମାନ ଆକାରରେ ବି 'ଯୋଗାଯୋଗ'ର ସାହିତ୍ୟିକ ମୂଲ୍ୟ କିଛି କମ୍ ନୁହେଁ । ମନେହୁଏ କବିଙ୍କର ନାନା ଉପନ୍ୟାସ ମଧ୍ୟରେ ଏହା ସାର୍ଥକ ସୃଷ୍ଟି ନହେଲେ ବି, ଏହା ଯେ ଶ୍ରେଷ୍ଠ-ସମ୍ଭାବନା-ପୂର୍ଣ୍ଣ ଏକ ସୃଷ୍ଟି, ଏଥିରେ ଦ୍ୱିମତ ହେବ ନାହିଁ । 'ଯୋଗାଯୋଗ'ର ଅତ୍ୟନ୍ତ ଟ୍ରାଜିକ ଘଟଣାବଳୀର ଦୁଃଖରୁ ମୁକ୍ତି ପାଇବା ପାଇଁ ଯେପରି 'ଶେଷେର କବିତା'ର ଅବତାରଣା— ଅନ୍ୟ ଏକ ସ୍ୱର, ଅନ୍ୟ ଏକ ତାଳ । ସେଠାରେ ରୂପ ପାଇଛି ଏକାଧାରରେ ତୀକ୍ଷ୍ଣ ଆଳାପ, ହାସ୍ୟ ପରିହାସ, କବିତ୍ୱ ଏବଂ ମାଧୁର୍ଯ୍ୟ । ପ୍ରେମରେ ଦ୍ୱନ୍ଦ୍ୱ ଅଛି, ଆନ୍ଦୋଳନ ଅଛି; କିନ୍ତୁ କାହାର ଜୀବନ ଟ୍ରାଜେଡ଼ିରେ ଶେଷ ହୋଇନି । 'ଶେଷେର କବିତା'ରେ ସବୁ ପାତ୍ର ପାତ୍ରୀଙ୍କ ମଧ୍ୟରେ ବିବାହ ଦେଇଛନ୍ତି । ଗୋଟିଏ ପ୍ରହସନ ଛଡ଼ା କବି ଏପରି ଭାବରେ ଅନ୍ୟ କୌଣସି କାହାଣୀ ଶେଷ କରିବା ଦେଖା ଯାଇନି ।

ପୁନର୍ବାର ବିଲାତ ଯିବାର କଥା ହେଉଥାଏ—ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରୁ ନିମନ୍ତ୍ରଣ ଆସିଥାଏ, 'ହିବାର୍ଟ' ବକ୍ତୃତା ଦେବା ପାଇଁ । ଏ ସମ୍ମାନିତ ଆହ୍ୱାନ ଏପର୍ଯ୍ୟନ୍ତ କୌଣସି ଭାରତୀୟ କାହିଁକି କୌଣସି ପ୍ରାଚ୍ୟ ଦେଶବାସୀ ମଧ୍ୟ ପାଇ ନଥାନ୍ତି । ତେଣୁ ବିଲାତ ଯାଉଥାନ୍ତି ।

ଜାହାଜ ଚଢ଼ିବା ପାଇଁ ମାନ୍ଦ୍ରାଜ ଆସିଲେ । ସଙ୍ଗରେ ଆଣ୍ଡ୍ରୁଜ୍ ଉଇଲିୟାମ୍ସ । ସେ ସମୟରେ ପ୍ରଶାନ୍ତଚନ୍ଦ୍ର, ସସ୍ତ୍ରୀକ ୟୁରୋପ ଭ୍ରମଣରେ ଯାଉଥାନ୍ତି; କବିଙ୍କର ସାଥୀ ହେଲେ । ରାସ୍ତାରେ କବିଙ୍କର ଶରୀର ଖୁବ ଖରାପ ହେଲା; ମାନ୍ଦ୍ରାଜରେ ଓହ୍ଲାଇ ଆଡେୟାରରେ କିଛିଦିନ ବିଶ୍ରାମ କଲେ । ତାହାପରେ କୁନ୍ନୁରରେ, ପିଠାପୁରମ୍ ମହାରାଜାଙ୍କର ଆତିଥ୍ୟ ଗ୍ରହଣ କରି କିଛିଦିନ କଟାଇଲେ । ଏପର୍ଯ୍ୟନ୍ତ ବିଦେଶ-ଯାତ୍ରା ଆଶା ତ୍ୟାଗ କରିନଥାନ୍ତି । ଠିକ୍ କଲେ ମାନ୍ଦ୍ରାଜଠାରୁ ଜାହାଜରେ କଲମ୍ବୋ ଯାଇ ୟୁରୋପଗାମୀ କୌଣସି ଜାହାଜ ଧରିବେ ।

ବାଟରେ ପଣ୍ଡିଚେରୀ ନିକଟରେ ଜାହାଜ ରହିଲା; ସେଠାରେ ଶ୍ରୀ ଅରବିନ୍ଦ ଥାନ୍ତି । କବିଙ୍କ ସହିତ ତାଙ୍କର ଦେଖା ହେଲା—ବୋଧହୁଏ କୋଡ଼ିଏ ବର୍ଷ ପରେ ଦେଖା । ଅଗ୍ନିଯୁଗର ବିପ୍ଳବୀ ବର୍ତ୍ତମାନ ଆଧ୍ୟାତ୍ମାଲୋକର ଋଷୀ । ସାଧାରଣତଃ ସେ ମୌନୀ, ନିର୍ଦ୍ଦିଷ୍ଟ ଦିନ ଛଡ଼ା କାହାରିକୁ ଦେଖା ବି ଦିଅନ୍ତି ନାହିଁ । ରବୀନ୍ଦ୍ର-ନାଥଙ୍କ ପାଇଁ ସେ ନିୟମ ଭଙ୍ଗକଲେ । କବି ଲେଖିଛନ୍ତି, 'ଅରବିନ୍ଦଙ୍କୁ ଦେଖି ଖୁବ ଭଲ ଲାଗିଲା—ବେଶ୍ ବୁଝି ପାରିଲି ଯେ, ନିଜକୁ ଠିକ୍ ଭାବରେ ପାଇବା ପାଇଁ ଏହାହିଁ ଠିକ୍ ଉପାୟ ।'

କଲମ୍ବୋରେ ପହଞ୍ଚିଲେ; କିନ୍ତୁ ଶରୀର ଭଲ ରହୁନାହିଁ । ଶେଷରେ ବିଲାତ ଯିବା ସଙ୍କଳ୍ପ ତ୍ୟାଗ କରିବାକୁ ହେଲା । କଲମ୍ବୋରେ ଦଶ ଦିନ ରହି ବାଙ୍ଗାଲୋର ଚାଲି ଆସିଲେ । ସେତେବେଳେ ବ୍ରଜେନ୍ଦ୍ରନାଥ ଶୀଲ ଉପାଚାର୍ଯ୍ୟ ଥାନ୍ତି । କବି ଏହିଠାରେ ରହି 'ଯୋଗାଯୋଗ' ଓ 'ଶେଷେର କବିତା' ଶେଷ କରିଥିଲେ (୧୯୨୮ ଜୁଲାଇ ୨୮) ଓ ଲେଖିଥିଲେ ନୂତନ ପ୍ରେମ-

କବିତା । ସମକାଳୀନ ଅନ୍ୟାନ୍ୟ କବିତା ସଙ୍ଗେ 'ମହୁଆ' ଗ୍ରନ୍ଥରେ ଏହା ସଙ୍କଳିତ ହୋଇଛି ।

(୧୧୨)

ମାନ୍ଦ୍ରାଜ, ସିଂହଳ ଓ ମହୀଶୂରରେ ପ୍ରାୟ ଦୁଇମାସ କଟାଇ କବି ବର୍ଷାଦିନ ବେଳକୁ ଶାନ୍ତିନିକେତନ ଫେରିଲେ । ବସି ବସି କୌଣସି ଖିଆଲି କାମ କରିବାକୁ ମନ ହେଉଥାଏ 'ରୌଦ୍ର-ବୋଲା ଅଳସ ବେଲ ରେ'—ଗୁଣୁଗୁଣୁ କରି ସଙ୍ଗୀତ ରଚନା କିମ୍ବା ସୃଷ୍ଟି ଛଡ଼ା ଛବି ଆଙ୍କିବା । କିନ୍ତୁ କ୍ଲାନ୍ତ-ଭରି ମନ ସାମାନ୍ୟ କାମଟିଏ ବି କରିବାକୁ ଦେଲାନି ।

କ୍ଲାନ୍ତି ଦୂର ହେବା ପରେ ସ୍ଥିର କଲେ ଯେ ବୃକ୍ଷରୋପଣ ଅନୁଷ୍ଠାନ କରି ବର୍ଷା ମଙ୍ଗଳକୁ ନୂତନ ରୂପ ଦେବାକୁ ହେବ । ଗ୍ରାମ ମଧ୍ୟରେ କାର୍ଯ୍ୟ କରିବାକୁ ଯାଇ ଦେଖିଛନ୍ତି ଯେ ଦେଶର ଜଙ୍ଗଲ ଓ ଗଛଲତା ପ୍ରାୟ ଶେଷ ହୋଇ ଆସୁଛି; ଅଥଚ ନୂତନ ଗଛ ପୋତିବାର କୌଣସି ବ୍ୟବସ୍ଥା ନାହିଁ । ବିଶେଷତଃ ବୀର-ଭୂମିରେ ଓ ସିଉଡ଼ି ଅଞ୍ଚଳରେ ବୃକ୍ଷ ଅଭାବରେ ମାଟିର କଙ୍କରମୟ କଙ୍କାଳ ଦେଖାଯାଉଛି । ଏହି ସମସ୍ୟା ପ୍ରତି ଦୃଷ୍ଟି ଦେଇ କବି ସ୍ଥିରକଲେ ଯେ ଏକ ଆନନ୍ଦ-ଉତ୍ସବ ଅନୁଷ୍ଠାନ ଜରିଆରେ ବୃକ୍ଷ-ରୋପଣ ପ୍ରଥା ଗ୍ରାମମାନଙ୍କରେ ଆରମ୍ଭ କରିବେ । 'ବୃକ୍ଷ ବନ୍ଦନା' ପୂର୍ବରୁ କରିଥିଲେ, ନାନା ବୃକ୍ଷ ସମ୍ପର୍କରେ କବିତା ମଧ୍ୟ ଲେଖିଥିଲେ । ଏଥର ଉତ୍ସବ ଉପଯୋଗୀ କବିତା ଲେଖିଲେ ଓ ମନ୍ତ୍ରାଦି ବାଛି ସ୍ଥିର କଲେ । ମହାଆଡ଼ମ୍ବର ସହକାରେ ବୃକ୍ଷରୋପଣ ଉତ୍ସବ ଅନୁଷ୍ଠିତ ହେଲା (୧୯୨୮ ଜୁଲାଇ ୧୪) ।

ପରଦିନ ଶ୍ରୀନିକେତନରେ 'ହଳ କର୍ଷଣ' ବା 'ସୀତା ଯଜ୍ଞ' ଅନୁଷ୍ଠିତ ହେଲା । ଏହି ଉତ୍ସବରେ 'କୃଷି-ପ୍ରଶଂସା' ପାଠ କରିଥିଲେ ଶ୍ରୀ ବିଧୁଶେଖର ଶାସ୍ତ୍ରୀ ଓ ହଳ ବୁଲାଇଥିଲେ କବି ସ୍ୱୟଂ । ଆଜି-

କାଳ ଭଦ୍ରଲୋକମାନେ ହଳ କରନ୍ତିନାହିଁ, ହଳଧରମାନେ ସମାଜର ନୀଚ ସ୍ତରରେ । ଅଥଚ ଜନକ ରାଜା ଗୃଷକରୁଥିଲେ । ସେ ଦିନର ସମାଜରେ ଏହା ଥିଲା ପଥପ୍ରଦର୍ଶକଙ୍କର କାମ ।

(୧୧୩)

୧୯୨୮ ଖ୍ରୀ: ଅ:ରେ ରବୀନ୍ଦ୍ରନାଥ ପ୍ରମୁଖ ବିଲାତ ଯାଇଥାନ୍ତି । କବି ଏକା ରହିଲେ । କଲିକତା ଯାଇ କଣ୍ଠୁହିଜନ ପାଇଁ ଆର୍ଟସ୍କୁଲର ଅଧ୍ୟକ୍ଷ ମୁକୁଲଚନ୍ଦ୍ର ଦେ'ଙ୍କର ବସାରେ ରହିଲେ । ବିଚିତ୍ର ଘର, ଆଶ୍ରମରେ ରହିଲେ ।

କାବ୍ୟାନୁରାଗୀ ବନ୍ଧୁମାନଙ୍କ ଅନୁରୋଧରେ କବି ତାଙ୍କର ପ୍ରେମ କବିତାର ଏକ ସଂଗ୍ରହ ଆରମ୍ଭ କଲେ—ବିବାହାଦି ଉତ୍ସବରେ ଉପହାର ଦେବା ପାଇଁ । କିଛୁବର୍ଷ ପୂର୍ବେ ଶିଶୁମାନଙ୍କ ପାଇଁ ପୁରାତନ କବିତାର ସଂକଳନ କରୁ କରୁ ଯେମିତି ନୂତନ 'ଶିଶୁ' କବିତା ଗ୍ରନ୍ଥ ସୂତ୍ରପାତ ହୋଇଥିଲା, ଏଥର ମଧ୍ୟ ତାହା ହିଁ ହେଲା । ସଙ୍କଳନ ପାଇଁ ପ୍ରେମ କବିତା ବାଛୁ ବାଛୁ ପ୍ରେମର ପ୍ରହେଳିକା-ରାଜ୍ୟରେ ହୃଦୟ ଆଚ୍ଛନ୍ନ ହେଲା; 'ମହୁଆ'ର କବିତାଗୁଡ଼ିକ ଲେଖିଲେ । କବିଙ୍କର ବୟସ ହୋଇଥାଏ ୬୮ ବର୍ଷ । ଏହି କବିତା ଗ୍ରନ୍ଥ 'କଢ଼ି ଓ କୋମଳ' ବା 'ମାନସୀ'ରେ ପ୍ରେମର ଉତ୍ତାପ ବା ପ୍ରତ୍ୟକ୍ଷ ଅନୁଭୂତି ଆଶା କରିଯାଇ ପାରିବ ନାହିଁ । ତଥାପି ଏଗୁଡ଼ିକ ମଧ୍ୟରେ ଏପରି ଏକ ଗଭୀର ଐକାନ୍ତିକତା ଅଛି, ଯାହା ଯୌବନ ସମୟର କବିତାରେ ମିଳେ ନାହିଁ । ଏ ପ୍ରକାର କବିତାର ପ୍ରେରଣା ମିଳିଥିଲା ବାଂଗାଲୋରରେ ଥିବାବେଳେ 'ଶେଷେର କବିତା' ଲେଖୁ ଲେଖୁ ।

ଶାନ୍ତିନିକେତନ ଫେରିଲେ । ରଥୀନ୍ଦ୍ରନାଥ ବିଲାତରେ; କବି ନିଜେ ସକାଳେ ଅଫିସ କାମ କରନ୍ତି । ସେତେବେଳେ ବିଶ୍ୱଭାରତୀ ସଂସଦ ତରଫରୁ ପୁନର୍ଗଠନ ପରିକଳ୍ପନା ସମ୍ପର୍କରେ କମିଟି ବସିଥାଏ । ପ୍ରବଳ ଅର୍ଥ ସଙ୍କଟ ଦେଖା ଦେଇଥାଏ ।

ଏହିପରି ଭାବରେ ଦିନଯାଏ । କିନ୍ତୁ ନିତିଦିନିଆ ରୁଟିନ୍ କାର୍ଯ୍ୟ କେତେଦିନ କରି ପାରିବେ ? କାନାଡ଼ାରୁ ନିମନ୍ତ୍ରଣ ଆସିଲ, ଧରାବନ୍ଧା ଜୀବନର ଦାୟିତ୍ୱରୁ ମୁକ୍ତି ମିଳିଲା । ସେଠାରେ ନ୍ୟାସନାଲ କାଉନ୍‌ସିଲ୍ ଅଫ୍ ଏଡ଼ୁକେଶନ୍ ନାମକ ଏକ ପ୍ରତିଷ୍ଠାନ ତିନିବର୍ଷ ଅନ୍ତରରେ ଗୋଟିଏ ଲେଖାଏଁ ସମ୍ମିଳନୀ ଆହ୍ୱାନ କରନ୍ତି । ପ୍ରତ୍ୟେକ ଥର ଶିକ୍ଷାର ବିଭିନ୍ନ ସମସ୍ୟା ନେଇ ସେଠାରେ ଆଲୋଚନା ହୁଏ । ଏଥର ରବୀନ୍ଦ୍ରନାଥଙ୍କୁ 'ଶିକ୍ଷା ଓ ଅବକାଶ' ସମ୍ପର୍କରେ ଭାଷଣ ଦେବାକୁ ସେମାନେ ନିମନ୍ତ୍ରଣ କଲେ । ରବୀନ୍ଦ୍ରନାଥ ଯେ ଜଣେ ଶିକ୍ଷାବିତ୍, ବିଦେଶରେ ତାହାର ପ୍ରଥମ ସ୍ୱୀକୃତି ମିଳିଲା । ଏହାପରେ ୧୯୩୦ ଖ୍ରୀ: ଅ: ରେ ଇଂଲଣ୍ଡର ଶିକ୍ଷାବିଷୟକ ଅଧ୍ୟାପକ ଫିଣ୍ଡ୍‌ଲେ ତାଙ୍କର **Foundations of Education** ନାମକ ବିରାଟ ଗ୍ରନ୍ଥ ରବୀନ୍ଦ୍ରନାଥଙ୍କୁ ଉତ୍ସର୍ଗ କରିଥିଲେ । ଏହି ଗ୍ରନ୍ଥରେ ସେ ଜନ୍ ଡିଉଇଙ୍କ ସହିତ କବିଙ୍କର ତୁଳନା କରିଛନ୍ତି । ଜନ୍ ଡିଉଇ ପାଶ୍ଚାତ୍ୟ ଜଗତର ଜଣେ ଶିକ୍ଷାବିତ୍ । ଶିକ୍ଷା ଦର୍ଶନ ଓ ଶିକ୍ଷା ପଦ୍ଧତି ବିଷୟରେ କବିଙ୍କର ସ୍ଥାନ ଯେ କେତେ ଉଚ୍ଚରେ, ତାହା ଏହି ଅଧ୍ୟାପକଙ୍କ ଗ୍ରନ୍ଥରୁ ଜଣାପଡ଼େ ।

କାନାଡ଼ା ଯାତ୍ରାର ସହଯାତ୍ରୀ ହେଲେ ଅଧ୍ୟାପକ ଟକର (**Tucker**), ଅଧ୍ୟାପକ ଅପୂର୍ବ କୁମାର ଚନ୍ଦ ଓ ତରୁଣ କବି ସୁଧୀନ୍ଦ୍ରନାଥ ଦତ୍ତ । ଟକ୍‌ର ସାହେବ ଆମେରିକାନ୍ ମିଶନାରୀ— ସେତେବେଳେ ବିଶ୍ୱଭାରତୀର ଅଧ୍ୟାପକ, ମେଥଡ଼ିସ୍ଟ ଚର୍ଚ୍ଚ ତାଙ୍କର ଖର୍ଚ୍ଚ ଦେଉଥାନ୍ତି । ଅପୂର୍ବ କୁମାର ପ୍ରେସିଡେନ୍‌ସି କଲେଜର ଅଧ୍ୟାପକ । ପରେ ବଂଗଳାର ଶିକ୍ଷା ବିଭାଗ ଡିରେକ୍ଟର ହୋଇଥିଲେ । ସୁଧୀନ୍ଦ୍ରନାଥ କବିଙ୍କର ବନ୍ଧୁ ଓ ବିଶ୍ୱଭାରତୀର ହିତୈଷୀ ପଣ୍ଡିତ ହୀରେନ୍ଦ୍ରନାଥ ଦତ୍ତଙ୍କର ପୁତ୍ର—ଉଦୀୟମାନ କବି ।

ପ୍ରଶାନ୍ତ ମହାସାଗର ଦେଇ ଯିବା କଥା, କାରଣ ସମ୍ମିଳନୀ ଭାଂକୁଭରରେ ହେଉଥାଏ । ଜାପାନ ଦେଇ କାନାଡ଼ା ଯିବା ସମୟରେ ଟୋକିଓରେ ଦୁଇଦିନ ରହିଗଲେ (୧୯୨୯ ମାର୍ଚ୍ଚ) ।

କାନାଡ଼ାରେ ପହଞ୍ଚି ଦେଖିଲେ ମାର୍କିନ ଯୁକ୍ତରାଷ୍ଟ୍ର ବୁଲି ଏଣ୍ଡ୍ରୁଜ ଭାଂକୁଭରରେ ପହଞ୍ଚିଥାନ୍ତି । କବି କାନାଡ଼ାରେ ମୋଟ ଦଶ ଦିନ ଥିଲେ । 'ଅବକାଶତତ୍ତ୍ୱ' ଛଡ଼ା ସାହିତ୍ୟ ବିଷୟରେ ମଧ୍ୟ ଅନ୍ୟ ବକ୍ତୃତା ଦେବାକୁ ହୋଇଥିଲା । ସେ ସମୟରେ କାନାଡ଼ାରେ ବଡ଼ଲାଟ ଥିଲେ ୱିଲିଂଡନ୍—କବିଙ୍କ ସଙ୍ଗରେ ପରିଚୟ ହେଲା । ସେ ପରେ ଭାରତର ବଡ଼ଲାଟ ହୋଇ ଆସିଥିଲେ ।

କାନାଡ଼ାରୁ ମାର୍କିନ ଯୁକ୍ତରାଷ୍ଟ୍ର ଯିବାର ଇଚ୍ଛା ଥିଲା । କିନ୍ତୁ ଶୁଳ୍କ ବିଭାଗ କର୍ମଚାରୀମାନଙ୍କ ଅଭଦ୍ରତାରେ ବିରକ୍ତ ହୋଇ ଜାପାନ ଫେରି ଆସିଲେ ଓ ସେଠାରେ ଏକମାସ ରହିଥିଲେ । ଜାପାନରେ ଭକ୍ତମାନଙ୍କର ଅନୁରୋଧରେ ସେମାନଙ୍କର ବିଞ୍ଚଣା ଓ କାଗଜ ରୁମାଲରେ ଯେଉଁ ସବୁ 'କଣିକା' ଲେଖି ଦେଇଥିଲେ, ତାହାପରେ ଫାୟାର ଫ୍ଲାଇସ୍ ନାମରେ ଛପା ହୋଇଥିଲା । ଜାପାନରୁ ଫେରିବା ବାଟରେ ଇଣ୍ଡୋଚୀନର ସାଇଗନ୍ ସହରରେ ତିନିଦିନ କଟାଇ-ଥିଲେ । ଇଣ୍ଡୋଚୀନରେ ଶିଳ୍ପକଳା-ସଂଗ୍ରହର ପ୍ରସିଦ୍ଧ ଯାଦୁଘର ଭଲଭାବରେ ଦେଖିଲେ । ଏ ବୟସରେ ମଧ୍ୟ ତାଙ୍କର ଦେଖିବା, ଜାଣିବା ଓ ବୁଝିବାର ଆଗ୍ରହ ବାଳକଙ୍କ ପରି ।

(୧୧୪)

କାନାଡ଼ା, ଜାପାନ, ଇଣ୍ଡୋଚୀନ ଭ୍ରମଣ କରି ଯେତେବେଳେ ଶାନ୍ତିନିକେତନ ଫେରିଲେ (୧୯୨୯ ଜୁଲାଇ) ସେତେବେଳକୁ ବର୍ଷା ଆରମ୍ଭ ହୋଇ ଯାଇଥାଏ । କିନ୍ତୁ ମନ ମଧ୍ୟରେ 'ଏପରି ଦିନରେ ତା'ରେ କହିବାର' ସ୍ୱର ଖୋଜି ପାଉ ନାହାନ୍ତି । ଏତେ ଦିନ କବି ସାଥୀର ଅଭାବ ଅନୁଭବ କରି ନାହାନ୍ତି— ନିଜ ମଧ୍ୟରେ ନିଜର ସାଥୀ ଖୋଜି ନେଉଥିଲେ । ଶରୀର ଦୁର୍ବଳ ହେବା ସଙ୍ଗେ ସଙ୍ଗେ ବୁଝି ପାରିଲେ ଯେ ତାଙ୍କର ଚିତ୍ତାକାଶରେ କ୍ରମଶଃ ଆଲୋକ ନିଷ୍ପ୍ରଭ ହୋଇ ଆସୁଛି । ଅବସନ୍ନ ସମୟରେ ଛବି ଆଙ୍କନ୍ତି— ରୂପ ଓ

ରଙ୍ଗର ଏକ ଖେଳ । ବୃଦ୍ଧ ବୟସରେ ଛବି ଆଙ୍କିବାର ନିଶା ପ୍ରଚୁର— ସାରା ଦ୍ୱିପ୍ରହରରେ ବସି ଛବି ଆଙ୍କୁଛନ୍ତି ତ ଆଙ୍କୁଛନ୍ତି । କିନ୍ତୁ ନୂତନ କିଛି ସୃଷ୍ଟି କରି ନ ପାରୁଥିବାରୁ ମନ ଭିତରେ ଅସନ୍ତୋଷ ।

ଏପରି ସମୟରେ ଖବର ପାଇଲେ ଯେ କଲିକତାରେ ଗଗନେନ୍ଦ୍ରନାଥଙ୍କ ଘରେ 'ରାଜା ଓ ରାଣୀ' ଅଭିନୟ ହେବାର ଆୟୋଜନ ଚାଲିଛି । ଖବର ପାଇବା ସଙ୍ଗେ ସଙ୍ଗେ 'ରାଜା ଓ ରାଣୀ' ନୂତନ ଭାବରେ ଲେଖିବା ଆରମ୍ଭ କଲେ । କବିଙ୍କର ବିଶ୍ୱାସ ଯେ ତାଙ୍କର ଯୌବନର ପ୍ରଥମ ନାଟକ 'ରାଜା ଓ ରାଣୀ' ଭଲ ନାଟକ ହୋଇ ପାରିନି; ପ୍ରାୟ ଚାଳିଶ ବର୍ଷ ପରେ ନାଟକର ଅନେକ ତ୍ରୁଟି କବିଙ୍କ ଆଖିରେ ଧରା ପଡ଼ିଲା । ସେଥିପାଇଁ ନୂତନ ଭାବରେ ଲେଖିବାକୁ ଯାଇ ଯାହା ହେଲା ତାହା 'ରାଜା ଓ ରାଣୀ'ର ନୂତନ ସଂସ୍କରଣ ନୁହେଁ, ନୂତନ ଗ୍ରନ୍ଥ 'ତପତୀ' । ଏହା ଗଦ୍ୟାକାରରେ ଲେଖିଥିଲେ ।

ଯୋଡ଼ାସାଁକୋ ଘରେ ଗୃହରେ ଅଭିନୟ ହେଲା । ରବୀନ୍ଦ୍ର-ନାଥ ରାଜା ବିକ୍ରମ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ । ଏହି ଅଭିନୟର ନାଟ୍ୟ-ମଞ୍ଚ-ପରିକଳ୍ପନାରେ ଯଥେଷ୍ଟ ବୈଶିଷ୍ଟ୍ୟ ଥିଲା; ଦୃଶ୍ୟପଟ ଟାଙ୍ଗି ମଣିଷର ମନ ଭୁଲାଇବାର ଶସ୍ତା ଉପାୟ ବର୍ଜିତ ହୋଇଥିଲା । ରବୀନ୍ଦ୍ରନାଥଙ୍କ ମତରେ 'ଆଧୁନିକ ୟୁରୋପୀୟ ନାଟ୍ୟ ମଞ୍ଚରେ ଦୃଶ୍ୟପଟ ଏକ ଉପଦ୍ରବ; ତାହା ନିହାତି ପିଲାଳିଆ ।'

ସମ୍ପୂର୍ଣ୍ଣ ଅବାନ୍ତର ଘଟଣାଟିଏ ଏଠାରେ ଉଲ୍ଲେଖ କରିବା ଦରକାର ପଡ଼ୁଛି । ବିଷୟଟି ହେଉଛି—କବି ଜାପାନବାସ କାଳରେ ଜଣେ ବିଖ୍ୟାତ ଜାପାନୀ ବୀରଙ୍କୁ ବିଶ୍ୱଭାରତୀର ଅଧ୍ୟାପକ ହେବାକୁ ନିମନ୍ତ୍ରଣ କରିଥିଲେ । କବିଙ୍କର ଏକାନ୍ତ ଇଚ୍ଛା ଯେ ଆତ୍ମରକ୍ଷା ପାଇଁ ଏହି ଜାପାନୀ କସରତ୍ ବଙ୍ଗ ଦେଶର ପୁଅ ଝିଅମାନେ, ବିଶେଷ ଭାବରେ ଝିଅମାନେ ଆୟତ୍ତ କରିବା ଉଚିତ । ଝିଅମାନଙ୍କ ଉପରେ ଉପଦ୍ରବ ହେଲେ ସେମାନେ ଆତ୍ମରକ୍ଷା ନ କରିପାରୁ-ଥିବାରୁ କବି ଏହି ଶିକ୍ଷକଙ୍କୁ ବହୁ ଅର୍ଥ ବ୍ୟୟକରି ଆଣିଥିଲେ । କିନ୍ତୁ ଦେଶବାସୀ ତାହା ଗ୍ରହଣ କଲେନାହିଁ । ବିଶ୍ୱଭାରତୀ

କର୍ତ୍ତୃପକ୍ଷ ମଧ୍ୟ ଏହି ପରିକଳ୍ପନାକୁ କୌଣସି ସୁଦୃଢ଼ ଭିତ୍ତି ଉପରେ ଠିଆ କରାଇ ପାରିଲେ ନାହିଁ । ଯଦି ଦେଶ ଏହା ଗ୍ରହଣ କରିଥାନ୍ତା, ତେବେ ହୁଏତ ୧୯୪୬-୪୭ ମସିହାର ଅନେକ ମର୍ମନ୍ତୁଦ ଘଟଣା ଘଟି ନଥାନ୍ତା । ବହୁ ଅମାନୁଷିକତା ହୁଏତ କିଛି ପରିମାଣରେ ଶମିତ ହୋଇଥାନ୍ତା ।

(୧୧୫)

ବରୋଦାର ମହାରାଜା ସାୟାଜି ରାଓ ଗାଏକୱାଡ଼ କେତେ ବର୍ଷ ହେବ ବିଶ୍ୱଭାରତୀକୁ (୧୯୨୫ରୁ) ବାର୍ଷିକ ଛ' ହଜାର ଟଙ୍କା ଦେଇ ଆସୁଥାନ୍ତି । ମହାରାଜା ପ୍ରାୟ ୟୁରୋପରେ ଥାନ୍ତି; ଏଥର ଦେଶକୁ ଫେରିଲେ । ତାଙ୍କର ଇଚ୍ଛା—ରବୀନ୍ଦ୍ରନାଥଙ୍କୁ ତାଙ୍କ ରାଜଧାନୀକୁ ନିମନ୍ତ୍ରିତ କରିବେ ଓ କବି ସେଠାରେ ଏକ ବକ୍ତୃତା ଦେବେ । ସଂବାଦଟି ନିମନ୍ତ୍ରଣ ରୂପରେ ଆସିଲା । କିନ୍ତୁ କବିଙ୍କୁ ଭଲ ଲାଗୁ ନଥାଏ । ଗୋଟିଏ ପତ୍ରରେ ଲେଖିଛନ୍ତି, 'ବରୋଦା ଯାଇ ଗୋଟିଏ ବକ୍ତୃତା ଦେବାକୁ ଆଦେଶ ମିଳିଛି । ରାଜଦ୍ୱାରରେ ରୂପାର ଶୃଙ୍ଖଳରେ ବନ୍ଧା ପଡ଼ିଛି— ବିଶ୍ୱଭାରତୀର ଖାତିରରେ ମୁଣ୍ଡ ଵିକିଛି । ..... ଠିକେ ବି ଭଲ ଲାଗୁନାହିଁ ।' ତଥାପି ଭଲ ଲଗାଇବାକୁ ହେଲା ।

୧୯୩୦ ମସିହା ଜାନୁୟାରୀ ମାସର ଶେଷରେ ଉପରୋକ୍ତ ବକ୍ତୃତା ଦେଇଥିଲେ । ପୌଷ-ଉତ୍ସବର କିଛିଦିନ ପରେ କବି ଅହମଦାବାଦ ଗଲେ; ସେଠାରେ ଅମ୍ବାଲାଲଙ୍କ ଘରେ ପନ୍ଦର ଦିନ ରହିଲେ । ଅକୃତ୍ରିମ ଯତ୍ନ ପାଉଥାନ୍ତି । ବକ୍ତୃତା ପୂର୍ବଦିନ ବରୋଦାରେ ପହଞ୍ଚିଲେ (୨୭ଜାନୁୟାରୀ); ସେଠାରେ ରାଜ ଅତିଥି ହୋଇଥିଲେ ।

କବି ଯେତେବେଳେ ବରୋଦାରେ, ସେ ସମୟରେ କଲିକତାରେ ବଙ୍ଗୀୟ ସାହିତ୍ୟ ସମ୍ମିଳନୀର ଊନବିଂଶ ଅଧିବେଶନ

ହେଉଥାଏ । କବି ସଭାପତି ହେବେ ବୋଲି ଠିକ୍ ହୋଇଥାଏ । ସମ୍ମିଳନୀ କାର୍ଯ୍ୟ ଫେବୃୟାରୀ ୨ ତାରିଖରେ ଆରମ୍ଭ ହେବା କଥା । ସମ୍ମିଳନୀରେ ଉପସ୍ଥିତ ହୋଇ ପାରିବେ ନାହିଁ ଜାଣି ରବୀନ୍ଦ୍ରନାଥ ବରୋଦାରୁ 'ପଞ୍ଚାଶୋର୍ଦ୍ଧେ' ନାମକ ଭାଷଣ ଲେଖି କଲିକତା ପଠାଇ ଦେଲେ । ସଭା କବିଙ୍କୁ ଚାହିଁଥିଲା, କେବଳ ତାଙ୍କର ଭାଷଣ ନୁହେଁ । ଏଥିପାଇଁ ଅନେକ ବିରକ୍ତ ହେଲେ । ଫେରି ଆସି ରବୀନ୍ଦ୍ରନାଥ ସମସ୍ତ ଖବର ଶୁଣିଲେ; ରାମାନନ୍ଦ ବାବୁଙ୍କୁ ଖଣ୍ଡିଏ ପତ୍ରରେ ଲେଖିଲେ— 'ଶୁଣିଲି ଡାକ ପିଆଦା ମାରଫତରେ ନଯାଇ ଅବନ (ଅବନୀନ୍ଦ୍ରନାଥ) ମାରଫତରେ ଲେଖାଟି ଯିବାଦ୍ୱାରା ସେମାନେ (କର୍ତ୍ତୃପକ୍ଷ) ସମ୍ମାନହାନୀ ଦୃଷ୍ଟେ ଲେଖାର ଅସ୍ତିତ୍ୱ ସ୍ୱୀକାର କରି ନାହାନ୍ତି । ଏ ବିଷୟରେ ମୋର ବୁଦ୍ଧିର ତ୍ରୁଟି ଅଛି; କିନ୍ତୁ କାହାରିକୁ ଅସମ୍ମାନ କରିବାର କାରଣ ବା ଇଚ୍ଛା ମୋର ନଥିଲା । ଏତେ ପରିଶ୍ରମ କରି ମୋ ଜୀବନରେ ଅନ୍ୟ କୌଣସି ଦିନ ଲେଖିନି ।'

(୧୧୬)

୧୯୩୦ ଖ୍ରୀ: ଅ: ହେଉଛି ରବୀନ୍ଦ୍ରନାଥଙ୍କର ଶେଷ ୟୁରୋପ ଭ୍ରମଣ । ମାର୍ଚ୍ଚ ମାସ ଆରମ୍ଭରେ କବି ସପରିବାରେ ବିଲାତ ଗଲେ । ସଙ୍ଗରେ ଗଲେ ରଥୀନ୍ଦ୍ରନାଥ, ପ୍ରତିମା ଦେବୀ ଓ ସେମାନଙ୍କର ପାଳିତା କନ୍ୟା ଓ ସେକ୍ରେଟାରୀ ହିସାବରେ ଆରିୟାମ୍ । ରଥୀନ୍ଦ୍ରନାଥ ଖୁବ୍ ଅସୁସ୍ଥ ହୋଇ ପଡ଼ିବାରୁ ଶେଷରେ ଡାକ୍ତର ସୁହୃଦ ଚୌଧୁରୀଙ୍କୁ ସଙ୍ଗରେ ନେବାକୁ ପଡ଼ିଲା । ଏହି ବିରାଟ ବାହିନୀ ନେଇ କବି ଇଂଲଣ୍ଡ ଗଲେ ।

ଏଥର ଅକ୍ସଫୋର୍ଡରେ ହିବାର୍ଟ ବକ୍ତୃତା ଦେବା ପାଇଁ ଯାଉଥାନ୍ତି । ୧୯୨୮ ମସିହାରେ ଏହି ବକ୍ତୃତା ଦେବା ପାଇଁ ପ୍ରଥମ ଆହ୍ୱାନ ଆସିଥିଲା । ସେଥର ଅସୁସ୍ଥତା ପାଇଁ ଯାଇପାରି ନଥିଲେ ।

ଦ୍ୱାରା ବକ୍ତୃତା ଦେବା ଛଡ଼ା ଏଥର ଯିବାର ଅନ୍ୟ ଏକ ଉଦ୍ଦେଶ୍ୟ ଥିଲା । କବି ୟୁରୋପରେ ତାଙ୍କର ଛବିଗୁଡ଼ିକର ପ୍ରଦର୍ଶନୀ କରିବାକୁ ଚାହୁଁଥିଲେ । ଗତ କେତେବର୍ଷ ଭିତରେ କବି ବହୁ ଛବି ଆଙ୍କିଛନ୍ତି । ସେ ଛବି ଅଙ୍କନରେ କୌଣସି ବିଶେଷ ପଦ୍ଧତି ନାହିଁ । ଏଥିରେ କୌଣସି ବିଶେଷ ସ୍କୁଲର ବିଶେଷ ଭଙ୍ଗୀ ଖୋଜି ପାଇବା ସମ୍ଭବ ନୁହେଁ । କବିଙ୍କର ନିଜସ୍ୱ ଟେକ୍‌ନିକ୍, ମୌଳିକ ରୂପ-କଳ୍ପନା —କେତେକ ପରିମାଣରେ ସାମ୍ୟ ରହିଛି ୟୁରୋପର ଅତ୍ୟାଧୁନିକ ଉଦ୍ଭଟ ରୂପ-ସ୍ରଷ୍ଟା ଶିଳ୍ପୀମାନଙ୍କ କାର୍ଯ୍ୟ ସଙ୍ଗରେ ।

ରବୀନ୍ଦ୍ରନାଥଙ୍କର ଛବି ସମ୍ପର୍କରେ ନାନା ମତ ରହିଛି । ଶିଳ୍ପ ସମାଲୋଚକମାନେ ସେ ସମ୍ପର୍କରେ ବିଶ୍ଳେଷଣ କରିବେ । କିନ୍ତୁ ଏତିକି କୁହାଯାଇପାରେ ଯେ, ତାଙ୍କ ଛବି ମଧ୍ୟରେ ଏପରି ଏକ ମୌଳିକତା ଅଛି ଯାହା ବିଶିଷ୍ଟ ଶିଳ୍ପୀଙ୍କର ଦୃଷ୍ଟି ଆକର୍ଷଣ ନକରି ରହି ପାରିବ ନାହିଁ । ନଦେଖି ଅନ୍ୟମନସ୍କ ଭାବରେ କେହି ଏଡ଼େଇ ଦେଇ ଯାଇପାରିବ ନାହିଁ । ଦେଖିବାକୁ ହେବ, ଭାବିବାକୁ ହେବ— ତାପରେ ଯାହାର ଯାହା ଖୁସି ସମାଲୋଚନା କରିପାରେ । କବିଙ୍କର ଇଚ୍ଛା ଯେ ସେହି ଛବିଗୁଡ଼ିକର ପ୍ରଦର୍ଶନୀ କରିବେ ୟୁରୋପରେ । ତାଙ୍କର ବିଶ୍ୱାସ ଯେ ଏ ସବୁର ଦୋଷଗୁଣ କେବଳ ସେହିଠାରେ ହିଁ ବିଚାର ହୋଇପାରିବ । କାରଣ ୟୁରୋପରେ ଧରାବନ୍ଧା ଗତରେ ଚାଲୁଥିବା ଶିଳ୍ପୀଙ୍କ ଛଡ଼ା ଅନେକ ଅଦ୍ଭୁତ ଖିଆଲି ଆର୍ଟିଷ୍ଟ ଅଛନ୍ତି ଓ ସେମାନଙ୍କର କଳା ଚାତୁର୍ଯ୍ୟ ବୁଝିବା ଲୋକଙ୍କର ମଧ୍ୟ ଅଭାବ ନାହିଁ । ତେଣୁ ରବୀନ୍ଦ୍ରନାଥ ଭାରତରେ ତାଙ୍କର ଛବିର କୌଣସି ପ୍ରଦର୍ଶନୀ ନକରି ସିଧାସଳଖ ପ୍ୟାରିସ ଗଲେ । ୟୁରୋପରୁ ଗୋଟିଏ ପତ୍ରରେ ଲେଖିଛନ୍ତି, 'ମୋହର ଏହି ଶେଷ କୀର୍ତ୍ତି ଏହି ଦେଶରେ ହିଁ ରହିଯିବ ।'

ଦକ୍ଷିଣ ଫ୍ରାନ୍‌ସର ମଣ୍ଟିକାର୍ଲୋ ନିକଟରେ କାପମାର୍ଟିନ ନାମକ ଏକ ଛୋଟ ସହରରେ ଦାନପତି କାହନ୍‌ଙ୍କର ଗୋଟିଏ ଘର ଥିଲା । କବି ସେହିଠାରେ ରହିଲେ । ରବୀନ୍ଦ୍ରନାଥ ପ୍ରମୁଖ ଜଳବାୟୁ ପରିବର୍ତ୍ତନ କରିବା ପାଇଁ ସୁଇଡେନ ଗଲେ ।

ଫ୍ରାନ୍‌ସରେ ପହଞ୍ଚିବାର ମାସାଧିକ କାଳ ପରେ ପାରିସରେ ଚିତ୍ର ପ୍ରଦର୍ଶନୀ ହେଲା । ଏଥର ବ୍ୟବସ୍ଥା କଲେ କଁତେସ ନୋଆଲସ—ପ୍ୟାରିସ ସମାଜର ଶୀର୍ଷସ୍ଥାନୀୟା ରମଣୀ ।

ଏହାଛଡ଼ା ଅଜସ୍ର ଅର୍ଥ ବ୍ୟୟ କଲେ ଆର୍ଜେଣ୍ଟାଇନାର 'ବିଜୟା'-ଭିକ୍‌ଟୋରିଆ ଓକାମ୍ପୋ—କବି ଯାହାଙ୍କୁ 'ପୂରବୀ' ଉତ୍ସର୍ଗ କରିଥିଲେ । ପ୍ୟାରିସରେ ଘର ପାଇଲେ ପ୍ରଦର୍ଶନୀ କରାଯାଏ ନାହିଁ, ଅନେକ ପରିଶ୍ରମ କରିବାକୁ ପଡ଼େ, ଅର୍ଥବ୍ୟୟ ମଧ୍ୟ ପ୍ରଚୁର । କୌଣସି ବିଷୟରେ 'ବିଜୟା' ତ୍ରୁଟି କଲେନି । କବିଙ୍କୁ ସେ ଖୁବ୍ ଭଲ ପାଉଥିଲେ ।

ପ୍ୟାରିସର ବନ୍ଧୁ ଓ ଭାରତୀୟ ଛାତ୍ରମଣ୍ଡଳୀ ମହାସମାରୋହରେ କବିଙ୍କର ଜନ୍ମୋତ୍ସବ ପାଳନ କଲେ । ଏହାପରେ କବି ଇଂଲଣ୍ଡ ଗଲେ (୧୯୩୦ ମେ ୧୧ ତାରିଖ) । ଲଣ୍ଡନରେ ନରହି ସିଧାସଳଖ ଗୁଲିଲେ ବର୍ମିଂହାମର ସହରତଳି ଉଡ୍‌ବ୍ରୁକ୍‌କୁ । କୋୟେକାର ଖ୍ରୀଷ୍ଟିଆନ୍ ସମାଜର ପରିଚାଳନାଧୀନ ସେଲିଓକ କଲେଜରେ ରହିଲେ । ଉଡ୍‌ବ୍ରୁକରେ ଅମିୟ ଚକ୍ରବର୍ତ୍ତୀ ସସ୍ତ୍ରୀକ ଥାନ୍ତି । ଅମିୟଚନ୍ଦ୍ରଙ୍କୁ ଏଠାରେ ପାଇ କବି ଖୁବ୍ ଖୁସି । କାରଣ ଲେଖାଲେଖି ସମ୍ପର୍କରେ ତାଙ୍କ ନିକଟରୁ ପ୍ରଚୁର ସହାୟତା ପାଇଲେ । ତା ଛଡ଼ା ଆଳାପ ଆଲୋଚନାରେ ବି ସମୟ କଟିଲା ।

ଏ ମଧ୍ୟରେ ଭାରତରେ ଗାନ୍ଧିଜୀଙ୍କର ଦ୍ୱିତୀୟ ଦଫା ଆଇନ ଅମାନ୍ୟ ଆନ୍ଦୋଳନ ଆରମ୍ଭ ହୋଇଥାଏ । ୧୯୩୫ ମସିହାରେ ଭାରତ ଶାସନର ନୂତନ ଆଇନ ଜାରି ହେବାର ଥାଏ । ସେଥିପାଇଁ ସମସ୍ତ ବ୍ୟବସ୍ଥା କରା ଯାଉଥାଏ । ଗତ ଦଶବର୍ଷର ଦ୍ୱୈତ ଶାସନ ବ୍ୟବସ୍ଥା ପର୍ଯ୍ୟାଲୋଚନା କରିବା ପାଇଁ କମିଟି, କମିଶନ ଆଦି ବସୁଥାଏ । ଗାନ୍ଧିଜୀ ଦାବୀ କରୁଥାନ୍ତି ପୂର୍ଣ୍ଣ ସ୍ୱରାଜ ପାଇଁ । ତେଣୁ ଏଥର କେବଳ ନିଷ୍କ୍ରିୟ ଅସହଯୋଗ ନୁହେଁ, ସକ୍ରିୟ ଆଇନ ଅମାନ୍ୟ ଆନ୍ଦୋଳନ ଘୋଷଣା କରିଥାନ୍ତି । ଆଇନ ଅମାନ୍ୟର ପ୍ରଧାନ କାର୍ଯ୍ୟ ହେଲା ଲବଣ ଆଇନ ଭଙ୍ଗ । ସେ ସମୟରେ ଲୁଣ ବ୍ୟବସାୟ ସରକାରୀ କର୍ତ୍ତୃତ୍ୱାଧୀନ ଥିଲା; ଲୁଣ ତିଆରି ପାଇଁ ସମୁଦ୍ର ଜଳ କେହି ବ୍ୟବହାର କରି ପାରୁ ନଥିଲେ । ଏହି ଆଇନ ଭଙ୍ଗ କରିବା ପାଇଁ

ଗାନ୍ଧିଜୀ କେତେକ ବଛା ବଛା ସତ୍ୟାଗ୍ରହୀଙ୍କୁ ନେଇ ଦାଣ୍ଡୀ ଯାତ୍ରା କଲେ (ଏପ୍ରେଲ ୬ତାରିଖ) । ୧୯୩୦ ମସିହା ଏପ୍ରିଲ ୧୮ତାରିଖରେ ଲବଣ ଆଇନ ଭଙ୍ଗ କଲେ (ଜାଲିଆନା ୱାଲାବାଗ ହତ୍ୟାକାଣ୍ଡର ସ୍ମୃତି ଦିବସରେ) ।

ସରକାର କଠୋର ନୀତି ଅବଲମ୍ବନ କରି ଏକମାସ ମଧ୍ୟରେ ଗାନ୍ଧିଜୀ, ଜବାହାରଲାଲ ଓ ଆହୁରି ଅନେକଙ୍କୁ ଗିରଫ କରି ଜେଲରେ ଭର୍ତ୍ତି କଲେ । ଏହା ଚାଲିଥାଏ ପଶ୍ଚିମ ଭାରତର ବମ୍ବେ ପ୍ରଦେଶରେ ।

ଭାରତର ଅପର ପ୍ରାନ୍ତରୁ ଖବର ମିଳିଲା ଯେ ବଙ୍ଗାଳୀ ବିପ୍ଳବୀମାନେ ଚଟ୍ଟଗ୍ରାମର ଅସ୍ତ୍ରାଗାର ଲୁଣ୍ଠନ କରିଛନ୍ତି । ଢାକାରେ ହିନ୍ଦୁ-ମୁସଲମାନ ଗଣ୍ଡଗୋଳ ଆରମ୍ଭ ହୋଇଗଲା ।

ଚଟ୍ଟଗ୍ରାମରେ ମଧ୍ୟ ଅନୁରୂପ ଘଟଣା ଘଟିଲା । ସରକାରଙ୍କ ପକ୍ଷରୁ ଦଙ୍ଗାହଙ୍ଗାମ ଦମନର ଲୋକଦେଖାଣିଆ ପ୍ରଚେଷ୍ଟା ଚାଲିଲା; ଅଥଚ ହିନ୍ଦୁଙ୍କର ଧନସମ୍ପତ୍ତି ଲୁଟପାଟ ହେବାକୁ ଲାଗିଲା । ପଶ୍ଚିମ ଭାରତର ସୋଲାପୁରଠାରେ ଶ୍ରମିକମାନଙ୍କ ମଧ୍ୟରେ ଅଶାନ୍ତି ଦେଖାଦେଲା । ତିନିଜଣ ବିଶିଷ୍ଟ ଯୁବକଙ୍କୁ ଏହାର ପ୍ରରୋଚକ ସ୍ଥିର କରି ସାମରିକ ଅଦାଲତରେ ସେମାନଙ୍କୁ ଫାଶୀ ଦିଆଗଲା ।

ଇଂଲଣ୍ଡରେ ଥିବା ସମୟରେ ରବୀନ୍ଦ୍ରନାଥ ଏହି ଖବର ସବୁ ପାଇଲେ । ସେ ସଙ୍ଗେ ସଙ୍ଗେ ମାଞ୍ଚେଷ୍ଟର ଗାର୍ଡ଼ିୟାନ ଓ ସ୍ପେକ୍‌ଟାଟର ପତ୍ରିକାରେ ଭାରତର ଅବସ୍ଥା ଓ ବ୍ରିଟିଶ ଶାସକମାନଙ୍କର ବ୍ୟବହାର ସମ୍ପର୍କରେ ପତ୍ର-ପ୍ରବନ୍ଧ ଲେଖିଅରେ ନିଜର ମତବ୍ୟକ୍ତ କଲେ । ଗାନ୍ଧିଜୀଙ୍କ ସହିତ କବିଙ୍କର ଯେତେ ମତଭେଦ ଥିଲେ ବି ବିଦେଶୀ କାଗଜରେ କିମ୍ବା ସାମ୍ବାଦିକଙ୍କ ସହିତ କଥାବାର୍ତ୍ତାରେ ତାହା ପ୍ରକାଶ କରିନାହାନ୍ତି । କାରଣ ଗାନ୍ଧିଜୀଙ୍କର ନେତୃତ୍ୱ ପଛରେ ଯେଉଁ ଆଦର୍ଶବାଦ ରହିଛି କବି ତାହା ସମ୍ପୂର୍ଣ୍ଣ ସମର୍ଥନ କରୁଥିଲେ । ଦେଶର ଅବସ୍ଥା ପ୍ରତି ଲକ୍ଷ୍ୟ ରଖି କବି ଗାନ୍ଧିଜୀଙ୍କର ଅହିଂସା ତତ୍ତ୍ୱର ବ୍ୟାଖ୍ୟା କଲେ । ଦେଶବାସୀଙ୍କ ଉଦ୍ଦେଶ୍ୟରେ ଖବର ପଠାଇଲେ— ଭାରତକୁ ଆଜି ଏକଥା ମନେରଖିବାକୁ ହେବ ଯେ ସେ ଯେପରି

ସାର ପର ନିଜର ଧର୍ମରକ୍ଷା କରେ ଓ ଅତ୍ୟାଗ୍ଭରର ପ୍ରତିବାଦରେ ଯେପରି କୌଣସି ଅନାଗ୍ଭର ନକରେ ।

କୋୟେକାରମାନଙ୍କର ବାର୍ଷିକ ସଭାରେ ବକ୍ତୃତା ଦେବାକୁ ନିମନ୍ତ୍ରଣ ଆସିଲା । କବି ଭାରତର ଆଶା-ଆକାଂକ୍ଷା ଓ ତଦାନୀନ୍ତନ ଅବସ୍ଥା ସମ୍ବନ୍ଧରେ ଯାହା କହିଲେ, ସେ ବିଷୟରେ ସଭାରେ ବେଶ ବାଦ ପ୍ରତିବାଦ ଗ୍ଭଲିଲା । କୋୟେକାର ସଭାର ନିୟମାନୁଯାୟୀ ପ୍ରତ୍ୟେକ ସଦସ୍ୟ ଖୋଲାଖୋଲି ଭାବରେ ନିଜର ମତବ୍ୟକ୍ତ କରି ପାରିବେ । ଶେଷରେ କବି ସ୍ପଷ୍ଟ ଭାବରେ କହିଥିଲେ ଯେ ଆପଣ-ମାନେ ଆଜ ଆମ୍ଭମାନଙ୍କ ଅବସ୍ଥାରେ ଥିଲେ କଣ କରନ୍ତେ, ତାହା ଭାବି ଭାରତ ସମ୍ପର୍କରେ ବିଗ୍ଭର କରିବେ । ଆମ୍ଭେମାନେ ଦେଶର ସେବା କରିବାକୁ ଗ୍ଭହୁଁ, ଏ ବିଷୟରେ ଆପଣମାନଙ୍କର ସହଯୋଗିତା ଦରକାର । ପୃଥିବୀର କୌଣସି ଜାତି ପକ୍ଷରେ ସମ୍ପୂର୍ଣ୍ଣ ସ୍ୱାଧୀନତା ସମ୍ଭବ ନୁହେଁ, ପରସ୍ପର ପାଖରେ ନିର୍ଭରଶୀଳତା ହିଁ ହେଉଛି ସଭ୍ୟତାର ଆଦର୍ଶ । କିନ୍ତୁ ସେଥିପାଇଁ ପରର ଅଧୀନରେ ରହିବା ସମ୍ଭବ ନୁହେଁ ।

ଉଡ୍‌ବ୍ରୁକ୍‌ରେ ଦିନଗୁଡ଼ିକ ମୋଟଉପରେ ଆନନ୍ଦରେ କଟିଲା ।

କବି ଅକ୍‌ସଫୋର୍ଡରେ ହିବାର୍ଟ ବକ୍ତୃତାଗୁଡ଼ିକ ମେ ମାସରେ ପାଠକଲେ; କବିଙ୍କର ବକ୍ତୃତାର ବିଷୟ ଥିଲା ମାନବଧର୍ମ । (ପରେ ସେହି ଏକା ତତ୍ତ୍ୱକୁ 'ମାନୁଷେର ଧର୍ମ' ନାମ ଦେଇ ରବୀନ୍ଦ୍ରନାଥ କଲିକତା ବିଶ୍ୱବିଦ୍ୟାଳୟରେ ବକ୍ତୃତା ଦେଇଥିଲେ) । ମେ-ଜୁନ ମାସ ଦୁଇଟି ବୁଲବୁଲିରେ କଟିଲା । ଶେଷ କେତେଦିନ ଡାର୍ଟିଂଟନ ହଲରେ ଏଲମହାର୍ଷ୍ଟଙ୍କର ଅତିଥି ହୋଇଥିଲେ ।

(୧୧୭)

ଇଂଲଣ୍ଡରୁ ଜର୍ମାନୀ ଫେରିଲେ । ଗତ କେତେ ବର୍ଷ ମଧ୍ୟରେ ସେ ଦେଶରେ ଅନେକ ପରିବର୍ତ୍ତନ ହୋଇଥାଏ । ୧୯୨୧ ବା ୧୯୨୨

ମସିହାର ଜର୍ମାନୀ ଓ ୧୯୩୦ ମସିହାର ଜର୍ମାନୀ ମଧ୍ୟରେ ବହୁତ ତଫାତ୍ । ଜର୍ମାନମାନଙ୍କ ମଧ୍ୟରେ ବିଶ୍ୱଜାତୀୟତାର ଭାବ ପ୍ରଥମରୁ ଲକ୍ଷ୍ୟ କରିଥିଲେ—ତାହା ପରାଭୂତ ଜାତିର ସାମୟିକ ଭାବୋଚ୍ଛ୍ୱାସ ମାତ୍ର । ସେ ଉଦାର ଦୃଷ୍ଟି ବର୍ତ୍ତମାନ ଲୋପ ପ୍ରାପ୍ତ । ୟୁରୋପର ସକଳ ଜାତିଙ୍କଠାରୁ ଅତ୍ୟାଗ୍ରହ ସହି ସହି ଏମାନେ ଭିତରେ ଭିତରେ ଉଗ୍ର ଜାତୀୟବାଦୀ ହୋଇଛନ୍ତି । ଏହା ହେଉଛି ହିଟଲରଙ୍କର ଆବିର୍ଭାବର ସୂଚନା-ପର୍ବ ।

ବର୍ଲିନରେ ପହଞ୍ଚିବାର ପରଦିନ (୧୯୩୦ ଜୁଲାଇ ୧୨) ଜର୍ମାନୀର ପାର୍ଲିମେଣ୍ଟ ବା ରାଇକ୍‌ଷ୍ଟାଗ୍‌ରେ ପ୍ରଧାନ ମନ୍ତ୍ରୀ ଡକ୍ଟର ବ୍ରୁନିଂ ଓ ଅନ୍ୟାନ୍ୟ ସଦସ୍ୟମାନଙ୍କ ସହିତ କବିଙ୍କର ସାକ୍ଷାତ ହେଲ । କିଛି ଦିନ ପରେ ସାକ୍ଷାତ୍ ହେଲ ଅଧ୍ୟାପକ ଆଇନଷ୍ଟାଇନ୍‌ଙ୍କ ସଙ୍ଗରେ । ଏଥର ଭ୍ରମଣ ସମୟର ଏହା ଏକ ବିଶେଷ ଘଟଣା । ସେତେବେଳକୁ ଇହୁଦୀ ଅପବାଦ ଯୋଗୁ ଆଇନଷ୍ଟାଇନ୍‌ଙ୍କୁ ଦେଶ-ତ୍ୟାଗ କରିବାକୁ ହୋଇନ । ଆମେରିକାରେ ମଧ୍ୟ ଆଇନଷ୍ଟାଇନ୍‌ଙ୍କ ସଙ୍ଗରେ କବିଙ୍କର ପୁନର୍ବାର ଦେଖା ହୋଇଥିଲ । ବର୍ଲିନରେ କବି-ଙ୍କର ଚିତ୍ର-ପ୍ରଦର୍ଶନୀ ହେଲ; ଏହାର ବ୍ୟବସ୍ଥା କଲେ ଜର୍ମାନୀ ମହିଳା ଡକ୍ଟର ସେଲଗ୍ । ଏହି ବିଦୁଷୀ ମହିଳା କିଛିଦିନ ଆଗରୁ ଅଳ୍ପ କିଛିଦିନ ପାଇଁ ଶାନ୍ତିନିକେତନରେ ଥିଲେ । ପ୍ୟାରିସରେ ଯେପରି ଭିକ୍ଟୋରିୟାଙ୍କୁ ପାଇଥିଲେ, ଏଠାରେ ସେପରି ପାଇଲେ ଡାଃ ସେଲଗ୍‌ଙ୍କୁ । ଏପରି କି କାମଦାମରେ ସେ ବେଶୀ ତତ୍ପର ବୋଲି କବିଙ୍କର ମନେ ହେଲ । କବି ଲେଖିଛନ୍ତି ଯେ ଏପରି ସମୟରେ ମହିଳା ବନ୍ଧୁ ପାଇଲେ ସବୁଠାରୁ ବେଶୀ ସୁବିଧା । ସେ ସୌଭାଗ୍ୟ କବି ଚିର ଜୀବନ ଲଭ କରିଥିଲେ ।

ବର୍ଲିନରୁ ମ୍ୟୁନିକ୍ ଆସିଲେ । ସେଠାରୁ ଦିନେ ମଧ୍ୟ-ୟୁରୋପର ବିଖ୍ୟାତ ପ୍ୟାଶନ ପ୍ଲେ ବା ଯୀଶୁଖ୍ରୀଷ୍ଟଙ୍କ ଜୀବନର ଶେଷପର୍ବର ଅଭିନୟ ଦେଖିବାକୁ ଗୋଟିଏ ଗ୍ରାମକୁ ଗଲେ । ବାର ବର୍ଷ ଅନ୍ତରରେ ଏହି ଉତ୍ସବ ହୁଏ । ଦେଶ ବିଦେଶରୁ ବହୁତ ଲୋକ ଦେଖିବାକୁ ଆସନ୍ତି । ଦିନସାରା କବି ଉତ୍ସବ ଦେଖିଥିଲେ—

ଅବଶ୍ୟ ଉତ୍ସବଟି ଜର୍ମାନୀ ଭାଷାରେ ହେଉଥାଏ । ଖ୍ରୀଷ୍ଟଙ୍କର ଆତ୍ମତ୍ୟାଗ କବିଙ୍କ ମନକୁ ଖୁବ୍ ଆକୃଷ୍ଟ କରିଥିଲା ।

ଏ ମଧ୍ୟରେ କବିଙ୍କୁ ଜଣେ ଚଳଚିତ୍ର ବ୍ୟବସାୟୀ କିଛି ଲେଖିଦେବା ପାଇଁ ଅନୁରୋଧ କରିଥିଲେ । ଏହି ପ୍ୟାଶନ-ପ୍ଲେ ଦେଖି କବିଙ୍କ ମନରେ ଯେଉଁ ଗଭୀର ରେଖାପାତ ହୋଇଥିଲା, ତାର ସ୍ପଷ୍ଟ ପ୍ରଭାବ ପଡ଼ିଲା 'The Child' କଥିକାଟିରେ ।

ଦେଶକୁ ଫେରି 'ଶିଶୁତୀର୍ଥ' ନାମରେ ତାହାକୁ ରୂପାନ୍ତରିତ କରିଥିଲେ । ବିଷୟ ବସ୍ତୁ ହେଉଛି—ଆଲୋକର ସନ୍ଧାନରେ ନେତା ଚାଲିଛନ୍ତି । ଅନୁଗାମୀଗଣ ଅନୁସରଣ କରୁ କରୁ ସଂଶୟୀ ବା ଅବିଶ୍ୱାସୀ ହୋଇ ପଡ଼ନ୍ତି । ଶେଷରେ ଉଚ୍ଛୃଙ୍ଖଳ ଜନତା ନେତାଙ୍କୁ ହତ୍ୟା କରନ୍ତି । ଏହାପରେ ବି ସେହି ନିହତ ନେତାଙ୍କର ଅଲକ୍ଷ୍ୟ ନିର୍ଦ୍ଦେଶ ଅନୁସରଣ କରି ଦୀର୍ଘ ଦୁର୍ଗମ ପଥ ଅତିକ୍ରମ କରି ସମସ୍ତେ ଏକ ପର୍ଣ୍ଣ କୁଟୀରରେ ପହଞ୍ଚି ନବଜାତ ଶିଶୁ ମଧ୍ୟରେ ମାନବ ଜାତିର ଚିର-ଅନ୍ୱେଷିତ ଧନକୁ ଦେଖନ୍ତି; ଯାହା ସମ୍ପର୍କରେ ବେଦରେ କୁହାଯାଇଛି—ସନାତନଂ ଏନମ୍ ଆହୁର୍ ଉତାଦ୍ୟସାତ୍ ପୁନର୍ଣ୍ଣବଃ । ସେ ହିଁ ହେଉଛନ୍ତି ସନାତନ, ସେ ହିଁ ଆଜି ପୁନର୍ଣ୍ଣବ ।

ଜର୍ମାନୀ ଭ୍ରମଣରେ ଅମିୟଚନ୍ଦ୍ର କବିଙ୍କର ସାଥୀ ଥିଲେ । ସେ ଗୋଟିଏ ପତ୍ରରେ ଲେଖିଛନ୍ତି, 'ସମ୍ରାଟ ପରି ଜର୍ମାନୀ ପରିକ୍ରମଣ କରିଛୁ—ଯାହା କିଛି ଶ୍ରେଷ୍ଠ ତାହା ଆପଣା ସ୍ତୁଏଁ ଆମ୍ଭମାନଙ୍କ ନିକଟକୁ ଆସିଛି । ପୃଥିବୀର ଅନ୍ୟ କେଉଁ ଅଞ୍ଚଳରେ ଲୋକେ ଏମାନଙ୍କଠାରୁ ରବୀନ୍ଦ୍ରନାଥଙ୍କୁ ବେଶୀ ଭଲ ପାଆନ୍ତି ବୋଲି ଭାବି ପାରୁନି ।' ଅମିୟଚନ୍ଦ୍ର ବୁଦ୍ଧିମାନ ହେଲେ ବି କବି । ତେଣୁ ବୁଝିପାରି ନଥିଲେ ଯେ ଭିତରେ ଭିତରେ ନିଆଁ କୁହୁଳୁଛି । ଅଳ୍ପ କେତେ ବର୍ଷ ପରେ ହିଟଲରଙ୍କ ହୁକୁମରେ ରବୀନ୍ଦ୍ରନାଥଙ୍କର ରଚନା ପ୍ରକାଶ ଓ ବିକ୍ରୟ ଜର୍ମାନୀରେ ନିଷିଦ୍ଧ ହୋଇଥିଲା—କାରଣ ରବୀନ୍ଦ୍ରନାଥ ଆଦର୍ଶବାଦୀ, ଶାନ୍ତିକାମୀ, ବିଶ୍ୱଜନୀନତାକୁ ସ୍ୱଜାତ୍ୟାଭିମାନଠାରୁ ଉଚ୍ଚ ସ୍ଥାନ ଦେଇଛନ୍ତି । ତାଙ୍କର ଗ୍ରନ୍ଥ ନାଜୀ ଯୁବକଙ୍କର ଅପାଠ୍ୟ । ଯାହା ହେଉ, ମ୍ୟୁନିକ୍‌ରୁ ବର୍ଲିନ ହୋଇ ଡେନମାର୍କର ଏଲସିନୋର ସହରକୁ ଆସିଲେ । 'ନିଉ ଏଡୁକେଶନ

ଫେଲୋସିପ ନାମକ ନୂତନ ଏକ ଅନୁଷ୍ଠାନର ଆହ୍ୱାନରେ ୟୁରୋପର ନାନା ଦେଶରୁ ଗୁଣି ଅଧ୍ୟାପକମାନେ ଏଠାକୁ ଆସିଥାନ୍ତି; ରବୀନ୍ଦ୍ରନାଥ ମଧ୍ୟ ଆମନ୍ତ୍ରିତ ହୋଇଥିଲେ ।

ଏଲସିନୋରରୁ କୋପେନହେଗେନ୍ ହୋଇ ବର୍ଲିନ ଆସିଲେ । ଏଠାରେ ଏଣ୍ଡ୍ରୁଜ ଆସି ପହଞ୍ଚିଲେ । ସମସ୍ତେ ସାଙ୍ଗ ହୋଇ ୧୯୩୦ ମସିହା ଅଗଷ୍ଟ ମାସର ମଧ୍ୟଭାଗରେ ସୁଇସ୍ ଦେଶର ଜେନେଭା ସହରରେ ପହଞ୍ଚିଲେ । ଜେନେଭାରେ 'ଲିଗ ଅଫ ନେଶନ୍ସ'ର ବିରାଟ କାର୍ଯ୍ୟାଳୟ—ବିଶ୍ୱଜାତୀୟତାର ଉଦ୍ୟମ ଘନୀଭୂତ । କିନ୍ତୁ ଏହି ପ୍ରତିଷ୍ଠାନ ଉପରେ କବିଙ୍କର ଆସ୍ଥା କମ୍ । ତେଣୁ ଏହି ଅନୁଷ୍ଠାନର ସ୍ଥାପନା କାଳରେ କବି କହିଥିଲେ ଯେ ଏହା ତସ୍କରମାନଙ୍କର ଏକ ସମବାୟ ପ୍ରତିଷ୍ଠାନ (a league of robbers) । ଆସି ଦେଖିଲେ ଯେ ଅବସ୍ଥାରେ କୌଣସି ପରିବର୍ତ୍ତନ ହୋଇନାହିଁ । କବିଙ୍କର ଦୃଢ଼ ଧାରଣା ଯେ ଏହା ଦ୍ୱାରା କିଛି ହୋଇ ପାରିବ ନାହିଁ । ତଥାପି କବିଙ୍କର ବିଶ୍ୱାସ ଯେ ଏହି ଜେନେଭାରେ ହିଁ ବିଶ୍ୱପ୍ରାଣ ବ୍ୟକ୍ତିମାନେ ଆସି ମିଳିତ ହେବେ ।

ଜେନେଭାରେ ଥିବା ସମୟରେ ସ୍ଥିର ହେଲା ଯେ ରବୀନ୍ଦ୍ରନାଥ ସୋଭିଏଟ ଋଷ ଯିବେ । ୨୯୨୬ ଖ୍ରୀ: ଅ: ରେ ଥରେ ଯିବାକୁ ଇଚ୍ଛା କରିଥିଲେ, ବହୁ ପ୍ରତିବନ୍ଧକ ଫଳରେ ଯାଇ ପାରି ନଥିଲେ । କିନ୍ତୁ ଏଥର କବି କୃତ ସଂକଳ୍ପ । କବିଙ୍କର କୌଣସି ବିଷୟରେ ଝୁଙ୍କ୍ ହେଲେ, ସେଥିରୁ ତାଙ୍କୁ କେହି ନିବର୍ତ୍ତାଇ ପାରିବେ ନାହିଁ । ଶେଷରେ ଅମିୟ ଚକ୍ରବର୍ତ୍ତୀ, ଡକ୍ଟର ହ୍ୟାରି ଟିମ୍ବର୍ସ ଓ ଆର୍ୟ୍ୟାମ୍‌ଙ୍କୁ ସଙ୍ଗରେ ନେଇ କବି ୧୯୩୦ ମସିହା ସେପ୍ଟେମ୍ବର ମାସରେ ମସ୍କୋ ଗଲେ ।

( ୧୧୮ )

ମସ୍କୋରେ ପହଞ୍ଚିବା ସଙ୍ଗେ ସଙ୍ଗେ ସ୍ୱାଗତ କଲେ ଅଧ୍ୟାପକ ପେଟ୍ରୋଫ୍—ସେ ବିଦେଶ ସହିତ ସାଂସ୍କୃତିକ ଯୋଗରକ୍ଷା କରୁଥିବା ସମିତିର ସଭାପତି । ସେହିଦିନ ସନ୍ଧ୍ୟାରେ ମସ୍କୋର ଲେଖକ ଗୋଷ୍ଠୀ

ଓ ପୂର୍ବୋକ୍ତ ସମିତିର ସଦସ୍ୟଗଣ କବିଙ୍କ ଉଦ୍ଦେଶ୍ୟରେ ଏକ କନ୍‌ସର୍ଟର ବ୍ୟବସ୍ଥା କଲେ । ଏଠାରେ ସୋଭିଏଟ ଆର୍ଟସ୍ ଏକାଡେମୀର ସଭାପତି ଅଧ୍ୟାପକ କୋଗାନ୍, ମସ୍କୋ ଦ୍ୱିତୀୟ ବିଶ୍ୱବିଦ୍ୟାଳୟର ଅଧ୍ୟକ୍ଷ ଅଧ୍ୟାପକ ପିନ୍‌କେଭିଚ୍, ମାଦାମ ଲିଟ୍‌ଭିନୋଭ୍, ଫେଗ୍‌ଇନ୍‌ବାର୍, ବିଖ୍ୟାତ ଔପନ୍ୟାସିକ ଫେଦର ଗ୍ଲାଦ୍‌କୋଭ ପ୍ରଭୃତି ବହୁ ଲେଖକ ଲେଖିକାଙ୍କ ସହିତ କବିଙ୍କର ସାକ୍ଷାତ ହେଲା । କିଛି ଦିନ ପରେ ପାଓନିୟର କମ୍ୟୁନକୁ ଯାଇ ସେଠାର କିଶୋର କିଶୋରୀମାନଙ୍କ ସାଙ୍ଗରେ ଆଳାପ ଆଲୋଚନା କଲେ ଓ 'ଜନଗଣମନ' ଜାତୀୟ ସଂଗୀତ ଶୁଣାଇଲେ । ଆଉ ଦିନେ କବି କେନ୍ଦ୍ରୀୟ କୃଷକ ଆବାସକୁ ଗଲେ । ଗୃହୀମାନଙ୍କ ସଙ୍ଗରେ କଥାବାର୍ତ୍ତା ହେଲା । କବି ନାନା ବିଷୟରେ ସେମାନଙ୍କର ଆଗ୍ରହ ଦେଖି ବିସ୍ମିତ ହୋଇଥିଲେ ।

ମସ୍କୋ ଷ୍ଟେଟ ମ୍ୟୁଜିୟମରେ କବିଙ୍କର ଚିତ୍ର ପ୍ରଦର୍ଶିତ ହେଉଥାଏ । କବି ଦେଖିବାକୁ ଗଲେ । ତ୍ରେତିୟାକୋଫ ଆର୍ଟ ଗ୍ୟାଲେରିର ଅଧ୍ୟକ୍ଷ ଅଧ୍ୟାପକ କ୍ରିସ୍ଟି କବିଙ୍କୁ ସ୍ୱାଗତ କରି ସମବେତ ଜନତା ନିକଟରେ କହିଲେ, 'ରବୀନ୍ଦ୍ରନାଥଙ୍କୁ ଆମ୍ଭେମାନେ ଦାର୍ଶନିକ କବି ଭାବରେ ଜାଣିଥିଲୁ ଓ ତାଙ୍କର ଛବି ଅଙ୍କିବା ଏକ ଖିଆଲ୍ ବିଷୟ ବୋଲି ଜଣାଥିଲା; କିନ୍ତୁ ଆଜି ତାଙ୍କର ଛବି ଦେଖି ବିସ୍ମିତ ହୋଇଛୁ ।'

ସେପ୍‌ଟେମ୍ବର ୨୪ ତାରିଖରେ ଋଷିୟାର ଟ୍ରେଡ୍ ୟୁନିୟନ କେନ୍ଦ୍ରୀୟ ଗୃହରେ କବିଙ୍କର ଶେଷ ଭାଷଣ ପ୍ରଦତ୍ତ ହୋଇଥିଲା । ସୋଭିଏଟ୍ କବି ଶିଂଲୀ ରବୀନ୍ଦ୍ରନାଥଙ୍କ ଉଦ୍ଦେଶ୍ୟରେ ଗୋଟିଏ କବିତା ପଢିଥିଲେ; ସାହିତ୍ୟିକ ଗଲ୍‌ପେରିନ କବିଙ୍କର ତିନୋଟି କବିତାର ଋଷୀୟ ଅନୁବାଦ ଆବୃତ୍ତି କରିଥିଲେ ଓ ଅଭିନେତା ସିମୋନୋଭ୍ କବିଙ୍କର 'ଡାକଘର'ର ଋଷୀୟ ଅନୁବାଦର କେତେକାଂଶ ପଢିଥିଲେ । ପରଦିନ ( ସେପ୍‌ଟେମ୍ବର ୨୫ତାରିଖ ) କବି ମସ୍କୋରୁ ବର୍ଲିନ ଫେରି ଆସିଲେ ।

ମସ୍କୋରୁ ନୂତନ ଅଭିଜ୍ଞତା ନେଇ ଫେରିଲେ । ଆମେରିକା ଯିବା ବାଟରେ ଗୋଟିଏ ପତ୍ରରେ ଲେଖିଛନ୍ତି, 'ଏଥର ଋଷିର

ଅଭିଜ୍ଞତା ସମ୍ପର୍କରେ ମୋତେ ଗଭୀର ଭାବରେ ଅନେକ କଥା ଭାବିବାକୁ ପଡ଼ୁଛି । ପ୍ରଚୁର ଉପକରଣ ମଧ୍ୟରେ ଆତ୍ମ ସମ୍ମାନର ଯେଉଁ ବାଧା ଅଛି ତାହା ବେଶ୍ ସ୍ପଷ୍ଟ ଚକ୍ଷୁରେ ଦେଖି ପାରୁଛି । ସେ ପରିଷ୍କାର କହୁଥିଲେ, 'ନିଜ କଥା ସଂପୂର୍ଣ୍ଣ ଭୁଲି ଯିବାକୁ ହେବ —ତାହାଠାରୁ ବଡ଼କଥା ସମ୍ମୁଖରେ ଦଣ୍ଡାୟମାନ ।' କବି ଭାବୁଥାନ୍ତି ଯେ ନିଜର ଭରଣ ପୋଷଣ ଦାୟିତ୍ୱ ଆଉ ଗରିବ ପ୍ରଜାଙ୍କ ଉପରେ ଲଦିବେ ନାହିଁ । ତେଣୁ ଲେଖିଛନ୍ତି, 'ଏହା ମୋର ଅନେକ ଦିନର ପୁରୁଣା କଥା । ବହୁ ଦିନରୁ ଆଶା କରିଥିଲି ଯେ ମୋର ଜମିଦାରୀ ଯେପରି ପ୍ରଜାମାନଙ୍କର ଜମିଦାରୀ ହୁଏ ଆମ୍ଭେମାନେ ଯେପରି ଟ୍ରଷ୍ଟି ଭାବରେ ରହୁ । ......କିନ୍ତୁ ଦେଖିଲି ଜମିଦାରୀ ଥ ସେ ରାସ୍ତାରେ ଗଲା ନାହିଁ ।' ଅନ୍ୟ ଏକ ପତ୍ରରେ ଲେଖିଛନ୍ତି, 'ଦେଶର ଇତିହାସରେ ଅନେକ କିଛି ଓଲଟ ପାଲଟ ହେବ । ଜୀବନ-ଯାତ୍ରାର ପଥ ବଦଳାଇବାର ଦିନ ଆସିଛି । ..... ଇତିହାସର ସନ୍ଧିକ୍ଷଣରେ ସମସ୍ତଙ୍କୁ ଦୁଃଖ ସହିବାକୁ ହେବ, ସଙ୍କଟକୁ ଆଡ଼େଇ ଦେଇ ଆରାମରେ ରହିବା ପାଇଁ ପ୍ରତ୍ୟାଶା କରିବା ଭୁଲ ।' କିନ୍ତୁ କବି ତାଙ୍କର ସତ୍ୟ-ସଂକଳ୍ପକୁ ରୂପଦାନ କରି ପାରି ନଥିଲେ—ଅନ୍ତରରେ ଓ ବାହାରେ ଥିଲା ଶତ ସହସ୍ର ବାଧା, ସ୍ଥାନ କାଳ ପାତ୍ର ବି ଅନୁକୂଳ ନଥିଲା ।

ସୋଭିଏଟ ରୁଷ ସଂପର୍କରେ କବିଙ୍କର ପତ୍ରଗୁଡ଼ିକୁ କେବଳ ଉଚ୍ଛ୍ୱସିତ ପ୍ରଶସ୍ତି-ବାକ୍ୟ ନୁହେଁ । ସେଥିରେ ପ୍ରଚୁର ତଥ୍ୟ-ଚୟନ ଓ ଧୀରସ୍ଥିର ମନନର ସାକ୍ଷାତ ମିଳେ । ଚିଠିଗୁଡ଼ିକ ଏକତ୍ର କରି 'ରୁଷିୟାର ଚିଠି' ଆକାରରେ ଛାପିବା ପୂର୍ବରୁ କବି 'ଉପସଂହାର' ପ୍ରବନ୍ଧରେ ବ୍ୟକ୍ତି ସ୍ୱାତନ୍ତ୍ର୍ୟର ମୂଲ୍ୟ କିପରି ଅପରିସୀମ ଓ ଏକ-ନାୟକତ୍ୱର ବିପଦ କେଉଁଠି, ତାହା ସୁନ୍ଦର ଭାବରେ ବିଚାର ବିଶ୍ଳେଷଣ କରି ଦେଖାଇ ଦେଇଥିଲେ । ରୁଷିଆରୁ ଲିଖିତ ଚିଠି ଓ ଏହି ସାର ସିଦ୍ଧାନ୍ତ ଦୁଇଟି ମିଳାଇ ଦେଖିଲେ ରବୀନ୍ଦ୍ରନାଥଙ୍କର ବକ୍ତବ୍ୟ ସଂପର୍କରେ ଯଥୋଚିତ ଧାରଣା ହୋଇ ପାରିବ ।

(୧୧୯)

ଷୋଳଏଠ୍ ଋଷ ଭ୍ରମଣ ପରେ କବି ଗଲେ ଆମେରିକାର ମାର୍କିନ ଯୁକ୍ତରାଷ୍ଟ୍ର—ସଙ୍ଗରେ ଆରିୟାମ୍ ଓ ଟମ୍ବାର୍ସ । ଏହା ପୂର୍ବରୁ ଅର୍ଥ ଉପାର୍ଜନର ଭୂମିକା ତିଆରି କରିବାକୁ ଏଣ୍ଡ୍ରୁଜଙ୍କୁ ପଠାଇ ଦେଇଥିଲେ । କିନ୍ତୁ ଏହି ସମୟରେ ପୃଥିବୀସାରା ବଜାର ମାନ୍ଦା । ପ୍ରଥମ ମହାଯୁଦ୍ଧର ଦଶବର୍ଷ ପରେ ଦେଖା ଯାଉଥାଏ ଯେ ବଜାର ଭର୍ତ୍ତି ମାଲ ଥିଲେ ବି କିଣିବା ପାଇଁ ଲୋକଙ୍କ ହାତରେ ଟଙ୍କା ନାହିଁ । ସମସ୍ତ ଟଙ୍କା ପୁଞ୍ଜିଭୂତ ମୁଷ୍ଟିମେୟ ଧନୀଙ୍କ ହାତରେ । ଧନ କୁବେର ରକ୍ ଫେଲରଙ୍କ ସଙ୍ଗରେ ଦେଖା କରିବା ଆଶାରେ କବି ପ୍ରାୟ ଦେଢ଼ମାସ ନିଉୟର୍କରେ ରହିଲେ । ଶେଷରେ ବନ୍ଧୁମାନେ କହିଲେ ଯେ ସମୟ ବଡ଼ ଖରାପ, ପରେ ଦେଖା ହେବ । କିନ୍ତୁ କବିଙ୍କୁ ନେଇ ବାହ୍ୟ ଆଡ଼ମ୍ବର ଖୁବ୍ ଚାଲିଥାଏ । ବିଲ୍ଟମୋର ହୋଟେଲରେ ଏକ ବିରାଟ ଭୋଜ ସଭା ହେଲା; ପାଞ୍ଚଶହ ଲୋକ କବିଙ୍କୁ ସ୍ୱାଗତ କଲେ । କିନ୍ତୁ ସେମାନେ କିଏ ? ନିଉୟର୍କର ଖ୍ୟାତନାମା ସାପ୍ତାହିକ 'ସଟର୍ଡେ ରିଭ୍ୟୁ' ଲେଖିଥିଲା, 'ନିମନ୍ତ୍ରିତଙ୍କର ତାଲିକାରେ ବ୍ୟବସାୟୀ ଓ ଧନୀଙ୍କର ନାମ ଦେଖା ଗଲା; କିନ୍ତୁ ଜଣେ କବିଙ୍କର ନାମ ପାଇଲୁ ନାହିଁ—ଏପରିକି ଜଣେ ହେଲେ ଲେଖକର ବି ନାମ ନାହିଁ । ଏପରି ଘଟଣା ଫ୍ରାନ୍ସରେ ଘଟି ଥାନ୍ତା କି ?' ବ୍ରିଟିସ ରାଜଦୂତ ଭଦ୍ରତା ଖାତିରିରେ ଘନ ଘନ ଆସୁଥାନ୍ତି । ସେ ପ୍ରେସିଡେଣ୍ଟ ହୁଭରଙ୍କ ସହିତ ଦେଖା ସାକ୍ଷାତ ମଧ୍ୟ କରାଇ ଦେଲେ । କିନ୍ତୁ ବକ୍ତୃତା ଦେବାର କୌଣସି ବ୍ୟବସ୍ଥା ହେଉ ନାହିଁ—କାଳେ ରବୀନ୍ଦ୍ରନାଥ ସୋଭିଏଟ ଋଷର ପ୍ରଶସ୍ତି କରିବେ । ଆମେରିକାର ହଠାତ୍-ଧନୀ-ମାନଙ୍କର କମ୍ୟୁନିଜମକୁ ଖୁବ୍ ଭୟ ।

ଆମେରିକାରେ କବିଙ୍କର ଚିତ୍ରର ପ୍ରଦର୍ଶନୀ ହେଲା; ଆନନ୍ଦକୁମାର ସ୍ୱାମୀ ଚିତ୍ର ସଂପର୍କରେ ନିଜର ମନ୍ତବ୍ୟ ଲିପିବଦ୍ଧ କରିଥିଲେ ।

ଅର୍ଥ ସଂଗ୍ରହ ଉଦ୍ଦେଶ୍ୟରେ ଆମେରିକା ଆସିବା ସଂପୂର୍ଣ୍ଣ ବ୍ୟର୍ଥ ହେଲା । ମାତ୍ର ତିନିମାସ ମାର୍କିନ ଯୁକ୍ତରାଷ୍ଟ୍ରରେ ରହି କବି ଡିସେମ୍ବର ମାସର ଶେଷ ଆଡ଼କୁ ଇଂଲଣ୍ଡ ଫେରିଲେ ।

. ସେତେବେଳକୁ ଲଣ୍ଡନରେ ଗୋଲଟେବୁଲ ବୈଠକ ବସୁଥାଏ । ଭାରତର ଭବିଷ୍ୟତ ଶାସନ ପଦ୍ଧତି ସଂପର୍କରେ ଏକ ସର୍ବଦଳୀୟ ମତ ଓ ସିଦ୍ଧାନ୍ତରେ ଉପନୀତ ହେବା ପାଇଁ ଚେଷ୍ଟା ଚାଲିଥାଏ । କଂଗ୍ରେସ ସମସ୍ତଙ୍କର ମତାମତ ନେଇ ଏକ ସର୍ବସାଧାରଣ ବୁଝାମଣା ପାଇଁ ଉଦ୍‌ଗ୍ରୀବ । କିନ୍ତୁ କଂଗ୍ରେସ ବାହାରେ, କ୍ଷୁଦ୍ର କ୍ଷୁଦ୍ର ଦଳର କ୍ଷୁଦ୍ର ସ୍ୱାର୍ଥ ମେଣ୍ଟାଇ ସର୍ବଭାରତୀୟ ମିଳନ-ସାଧନ ଅସମ୍ଭବ । ସବୁଠାରୁ ବଡ଼ ପ୍ରତିବନ୍ଧକ—ସଂଖ୍ୟା ଲଘିଷ୍ଠ ଅଥଚ ସଂଘବଦ୍ଧ ମୁସଲମାନମାନେ । ଗୋଲଟେବୁଲ ବୈଠକରେ ମୁସଲମାନ ଓ କଂଗ୍ରେସ ପ୍ରତିନିଧିମାନଙ୍କର ମତ ମିଳିଲା ନାହିଁ । ସେମାନେ ଧର୍ମଗତ ବା ସମ୍ପ୍ରଦାୟଗତ ଭେଦ-ଭାବ ପୂର୍ଣ୍ଣମାତ୍ରାରେ ବଜାଏ ରଖି ମିଳନର ବ୍ୟବସ୍ଥା କରିବାକୁ ଚାହାନ୍ତି । ନିର୍ବାଚନ ଓ ମନୋନୟନ ଆଦି ବିଷୟରେ ସଂପ୍ରଦାୟଗତ ପାର୍ଥକ୍ୟ ରଖିବା ବିଷୟରେ ପକ୍ଷପାତୀ । ଏଥିପାଇଁ କଂଗ୍ରେସ ସଙ୍ଗରେ ମତଭେଦ ।

ରବୀନ୍ଦ୍ରନାଥ ଲଣ୍ଡନ ଫେରିଆସିବା ପରେ ଭାରତୀୟ ନେତାମାନଙ୍କ ମଧ୍ୟରେ କେହି କେହି ମନେ କରିଥିଲେ ଯେ କବିଙ୍କର ସମାଧାନ ଏମାନେ ମାନିବେ । କେତେଜଣଙ୍କ ସହିତ କଥାବାର୍ତ୍ତା କରି କବି ବୁଝିଲେ ଯେ ଏହା ତାଂଙ୍କ କାର୍ଯ୍ୟ ନୁହେଁ—ସାମ୍ପ୍ରଦାୟିକତାର ବିଷରେ ସମସ୍ତେ ଜର୍ଜରିତ ।

(୧୨୦)

ୟୁରୋପ ଆମେରିକା ଭ୍ରମଣ ଶେଷ କରି କବି ଦେଶକୁ ଫେରିଲେ । ୟୁରୋପ ତାଙ୍କ ନିକଟରୁ ପାଇଲା 'ମଣିଷର ଧର୍ମ' ସଂପର୍କରେ ନୂତନ ବ୍ୟାଖ୍ୟା ଓ ସେମାନେ ଜାଣିଲେ ଯେ ରବୀନ୍ଦ୍ରନାଥ କେବଳ କବି ନୁହନ୍ତି, ଶକ୍ତିମାନ୍ ଶିଳ୍ପୀ, ଶିକ୍ଷା କ୍ଷେତ୍ରରେ ମୌଳିକ ଭାବୁକ—ସ୍ୱଦେଶରେ ନିଜେ ପରୀକ୍ଷା ବି ଚଳାଉଛନ୍ତି । କବିଙ୍କ ଜୀବନର ବିସ୍ମୟକର ଅଭିଜ୍ଞତା ହେଲା—ସୋଭିଏଟ୍ ରୁଷ ଭ୍ରମଣର ପ୍ରତ୍ୟକ୍ଷ ଅନୁଭୂତି ।

ଶାନ୍ତିନିକେତନ ଫେରି ଭାବିଲେ ଯେ ସମବାୟ ଭଣ୍ଡାର ଗଠନ କରି ସୋଭିଏଟ୍ ଆଦର୍ଶରେ ସଂଘ-ଜୀବନ ଆରମ୍ଭ କରିବେ । କିନ୍ତୁ କୌଣସି ଆଡ଼ୁ ସାହାଯ୍ୟ ବା ସହଯୋଗ ପାଇଲେ ନାହିଁ । କବିଙ୍କର ସମବାୟକେନ୍ଦ୍ରିକ ସଂଘ-ଜୀବନ ଗଠନର ଇଚ୍ଛା ବାସ୍ତବ ରୂପ ପରିଗ୍ରହ କରି ପାରିଲା ନାହିଁ । ଦେଶକୁ ଫେରି ସଂଗୀତ ସରସ୍ୱତୀଙ୍କର ସାକ୍ଷାତ ମିଳିଲା, ମନ ବୁଡ଼ିଲା ରସର ସମୁଦ୍ରରେ । ଗୋଟିଏ ପତ୍ରରେ ଲେଖିଛନ୍ତି, 'ମୁଁ ସଂଗୀତ ନେଇ ରହିଛି, କେତେକ ପରିମାଣରେ ପାଗଳାମି ଭାବ । ଆପାତତ ଛବି ଆଙ୍କିବା ନିଶାକୁ ବାଆଇ ରଖିଛି, କବିତାର ପ୍ରଶ୍ନ ତ ନାହିଁ । ସତେ ଯେପରି ବିଧି ବାହୁଲ୍ୟ ଘଟିଛି; ସବୁଗୁଡ଼ିକୁ ଏକ ସଙ୍ଗରେ ସମ୍ଭାଳିବା ଅସମ୍ଭବ ?

ସଂଗୀତଗୁଡ଼ିକୁ ନେଇ 'ନବୀନ' ନାମରେ ଗୋଟିଏ ପାଲି ଲେଖିଲେ । ଶାନ୍ତିନିକେତନର ପିଲାମାନଙ୍କୁ ସଙ୍ଗରେ ନେଇ କଲିକତା ଗଲେ—ଅଭିନୟ କରିବାକୁ । ଆଉ ଦିନେ ଜାପାନୀ ଓସ୍ତାଦ୍ ତାକାଗାକି ଶାନ୍ତିନିକେତନର ଛାତ୍ରଛାତ୍ରୀମାନଙ୍କ ସଙ୍ଗରେ କସରତ୍ ମଧ୍ୟ ଦେଖାଇବେ । କବିଙ୍କର ଇଚ୍ଛା ଯେ ସେ ଦେଶବାସୀଙ୍କୁ ସବଳ, ସକ୍ରିୟ, ଶକ୍ତିମାନ ଓ ଶ୍ରୀମାନ୍ କରି ଗଢ଼ିବେ । ତେଣୁ ନୃତ୍ୟଗୀତ ଓ କସରତ ଏକ ସଙ୍ଗେ ପେଶ୍ କଲେ । କିନ୍ତୁ ଦେଖା-ଗଲା ଯେ 'ନବୀନ'ର ନାଚଗୀତ ଦେଖିବାକୁ ଲୋକଙ୍କର ଯେତେ ଆଗ୍ରହ, ଜାପାନୀ ବୀରଙ୍କର ଆଶ୍ଚର୍ଯ୍ୟ କ୍ରୀଡ଼ା କୌଶଳ ସମ୍ପର୍କରେ ସେମାନଙ୍କର ସେତେ କୌତୁହଳ ନାହିଁ । ଆଜି ମନେହୁଏ ଯେ ବଙ୍ଗାଳୀମାନେ ଯଦି ଏ ବିଦ୍ୟା ଆୟତ୍ତ କରିଥାନ୍ତେ, ତେବେ ବଙ୍ଗଦେଶର ଚେହେରା ଅନେକ ପରିମାଣରେ ବଦଳି ଯାଇଥାନ୍ତା ।

'ନବୀନ' ଅଭିନୟ ପରେ କବି କିଛି ଦିନ ପାଇଁ ବରାହନଗରରେ ପ୍ରଶାନ୍ତ ଚନ୍ଦ୍ର ମହଲାନବିଶଙ୍କର ଘରେ ରହି ଶାନ୍ତିନିକେତନ ଫେରିଲେ ।

ଏଥର ପଚିଶ ବୈଶାଖରେ କବିଙ୍କର ସତୁରି ବର୍ଷ ପୂର୍ଣ୍ଣ ହୋଇଥାଏ । ଶାନ୍ତିନିକେତନରେ ପରିମିତ ସମାରୋହ ସହକାରେ ଜନ୍ମୋତ୍ସବ ଅନୁଷ୍ଠିତ ହେଲା । ସେ ଦିନ ଭାଷଣ ପ୍ରସଙ୍ଗରେ କବି

କହିଲେ, 'ମୋର ଗୋଟିଏ ମାତ୍ର ପରିଚୟ ଅଛି, ତାହା ଆଉ କିଛି ନୁହେଁ, କେବଳ ମୁଁ କବି । ମୁଁ ତତ୍ତ୍ୱଜ୍ଞାନୀ, ଶାସ୍ତ୍ରଜ୍ଞାନୀ, ଗୁରୁ ବା ନେତା ନୁହେଁ····· ମୁଁ ବୈଚିତ୍ର୍ୟର ଦୂତ ।' କିଛି ଦିନ ପୂର୍ବରୁ ଅନ୍ୟ ଏକ ପତ୍ରରେ କବି ଏହି କଥା ଆହୁରି ସ୍ପଷ୍ଟ ଭାବରେ ଲେଖିଥିଲେ—'ମୁଁ ନାନା ଜିନିଷ ନେଇ ଅଛି, ନାନା ଭାବରେ ନାନା ଦିଗରେ ନିଜକୁ ପ୍ରକାଶ କରିବାରେ ମୋର ଔତ୍ସୁକ୍ୟ । ତାହାରୁ ଲୋକେ ମନେ କରନ୍ତି ଯେ ଏହା ମଧ୍ୟରେ ଅସଙ୍ଗତି ଅଛି, ମୁଁ ତାହା ଅନୁଭବ କରିନି । ମୁଁ କୁଆଡ଼େ ଗାଏ, ଲେଖେ, ଆଙ୍କେ, ପିଲାଙ୍କୁ ପଢ଼ାଏ—ଗଛ ଲତା ଆକାଶ ଆଲୋକ ଜଳ ସ୍ଥଳରୁ ଆନନ୍ଦ ସଂଗ୍ରହ କରି ବୁଲେ ।·····

'ମୁଁ ସ୍ୱଭାବତଃ ସର୍ବାସ୍ତିବାଦୀ—ଅର୍ଥାତ୍ ମୋତେ ସମସ୍ତେ ମିଳି ଡାକନ୍ତି, ମୁଁ ସମଗ୍ରକୁ ହିଁ ମାନେ ।·····ମୁଁ ମନେ କରେ·····ମୋର ଆତ୍ମା ସମସ୍ତ ମଧ୍ୟରେ ସହଜ ଭାବରେ ସଞ୍ଚରଣ କରି ସମସ୍ତ ଭିତରେ ସତ୍ୟର ସ୍ପର୍ଶ ଲାଭ କରି ସାର୍ଥକ ହୋଇ ପାରିବ ।'

ଏ କଥା ପ୍ରମାଣ କରିଯାଇ ପାରେ ଯେ କବି କୌଣସି ଦିନ ଗୁରୁଗିରି କରି ନାହାନ୍ତି, ଚେଲା ତିଆରି ବ୍ୟବସାୟ କରି ନାହାନ୍ତି । ଆମ୍ଭେମାନେ ତାଂକୁ କବି ହିସାବରେ ଦେଖିଛୁ, ମଣିଷ ହିସାବରେ ବିଗ୍ୱର କରିଛୁ । ତର୍କ କରି ପ୍ରତିବାଦ କରି ନିଜର ଅଭିମତ ଜଣାଇବାରେ ସଂକୋଚ ଅନୁଭବ କରି ନାହୁଁ । ସେ ମଧ୍ୟ ଗୁରୁର ଗୁରୁତ୍ୱ ଦାବୀ କରି ନାହାନ୍ତି ।

ଜନ୍ମୋତ୍ସବ ପରେ କିଛି ଦିନ ପାଇଁ ଦାର୍ଜିଲିଂ ବୁଲି ଗଲେ । ଥଣ୍ଡା ଜାଗାକୁ ଗଲେ ମନ ଥଣ୍ଡା ହୁଏନି—ଦେଶର କୌଣସିଠାରେ ଶାନ୍ତି ନାହିଁ । ନୂତନ ଶାସନ ବ୍ୟବସ୍ଥା କଥା ଚାରିଆଡ଼େ ଆଲୋଚନା ହେଉଥାଏ—ସମସ୍ତଙ୍କର ଆଶା ନୂଆ କିଛି ହେବ । କବି ଜାଣନ୍ତି ଯେ କ୍ଷମତା ହସ୍ତାନ୍ତର ସମୟରେ ବା ଅନ୍ତର୍ବର୍ତ୍ତୀ ସମୟରେ ଇଂରେଜ ଶାସକମାନେ ସେମାନଙ୍କର ଶାସନ ମୁଷ୍ଟି ଶିଥିଳ କରି ଭାରତୀୟମାନଙ୍କ ହାତରେ ଶାସନ ଭାର ଦେବେ । କିଂତୁ ସେହି ସମୟଟି ହେବ ଭୀଷଣ ପରୀକ୍ଷା—କାରଣ ହିନ୍ଦୁ ମୁସଲମାନ

ମତାନୈକ୍ୟ ବଢ଼ି ଚାଲିଛି । କବି ଏହି ସମୟରେ ଲେଖିଲେ, 'ସିଭିଲ ସର୍ଭିସର ମିଆଦ କିଛିଦିନ ରହିବାକୁ ବାଧ୍ୟ । କିନ୍ତୁ ସେ ଦିନର ସିଭିଲ୍ ସର୍ଭିସ୍ ହେବ ଦାନ୍ତଭଙ୍ଗା ବାଘ ପରି । ମନ ତା'ର ଗରମ ରହିବା କଥା । ସେହି ସମୟ ମଧ୍ୟରେ ଦେଶର ଲୋକ ଓ ବିଦେଶର ଲୋକଙ୍କ ନିକଟରେ କଥାଟା ଜଣାଇ ଦେବା ଦରକାର ହେବ ଯେ, ବ୍ରିଟିଶ ରାଜ-ଜଗୁଆଳୀ ଅଲଗା ହେବା ମାନେ ଅରାଜକତାର କାଳ ସର୍ପ ନାନା ଗର୍ତ୍ତରୁ ବାହାରି ଚାରିଆଡ଼େ ଫଣା ତୋଳିବ— ତେଣୁ ଆମ୍ଭେମାନେ ସ୍ୱଦେଶର ଦାୟିତ୍ୱ ନେବାକୁ ସମ୍ପୂର୍ଣ୍ଣ ଅକ୍ଷମ । ଆମ୍ଭମାନଙ୍କର ନିଜ ଲୋକଙ୍କ ଦ୍ୱାରା ଏକଥା ପ୍ରମାଣ କରାଇ ନେବାର ଇଚ୍ଛା ଦେଖାଦେବ ଯେ ଆଗରୁ ଅବସ୍ଥା ଭଲ ଥିଲା । ସେହି ଯୁଗାନ୍ତର ସମୟରେ, ଯେଉଁ ଗୃହାରେ ଆମ୍ଭ-ମାନଙ୍କର ଆତ୍ମୀୟ ବିଦ୍ୱେଷ ଭାବ ଲୁଚି ରହିଛି, ସେହିଠାରେ ହିଁ ଆଘାତ ମିଳିବ । ତାହା ହିଁ ଆମର ବିଷମ ପରୀକ୍ଷାର ସମୟ ।'

ବାସ୍ତବିକ୍ ସେ ପରୀକ୍ଷା ଆସିଲା ୧୯୪୭ ମସିହାରେ । ଅବସ୍ଥା ଏପରି ହେଲା ଯେ ଶେଷରେ ହିନ୍ଦୁ ମୁସଲମାନ ଉଭୟେ କହିଲେ ଯେ ଆମ୍ଭମାନଙ୍କର ପୃଥକ୍ ରାଷ୍ଟ୍ର ଦରକାର ।

(୧୬୧)

ଦେଶର କଥା ଭାବି ଭାବି ପ୍ରବନ୍ଧ ଲେଖିଥାନ୍ତି—ତାହା ଏକ ପ୍ରକାର ନୈର୍ବ୍ୟକ୍ତିକ କାର୍ଯ୍ୟ । କିନ୍ତୁ ଘରେ ଯେଉଁ ପାଳିତ ସିଂହ ଶାବକଟି ନିତ୍ୟ ବଡ଼ ହୋଇ ଖାଦ୍ୟ ପାଇଁ ଛଟପଟ କରୁଛି, ସେହି ବିଶ୍ୱଭାରତୀର ଅଭାବ କଥା ରାତି ପାହିଲେ ହିଁ ଚିନ୍ତାର କଥା । ଅର୍ଥ ସଂଗ୍ରହ କରିବାର ବିଶେଷ ଦାୟିତ୍ୱ ତାଙ୍କର । ଭିକ୍ଷା ମାଗି ପାରନ୍ତି, ବକ୍ତୃତା ଦେଇ ପାରନ୍ତି, ଲେଖା ବିକ୍ରୀ କରି ପାରନ୍ତି ଓ ନୃତ୍ୟ-ଗୀତର ଦଳ ନେଇ ରଙ୍ଗମଞ୍ଚରେ ଓହ୍ଲାଇଲେ ଉପଯୁକ୍ତ ଦକ୍ଷିଣା ଦେଇ ଦେଖିବାପାଇଁ ସହରର ଲୋକେ ଭିଡ଼ କରନ୍ତି । ସୁତରାଂ ସାମୟିକ

ଭାବରେ ଅଭାବ ମଧ୍ୟ ପୂରଣ କରି ପାରନ୍ତି । କବିଙ୍କର ପ୍ରଧାନ ସହାୟ ଓ ସହଯୋଗୀ ବିଶ୍ୱଭାରତୀର ଛାତ୍ରଛାତ୍ରୀ । କବିଙ୍କର ପ୍ରେରଣା ଓ ପ୍ରଯୋଜନ ସେମାନଙ୍କର ନୈପୁଣ୍ୟ ଓ ନୃତ୍ୟଗୀତ-ଅଭିନୟଦ୍ୱାରା, ନାନା ଉପଲକ୍ଷେ ବିଶ୍ୱଭାରତୀ ପାଇଁ କମ୍ ଟଙ୍କା ସଂଗୃହୀତ ହୁଏ ନାହିଁ ।

ଅର୍ଥ ସନ୍ଧାନରେ ରବୀନ୍ଦ୍ରନାଥ ଭୋପାଳର ନବାବ-ଦରବାରକୁ ଗଲେ । ସେ ସମୟରେ ଡକ୍ଟର ମହମ୍ମଦ ଅଲ୍ଲୀ ନାମକ ହାଇଦ୍ରାବାଦର ଜଣେ ଯୁବକ ଶ୍ରୀନିକେତନର ଗବେଷଣା ବିଭାଗରେ ଥିଲେ—ଏଲମ୍‌ହାର୍ଷ୍ଟ ତାଙ୍କୁ ବିଲାତରୁ ପଠାଇଥିଲେ । ସେ କବିଙ୍କ ସାଙ୍ଗରେ ଭୋପାଳ ଗଲେ । ନବାବ ସାହେବ ବାଦସାହୀ କାଇଦାରେ କବିଙ୍କର ବହୁ ଆଦର ଅଭ୍ୟର୍ଥନା କଲେ; ତେବେ ଜଣାଇ ଦେଲେ ଯେ ଖୁବ୍ କଷ୍ଟରେ ଦିନ କଟାଉଛନ୍ତି ।

ଅର୍ଥ ସଂଗ୍ରହ ଦିଗରୁ ଭୋପାଳ ଭ୍ରମଣ ନିରର୍ଥକ ହେବାରୁ, ସ୍ଥିର ହେଲା ଯେ ପୂଜା ପୂର୍ବରୁ ଗୋଟିଏ ଗୀତାଭିନୟ ଅନୁଷ୍ଠିତ ହେବ । ଜର୍ମାନୀରେ 'ଦି ଚୃଇଲ୍‌ଡ' ନାମକ ଯେଉଁ ଇଂରେଜୀ କଥିକାଟି ଲେଖିଥିଲେ, ତାହା ବଂଗଳାରେ ନୂତନ ଭାବରେ ଲେଖି ନାମ ଦେଲେ 'ଶିଶୁତୀର୍ଥ' । ପ୍ରେକ୍ଷାଗୃହରେ ଦୁଇଦିନ ଗୀତୋତ୍ସବ ଓ 'ଶିଶୁତୀର୍ଥର' ମୂକାଭିନୟ ହୋଇଥିଲା । ଗୀତଗୁଡ଼ିକ ପୁରାତନ—କଥିକାଟି କେବଳ ନୂତନ ।

ଏଥର ଗୀତୋତ୍ସବର ବିଶେଷତ୍ୱ ଥିଲା ବିଚିତ୍ର ନୃତ୍ୟ-କଳାର ପରିବେଷଣ—ଦକ୍ଷିଣ ଭାରତୀୟ ନୃତ୍ୟ, ଗୁଜରାଟୀ ଗର୍‌ବା, ମଣିପୁରୀ ଓ ତାହା ସହିତ ହଙ୍ଗେରୀୟ ଲୋକନୃତ୍ୟ । ସମସ୍ତ ମିଶି ବୈଠକଟି ରୂପରସରେ ସଞ୍ଜୀବିତ ହୋଇଥିଲା । କବି 'ଶିଶୁତୀର୍ଥ' ଆବୃତ୍ତି କଲେ—ଅଭିନେତାମାନେ ନୃତ୍ୟ ଭଙ୍ଗୀରେ ତାହାକୁ ରୂପାୟିତ କଲେ ।

( ୨୨ )

କବି ଯେତେବେଳେ ଗୀତୋତ୍ସବରେ ମଶଗୁଲ୍, ସେତେବେଳେ ହଠାତ୍ ଏକ ଦାରୁଣ ଦୁଃସମ୍ବାଦ ପାଇଲେ ।

ଦେଶବ୍ୟାପୀ ବିଦେଶୀ-ରାଜର ଉଗ୍ର ଦମନ ନୀତି ଚାଲୁଥିଲା । ବହୁ ବଙ୍ଗାଳୀ ଯୁବକ ବିନା ବିଚାରରେ ଜେଲଖାନାରେ ବା ସୁଦୂର ଦୁର୍ଗମ ସ୍ଥାନରେ ବନ୍ଦୀ । ମେଦିନୀପୁରର ହିଜଳୀ ଜେଲରେ ବନ୍ଦୀମାନଙ୍କ ସହିତ ଜେଲ କର୍ତ୍ତୃପକ୍ଷଙ୍କର ବହୁ ଦିନରୁ ବିରୋଧ ଚାଲିଥିଲା । ଦିନେ ରକ୍ଷୀମାନେ ଗୁଳି ଚଳାଇ ଦୁଇଜଣ ବନ୍ଦୀଙ୍କୁ ଖୁନ୍ କଲେ ଓ କୋଡ଼ିଏ ଜଣଙ୍କୁ ପ୍ରହାର କରି ଦରମରା କରି ପକାଇଲେ । କାରାଗାରରେ ଲୁଚିଛପିକି ମାର୍ ଧର୍ ସବୁଦିନେ ଚାଲିଥିଲେ । କୌଣସି ବିଚାରକ ନିକଟରେ ପ୍ରମାଣ ନ ହୋଇ ପାରିବା ଭଳି ଯନ୍ତ୍ରଣା ଦେବାର 'ବିଜ୍ଞାନ ସମ୍ମତ' ପଦ୍ଧତି ମଧ୍ୟ ଥିଲା । କିନ୍ତୁ ନିରସ୍ତ୍ର ବନ୍ଦୀମାନଙ୍କୁ ଏପରି ଭାବରେ ହତ୍ୟା କରିବା, ପୂର୍ବରୁ କେବେ ଘଟିଥିବାର ଜଣା ଯାଇନାହିଁ ।

କଲିକତାରେ ଜନସଭା ହେଲା, ମନୁମେଣ୍ଟ ନିକଟସ୍ଥ ପଡ଼ିଆରେ (୧୯୩୧ ସେପ୍ଟେମ୍ବର ୨୬) । ରବୀନ୍ଦ୍ରନାଥ ତାହାର ପ୍ରତିନିଧି ରୂପେ ପ୍ରତିବାଦ ଜ୍ଞାପନ କଲେ । ସେ ଦିନର ସଭାରେ ଲକ୍ଷାଧିକ ଲୋକ ଉପସ୍ଥିତ ଥିଲେ । କବି କହିଲେ, 'ପ୍ରଜାଙ୍କର ଅନୁକୂଳ ବିଚାର ଓ ଆନ୍ତରିକ ସମର୍ଥନ ଉପରେ ହିଁ ବିଦେଶୀ ଶାସନର ସ୍ଥାୟିତ୍ୱ ନିର୍ଭର କରେ ।' ଏହି ଘଟଣା ନେଇ କବି ପରେ ମଧ୍ୟ ତୀବ୍ର ମନ୍ତବ୍ୟ କରିଥିଲେ ।

ପୂଜାବକାଶ ଦାର୍ଜିଲିଂରେ କଟାଇଲେ । ବିରାଟ ଲେଖା ଲେଖିବାକୁ ପଡ଼େ; ତେବେ ମନ ବର୍ତ୍ତମାନ ବିଶେଷ ଭାବରେ ଛବି ଆଙ୍କିବାରେ ବ୍ୟସ୍ତ ।

ଶାନ୍ତିନିକେତନ ଫେରି ପୌଷ ଉତ୍ସବ କଲେ । ତାପରେ କଲିକତା ଆସିଲେ । ସେଠାରେ କବିଙ୍କର ସପ୍ତତିବର୍ଷ-ପୂର୍ତ୍ତି ଉପଲକ୍ଷେ ଦେଶବାସୀମାନେ ସପ୍ତାହବ୍ୟାପୀ ଉତ୍ସବର ଆୟୋଜନ କରୁଥିଲେ । ପଚାଶ ବର୍ଷ ପୂର୍ତ୍ତି ହେବାବେଳେ ବଙ୍ଗାଳୀ ସାହିତ୍ୟିକଗଣ କବିଙ୍କ ପ୍ରତି ସମ୍ମାନ ଦେଖାଇଥିଲେ । ଏଥର ସବୁ ଶ୍ରେଣୀର ଲୋକମାନେ ଶ୍ରଦ୍ଧା ନିବେଦନ କଲେ । ଏହି ଉପଲକ୍ଷେ ଉତ୍ସବ ସମିତି ପକ୍ଷରୁ **The Golden Book of Tagore** କବିଙ୍କୁ ଉପହାର ଦିଆଗଲା । ଦେଶ ବିଦେଶର ବହୁ ଜ୍ଞାନୀ, ଗୁଣୀ ଓ

ସାହିତ୍ୟିକଙ୍କର ରଚନା ଓ ପ୍ରଶସ୍ତି ସଂଗ୍ରହ କରି, ଏ ଶ୍ରେଣୀର ଗ୍ରନ୍ଥ ଏ ଦେଶରେ ପୂର୍ବରୁ କେବେ ମୁଦ୍ରିତ ହୋଇ ନଥିଲା । ଏହି ପୁସ୍ତକ ସଂପାଦନା କରିଥିଲେ ରାମାନନ୍ଦ ଚଟ୍ଟୋପାଧ୍ୟାୟ । ଅନ୍ୟାନ୍ୟ ବହୁ ପ୍ରତିଷ୍ଠାନରେ କବି-ସମ୍ବର୍ଦ୍ଧନା ଉପଲକ୍ଷେ ଅନେକ ବ୍ୟବସ୍ଥା ହୋଇଥିଲା ।

ସପ୍ତାହବ୍ୟାପୀ ଉତ୍ସବ ଶେଷ ହେବା ପୂର୍ବରୁ ୧୯୩୨ ମସିହା ଜାନୁୟାରି ୪ ତାରିଖରେ ଉତ୍ସବ ବନ୍ଦ କରି ଦିଆଗଲା । କାରଣ ଖବର ମିଳିଲା ଯେ ଗାନ୍ଧିଜୀ ଗିରଫ ହୋଇଛନ୍ତି ।

(୧୨୩)

୧୯୩୧ ମସିହା ଅକ୍ଟୋବର ମାସରେ ଗାନ୍ଧିଜୀ ଦ୍ୱିତୀୟ ଗୋଲ ଟେବୁଲ ବୈଠକରେ ଯୋଗ ଦେବାପାଇଁ ଲଣ୍ଡନ ଗଲେ । ହିନ୍ଦୁ, ମୁସଲମାନ ଓ ଅନ୍ୟାନ୍ୟ ସମ୍ପ୍ରଦାୟର ନେତାମାନଙ୍କ ମଧ୍ୟରେ ଆଗାମୀ ଶାସନ ସଂସ୍କାରର ସନ୍ଧି ସମ୍ପର୍କରେ ଏକ ମିଳନ ସୂତ୍ର ଆଣିବାର ସମସ୍ତ ଚେଷ୍ଟା ବ୍ୟର୍ଥ ହେଲା । ଶେଷରେ ସେ ହତାଶ ହୋଇ ଡିସେମ୍ବର ୨୮ ତାରିଖରେ ଦେଶକୁ ଫେରି ଆସିଲେ ।

ଲର୍ଡ ଉଇଲିଂଡନ ନୂତନ ବଡ଼ଲାଟ ଭାବରେ ଯୋଗ ଦେଲେ । ସେ ପୂର୍ବରୁ ମାନ୍ଦ୍ରାଜର ଲାଟ ଥିଲେ । ଭାରତବାସୀଙ୍କର ଦୁର୍ବଳତା ସମ୍ପର୍କରେ ସେ ଖୁବ୍ ସଚେତନ; ଭେଦନୀତିର ବ୍ରହ୍ମାସ୍ତ୍ର ପ୍ରୟୋଗରେ ଅତ୍ୟନ୍ତ ପଟୁ । ପୂର୍ବବର୍ତ୍ତୀ ବଡ଼ଲାଟ ଲର୍ଡ ଇରଉଇନଙ୍କ ସଙ୍ଗରେ ଗାନ୍ଧିଜୀଙ୍କର ଏକ ଚୁକ୍ତି (A Gentleman's agreement) ହେବା ପରେ ଆଇନ ଅମାନ୍ୟ ଆନ୍ଦୋଳନ ସ୍ଥଗିତ ରଖାଗଲା । ଦେଶକୁ ଫେରି ସେ ଶୁଣିଲେ ଯେ ସରକାରଙ୍କ ପକ୍ଷରୁ ସନ୍ଧି ଭଙ୍ଗକରି ନାନା ରକମର ଉତ୍ପାତ ଆରମ୍ଭ ହୋଇଛି । ଏହାଛଡ଼ା ଜାଣିବାକୁ ପାଇଲେ ଯେ ସରକାର ପକ୍ଷର ଲୋକମାନେ ଏହି ଉପଦ୍ରବ ପାଇଁ କଂଗ୍ରେସକୁ ଦାୟୀ କରିଛନ୍ତି । ଏହି ସବୁ ବିଷୟରେ କଥାବାର୍ତ୍ତା କରିବା ପାଇଁ ଗାନ୍ଧିଜୀ ନୂତନ ବଡ଼ଲାଟଙ୍କ ସହିତ ସାକ୍ଷାତ ପ୍ରାର୍ଥନା କଲେ । ବଡ଼ଲାଟ ସିଧା ସଳଖ "ନାହିଁ କରିଦେଲେ" ଓ ଗାନ୍ଧିଜୀ ବିଲାତରୁ ଫେରିବାର ସାତ ଦିନ ମଧ୍ୟରେ ତାଙ୍କୁ ବନ୍ଦ କରିବା ଲାଗି ଆଦେଶ ଦେଲେ (୧୯୩୨ ଜାନୁୟାରି ୪ ତାରିଖ) ।

ଗାନ୍ଧିଜୀଙ୍କୁ ପୁନାର ୟେରବାଦା ଜେଲରେ ବିନା ବିଚାରରେ ଅଟକ ରଖାଗଲା । କଣ୍ଟ୍ରେସ ମଧ୍ୟରେ ନେତୃସ୍ଥାନୀୟ ଅନେକ ଲୋକ କାରାଗାରରେ ଆଶ୍ରୟ ପାଇଲେ । ରବୀନ୍ଦ୍ରନାଥ ଗୋଟିଏ ବକ୍ତୃତାରେ ପ୍ରତିବାଦ ଜ୍ଞାପନ କଲେ । ସେ ବିଲାତର ପ୍ରଧାନମନ୍ତ୍ରୀ ରାମସେ ମାକଡୋନାଲ୍ଡଙ୍କୁ ଏକ ତାରବାର୍ତ୍ତାରେ ଜଣାଇଲେ ଯେ ମହାତ୍ମାଜୀଙ୍କର ଗିରଫ ପରେ ବ୍ରିଟିସ ପ୍ରତିନିଧିମାନେ ଭାରତୀୟମାନଙ୍କ-ଠାରୁ ଆଉ କି ସହଯୋଗିତା ଓ ଶାନ୍ତିପୂର୍ଣ୍ଣ ସମାଧାନର ସମ୍ଭାବନା ଆଶା କରି ପାରନ୍ତି ?

ଭୂଟାନ ସୀମାନ୍ତରେ ଦୁର୍ଗମ ବକ୍‌ସା ଦୁର୍ଗର ରାଜବନ୍ଦୀମାନେ ଏହିବର୍ଷ ରବୀନ୍ଦ୍ର ଜୟନ୍ତୀ ଉଦ୍‌ଯାପନ କରି କବିଙ୍କୁ ଯେଉଁ ଅଭିନନ୍ଦନ ବାଣୀ ପଠାଇଥିଲେ ତାହା କବିଙ୍କର ହୃଦୟ ସ୍ପର୍ଶକଲା । ସେ ଲେଖିଲେ—

ନିଶିଥେରେ ଲଜ୍ଜ୍ୟା ଦିଲ ଅନ୍ଧକାରେ ରବିର ବନ୍ଦନ,...
ଭୈରବେର୍ ଆନନ୍ଦରେ ଦୁଃଖେତେ ଜିନିଲ କେରେ,
ବନ୍ଦୀର ଶୃଙ୍ଖଲ ଛନ୍ଦେ ମୁକ୍ତିର କେ ଦିଲ ପରିଚୟ

ହିଜଲୀ ହତ୍ୟାକାଣ୍ଡର ଦୁଃଖ, ଅପମାନ ଓ ବେଦନା ଫଳରେ କବି ଇଂରେଜୀ ଦଣ୍ଡଧର ଗଣଙ୍କର ଚଣ୍ଡନୀତିର ତୀବ୍ର ପ୍ରତିବାଦ କରି ୧୩୩୮ ପୌଷ ମାସରେ 'ପ୍ରଶ୍ନ' କବିତାରେ ପୁନର୍ବାର ଲେଖିଲେ—

'ଭଗବାନ, ତୁମି ଯୁଗେ ଯୁଗେ ଦୂତ ପାଠାଏଛ ବାରେ ବାରେ
ଦୟାହୀନ ସଂସାରେ ।' ..

(୧୨୪)

କଲିକତାରେ ଜନ୍ମୋତ୍ସବ ପାଳିତ ହେବା ପରେ କବି ଗଙ୍ଗାତୀରସ୍ଥ ଖଡ଼ଦହର ଏକ ଭଡ଼ା ଘରେ ରହିଲେ । ମନ ସମ୍ପୂର୍ଣ୍ଣ ନୂତନ ଜଗତରେ ଘୂରି ବୁଲୁଛି—ସେଠାରେ ଉତ୍ସବର ଆଡ଼ମ୍ବର ନାହିଁ; ଦେଶ-କାଳ-ବ୍ୟାପ୍ତ ସଙ୍କଟର ବିଷାଦ ବି

ନାହିଁ—କବିତା ଲେଖିଲେ । ଏ କବିତା ଲେଖିବାରେ ମଧ୍ୟ ବୈଶିଷ୍ଟ୍ୟ ଅଛି । ବହୁବର୍ଷ ପୂର୍ବେ କବି ଯେତେବେଳେ ପ୍ରଥମେ ଚୟନିକା ପ୍ରକାଶ କରିଥିଲେ ସେତେବେଳେ ନନ୍ଦଲାଲ ବସୁଙ୍କ ଦ୍ୱାରା କାବ୍ୟ ବର୍ଣ୍ଣିତ ବିଷୟର ଛବି ଅଙ୍କାଇଥିଲେ । ବର୍ତ୍ତମାନ ରବୀନ୍ଦ୍ରନାଥ ସ୍ୱୟଂ ଛବି ଆଙ୍କନ୍ତି । ତେଣୁ ନିଜର ଓ ନନ୍ଦଲାଲ ପ୍ରଭୃତି ଶିଳ୍ପୀମାନଙ୍କର ଛବି ଉପରେ କବିତା ଲେଖିଲେ । ଏହି କବିତାଗୁଡ଼ିକ 'ବିଚିତ୍ରିତା' ଗ୍ରନ୍ଥରେ ସଙ୍କଳିତ ପ୍ରକାଶିତ ହେଲା । ନନ୍ଦଲାଲଙ୍କର ପଚିଶ ବର୍ଷ ବୟସ ପୂର୍ଣ୍ଣ ଉପଲକ୍ଷେ ଏହି ବହିଟି ତାଙ୍କୁ ଉତ୍ସର୍ଗ କଲେ—ପଚିଶ ବର୍ଷର କିଶୋର ଗୁଣୀ ନନ୍ଦଲାଲ ବସୁଙ୍କ ପ୍ରତି ସତୁରି ବର୍ଷର ପ୍ରବୀଣ ଯୁବା ରବୀନ୍ଦ୍ରନାଥଙ୍କର ଆଶୀର୍ବର୍ଷଣ ।

ଶାନ୍ତିନିକେତନକୁ ଫେରିଲେ ଫେବୃୟାରି ମାସର ଆରମ୍ଭରେ (୧୯୩୨) । ଶାନ୍ତିନିକେତନର ଦଶମବାର୍ଷିକ ଉତ୍ସବ ହେଉଥାଏ । ଏହି ଦିନର ଭାଷଣରେ ରବୀନ୍ଦ୍ରନାଥ ଦେଶବାସୀଙ୍କୁ ପୁନର୍ବାର 'ସ୍ୱଦେଶୀ' ସାମଗ୍ରୀ ବ୍ୟବହାରର ସଂକଳ୍ପ ଗ୍ରହଣ କରିବା ପାଇଁ କହିଲେ—'ସୁବିଧାର କଷ୍ଟ ଛାଡ଼, ଆରାମ କଷ୍ଟ ଉଣା ହେଲେ ମଧ୍ୟ ନିଜର ଦ୍ରବ୍ୟ ନିଜେ ବ୍ୟବହାର କରିବ···ଦେଶକୁ ନିଜର ବୋଲି ଉପଲବ୍ଧି କରିବାର ଏହା ଗୋଟିଏ ପ୍ରକୃଷ୍ଟ ସାଧନ ।'

କଲିକତାରୁ ଡାକରା ଆସିଲା । ପାରସ୍ୟ ବା ଇରାନ୍ ଯିବାର କଥା ହେଲା । ଏ ବୟସରେ ଆକାଶ ପଥରେ ଯାଇ ପାରିବେ କି ନାହିଁ, ତାହାର ପରୀକ୍ଷା ହେଲା । ଉଡ଼ାଜାହାଜରେ କବିଙ୍କ ସାଙ୍ଗରେ ଗଲେ ଡଚ୍ କନସଲ ଜେନେରାଲ ଓ ତାଙ୍କର ପତ୍ନୀ । ଦେଖାଗଲା ବିମାନ ପଥରେ ମଧ୍ୟ ଯିବାଭଳି ଶକ୍ତି ୭୦ ବର୍ଷ ବୟସରେ ଅକ୍ଷୁର୍ଣ୍ଣ ରହିଛି ।

୭୦ ବର୍ଷ ବୟସ ପାରି ହେବା ପରେ ଦେଶରୁ ବାହାରକୁ ଯିବାର ବୟସ ଆଉ ନାହିଁ ବୋଲି କବିଙ୍କର ଧାରଣା; ଦେଶ ଲୋକଙ୍କର ମଧ୍ୟ ସେହି ବିଶ୍ୱାସ । କିନ୍ତୁ ଏହିପରି ସମୟରେ ପାରସ୍ୟର ଖୋଦ ଶାହନ୍‌ଶାହା ରେଜାଶାହ ପେଲ୍‌ହବିଙ୍କ ନିକଟରୁ ଇରାନ୍ ଯିବାର ଆମନ୍ତ୍ରଣ ପାଇ ପ୍ରତ୍ୟାଖ୍ୟାନ କରି ପାରିଲେ ନାହିଁ ।

ବମ୍ବେର ବନ୍ଧୁ ଦିନଶା ଇରାନୀ ଭରସା ଦେଇ ଲେଖିଲେ ଯେ କୁଶାୟାର ସହରରୁ ସେ କବିଙ୍କର ସଙ୍ଗୀ ହେବେ । କବିଙ୍କ ସଙ୍ଗରେ ସେହି ଉଡ଼ାଜାହାଜରେ ଗଲେ ପ୍ରତିମା ଦେବୀ ଓ ଅମିୟ ଚକ୍ରବର୍ତ୍ତୀ । ଗୋଷ୍ଠିର ବିମାନରେ ଗୃଟିଏ ଟିକେଟ୍ ନ ମିଳିବାରୁ ଇରାନ୍ ଯାତ୍ରାର ଅନ୍ୟତମ ସଙ୍ଗୀ କେଦାରନାଥ ଚଟ୍ଟୋପାଧ୍ୟାୟ ଆଗରୁ ଚ୍ଲି ଯାଇଥିଲେ ।

ଏଲାହାବାଦ, ଯୋଧପୁର, କରାଚୀ ଓ ନାସିକ୍ ବିମାନ ଘାଟିରେ ଉଡ଼ାଜାହାଜ ରହି ରହି ଚ୍ଳିଲା । କୁଶାୟାର ପାରସ୍ୟର ବଡ଼ ସହର । ସେଠାରେ କବିଙ୍କୁ ଓହ୍ଲାଇବାକୁ ପଡ଼ିଲା । ଏହାପରେ ରାଜଧାନୀ ତେହେରାନ୍ ପର୍ଯ୍ୟନ୍ତ ସ୍ଥଳପଥରେ ଯାତ୍ରା । ସେତେବେଳକୁ ପାରସ୍ୟ ଉପସାଗରଠାରୁ କାସ୍ପିଆନ ହ୍ରଦ ପର୍ଯ୍ୟନ୍ତ ରେଲପଥ ନିର୍ମିତ ହୋଇନାହିଁ; ରାଜପଥର ଯାହା ଦଶା ତାହା ଅବର୍ଣ୍ଣନୀୟ । ନିରାପଦ ମଧ୍ୟ ନୁହେଁ । ଦସ୍ୟୁଦଳ ରାସ୍ତା ଘାଗନ୍ତି, ତେଣୁ ସଶସ୍ତ୍ର ସୈନ୍ୟ ମୁତୟନ ରଖିବାକୁ ହୁଏ ।

କୁଶାୟାରରେ ଦୁଇଦିନ ରହି କବି ଓ ତାଙ୍କର ସଙ୍ଗୀମାନେ ସରକାରୀ ଲୋକଙ୍କ ସହିତ ମଟରରେ ସିରାଜ୍ ସହରକୁ ଗଲେ । ସିରାଜ୍ ପାରସ୍ୟର ପ୍ରାଚୀନ ସହର—ହାଫେଜ୍ ଓ ସାଦିଙ୍କର ବାସ ଭୂମି । ସାଦୀଙ୍କର ସମାଧି ଉଦ୍ୟାନରେ ଭାରତୀୟ କବିଙ୍କର ଅଭ୍ୟର୍ଥନା ହେଲା । ଅସମ୍ଭବ ଭିଡ଼ । ପୋଲିସ ହଇରାଣ ହୋଇଗଲେ । ଶେଷରେ ସିପାହୀଙ୍କ ଦ୍ୱାରା ଲୋକଙ୍କୁ ଅଟକା ଗଲା । ଆଉ ଦିନେ କବି ହାଫେଜଙ୍କର ସମାଧି ସ୍ଥଳରେ ଅନେକ ସମୟ ଥିଲେ— ବାଲ୍ୟକାଳରେ ପିତା ହାଫେଜ୍‌ରୁ ଆବୃତ୍ତି କରିବାର ଶୁଣିଥିଲେ । ସେ ସ୍ମୃତି ତାଙ୍କ ମନରେ ଖୁବ୍ ସ୍ପଷ୍ଟ ଥିଲା ।

ସିରାଜରେ ସାତଦିନ କଟିଲା । ପାରସ୍ୟର ଗୁଲ୍‌ବେହେସ୍ତର ଶୋଭା ଓ ସୌନ୍ଦର୍ଯ୍ୟ ଉପଭୋଗ କଲେ ।

ଇସ୍‌ପାହାନ୍ ଯିବା ରାସ୍ତାରେ ପଡ଼େ ପ୍ରାଚୀନ ପାରସ୍ୟବାସୀଙ୍କର ରାଜଧାନୀ ପାର୍‌ସି-ପୋଲିସ । ସେଠାରେ ପ୍ରତ୍ନତତ୍ତ୍ୱବିତ୍ ହାର୍ଜଫେଲ୍‌ଟ ବହୁ ଦିନରୁ ଥିଲେ । ରବୀନ୍ଦ୍ରନାଥଙ୍କୁ ଦେଖାଇବା ପାଇ ସେ ବେଶ୍ କିଛୁ ଶିଳ୍ପ ନିଦର୍ଶନ ସଂଗ୍ରହ କରି ରଖିଥିଲେ । ବିରାଟ

ଧ୍ୱଂସ ସ୍ତୁପ ଘୂର ୁର ଦେଖିବା କବିଙ୍କ ପକ୍ଷରେ ସମ୍ଭବ ନୁହେଁ । ହାର୍ଜଫେଲ୍‌ଟଙ୍କ ସଙ୍ଗରେ ପାରସ୍ୟ ଶିଳ୍ପ ସମ୍ପର୍କରେ କବିଙ୍କର ଆଳାପ ଆଲୋଚନା ହେଲ—ଏବେ ବି ଜାଣିବାର ଓ ବୁଝିବାର ଆଗ୍ରହ ପ୍ରବଳ । ଇସପାହାନ୍‌ରେ ଛ'ଦିନ ରହିଲେ । ସେଠାର ବିଖ୍ୟାତ ଇସଲାମିକ ସ୍ଥାପତ୍ୟ ଗୁଡ଼ିକ ତନ୍ନ ତନ୍ନ କରି ଦେଖିଲେ ।

କୁଶାୟାରରେ ପହଞ୍ଚିବାର ୧୫ ଦିନ ପରେ କବି ଓ ତାଙ୍କର ବନ୍ଧୁମାନେ ରାଜଧାନୀ ତେହେରାନ୍‌କୁ ଗଲେ । ଏହି ଦୀର୍ଘ ଦୁର୍ଗମ ପଥ ଦେଇ ହୁଏତ ଶୀଘ୍ର ଯାଇ ପାରି ଥାଆନ୍ତେ । କିନ୍ତୁ ଦେଶକୁ ଏପରି ଭଲ ଭାବରେ ଦେଖି ପାରି ନ ଥାଆନ୍ତେ—ଶରୀର ମଧ୍ୟ ଭଲ ରହି ଥାଆନ୍ତା କି ନାହିଁ ସନ୍ଦେହ ।

ତେହେରାନରେ କବି ୧୫ ଦିନ ଥିଲେ ଓ ସେହି ସମୟ ମଧ୍ୟରେ ୧୮ଟି ଉତ୍ସବ ହୋଇଥିଲା । ପାରସ୍ୟର ଶାହାନଶାହା ରେଜାଶାହା ପେଲ୍‌ହବିଙ୍କ ସଙ୍ଗରେ ଦିନେ ଦେଖା ହୋଇଥିଲା । କବିଙ୍କ ଜନ୍ମଦିନ ଏହିଠାରେ ହିଁ ଉଦ୍‌ଯାପିତ ହେଲା—ରାଜାଙ୍କର ଆଦେଶରେ ରାଜୋଦ୍ୟାନରେ ଦିବସବ୍ୟାପୀ ଉତ୍ସବ ହୋଇଥିଲା । କହିବା ବାହୁଲ୍ୟ ଯେ ଇରାନ୍‌ରେ ଶାହାନ୍‌ଶାହୋଚିତ ଆୟୋଜନ ହୋଇଥିଲା ।

ଇତି ମଧ୍ୟରେ ଇରାକର ରାଜଦୂତ ଆସି କବିଙ୍କୁ ସେ ଦେଶକୁ ଯିବା ପାଇଁ ନିମନ୍ତ୍ରଣ କଲେ । ତେହେରାନ୍‌ରୁ ମଟର ଯୋଗେ ଇରାକ୍ ଯାତ୍ରା କଲେ । ପଥର ଦୁଇକଡ଼ରେ ଅଜ୍ଞାତ ପାହାଡ଼, ଯାହା ଦେହରେ ଖୋଦିତ ହୋଇଛି ଅଖାମନୀୟ ଦରାୟୁସଙ୍କର ବେହିସ୍ଥାନ ଶିଳାଲିପି । ସେଠାରୁ ଅଦୂରରେ ତାକିବୁସ୍ଥାନର ପର୍ବତ ଗାତ୍ରରେ ଶାସନୀୟ ଯୁଗର କାରୁକାର୍ଯ୍ୟ ଖୋଦିତ ସମାଧି ମନ୍ଦିର । କବି ଏ ସମସ୍ତ ଦେଖିଲେ । ପ୍ରାଚୀନ ଓ ଆଧୁନିକ ପାରସ୍ୟର ଇତିହାସ କବିଙ୍କର ଅଜ୍ଞାତ ନଥିଲା; ସାଇକସ୍‌ଙ୍କର ଇତିହାସ ଦୁଇଖଣ୍ଡି କବି ଭଲ ଭାବରେ ପଢ଼ିଥିଲେ । ସୁତରାଂ ଏସବୁ ବୁଝିବାକୁ ତାଙ୍କର କୌଣସି ଅସୁବିଧା ହେଲା ନାହିଁ ।

ଇରାକ୍‌ର ସୀମାନ୍ତ ନିହାତି ନିକଟରେ ନୁହେଁ—କର୍ମନାଶାରେ ଗୋଟିଏ ରାତି କଟାଇବାକୁ ପଡ଼ିଲା । ପରଦିନ ଇରାକ୍‌ର

ରେଲଷ୍ଟେସନରୁ ଟ୍ରେନଯୋଗେ କବି ବାଗଦାଦ୍ ଗଲେ । ଭାରତର କବିଙ୍କୁ ଦେଖିବା ପାଇଁ ଜନତା ଉତ୍ସୁକ । କବି ବାଗଦାଦ୍‌ର ଏକ ବଡ଼ ହୋଟେଲ୍‌ରେ ରହିଲେ । ରାଜା ଫଇଜଲ୍‌ଙ୍କ ସହିତ ସାକ୍ଷାତ ହେଲା । ତାଙ୍କର ସାଧା ସିଧା ଅନାଡ଼ମ୍ବର ବ୍ୟବହାର କବିଙ୍କୁ ମୁଗ୍ଧ କରିଥିଲା ।

ବାଗଦାଦ୍‌ରେ ଯଥାରୀତି ସମ୍ବର୍ଦ୍ଧନା ସଭା ହେଲା । କିନ୍ତୁ ଆରବର ସହର-ସଭ୍ୟତା କବି ମନକୁ ବାନ୍ଧିରଖି ପାରିଲା ନାହିଁ । ତେଣୁ ମରୁପ୍ରାନ୍ତରର ବେଦୁଇନ୍ ସର୍ଦ୍ଦାରଙ୍କର ତମ୍ବୁରେ ପହଞ୍ଚିଲେ । ଯୌବନର ଆବେଗରେ ଦିନେ କହିଥିଲେ -

ଇହାର ଚେୟେ ହତେମ୍ ଯଦି
ଆରବ ବେଦୁଇନ୍ !

ସେହି ବେଦୁଇନ୍‌ମାନଙ୍କୁ ଦେଖିବାକୁ ଗଲେ । ବେଦୁଇନ୍‌ମାନେ ତମ୍ବୁରେ କବିଙ୍କୁ ଭୋଜିରେ ଆପ୍ୟାୟିତ କଲେ ଓ ସେମାନଙ୍କର ରଣନୃତ୍ୟ ଦେଖାଇଲେ । ବେଦୁଇନ୍ ସର୍ଦ୍ଦାର ଦେଶ ବିଦେଶର ଖବର ରଖନ୍ତି ଯଥେଷ୍ଟ । ସେ କହିଲେ – ଭାରତରେ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ଯେଉଁ ବିରୋଧ ଚାଲିଛି ତାହାର ମୂଳରେ ଅଛନ୍ତି ଶିକ୍ଷିତ ଲୋକ । କିଛିଦିନ ପୂର୍ବରୁ ଭାରତରୁ କେତେକ ଶିକ୍ଷିତ ମୁସଲମାନ ବାଗଦାଦ୍ ଆସି ଇସ୍‌ଲାମ୍ ନାମରେ ଭେଦବୁଦ୍ଧି ପ୍ରଚାର ଚେଷ୍ଟା ଚଳାଇଥିଲେ । ବେଦୁଇନ୍ ସର୍ଦ୍ଦାର ସେମାନଙ୍କର ନିମନ୍ତ୍ରଣ ସଭାକୁ ଯାଇ ନଥିଲେ ।

୧୯୩୧ ମସିହାରେ ଭାରତ ସମ୍ପର୍କୀୟ ଗୋଲଟେବୁଲ ବୈଠକରେ ଯୋଗଦେବାକୁ ଗଲାବେଳେ କେତେକ ନେତୃସ୍ଥାନୀୟ ମୁସଲମାନ୍ ଆରବ ଯାଇଥିଲେ । ସେହିମାନେ ହିଁ ୧୯୨୧ ଖ୍ରୀଷ୍ଟାବ୍ଦରେ ଗାନ୍ଧିଜୀଙ୍କର ବଡ଼ ଚେଲା ଥିଲେ ।

ବାଗଦାଦ୍‌ରୁ ଉଡ଼ନ୍ତା ବିମାନ ଯୋଗେ କବି ଓ ପ୍ରତିମା ଦେବୀ ଦେଶକୁ ଫେରିଲେ । ତାଙ୍କର ସଙ୍ଗୀ ଅମିୟଚନ୍ଦ୍ର ଓ କେଦାରନାଥ ଇରାକ୍ ଦେଖିବା ପାଇଁ ରହିଲେ ।

(୧୨୫)

୧୯୩୨ ମସିହା ଜୁନ ୩ ତାରିଖରେ କବି ପାରସ୍ୟରୁ ଫେରିଲେ -- ଏପ୍ରିଲ ୧୧ ତାରିଖରେ କଲିକତା ଛାଡ଼ିଥିଲେ । ପାରସ୍ୟରୁ ଫେରି ଶୁଣିଲେ ଯେ ତାଙ୍କର ଏକମାତ୍ର ଦୌହିତ୍ର ନୀତୁ (ମିରା ଦେବୀଙ୍କର ପୁତ୍ର) ଜର୍ମାନୀରେ କଠିନ ରୋଗରେ ଶଯ୍ୟାଶାୟୀ । କିଛି ବର୍ଷ ପୂର୍ବେ ଖୁବ୍ ଆଶା ରଖି ତାଙ୍କୁ ମୁଦ୍ରାଯନ୍ତ୍ର କାର୍ଯ୍ୟ ଶିଖିବା ପାଇଁ ଜର୍ମାନୀ ପଠା ଯାଇଥିଲା ।

ରବୀନ୍ଦ୍ରନାଥ ମିରା ଦେବୀଙ୍କୁ ୟୁରୋପ ପଠାଇ ଦେଲେ । ପ୍ରାୟ ଏକ ମାସ ପରେ ଅଗଷ୍ଟ ସାତ ତାରିଖରେ (୧୯୩୨) ସମ୍ବାଦ ପାଇଲେ ଯେ ନୀତୁର ମୃତ୍ୟୁ ହୋଇଛି । ବୃଦ୍ଧ ବୟସରେ ଏକମାତ୍ର ଦୌହିତ୍ରର ଏହି ବିଚ୍ଛେଦ ବେଦନା ରବୀନ୍ଦ୍ରନାଥଙ୍କୁ କେତେ ପରିମାଣରେ ଆଘାତ ଦେଇଥିଲା ତାହା ଜାଣିବାର ଉପାୟ ନାହିଁ । ବ୍ୟକ୍ତିଗତ ମର୍ମାନ୍ତିକ ଦୁଃଖକୁ ଉପେକ୍ଷା କରି ନିଜର ବିଧି ନିର୍ଦ୍ଦିଷ୍ଟ ବ୍ରତରେ ସେ ବରାବର ନିଯୁକ୍ତ ରହିଛନ୍ତି । ଏହି ସମୟରେ ଗୋଟିଏ କବିତାରେ ଲେଖିଛନ୍ତି—

ଦୁଃଖେର୍ ଦିନେ ଲେଖନୀକେ ବଲି,
ଲଜ୍ଜା ଦିଓନା ।
ସକଲେ'ର ନୟ ଯେ ଆଘାତ
ଧୋରୋ ନା ସବାର ଚୋଖେ ।
ଢେକୋ ନା ମୁଖ ଅନ୍ଧକାରେ,
ରେଖୋ ନା ଦ୍ୱାରେ ଅର୍ଗଲ ଦିୟେ ।
ଜ୍ୱାଲୋ ସକଲ ରଙେର୍ ଉଜ୍ଜ୍ୱଲ ବାତି—
କୃପଣ ହୋୟୋ ନା ।

ଏହି ସମୟରେ କବି ବରାହନଗରରେ ପ୍ରଶାନ୍ତଚନ୍ଦ୍ର ମହଲାନବିଶଙ୍କର ବସାରେ ଥିଲେ । କଲିକତା ଆସିଲେ । ବିଶ୍ୱ-ବିଦ୍ୟାଳୟ ପକ୍ଷରୁ ଅଗଷ୍ଟ ୬ ତାରିଖରେ କବିଙ୍କର ସମ୍ବର୍ଦ୍ଧନା ହୋଇଥିଲା । ତାଙ୍କର ଆର୍ଥିକ ଅବସ୍ଥା ଅସ୍ୱସ୍ତିଜନକ । ଶେଷରେ କଲିକତା ବିଶ୍ୱବିଦ୍ୟାଳୟରେ ବଙ୍ଗଭାଷାରେ ରାମତନ ଲାହିଡ଼ୀ

—ଅଧ୍ୟାପକ ପଦ ଗ୍ରହଣ କଲେ । 'କମଲା ବକ୍ତୃତା' ଦେବାପାଇଁ ଆହ୍ବାନ ପାଇଲେ ।

ଶାନ୍ତିନିକେତନ ଫେରି ଗଦ୍ୟ ଛନ୍ଦରେ କବିତା ଲେଖା ଆରମ୍ଭ କଲେ । 'ପରିଶେଷ' ନାମକ କାବ୍ୟ ଖଣ୍ଡି ପ୍ରକାଶ କରି ଭାବିଥିଲେ ଯେ ଏହାହିଁ ତାଙ୍କର ଶେଷ ରଚନା । କିନ୍ତୁ ଶୀଘ୍ର ଦେଖା ଗଲା ଯେ 'ପରିଶେଷ' କାବ୍ୟରେ ମଧ୍ୟ ଶେଷ କଥା କୁହାଯାଇନି—ତେଣୁ ଲେଖିଲେ 'ପୁନଶ୍ଚ' ।

ଭାଦ୍ରବ ମାସର ଶେଷ ଆଡ଼କୁ (୧୩୩୯) କଥା ସାହିତ୍ୟିକ ଶରତଚନ୍ଦ୍ର ଚଟ୍ଟୋପାଧ୍ୟାୟଙ୍କର ଜନ୍ମୋତ୍ସବ—କବି ତାହାର ସଭାପତି । ଶରତଚନ୍ଦ୍ର ଥିଲେ ରବୀନ୍ଦ୍ର-ସମ୍ବର୍ଦ୍ଧନାର ସଭାପତି । କିନ୍ତୁ ଶରତ-ଉତ୍ସବ ଅସମାପ୍ତ ରହିଗଲା—ସମ୍ବାଦ ମିଳିଲା ଯେ ପୁନାର ୟେରବାଦା ଜେଲରେ ଗାନ୍ଧିଜୀ ଆମରଣ ଅନଶନ ବ୍ରତ ଗ୍ରହଣ କରିଛନ୍ତି । ତେଣୁ ଉତ୍ସବ ଘୁଞ୍ଚିଗଲା । ଶରତଚନ୍ଦ୍ରଙ୍କର ଏହି ସତାବନ୍ଦିତମ ଜନ୍ମ ଦିବସ ଉପଲକ୍ଷେ କବି 'କାଲେର ଯାତ୍ରା' ଗ୍ରନ୍ଥ ଖଣ୍ଡିକ ତାଙ୍କୁ ଉତ୍ସର୍ଗ କରିଥିଲେ ।

(୧୨୬)

ପୁନା ଜେଲରେ ଗାନ୍ଧିଜୀ କାହିଁକି ଅନଶନ ବ୍ରତ ଗ୍ରହଣ କଲେ, ତାହା ସଂକ୍ଷେପରେ କହିବା ଦରକାର । ପ୍ରାୟ ୯ ମାସ ପୂର୍ବେ ଗୋଲଟେବୁଲ ବୈଠକରେ ଯୋଗଦାନ କରି ଫେରିବାର ସପ୍ତାହକ ମଧ୍ୟରେ ଗାନ୍ଧିଜୀଙ୍କୁ ଗିରଫ କରି ବିନା ବିଚାରରେ ଅଟକ ରଖା ହୋଇଥିଲା (୧୯୩୨ ଜାନୁଆରୀ) । ଭାରତ ବର୍ଷର ନୂତନ ଶାସନ ପଦ୍ଧତିର ଖସଡ଼ା ନେଇ ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ମତାନୈକ୍ୟ ଏପରି ତୀବ୍ର ହୋଇ ଉଠିଲା ଯେ ଶେଷରେ ବ୍ରିଟିସ ପ୍ରଧାନ ମନ୍ତ୍ରୀ ରାମସେ ମ୍ୟାକଡୋନାଲ୍ଡ ନିଜର ଅଭିସନ୍ଧି ରଖି ଯାହା କରିବାର କଲେ । ଇତି ପୂର୍ବରୁ ମୁସଲ-

ମାନ ସମାଜକୁ ସ୍ୱତନ୍ତ୍ର ନିର୍ବାଚକ ଗୋଷ୍ଠୀ ହିସାବରେ ଗଣ୍ୟ କରା ହୋଇଥିଲା । ଏଥର ରାମ୍‌ସେ ମ୍ୟାକ୍‌ଡୋନାଲ୍‌ଡ ଘୋଷଣା କଲେ ଯେ ହିନ୍ଦୁମାନେ ଅଖଣ୍ଡ 'ଜାତି' ନୁହନ୍ତି — ସବର୍ଣ୍ଣ ହିନ୍ଦୁମାନେ 'ତପସିଲମାନଙ୍କ'ଠାରୁ ପୃଥକ୍ । ଭାରତ ଥିଲା ଗୋଟିଏ; ମୁସଲମାନମାନଙ୍କର ପୃଥକ୍ ନିର୍ବାଚନ ଅଧିକାର ସାବ୍ୟସ୍ତ ହେବାରୁ ତାହା ହେଲା ଦୁଇଟି ଓ ନୂତନ ପ୍ରସ୍ତାବରେ ଭାରତର ଅନ୍ୟତମ ଖଣ୍ଡକୁ ଖଣ୍ଡ ଖଣ୍ଡ କରିବାର ଚେଷ୍ଟା ହେଲା । ଐକ୍ୟମୁଖୀ ଭାରତୀୟ ସମାଜକୁ ଏହିପରି ଭାବରେ ବହୁଭାଗରେ ବିଚ୍ଛିନ୍ନ କରି ପାରିଲେ ଶାସକଶ୍ରେଣୀର ବିଶେଷ ସୁବିଧା । ଗାନ୍ଧିଜୀ ଜେଲ୍‌ରୁ ଆପତ୍ତି ଜଣାଇ ୧୯୩୨ ଖ୍ରୀଷ୍ଟାବ୍ଦ ସେପ୍‌ଟେମ୍ବର ୨୦ତାରିଖ ଠାରୁ ଅନଶନ ଆରମ୍ଭ କଲେ ।

ରବୀନ୍ଦ୍ରନାଥ ଏହି ସମ୍ବାଦ ପାଇ ଗାନ୍ଧିଜୀଙ୍କୁ ଏକ ତାର-ବାର୍ତ୍ତାରେ ଜଣାଇଲେ ଯେ ଭାରତର ଅଖଣ୍ଡତା ବଜାୟ ରଖିବା ପାଇଁ ଅମୂଲ୍ୟ ଜୀବନ-ଦାନ ସାର୍ଥକ କର୍ମ । ଗାନ୍ଧିଜୀ ଉତ୍ତରରେ ଲେଖିଲେ, ଗୁରୁଦେବଙ୍କ ନିକଟରୁ ସେ ଏହି ଆଶୀର୍ବାଦ ଆଶା କରୁଥିଲେ । ଦେଶର ସମସ୍ତ ନେତା କାରାରୁଦ୍ଧ । ରବୀନ୍ଦ୍ରନାଥ ଅସ୍ଥିର ହୋଇ ଉଠିଲେ ଓ ସେପ୍‌ଟେମ୍ବର ୨୬ ତାରିଖରେ ଅମିୟଚନ୍ଦ୍ର ଚକ୍ରବର୍ତ୍ତୀ ଓ ସୁରେନ୍ଦ୍ରନାଥ କରଙ୍କୁ ସାଙ୍ଗରେ ନେଇ ପୁନା ଗଲେ । ସେହିଦିନ ଅପରବେଳା ଖବର ମିଳିଲା ଯେ ମ୍ୟାକ୍‌ଡୋନାଲ୍‌ଡ୍ ଗାନ୍ଧିଜୀଙ୍କର ପ୍ରସ୍ତାବ ଗ୍ରହଣ କରିଛନ୍ତି । ଏହି ସମ୍ବାଦ ପାଇ ମହାତ୍ମାଜୀ ଜଳଗ୍ରହଣ କଲେ । କବି ସେହି ସମୟରେ ଉପସ୍ଥିତ ଥିଲେ ଓ ମହାତ୍ମାଙ୍କର ଅନୁରୋଧରେ ରବୀନ୍ଦ୍ରନାଥ ଗୋଟିଏ ଗୀତ ଗାଇଥିଲେ—'ଜୀବନ ଜଖନ ଶୁକାଇୟେ ଯାଏ, କରୁଣା ଧାରାୟେ ଏସୋ' ।

ଅକ୍ଟୋବର ଦୁଇ ତାରିଖରେ ଗାନ୍ଧିଜୀଙ୍କର ଜନ୍ମଦିନ । ପୁନା ସହରର ବିରାଟ ଜନସଭାରେ କବି ଏକ ଲିଖିତ ଭାଷଣ ପାଠ କଲେ । ସେ କହିଲେ ଯେ ଦେଶବାସୀଙ୍କୁ ଅସ୍ପୃଶ୍ୟତା ବର୍ଜନ କରିବାକୁ ହେବ । ଆହୁରି କହିଥିଲେ ଯେ ହିନ୍ଦୁ, ମୁସଲମାନ ମିଳିତ ଭାବରେ ଦେଶ ସେବାରେ ଆତ୍ମୋତ୍ସର୍ଗ ନକଲେ ସ୍ୱରାଜ୍ୟ-ଲାଭ ସହଜ ସାଧ୍ୟ ନୁହେଁ । ୧୦ବର୍ଷ ପୂର୍ବେ ବମ୍ବେରେ ମିଷ୍ଟର ଜିନାଙ୍କର ଚେଷ୍ଟାରେ ଖିଲାଫତ

ଜାଲିଆନୱାଲାବାଗର ସ୍ମୃତି ରକ୍ଷାର୍ଥେ ସଭା ହୋଇଥିଲା ଓ ସେଦିନ ମଧ୍ୟ ରବୀନ୍ଦ୍ରନାଥ ସଭା ଉଦ୍ଦେଶ୍ୟରେ ଦୀର୍ଘ ଭାଷଣ ଲେଖି ପଠାଇଥିଲେ । ବାଧିର ବାଡ଼ମ୍ବନା, ଜିନ୍ନା ସାହେବ ଭାରତକୁ ଦ୍ୱିଖଣ୍ଡିତ କରିବାର ଆୟୋଜନ କରିଥାନ୍ତି ।

କବି ଶାନ୍ତିନିକେତନ ଫେରିଲେ । ଯେଉଁ ସବୁ କବିତା ଲେଖିଥିଲେ ତାହାର ଧାରା ଏହି କେତେଦିନର ଉତ୍ତେଜନା ଭିତରେ ସତେ ଯେପରି ହଜି ଯାଇଛି । ଏଥର ଲେଖିଲେ ବଡ଼ ଗଳ୍ପ —'ଦୁଇବୋନ୍' । ତାହାର ଗୀତିଧର୍ମୀ ଭାବଭଙ୍ଗୀରେ 'ଶେଷେର୍ କବିତା'ର ଅନୁସୃତି ।

ପୁନର୍ବାର କଲିକତା ଯିବାକୁ ପଡ଼ିଲା, ଆଚାର୍ଯ୍ୟ ପ୍ରଫୁଲ୍ଲଚନ୍ଦ୍ର ରାୟଙ୍କର ସପ୍ତତିବର୍ଷ ଉତ୍ସବ ଉପଲକ୍ଷେ । ଉତ୍ସବ ସଭାରେ (୧୯୩୨ ଡିସେମ୍ବର ୧୧) ସଭାପତି ହେଲେ ରବୀନ୍ଦ୍ରନାଥ । ଆଚାର୍ଯ୍ୟ ରାୟ ଗାନ୍ଧିଜୀଙ୍କର ପରମଭକ୍ତ ଓ ଚରମ ଖଦଡ଼-ପନ୍ଥୀ । ତେଣୁ କବି ତାଙ୍କୁ ଉତ୍ସର୍ଗ କଲେ ମହାତ୍ମାଜୀଙ୍କ ସମ୍ପର୍କରେ ଏକ କ୍ଷୁଦ୍ର ପୁସ୍ତିକା ।

(୧୨୭)

୧୯୩୩ ମସିହାରେ କଲିକତା ବିଶ୍ୱବିଦ୍ୟାଳୟ ସହିତ କବିଙ୍କର ନୂତନ ସମ୍ପର୍କ ସ୍ଥାପିତ ହେଲା, ଅଧ୍ୟାପକ ହିସାବରେ—ଯଦିଚ ତାଙ୍କୁ କ୍ଲାସ୍ ନେବାକୁ ପଡ଼ିନ । 'କମଲା ବକ୍ତୃତା' ଦେଲେ । ବକ୍ତୃତାର ବିଷୟ ଥିଲା—'ମାନୁଷେର ଧର୍ମ' । ବଙ୍ଗାଳୀ ସାଧାରଣ ଶ୍ରୋତାଙ୍କ ଉପଯୋଗୀ ଲେଖା—ଯଥାସାଧ୍ୟ ସହଜ କରିବାର ଚେଷ୍ଟା କରିଥାନ୍ତି ।

କବି ଥାନ୍ତି ବରାହନଗରର ପ୍ରଶାନ୍ତଚନ୍ଦ୍ରଙ୍କ ଘରେ । ଦେଖା କରିବାକୁ ଆସିଲେ ମଦନମୋହନ ମାଲବ୍ୟ । ସେ ଆସି କବିଙ୍କୁ କହିଲେ ଯେ ଭାରତରେ ନୂତନ ଶାସନ ପ୍ରବର୍ତ୍ତିତ ହେବା ସମୟରେ ଭାରତ ବିରୁଦ୍ଧରେ ବିଦେଶରେ ଭୀଷଣ କୁତ୍ସା ପ୍ରଚାରିତ ହେଉଛି ବୋଲି ମୂଳେଷ୍ଟରୁ ବିଠଲଭାଇ ପଟେଲ ଜଣାଇଛନ୍ତି । ଭାରତ

ଅଧିକତର ଅଧିକାର ଦାବୀ କରନ୍ତୁ ଓ ତାହା ପାଇବା ପାଇଁ ସେ ସେ ଅଯୋଗ୍ୟ ଏହା ହିଁ ବ୍ରିଟିଶ୍ ଏଜେଣ୍ଟମାନଙ୍କର ପ୍ରମାଣର ବିଷୟ । ସେଥିପାଇଁ ସେମାନେ ଅଜସ୍ର ଅର୍ଥବ୍ୟୟ କରିଛନ୍ତି ଓ ମିସ୍ ମେୟୋଙ୍କର 'ମଦର ଇଣ୍ଡିଆ' ବହିଟି ପ୍ରଧାନ ଭାଷା ସବୁରେ ଅନୁବାଦ କରାଇଛନ୍ତି । ରବୀନ୍ଦ୍ରନାଥ ଏକ ବିବୃତିରେ ଲେଖିଲେ ଯେ ଗୋଟିଏ ଦୁଇଟି ଖୁଚୁରା ପ୍ରବନ୍ଧ ଲେଖି ବା ଜଣେ ଦୁଇଜଣ ଲୋକଙ୍କୁ ବିଦେଶ ପଠାଇ ଏ ସ୍ରୋତ ବନ୍ଦ କରିବା ଅସମ୍ଭବ, ପାଶ୍ଚାତ୍ୟ ଦେଶର ପ୍ରଧାନ ନଗରଗୁଡ଼ିକରେ ଭାରତ ସମ୍ବନ୍ଧୀୟ ତଥ୍ୟ ଓ ସମ୍ବାଦ ସରବରାହ କରିବା ପାଇଁ ସୁସଂଗଠିତ କେନ୍ଦ୍ର ସ୍ଥାପନ ପ୍ରୟୋଜନୀୟ ।

କବିଙ୍କର ଦିନ କଟେ ନାନା କାର୍ଯ୍ୟରେ । ଗ୍ରୀଷ୍ମାବକାଶରେ ଦାର୍ଜିଲିଂରେ ୨ ମାସ ରହି ଫେରି ଆସିଲେ । ବିଦ୍ୟାଳୟ ଖୋଲିବା ପରେ ଛାତ୍ର ଓ ଅଧ୍ୟାପକଙ୍କ ସହିତ ବଙ୍ଗଳା ଭାଷା ଓ ଛନ୍ଦ ବିଷୟରେ ଆଲୋଚନା ଆରମ୍ଭ କଲେ । ଆଲୋଚନାର ବେଶୀ ଭାଗ ଗଢ଼ି ଉଠି ଥିଲି ଗଦ୍ୟ ଛନ୍ଦକୁ କେନ୍ଦ୍ର କରି । କାରଣ ଠିକ୍ ଏହି ସମୟରେ ଗଦ୍ୟ ଛନ୍ଦର ବିଚିତ୍ର ପରୀକ୍ଷା ଆରମ୍ଭ ହୋଇଥିଲି ।

ପୂଜାବକାଶ ପୂର୍ବରୁ ଶାନ୍ତିନିକେତନରେ ଅଭିନୟ ପ୍ରଦର୍ଶନ କରିବା ଖୁବ୍ ପୁରୁଣା ପ୍ରଥା । ଏଥର ମଧ୍ୟ ସମସ୍ତେ କବିଙ୍କ ନିକଟରୁ ନୂତନ ନାଟକ ଚାହିଁଲେ । କବି ଲେଖିଲେ 'ତାସେର୍ ଦେଶ' ଓ ଓ 'ଚଣ୍ଡାଳିକା' । ୧୨୯୯ ସାଲରେ ସାଧନା ପତ୍ରିକାରେ 'ଏକଟା ଆଷାଢ଼େ ଗଳ୍ପ' ଲେଖିଥିଲେ । ସେହି କାହାଣୀକୁ ଅବଲମ୍ବନ କରି 'ତାସେର ଦେଶ' କୌତୁକ-ନାଟ୍ୟ ଲେଖା ହେଲି । ବୌଦ୍ଧ ଅବଦାନ ସାହିତ୍ୟର ଗୋଟିଏ ଗଳ୍ପକୁ ନେଇ ଲେଖିଲେ 'ଚଣ୍ଡାଳିକା' ।

ଶାନ୍ତିନିକେତନରେ ଅଭିନୟ ହେଲେ ସ୍ଥାନୀୟ ବାସିନ୍ଦା ଖୁସି ହୁଅନ୍ତି । କିନ୍ତୁ ସେଥିରେ ବିଶ୍ୱଭାରତୀର ଛିଦ୍ର କୁମ୍ଭ ପୂର୍ଣ୍ଣ ହୁଏ ନାହିଁ । ରବୀନ୍ଦ୍ରନାଥଙ୍କର ପ୍ରଯୋଜନାରେ ଶାନ୍ତି-ନିକେତନର ଛାତ୍ର ଛାତ୍ରୀଙ୍କ ଦ୍ୱାରା ଏହି ନୃତ୍ୟଗୀତ ଓ ଅଭିନୟର ଅନୁଷ୍ଠାନ ସହିତ କବିଙ୍କର ରସ ରୂପ ସୃଷ୍ଟିର ବିଶେଷ ଅପୂର୍ବତା ଓ ସାର୍ଥକତା ନିହିତ ଅଛି । ବୃହତ୍ତର ସମାଜର ସାମାଜିକ

ରସିକମାନଙ୍କୁ ତାହାର ସ୍ୱୀକାର ନ କରିବା ମଧ୍ୟ ଅନୁଚିତ । ତେଣୁ ଶାନ୍ତିନିକେତନର ଉତ୍ସବାନୁଷ୍ଠାନ ଶେଷରେ ଦଳବଳ ନେଇ ରବୀନ୍ଦ୍ରନାଥ କଲିକତା ଗଲେ । ମ୍ୟାଡ଼ାନ ଥିଏଟରରେ ତିନି ରାତି ଅଭିନୟ ହେଲା । 'ତାସେର ଦେଶ'ର ଅଭିନୟରେ, ସାଜସଜ୍ଜାରେ, ଭାବଭଙ୍ଗୀରେ ଓ କଥାବାର୍ତ୍ତାରେ, ଅର୍ଥାତ୍ ରବୀନ୍ଦ୍ରନାଥଙ୍କର ନାଟ୍ୟ-ନିର୍ଦ୍ଦେଶରେ ଓ ଶିଳ୍ପୀ ନନ୍ଦଲାଲ ଓ ସୁରେନ୍ଦ୍ରନାଥଙ୍କର ରୂପ କଳ୍ପନାରେ ଏପରି ଏକ ବୈଶିଷ୍ଟ୍ୟ ଫୁଟି ଉଠିଥିଲା ଯାହା ଦେଶର ଲୋକେ ପୂର୍ବରୁ କେବେ ଦେଖି ନାହାନ୍ତି । ଏହା ଥିଲା ଅଭିନୟର ଏକ ନୂତନ ଧାରା ।

(୧୨୮)

ପୂଜା ଛୁଟିରେ କବି କେଉଁଆଡ଼େ ଗଲେ ନାହିଁ । 'ଛୁଟିର ଅବକାଶରେ ମଧ୍ୟ ଅତିଥି ଅଭ୍ୟାଗତରେ ଆଶ୍ରମ ପରିପୂର୍ଣ୍ଣ ।' କବିଙ୍କ ଉପରେ ବିଭିନ୍ନ ଲୋକଙ୍କର ବିଚିତ୍ର ଦାବୀ । ସେସବୁ ପୂରଣ କରି ନ ପାରିଲେ ଲୋକେ ଅସନ୍ତୁଷ୍ଟ । '୭୨ ବର୍ଷ ବୟସରେ ମସ୍ତିଷ୍କ ବି ଗୋଳମାଳ ହୋଇଯାଏ—ଭୁଲ ହୁଏ ବିସ୍ତର—କିନ୍ତୁ ଲୋକେ ବିଚାର କରନ୍ତି ଗତ ସମୟର ଆଦର୍ଶରେ ।'

ଇତିମଧ୍ୟରେ ବମ୍ବେରେ ରବୀନ୍ଦ୍ର ସପ୍ତାହ ଉଦ୍‌ଯାପନର ବ୍ୟବସ୍ଥା ହୋଇଥାଏ । ସେଠାରେ କବିଙ୍କର ଚିତ୍ର ପ୍ରଦର୍ଶନୀ ହେବ; ଅଭିନୀତ ହେବ 'ଶାପମୋଚନ' ଓ 'ତାସେର୍ ଦେଶ' । ତାସେର୍ ଦେଶର ଗୁଜୁରାଟୀ ଅନୁବାଦ କରା ହୋଇଥାଏ - ତାହା ଦର୍ଶକ ପଢ଼ିବେ । କିନ୍ତୁ ଅଭିନୟ ବଙ୍ଗଳାରେ ହେବ ।

ବିରାଟ ବାହିନୀ ବମ୍ବେ ଗଲା; ସେମାନେ ଯେ ଟଙ୍କା ଉଠାଇବାକୁ ଯାଉଥାନ୍ତି ତାହା ମନେ ହେଲା ନାହିଁ । କବି ମଧ୍ୟ ଗଲେ । ବକ୍ତୃତା, ପାର୍ଟି, ଅଭିନନ୍ଦନ ଚାଲିଲା । ଅଭିନୟରେ ମଧ୍ୟ ପ୍ରଚୁର ଟଙ୍କା ଜୁଟିଲା । ବମ୍ବେରୁ କବି ଓ୍ୱାଲ୍‌ଟିଅର ଗଲେ—ଆନ୍ଧ୍ର

ବିଶ୍ୱବିଦ୍ୟାଳୟ ପକ୍ଷରୁ ବକ୍ତୃତା ଦେବା ପାଇଁ ଆହ୍ୱାନ । ବକ୍ତୃତାର ବିଷୟ ଥିଲା—'ମାନବ' । ସେଠାରେ ଅଳ୍ପକାଳ ରହି କବି ହାଇଦ୍ରାବାଦ ଗଲେ । ଆମନ୍ତ୍ରଣ ଜଣାଇଥିଲେ ନିଜାମ ରାଜ୍ୟର ଶାସନ-ପରିଷଦ-ସଭାପତି ସାର୍ କିଷନ୍ ପ୍ରସାଦ ।

୧୯୨୯ ମସିହାରେ ବିଶ୍ୱଭାରତୀରେ ଇସଲାମୀ ବିଭାଗ ଖୋଲିବା ପାଇଁ ନିଜାମ ଏକ ଲକ୍ଷ ଟଙ୍କା ଦେଇଥିଲେ । ଏଥର ବ୍ୟକ୍ତିଗତ ଭାବରେ କୃତଜ୍ଞତା ଜଣାଇବାର ସୁଯୋଗ ପାଇଲେ ରବୀନ୍ଦ୍ରନାଥ । ହାଇଦ୍ରାବାଦରେ ପନ୍ଦର ଦିନ ରହିଲେ । ବିଶ୍ୱଭାରତୀ ପାଇଁ ପ୍ରଚୁର ଟଙ୍କା ପାଇଲେ । ବମ୍ବେ ଓ ହାଇଦ୍ରାବାଦ୍‌ରୁ ଏହିପରି ଭାବରେ ପ୍ରାୟ ଲକ୍ଷାଧିକ ଟଙ୍କା ସଂଗୃହୀତ ହୋଇଥିଲା ।

ପ୍ରାୟ ଦେଢ଼ମାସ କାଳ ପଶ୍ଚିମ ଦକ୍ଷିଣ ଓ ମଧ୍ୟଭାରତ ଭ୍ରମଣ କରି କବି କଲିକତା ଫେରିଲେ । କଲିକତାରେ ରାମ ମୋହନ-ଶତବାର୍ଷିକ-ଉତ୍ସବ ଉପଲକ୍ଷେ ପ୍ରଥମ ଓ ଶେଷ ଭାଷଣ ଦେଲେ 'ଭାରତ ପଥିକ ରାମମୋହନ'ଙ୍କ ସମ୍ପର୍କରେ । ଭାରତର ଧର୍ମ ଇତିହାସରେ ରାମମୋହନଙ୍କ ସ୍ଥାନ ସଂପର୍କରେ ରବୀନ୍ଦ୍ରନାଥ ସୁନ୍ଦର ଭାବରେ ବିଶ୍ଳେଷଣ କରିଥିଲେ । ଅନ୍ୟାନ୍ୟ ସଭାରେ ମଧ୍ୟ ବକ୍ତୃତା ଦେବାକୁ ହୋଇଥିଲା—୭୨ ବର୍ଷ ବୟସରେ ମଧ୍ୟ ବିଶ୍ରାମ ନାହିଁ । ବିଶ୍ରାମ ପାଇଲେ ଯେ ଖୁସି ହୋଇ ଥାଆନ୍ତେ ତାହା ମଧ୍ୟ କୁହାଯାଇ ପାରିବ ନାହିଁ ।

କବି ଶାନ୍ତିନିକେତନ ଫେରିବା ପରେ ଉଲ୍ଲେଖଯୋଗ୍ୟ ଅତିଥି ସରୋଜିନୀ ନାଇଡୁ—ବମ୍ବେରେ ଅନୁଷ୍ଠିତ ରବୀନ୍ଦ୍ର ସପ୍ତାହର ପ୍ରଧାନ ଉଦ୍ୟୋକ୍ତା । ତାହାଛଡ଼ା ଆସିଥିଲେ ଜବାହାରଲାଲ୍ ନେହେରୁ ଓ ତାଙ୍କର ପତ୍ନୀ କମଳା ଦେବୀ । ତାଙ୍କର ଏକମାତ୍ର କନ୍ୟା ଇନ୍ଦିରା ସେତେବେଳେ ବିଶ୍ୱଭାରତୀର ଛାତ୍ରୀ—ତାଙ୍କୁ ଦେଖିବା ପାଇଁ ଏମାନେ ଆସିଥିଲେ ।

କିଛିଦିନ ପରେ କବି ଜାଣିବାକୁ ପାଇଲେ ଯେ ଗାନ୍ଧିଜୀ କଲିକତା ଆସୁଛନ୍ତି ହରିଜନ-ଆନ୍ଦୋଳନର ପ୍ରଚାର କାର୍ଯ୍ୟରେ । ପୁନା-ଚୁକ୍ତି ବ୍ୟାପାରରେ ବଙ୍ଗାଳୀ ସବର୍ଣ୍ଣ ହିନ୍ଦୁ ଗାନ୍ଧିଜୀଙ୍କ ଉପରେ ଖୁବ୍ ବିରକ୍ତ । କାରଣ ସେମାନଙ୍କର ଧାରଣା ଯେ ସେମାନେ

ସଂଖ୍ୟାଲଘିଷ୍ଠ ହୋଇଥିବାରୁ ସଂଖ୍ୟାଗରିଷ୍ଠଙ୍କର ପଶୁବଳ ଦ୍ୱାରା ବିପନ୍ନ ହେବେ । ସେଥିପାଇଁ କଲିକତାରେ ଅନେକ ସ୍ଥିର କଲେ ଯେ ଗାନ୍ଧିଜୀଙ୍କୁ ଏଥର ସ୍ୱାଗତ କରିବେ ନାହିଁ । ରବୀନ୍ଦ୍ରନାଥ ଏହି ସମ୍ବାଦରେ କ୍ଷୁବ୍ଧ-ଦେଶବାସୀଙ୍କୁ ଅଯୌକ୍ତିକନ୍ୟ ପ୍ରକାଶ ନକରିବା ପାଇଁ ଅନୁରୋଧ କଲେ । ଗାନ୍ଧିଜୀଙ୍କ ସହିତ ତାଙ୍କର ବହୁ ବିଷୟରେ ମତାନୈକ୍ୟ ଅଛି । ଅଳ୍ପ କିଛି ଦିନ ପୂର୍ବେ ବିହାରର ଭୂମିକମ୍ପରେ ବହୁଲୋକ ହତାହତ ଓ ବହୁ ଟଙ୍କାର ଭୂସମ୍ପତ୍ତି ଧୂଳିସାତ୍ ହେବାବେଳେ ଗାନ୍ଧିଜୀ କହିଥିଲେ, 'ଅସ୍ପୃଶ୍ୟତା ପାପ ଫଳରେ ଏହା ଘଟିଛି'—ଏହି ଅଯୌକ୍ତିକ ଉକ୍ତିର ତୀବ୍ର ପ୍ରତିବାଦ କରିଥିଲେ କବି । ଗାନ୍ଧିଜୀଙ୍କର ମହାପ୍ରାଣର ମହତ୍ତ୍ୱ କେହି ଅସ୍ୱୀକାର କରିପାରେ ନାହିଁ; ରବୀନ୍ଦ୍ରନାଥ ଘୋଷଣା କଲେ 'ମୁଁ ଗାନ୍ଧିଜୀଙ୍କୁ ସ୍ୱାଗତ କରୁଛି' ।

(୧୨୯)

୧୯୩୪ ଖ୍ରୀଷ୍ଟାବ୍ଦର ମେ ମାସରେ, ୭୩ବର୍ଷ ବୟସରେ ଦଳବଳ ନେଇ କବି ସିଂହଳ ଗଲେ । ଏହା ପୂର୍ବରୁ ୧୯୨୨ ଓ ୧୯୨୮ ଖ୍ରୀଷ୍ଟାବ୍ଦରେ ସେ ଦେଶକୁ ଯାଇଥିଲେ । କିନ୍ତୁ ସଙ୍ଗରେ ସଂଗୀତ ବା ଅଭିନୟ-ଦଳ ଯାଇ ନଥିଲେ ।

ଏଥର ଗଲେ ଷ୍ଟିମର ଯୋଗେ । ଜନ୍ମଦିନ କଟିଲା ବଙ୍ଗୋପସାଗରରେ । ଗତଥର ଏହି ଦିନରେ ଥିଲେ ଡେହେରାନରେ ।

କଲମ୍ବୋରେ କବି ବକ୍ତୃତା ଦେଲେ; ଚିତ୍ର ପ୍ରଦର୍ଶନୀ ଓ 'ଶାପମୋଚନ' ଅଭିନୀତ ହେଲା । ଭାରତୀୟ ନୃତ୍ୟଗୀତ ଓ ସାଜ-ସଜ୍ଜା ସିଂହଳୀଙ୍କ ନିକଟରେ ସେତେବେଳେ ଅଜ୍ଞାତ । ବହୁ ଶତାବ୍ଦୀ ଧରି ପର୍ତ୍ତୁଗୀଜ, ଡଚ ଓ ଇଂରେଜମାନଙ୍କ ଅଧୀନରେ ରହିବା ଫଳରେ ସେମାନେ ପାଶ୍ଚାତ୍ୟ ଭାବାପନ୍ନ—ଏପରିକି ବୌଦ୍ଧଧର୍ମୀ

ହେଲେ ମଧ୍ୟ ସେମାନଙ୍କ ନାମର ଅର୍ଦ୍ଧେକ ଭାଗ ପର୍ତ୍ତୁଗୀଜ କମ୍ବା ଡଚ୍ । ସିଂହଳୀଙ୍କ ନିକଟରେ ଭାରତୀୟ ନୃତ୍ୟକଳା ନୂତନ । ଏହା ପୂର୍ବରୁ ୨।୪ ଜଣ ସିଂହଳୀ ଛାତ୍ର ଶାନ୍ତିନିକେତନ ଆସିଥିଲେ । କିନ୍ତୁ ବିଶ୍ୱଭାରତୀର କଳାଭବନ ଓ ସଙ୍ଗୀତ ଭବନକୁ ଏହିଥରଠାରୁ ସିଂହଳୀ ଛାତ୍ରଛାତ୍ରୀମାନେ ବହୁ ସଂଖ୍ୟାରେ ଆସିବାକୁ ଲାଗିଲେ । ଏପରି ବିଜୟ, ଅର୍ଥାତ୍ ସାଂସ୍କୃତିକ ବିଜୟ, ବୋଧହୁଏ ବିଜୟ ସିଂହଙ୍କ ପରେ ଆଉ ହୋଇନି ।

କଲମ୍ବୋ ଛାଡ଼ି ଗାଲେ, ହେରାନା, କାନ୍‌ଡ଼ି, ମାତାରୁ ପ୍ରଭୃତି ସ୍ଥାନକୁ କବି ଯାଇଥିଲେ । ସିଂହଳ ସଂସ୍କୃତିର ଅନେକ କିଛି ଦେଖିଲେ, ବୁଝିଲେ ଓ ଜାଣିଲେ । କାନ୍‌ଡ଼ି ସହରରେ ସାତଦିନ ରହିଥିଲେ । ସେଠାର ଶାନ୍ତ ପରିବେଶରେ କବି ତାଙ୍କର 'ଗୃହ-ଅଧ୍ୟାୟ' ଉପନ୍ୟାସ ଶେଷ କରିଥିଲେ । ଏହି ନିରନ୍ତର ଭ୍ରମଣ, ନୃତ୍ୟଗୀତ ଓ ଆଦର ଅଭ୍ୟର୍ଥନାର ଉତ୍ତେଜନା ଭିତରେ ଅନୁ-ଏଲାର ପ୍ରେମ-ଦ୍ୱନ୍ଦ୍ୱର କାହାଣୀ କବି ଚିତ୍ତରେ ଅନ୍ତଃସଲିଳ ଫଲ୍‌ଗୁ ପରି ପ୍ରବାହିତ ହେଉଥିଲା । କାନ୍‌ଡ଼ିରୁ ଗଲେ ଅନୁରାଧାପୁର—ପ୍ରାଚୀନ କୀର୍ତ୍ତିର ଧ୍ୱଂସାବଶେଷ ଦେଖି ଫେରିଲେ ଜାଫ୍‌ନା । ଜାଫ୍‌ନା ସହର ସିଂହଳର ତାମିଲ ସଂସ୍କୃତିର କେନ୍ଦ୍ର । ଉତ୍ତର ସିଂହଳ ଏକଦା ତାମିଲ ସାମ୍ରାଜ୍ୟଭୁକ୍ତ ଥିଲା । ସେହିଦିନରୁ ପୁରୁଷାନୁକ୍ରମେ ତାମିଲ-ମାନେ ଏଠାରେ ବାସ କରୁଅଛନ୍ତି । ଜାଫ୍‌ନାରେ ତିନିଦିନ 'ଶାପମୋଚନ' ଅଭିନୀତ ହେଲା । ୧୯୩୪ ମସିହା ଜୁନ ମାସର ମଧ୍ୟଭାଗରେ କବି ଧନୁଷ୍କୋଟି ହୋଇ ଭାରତ ଫେରିଲେ ।

(୧୯୩୦)

ପୂଜାବକାଶରେ ବିଦ୍ୟାଳୟ ବନ୍ଦ ହେବାରୁ ପୁଣି ଗଲେ ଦକ୍ଷିଣ ଭାରତ । ଗଲଥର ସିଂହଳରୁ ଫେରିବା ବାଟରେ ମାନ୍ଦ୍ରାଜରେ ରହିବାର ଇଚ୍ଛା ଥିଲା; କିନ୍ତୁ ସମୟ ନଥିଲା । ସେଥିପାଇଁ 'ଶାପ-

ମୋଚନ'ର ଅଭିନେତା ଦଳଙ୍କୁ ନେଇ ପୁନର୍ବାର ଏହି ଅଭିଯାନ । ମାନ୍ଦ୍ରାଜରେ ଗୃହଦାହ ଅଭିନୟ ହେଲ ସତ୍ୟ; କିନ୍ତୁ ସ୍ଥାନୀୟ ଲୋକଙ୍କ ମନରେ ରସର ଆବେଦନ ପହଞ୍ଚି ପାରିଲ ନାହିଁ । ଅର୍ଥୋପାର୍ଜନ ଦିଗରୁ ଅନୁଷ୍ଠାନ ବ୍ୟର୍ଥ ହେଲ; କଳା ଦୃଷ୍ଟିରୁ ଅଭିନନ୍ଦିତ ହୋଇ ପାରିନାହିଁ । ମାନ୍ଦ୍ରାଜରେ ବାରଦିନ ରହି ଓ୍ୱାଲଟିଅର ଦେଇ ଫେରି ଆସିଲେ ।

ଇତି ମଧ୍ୟରେ କାଶୀ ହିନ୍ଦୁ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଭାଷଣ ଦେବାପାଇଁ ଆହ୍ୱାନ ଆସିଥିଲ । ଯାତ୍ରା କରିବା ସମୟରେ ସମ୍ବାଦ ମିଳିଲା ଯେ ମାଳବ୍ୟଜୀ ଅସୁସ୍ଥ ହେବା ଫଳରେ ସମାବର୍ତ୍ତନ ମୁଲତବି ରହିଛି । କିନ୍ତୁ କବିଙ୍କର ମନ ଥରେ ବିଚଳିତ ହେଲେ ତାଙ୍କର ଶରୀରକୁ ବାନ୍ଧି ରଖିବା କଠିନ୍ । ଚିରକାଳର ଏହି ସ୍ୱଭାବ ବୟସ ବଢ଼ିବା ସଙ୍ଗେ ସଙ୍ଗେ ବି ବଢ଼ି ଚାଲିଛି । ସୁତରାଂ କାଶୀ ଗଲେ ଓ ୫।୬ ଦିନ ପରେ ଫେରି ଆସିଲେ (୧୯୩୪ ଡିସେମ୍ବର ୪ ତାରିଖ) । ଦୁଇ ମାସ ପରେ ଫେବୃଆରି ମାସରେ ସମାବର୍ତ୍ତନ ଉତ୍ସବରେ ଯୋଗଦେବା ପାଇଁ ଆଉ ଥରେ ଯିବାକୁ ପଡ଼ିଥିଲ ।

କବି ଯେଉଁ ଦିନ କାଶୀ ଯିବାର କଥା (୧୯୩୫ ଫେବୃଆରି ୬) ସେଦିନ ବିଶ୍ୱଭାରତୀ ଦେଖିବାକୁ ଆସିଲେ ବଙ୍ଗଳାର ଲାଟ ସାହେବ ସାର ଜନ୍ ଆଣ୍ଡରସନ । ଆଣ୍ଡରସନ ହାଣୁଆ ଲାଟ । ବଙ୍ଗ ଦେଶର ବିପ୍ଳବୀମାନଙ୍କୁ ଦମନ କରିଥିବାରୁ ସରକାରୀ ମହଲରେ ତାଙ୍କର ଖୁବ୍ ଖ୍ୟାତି ଓ ପ୍ରତିପତ୍ତି—ଆୟୁର୍ଲଣ୍ଡର ସନ୍ତ୍ରାସବାଦୀମାନଙ୍କୁ ସେ ଇତିପୂର୍ବରୁ ଶାସନ କରି ଆସିଥିଲେ । ଏପରି ଦୁର୍ଦ୍ଦଣ୍ଡ ଲାଟ ସାହେବ ଆସିଥିବାରୁ, ଶାନ୍ତିନିକେତନ ପୁଲିସ ଓ ଗୁପ୍ତଚରଙ୍କ ଦ୍ୱାରା ପୂର୍ଣ୍ଣ ହୋଇ ଯାଇଥିଲ । କିଛିଦିନ ପୂର୍ବେ ଜିଲର ପୁଲିସ ବିଭାଗର କର୍ତ୍ତା ଆସି କହିଥିଲେ ଯେ ଲାଟସାହେବଙ୍କର ଅନୁରୋଧରେ ସେମାନେ କଲେଜର କେତେକ ଛାତ୍ରଙ୍କୁ ଗିରଫ କରିବାକୁ ଚାହାନ୍ତି । କବି କ୍ଷୁବ୍ଧ ହୋଇ କହିଥିଲେ, 'ତାହା ହେଲେ ଆପଣମାନେ ଲାଟସାହେବଙ୍କର ଅଭ୍ୟର୍ଥନା କରନ୍ତୁ, ମୁଁ ଏଠାରୁ ଚାଲି ଯାଉଛି ।' ଶେଷରେ ଏପରି ବ୍ୟବସ୍ଥା ହେଲ ଯେ ଲାଟସାହେବଙ୍କ ଆଗମନ ଦିନ

ଆଶ୍ରମରେ କେହି ରହିବେ ନାହିଁ, ଲାଟ ସାହେବ ଆସି ଶୂନ୍ୟସ୍ଥଳୀ ଦେଖିଯିବେ । ଫେବୃଆରୀ ୬ ତାରିଖ, ଶ୍ରୀନିକେତନରେ ବାର୍ଷିକ ଉତ୍ସବ । ଛାତ୍ର ଅଧ୍ୟାପକ ସମସ୍ତେ ଶ୍ରୀନିକେତନ ମେଳା ଦେଖିବାକୁ ଚାଲିଗଲେ । ଲାଟସାହେବଙ୍କୁ ଅଭ୍ୟର୍ଥନା ଜଣାଇବା ପାଇଁ ପୁଲିସ ପରିବେଷ୍ଟିତ ହୋଇ ବିଭାଗୀୟ ଅଧ୍ୟକ୍ଷମାନେ ନିଜ ନିଜ ବିଭାଗରେ ରହିଲେ । ଆଣ୍ଡ୍ରୋରସନ ସାହେବ ଆଶ୍ରମ ଦେଖି ଫେରିଗଲେ ।

କବି ସେହିଦିନ ଅପରାହ୍ଣରେ ହିନ୍ଦୁ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ଯୋଗ ଦେବାପାଇଁ କାଶୀ ଯାତ୍ରା କଲେ ।

(୧୯୩୯)

କାଶୀ ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ କବି ଭାଷଣ ଦେଲେ । ବିଶ୍ୱବିଦ୍ୟାଳୟ କବିଙ୍କୁ ଡକ୍ଟର ଉପାଧିରେ ଭୂଷିତ କଲେ ।

ରବୀନ୍ଦ୍ରନାଥ କାଶୀରୁ ମଟର ଯୋଗେ ଆହ୍ଲାବାଦ ଗଲେ । ସେଠାରେ କେତେକ ସଭା ସମିତିରେ ବକ୍ତୃତା ଦେବାକୁ ହେଲା ଓ ବିଶ୍ୱବିଦ୍ୟାଳୟର ଛାତ୍ର ସମ୍ମିଳନୀରେ ମଧ୍ୟ ଭାଷଣ ଦେଇଥିଲେ ।

ଏଠାରୁ ଲାହୋର ଛାତ୍ର ସମ୍ମିଳନୀର ଆହ୍ୱାନ ପାଇ କବି ଲାହୋର ଗଲେ । ଆହ୍ଲାବାଦରେ ଶରୀର ଖରାପ ହେବାରୁ ଲାହୋର ଯିବାପାଇଁ ଅନେକ ବନ୍ଧୁ ନିଷେଧ କରିଥିଲେ । କିନ୍ତୁ ତାଙ୍କୁ ସେଥିରୁ ନିବୃତ୍ତ କରି ପାରିଲେ ନାହିଁ ।

ଲାହୋରରେ ପହଞ୍ଚିଲେ ଫେବୃୟାରୀ ୧୪ତାରିଖରେ; ଅତିଥି ହେଲେ ଧନୀ ଶ୍ରେଷ୍ଠ ଧନୀରାମ ଭଲ୍ଲାଙ୍କର । ଇକବାଲ୍ ସେତେବେଳେ ଲାହୋରରେ ଥିଲେ । ସହରରେ ରହିଲେ ରବୀନ୍ଦ୍ରନାଥଙ୍କ ସହିତ ଦେଖା କରିବାକୁ ପଡ଼ିପାରେ ଭାବି ସେ ସହର ଛାଡ଼ି ଚାଲି ଯାଇଥିଲେ ବୋଲି ଶୁଣାଯାଏ ।

ଲାହୋରରେ ଦୁଇ ସପ୍ତାହ କଟାଇଲେ । ବହୁଲୋକଙ୍କ ସଙ୍ଗରେ ଦେଖା ହେଲା । ସେତେବେଳେ ପଞ୍ଜାବରେ ନାନା ମତର ଗୁଣ୍ଡିବାଯୁ

—ହିନ୍ଦୁ ମୁସଲମାନଙ୍କ ମଧ୍ୟରେ ବିଭେଦ କ୍ରମେ ସ୍ପଷ୍ଟ ହୋଇ ଉଠିଥାଏ । ଏଠାରେ କବିଙ୍କ ସହିତ ଶିଖ୍ମାନଙ୍କର ଘନିଷ୍ଠତା ହେଲ— ଏହାର ପ୍ରୟୋଜନୀୟତା ମଧ୍ୟ ଥିଲା । କିଛିଦିନ ପୂର୍ବେ 'ଗୁରୁ ଗୋବିନ୍ଦ' କବିତାର ଉର୍ଦ୍ଦୁ ଅନୁବାଦ ପଢ଼ି ଶିଖମାନେ କବିଙ୍କ ଉପରେ ଖୁବ୍ ବିରକ୍ତ ହୋଇଥିଲେ । ସେହି ବିକୃତ ଉର୍ଦ୍ଦୁ ତର୍ଜମାରୁ ଶିଖ୍ମାନଙ୍କର ଧାରଣା ହୋଇଥିଲା ଯେ କବି ଗୁରୁଗୋବିନ୍ଦଙ୍କ ପ୍ରତି ଶ୍ରଦ୍ଧାହୀନ । ଏଥର ସେମାନଙ୍କର ନେତୃସ୍ଥାନୀୟ ଲୋକଙ୍କ ସହିତ କଥାବାର୍ତ୍ତା ଫଳରେ ଭୁଲ ବୁଝିପାରିଲେ । ସେମାନେ କବିଙ୍କର ଋଷି-ପ୍ରତିମ ମୂର୍ତ୍ତି ଦେଖି ମୁଗ୍ଧ । କଥାବାର୍ତ୍ତା ଶୁଣି ଆହୁରି ଆକୃଷ୍ଟ ହୋଇ ଗୁରୁଦ୍ୱାରରେ ତାଙ୍କୁ ସମ୍ବର୍ଦ୍ଧନା କଲେ ।

ଲାହୋରରୁ ଫେରିବା ବାଟରେ ଲକ୍ଷ୍ନୌରେ ଅଧ୍ୟାପକ ନିର୍ମଳ-କୁମାର ସିଦ୍ଧାନ୍ତଙ୍କର ଘରେ ଦୁଇଦିନ ରହିଥିଲେ । ବିଶ୍ୱବିଦ୍ୟାଳୟର ଅନ୍ୟତମ ଅଧ୍ୟାପକ ଧୂର୍ଜଟିପ୍ରସାଦ ମୁଖୋପାଧ୍ୟାୟ ରବୀନ୍ଦ୍ର କାବ୍ୟ ଓ ସଙ୍ଗୀତ ସମ୍ପର୍କରେ ବିଶେଷଜ୍ଞ । ତାଙ୍କରି ଚେଷ୍ଟାରେ ସଙ୍ଗୀତ ବୈଠକ ହେଲା । ଅସୁସ୍ଥ ଶରୀରରେ ଶ୍ରୀକୃଷ୍ଣରତନ୍ ଜନକାରଙ୍କର ସଙ୍ଗୀତ ଶୁଣିଲେ ପ୍ରାୟ ଅର୍ଦ୍ଧ ରାତ୍ରି ପର୍ଯ୍ୟନ୍ତ । ଏହାପରେ ସଙ୍ଗୀତ ସମ୍ପର୍କରେ କବି ଓ ଧୂର୍ଜଟି ପ୍ରସାଦଙ୍କ ମଧ୍ୟରେ ଦୀର୍ଘକାଳ ପତ୍ର ବିନିମୟ ହୋଇଥିଲା । 'ସୁର ଓ ସଙ୍ଗତ' ନାମକ ବହିରେ ସେହିସବୁ ପତ୍ର ଓ ପତ୍ରୋତ୍ତର ସଂକଳିତ ହୋଇଛି ।

*

(୧୩୨)

ରବୀନ୍ଦ୍ରନାଥ ଉତ୍ତରପଶ୍ଚିମ ଭାରତରୁ ଶାନ୍ତିନିକେତନ ଫେରିଲେ । ଉତ୍ତରାୟଣ ଘରେ କେହି ନାହାନ୍ତି । ରଥୀନ୍ଦ୍ରନାଥ ଏଲମ୍‌ହାର୍ଷ୍ଟଙ୍କ ସଙ୍ଗରେ ଶ୍ରୀନିକେତନର ଭବିଷ୍ୟତ ସମ୍ପର୍କରେ ଆଲୋଚନା କରିବା ପାଇଁ ବିଲାତ ଯାଇଥାନ୍ତି । ୧୯୨୨ ମସିହାରୁ ୧୯୩୪ ପର୍ଯ୍ୟନ୍ତ ଡାର୍ଟିଂଟନ୍ ଟ୍ରଷ୍ଟ୍‌ଠାରୁ ଟଙ୍କା ମିଳୁଥିଲା । ୧୯୩୫ ମସିହା

ପରେ ଭାରତରେ ନୂତନ ଶାସନ ବ୍ୟବସ୍ଥା ପ୍ରବର୍ତ୍ତିତ ହେବ, ତାହା-ପରେ ଟ୍ରଷ୍ଟ ତରଫରୁ ଟଙ୍କା ମିଳିବ କି ନାହିଁ ଜାଣିବା ପ୍ରୟୋଜନ ।

'କବିଙ୍କର ମନ ଲାଗିଛି ମାଟିଘର ଶ୍ୟାମଳୀ'ରେ । ସେହି ଘରର ପାଚିରି ହେବ ମାଟିରେ, ଛାତ ହେବ ମାଟିରେ—ଅଲ୍‌କାତରା, ମାଟି, ଗୋବର ପକାଇ ଘର ତିଆରି ପାଇଁ ଗୋଟିଏ ମସଲା ତିଆରି ହେଲା ନନ୍ଦଲାଲ ଓ ସୁରେନ୍ଦ୍ରନାଥ କରଙ୍କ ସହିତ ପରାମର୍ଶ ଚାଲିଥାଏ; ଭାବୁଥାନ୍ତି ଏହି ଯୋଜନା କାର୍ଯ୍ୟକାରୀ ହେଲେ ଗ୍ରାମରେ ଚାଳଘରର ଅସୁବିଧା ଦୂର ହୋଇ ପାରିବ ।

କବିଙ୍କର ପଚାତ୍ତରି ବର୍ଷ ବୟସର ଜନ୍ମଦିନରେ 'ଶ୍ୟାମଳୀ'ରେ ଗୃହ ପ୍ରବେଶ ହେଲା । ସେହିଦିନ ସନ୍ଧ୍ୟାରେ ରାଜଶେଖର ବସୁଙ୍କର 'ବିରିଞ୍ଚି ବାବା' ଅଭିନୀତ ହେଲା; କବି ନାଟକର କେତେକ ଜାଗାରେ ଅଦଳ ବଦଳ କରି ଦେଇଥିଲେ ଓ ଅଭିନୟ ଦେଖିବା ପାଇଁ ନିଜେ ଉପସ୍ଥିତ ଥିଲେ ।

ଜନ୍ମୋତ୍ସବ ପରେ (୧୯୩୫ ମେ) ରବୀନ୍ଦ୍ରନାଥ ଗଙ୍ଗାର ନୌକା ଘରକୁ ଚଳେ । ତାହା ପୂର୍ବରୁ କଲିକତାର ବଙ୍ଗୀୟ ସାହିତ୍ୟ ପରିଷଦ କବିଙ୍କର ଚଉସ୍ତରି ବର୍ଷ ପୂର୍ତ୍ତି ଉପଲକ୍ଷେ ଗୋଟିଏ ସମ୍ବର୍ଦ୍ଧନା ସଭାର ଆୟୋଜନ କରିଥିଲେ । ତାହାଛଡ଼ା କବି ବୁଦ୍ଧ-ଦେବଙ୍କର ଜନ୍ମ-ତିଥିରେ ଧର୍ମରାଜିକ ଚୈତ-ବିହାରରେ ସଭାପତି ହୋଇ 'ବୁଦ୍ଧଦେବ'ଙ୍କ ସମ୍ପର୍କରେ ଭାଷଣ ଦେଲେ । କବି ସେଦିନ କହିଲେ, 'ମୁଁ ଯାହାକୁ ଅନ୍ତର ମଧ୍ୟରେ ସର୍ବଶ୍ରେଷ୍ଠ ମାନବ ରୂପେ ଉପଲବ୍ଧି କରିଛି, ଆଜି ବୈଶାଖ ପୂର୍ଣ୍ଣିମାରେ ତାଙ୍କରି ଜନ୍ମୋତ୍ସବରେ ମୋର ପ୍ରଣାମ ନିବେଦନ କରିବାକୁ ଚାହେଁ ।' କିଛିଦିନ ପୂର୍ବେ ବିଶ୍ୱଭାରତୀର ପ୍ରକାଶନ ବିଭାଗ ତରଫରୁ 'ବୁଦ୍ଧଦେବ' ନାମକ ଯେଉଁ ବହି ଖଣ୍ଡିକ ପ୍ରକାଶିତ ହୋଇଛି, ତାହା ଦେଖିଲେ ପାଠକ ବୁଝି ପାରିବେ ଯେ ବୁଦ୍ଧଦେବଙ୍କ ପ୍ରତି କବିଙ୍କର ଶ୍ରଦ୍ଧା କେତେ ଗଭୀର ଓ ଚିରସ୍ଥାୟୀ ଥିଲା ।

ଗଙ୍ଗା ବକ୍ଷରେ ନୌକାରେ ବୁଲୁବୁଲୁ ଚନ୍ଦନନଗର ଘାଟରେ ନୌକା ପହଞ୍ଚିଲା । 'ସାମନାରେ ସେହି ଦୋତାଲା-ଘର ଯେଉଁଠାରେ ଏକଦା ଜ୍ୟୋତିଦାଦାଙ୍କ ସହ ଅନେକ ଦିନ

କହିଥିଲ ।' 'ସ୍ୱେଦର ବେ-ମରାମତ ଅବସ୍ଥାରେ'—ଜୀର୍ଣ୍ଣ; ତେଣୁ କବିଙ୍କର ଇଚ୍ଛା—ପାଖରେ ଗୋଟିଏ ଘର ଭଡ଼ା ନେବେ । ଆଜି ପଚସ୍ତରି ବର୍ଷ ବୟସରେ ମନେ ପଡ଼ୁଛି ପ୍ରଥମ ଯୌବନର କଥା । ମନେ ପଡ଼ୁଛି ସ୍ନେହମୟୀ ନୂଆବୋଉର କଥା, ଯାହାପାଇଁ କବି-ମନର ଅନେକ କଥା ଓ ଅନେକ ଗୀତ ଉଦ୍ରିକ୍ତ ହୋଇଥିଲା ।

ଏହି ସମୟରେ କବିଙ୍କର ରଚନାବଳୀ ସୁସଂପୂର୍ଣ୍ଣ ଭାବରେ ଛପାଇବାର ପ୍ରସ୍ତାବ ହେଉଥାଏ । ପ୍ରଶାନ୍ତଚନ୍ଦ୍ର ପ୍ରମୁଖଙ୍କ ମତରେ କବିଙ୍କର କୌଣସି ଲେଖା ବର୍ଜନ କରିବା ଚଳିବ ନାହିଁ । କବି ଯେଉଁ ବୟସରେ ଯାହା ଲେଖିଛନ୍ତି ସେ ସମସ୍ତ ଅବିକଳ ଭାବରେ ଛାପିବାକୁ ହେବ । ତେଣୁ କବିଙ୍କ ସଙ୍ଗରେ ଚିଠିପତ୍ର ଚାଲିଥାଏ । ରବୀନ୍ଦ୍ରନାଥ 'ଅବର୍ଜିତ' କବିତାରେ ତାଙ୍କୁ ଲେଖିଲେ—

ପ୍ରକୃତିର କାଜେ କତ ହୟ ଭୁଲ ଚୁକ୍
କିନ୍ତୁ ହେୟ ଯା ଶ୍ରେୟେର କୋଠାୟ ଫେଲେ
ତାରେ ଓ ରକ୍ଷା କରିବାର ଛୁତେ ପେଲେ
କାଲେର ସଭାଏ କେମନ ଦେଖାବେ ମୁଖ ।

କିନ୍ତୁ ସେ କଥା ତ ସାହିତ୍ୟ-ଐତିହାସିକମାନେ ମାନିବେ ନାହିଁ । ସେମାନେ ଚାହାନ୍ତି ସମଗ୍ର ରୂପ । ପରେ ସାହିତ୍ୟ ରସିକ-ଗଣ ବଛାବଛି ଓ ବିଚାର ବିଶ୍ଳେଷଣ କରିବେ—ସମସ୍ତ ମସଲା ମହଜୁଦ୍ ରହିବା ଦରକାର ।

ଏଥର ଗଙ୍ଗା ବକ୍ଷରେ ନୌକା-ବାସ ସମୟ ସାହିତ୍ୟ ସୃଷ୍ଟି ଦିଗରୁ ବୃଥା ହୋଇନ ।

(୧୩୬)

ଗଙ୍ଗା ବକ୍ଷରେ ବାସକରି ଶାନ୍ତିନିକେତନ ଫେରିଲେ । ପ୍ରତିଦିନ ସକାଳେ କିଛି ପଢ଼ନ୍ତି; କବିତା ବି ଲେଖନ୍ତି । ସେଗୁଡିକ ଚିରପରିଚିତ ଛନ୍ଦୋବଦ୍ଧ କବିତା, 'ବୀଥିକା'ରେ ସଙ୍କଳିତ ହୋଇଛି ।

'ପରିଶେଷ' ଶେଷ ହେବା ସଙ୍ଗେ ସଙ୍ଗେ 'ପୁନଶ୍ଚ' ଆରମ୍ଭ କଲେ । ତାହାପରେ 'ଶେଷସପ୍ତକ' ଲେଖି ଜଣାଇବାକୁ ଚାହୁଁଥିଲେ ଶେଷକଥା । କିନ୍ତୁ କବି ଅନ୍ତରର ଅଫୁରନ୍ତ ଧାରା, ବିଚିତ୍ର ଭାବ ଓ ବିଚିତ୍ର ସ୍ୱରରେ କେବଳ ବିଚିତ୍ର ରୂପରେ ହିଁ ପ୍ରକାଶ ପାଉଥାଏ ।

ଦୁଃସମ୍ବାଦ ପାଇଲେ ଯେ ଦିନେନ୍ଦ୍ରନାଥ ଠାକୁର କଲିକତାରେ ହଠାତ୍ ଦେହତ୍ୟାଗ କରିଛନ୍ତି (୧୩୪୨ ଶ୍ରାବଣ ୫) । ଦିନେନ୍ଦ୍ରନାଥ ଗତବର୍ଷ ଶାନ୍ତିନିକେତନରୁ ସମସ୍ତ ସମ୍ପର୍କ ତୁଟାଇ ଚାଲି ଯାଇଥିଲେ । ଯେ ଆଶ୍ରମ ସହିତ ନାନା ଭାବରେ ପ୍ରାୟ ତିରିଶ ବର୍ଷ ସମ୍ପୃକ୍ତ ଥିଲେ, ଯେ ଥିଲେ ଶାନ୍ତିନିକେତନର 'ବାଲକ ଦଲେର ସକଲ ନାଟ୍ୟେର କାଣ୍ଡାରି' ଓ ରବୀନ୍ଦ୍ରନାଥଙ୍କର 'ସକଲ ଗାନେର ଭାଣ୍ଡାରି', ଯେ କବିଙ୍କର ଅସଂଖ୍ୟ ସଙ୍ଗୀତର ସ୍ୱର ଅଭ୍ରାନ୍ତ ସ୍ମୃତିରେ ସଞ୍ଚୟ କରି ଓ କଣ୍ଠରେ ଧାରଣ କରି ଆଶ୍ରମର ଛାତ୍ର ଛାତ୍ରୀମାନଙ୍କୁ ରବୀନ୍ଦ୍ର-ସଙ୍ଗୀତରେ ଦୀକ୍ଷିତ ଓ ଶିକ୍ଷିତ କରିଥିଲେ, ସେ କାହିଁକି ଆଶ୍ରମ ତ୍ୟାଗ କଲେ ତାହା ଅଳ୍ପ କଥାରେ କୁହାଯାଇ ପାରିବ ନାହିଁ । ଅଥଚ ଜଣାଅଛି ଯେ କଲିକତା ଯାଇ ମଧ୍ୟ ରବୀନ୍ଦ୍ର ସଙ୍ଗୀତ ପ୍ରଚାର ବିଷୟରେ ସେ ଉଦାସୀନ ନଥିଲେ । ଦିନେନ୍ଦ୍ରନାଥଙ୍କର ମୃତ୍ୟୁ ସମ୍ବାଦର ଅଳ୍ପ ଦିନ ପରେ ରବୀନ୍ଦ୍ରନାଥ ଯେଉଁ କେତୋଟି ସଙ୍ଗୀତ ଲେଖିଥିଲେ ତାହାର ଏକାଧିକ ସ୍ଥାନରେ, କଥାରେ ଓ ସ୍ୱରରେ ଏହି ବିୟୋଗର ପ୍ରଚ୍ଛନ୍ନ ବେଦନା ରୂପାୟିତ ହୋଇଛି ବୋଲି ଅନେକ ମନେ କରନ୍ତି । ଏ ବୟସରେ ମୃତ୍ୟୁ ସଂବାଦ କବିଙ୍କୁ ବିଶେଷ ଆଘାତ ଦେଇଥିଲା ବୋଲି ମନେ ହୁଏନା । କାରଣ ଜୀବନର ଦୀର୍ଘ ପଥରେ ଅନେକ କଷ୍ଟ ସହ୍ୟ କରିଛନ୍ତି । ବୟସ ବଢ଼ିବା ସଙ୍ଗେ ସଙ୍ଗେ ଶରୀର ଦୁର୍ବଳ ହୋଇ ଆସୁଛି । କାନରେ କମ୍ ଶୁଣନ୍ତି, ଚକ୍ଷୁର ତେଜ ବି ମ୍ଲାନ ହୋଇ ଆସିଛି, ଚଲାବୁଲାରେ କଷ୍ଟ ବୋଧ ହେଉଛି—ବାର୍ଦ୍ଧକ୍ୟର ସକଳ ଲକ୍ଷଣ ଦେଖା ଦେଇଛି । ତଥାପି ମନ ରହିଛି ଉଜ୍ଜ୍ୱଳ ।

ସାମାଜିକ ଅନୁଷ୍ଠାନ, ବିଶିଷ୍ଟ ଅତିଥିଙ୍କର ସମ୍ବର୍ଦ୍ଧନା, ଆଗନ୍ତୁକଙ୍କ ସହିତ ସାକ୍ଷାତ ଏବେବି କରନ୍ତି । ଏହି ସମୟରେ

ଶାନ୍ତିନିକେତନ ଆସିଲେ  ଜାପାନୀ କବି ୟୋନେ  ନୋଗୁଚି ।
୧୯୧୬ ମସିହାରେ ରବୀନ୍ଦ୍ରନାଥ ଯେତେବେଳେ ପ୍ରଥମଥର ଜାପାନ
ଯାଇଥିଲେ, ସେ ସମୟରେ ତରୁଣ କବି ନୋଗୁଚି ଭାରତୀୟ କବିଙ୍କ
ପ୍ରତି ପ୍ରଚୁର ସମ୍ମାନ ଦେଖାଇଥିଲେ । ଆଜି ସେ ପ୍ରୌଢ଼ ବୟସରେ
ରବୀନ୍ଦ୍ରନାଥଙ୍କୁ ତାଙ୍କର ନିଜ ସ୍ଥାନରେ ଦେଖିବାକୁ ଆସିଥିଲେ ।
କବି ଯଥୋଚିତ ସମ୍ବର୍ଦ୍ଧନା କଲେ । ତାଙ୍କୁ ବିଶ୍ୱଭାରତୀର ଅନ୍ୟତମ
ସମ୍ମାନ 'ପଧାନ' ହିସାବରେ ଗ୍ରହଣ କରାଗଲା ।

କଲିକତା ନଯାଇ କବିତା ପଠାଇ ବ୍ରଜେନ୍ଦ୍ରନାଥ ଶୀଲଙ୍କୁ
ସମ୍ବର୍ଦ୍ଧନା (୧୯୩୫ ଡିସେମ୍ବର ୧୫) ଜଣାଇଲେ । ରାମକୃଷ୍ଣ
ପରମହଂସ ଦେବଙ୍କର ଶତବାର୍ଷିକ ଅନୁଷ୍ଠାନ ଉଦ୍ଦେଶ୍ୟରେ
ଗୁରୁପଂକ୍ତି କବିତା ଓ ତାହାର ଇଂରେଜୀ ଅନୁବାଦ ଲେଖି
ପଠାଇଲେ । କବି ଏପର୍ଯ୍ୟନ୍ତ ପରମହଂସ ଦେବଙ୍କ ସମ୍ପର୍କରେ
କେବେ କୌଣସି ଭାଷଣ ବା ଉକ୍ତି ପ୍ରଦାନ କରି ନଥିଲେ । ଏଥର
କରିବା ଅନ୍ତରାଳରେ ଥିଲା ଅନ୍ୟମାନଙ୍କର ଅନୁରୋଧ ।
'ଶତବାର୍ଷିକ' କମିଟିର ଧର୍ମ ମହାସମ୍ମିଳନୀରେ କବି ଯେଉଁ ଭାଷଣ
ଦେଇଥିଲେ ସେଥିରେ ସେ ପରମହଂସ ଦେବଙ୍କର ଧର୍ମମତ ବା
ବ୍ୟକ୍ତିତ୍ୱ ସମ୍ପର୍କରେ କୌଣସି କଥା କହି ନଥିଲେ । କେବଳ ଧର୍ମ
ମଧ୍ୟରେ ସାଂପ୍ରଦାୟିକତା ପଶିବାର ସର୍ବନାଶୀ ପରିଣାମ ସମ୍ପର୍କରେ
ବୁଝାଇ ଦେଇଥିଲେ ।

'ଅରୂପ ରତନ' ନାଟକର ରିହର୍ସାଲ୍ ଚାଲିଥାଏ—ଏହା
'ରାଜା' ନାଟକର ଅନ୍ୟତମ ରୂପାନ୍ତର । କଲିକତା ଚାଲିଲେ
ଦଳବଳ ନେଇ । ଏମ୍ପାୟାର ଥିଏଟରରେ ଦୁଇଦିନ ଅଭିନୟ
ହେଲା (୧୯୩୫ ଡିସେମ୍ବର ୧୧।୧୨) । ଅଭିନୟ ଶେଷ ହେଲା;
କିନ୍ତୁ କବି ଅସୁସ୍ଥ ହୋଇପଡ଼ିଲେ । ପଚସ୍ତରୀ ବର୍ଷ ବୟସରେ ଏତେ
ଶ୍ରମ, ଏତେ ଉଦ୍‌ବେଗ, ଏତେ ଉତ୍ତେଜନା ସହନ୍ତେ କିପରି ?
ଏଇଥିପାଇଁ ଓଡ଼ିଶାରେ ଅନୁଷ୍ଠିତ ହେଉଥିବା ସଙ୍ଗୀତ ସମ୍ମିଳନୀକୁ
ଆସିପାରିଲେ ନାହିଁ ।

( ୩୪ )

୧୯୩୫ ମସିହା ଫେବୃୟାରୀ ମାସରେ କଲିକତା ବିଶ୍ୱବିଦ୍ୟାଳୟର ସିନେଟ୍ ହଲ୍‌ରେ ଶିକ୍ଷାସପ୍ତାହ ପାଳନ ଓ ନବ-ଶିକ୍ଷା ସଂଘର ଅଧିବେଶନ ହେଉଥାଏ । ସପ୍ତାହବ୍ୟାପୀ ଶିକ୍ଷାବିଷୟକ ସଭା, ପ୍ରଦର୍ଶନୀ ପ୍ରଭୃତିର ଆୟୋଜନ ହୋଇଥାଏ ।

ନବଶିକ୍ଷାସଂଘ (New Education Fellowship) ୟୁରୋପୀୟ ପ୍ରତିଷ୍ଠାନ; ୧୯୩୦ ମସିହାରେ ୟୁରୋପ ଭ୍ରମଣ ସମୟରେ ଏଲସିନୋରରେ ଅନୁଷ୍ଠିତ ଏମାନଙ୍କର ଏକ ଅଧିବେଶନରେ କବି ଉପସ୍ଥିତ ଥିଲେ । ଏହାର ଏକ ଶାଖା ଶାନ୍ତିନିକେତନରେ ସ୍ଥାପିତ ହୋଇଥିଲା । ରବୀନ୍ଦ୍ରନାଥ ସେହି ଭାରତୀୟ ଶାଖାର ସଭାପତି । ସମ୍ପାଦକ ଥିଲେ ଶ୍ରୀ ଧୀରେନ୍ଦ୍ରମୋହନ ସେନ ଓ ଶ୍ରୀ ଅନିଲକୁମାର ଚନ୍ଦ ।

ଶିକ୍ଷାସପ୍ତାହ ଅଧିବେଶନରେ ରବୀନ୍ଦ୍ରନାଥ ଦୁଇଟି ଭାଷଣ ଦେଲେ । ତାହା ମଧ୍ୟରୁ 'ଶିକ୍ଷାର ସାଙ୍ଗୀକରଣ' ଭାଷଣଟି 'ଶିକ୍ଷା' ଗ୍ରନ୍ଥରେ ସନ୍ନିବେଶିତ ହୋଇଛି । ଏହି ଭାଷଣର ଶେଷରେ ପୁନଶ୍ଚ ଆକାରରେ ଏକ ପ୍ରସ୍ତାବ ତତ୍କାଳୀନ ଶିକ୍ଷାମନ୍ତ୍ରୀଙ୍କ ନିକଟରେ ପେଶ୍ କରିଥିଲେ । କବି ସେଥିରେ କହିଥିଲେ ଯେ ଯେଉଁ ଲୋକମାନଙ୍କର ସ୍କୁଲରେ ପଢ଼ିବାର ସୁଯୋଗ ନାହିଁ, ସେମାନଙ୍କ ପାଇଁ ଗୃହଶିକ୍ଷା ଓ ପରୀକ୍ଷା ଗ୍ରହଣର ବ୍ୟବସ୍ଥା ହେବା ଦରକାର । ସରକାରଙ୍କ ପକ୍ଷରୁ ତାହାର ଉଦ୍ୟୋଗ ନହେଲେ ଦେଶବ୍ୟାପୀ ଶିକ୍ଷାର ବିସ୍ତାର ହୋଇପାରିବ ନାହିଁ । କହିବା ବାହୁଲ୍ୟ ଯେ ହିତ କଥା ରାଜନୀତିକମାନଙ୍କର କାନରେ ପଡ଼ିଞ୍ଚେ—ପ୍ରାଣରେ ପ୍ରବେଶ କରିପାରେ ନାହିଁ । ଶେଷରେ ରବୀନ୍ଦ୍ରନାଥ ନିଜେ ଏହି କାର୍ଯ୍ୟର ଭାର ନେଲେ, ବିଶ୍ୱଭାରତୀ ପକ୍ଷରୁ 'ଲୋକଶିକ୍ଷା ସଂସଦ' ସ୍ଥାପିତ ହେଲା ।

ଶିକ୍ଷାସପ୍ତାହ ସମ୍ମିଳନୀରୁ କବି ଶାନ୍ତିନିକେତନ ଫେରିଲେ । ଭାବୁଥାନ୍ତି ଯେ ବହୁକାଳ ସଂଗୀତହୀନ, କାବ୍ୟହୀନ ଜୀବନ କଟିଛି । ଜୀବନ ଦେବତାଙ୍କୁ ସତେ ଯେପରି କହୁଛନ୍ତି, 'ମୋର

ତୁଇ ଚକ୍ଷୁର ବିସ୍ମୟକୁ ଡାକ ଦେବାକୁ ଭୁଲିଗଲି ।' କିନ୍ତୁ ଏହି ଅସନ୍ତୋଷ ବେଶୀ ଦିନ ରହିଲି ନାହିଁ—ଚିତ୍ରାଙ୍ଗଦା କାବ୍ୟନାଟ୍ୟକୁ ନୃତ୍ୟନାଟ୍ୟ ରୂପଦେବାରେ ମନ ଦେଲେ । ଏହା ପୂର୍ବରୁ ଶିଶୁତୀର୍ଥ ଓ ଶାପମୋଚନକୁ ନୃତ୍ୟନାଟ୍ୟ ରୂପେ ରୂପାୟିତ କରିଥିଲେ । କିନ୍ତୁ ସେଥିରେ ନାଟ୍ୟବସ୍ତୁ ଅତ୍ୟନ୍ତ କ୍ଷୀଣ ଥିବାରୁ ତାହା ସର୍ବାଙ୍ଗସୁନ୍ଦର ନୃତ୍ୟନାଟ୍ୟ ହୋଇପାରିନି—ତାହା ଯେ କିପରି ସାର୍ଥକ ହୋଇ ପାରେ, ତାହାର ପୂରାପୂରି ଧାରଣା ସମ୍ଭବପର ନୁହେଁ । ନୃତ୍ୟ ନାଟ୍ୟ 'ଚିତ୍ରାଙ୍ଗଦା'ରେ ନୃତ୍ୟଗୀତ ଅଭିନୟର ସାର୍ଥକତା ଉଜ୍ଜ୍ୱଳ ଓ ଅପରୂପ ହୋଇ ପାରିଛି ।

ସମସ୍ତ ବଦଳି ଯାଇଛି । ଦଶବର୍ଷ ପୂର୍ବେ ବ୍ରହ୍ମଚର୍ଯ୍ୟାଶ୍ରମରେ 'ଚିତ୍ରାଙ୍ଗଦା', 'ପରିଶୋଧ' ପ୍ରଭୃତି ପାଠ କରିବା ଛାତ୍ରମାନଙ୍କ ପକ୍ଷରେ ନିଷିଦ୍ଧ ଥିଲା । ବର୍ତ୍ତମାନ ସେହିଠାରେହିଁ ଛାତ୍ରଛାତ୍ରୀ ଓ ଅଧ୍ୟାପକ ମିଳି ଏ ସମସ୍ତ ରଚନା ଆବୃତ୍ତି ବା ଅଭିନୟ କରୁଛନ୍ତି । କଳାର ନୂତନ ପ୍ରେରଣାରେ କବିଙ୍କର ଜୀବନ ଓ ମତର ଅନେକ ବିବର୍ତ୍ତନ ହୋଇଛି । ଏହି ପରିବର୍ତ୍ତନ ବିଭିନ୍ନ ଆଗନ୍ତୁକଙ୍କର ପ୍ରଭାବରେ ବା ଜୀବନବ୍ୟାପୀ 'ଆର୍ଟ' ସାଧନାର କ୍ରମିକ ସଂସ୍କାର-ମୁକ୍ତିବଶତଃ ହୋଇଛି, କହିବା କଠିନ ।

ମନେଅଛି ଯେ ୧୯୧୧ ମସିହାରେ ଯେତେବେଳେ 'ଲକ୍ଷ୍ମୀର ପରୀକ୍ଷା' ପରି ନାଟିକା ଶାନ୍ତିନିକେତନର ଝିଅମାନେ ଅଭିନୟ କରିଥିଲେ, ସେତେବେଳେ କୌଣସି ପୁରୁଷ ଅଧ୍ୟାପକ ଓ ଛାତ୍ର ସେଠାରେ ଉପସ୍ଥିତ ରହି ପାରିନଥିଲେ । ତାହା ପରେ କୋଡ଼ିଏବର୍ଷ ମଧ୍ୟରେ ଯୁଗାନ୍ତର ହୋଇଯାଇଛି । ଶାନ୍ତିନିକେତନର ବିଦ୍ୟାଳୟ ଓ କଲେଜରେ ସହଶିକ୍ଷା ପ୍ରଚଳିତ ହୋଇଛି । ଦେଶର ଅନ୍ୟ ସ୍ଥାନରେ ଏପରି ହେଉଛି ବା ହେବ—ନୂତନ ଦୃଷ୍ଟିକୋଣରୁ ବିଚାର କରି ଶିକ୍ଷାକ୍ଷେତ୍ରରେ ନୂତନ ବ୍ୟବସ୍ଥା ଉଦ୍ଭାବନ ଯେ ଅନିବାର୍ଯ୍ୟ ସନ୍ଦେହ ନାହିଁ ।

'ବାଲ୍ମୀକି ପ୍ରତିଭା'ରେ ନାରୀଚରିତ୍ର ଅଳ୍ପ । ଏହା ମଧ୍ୟ ଠାକୁର ପରିବାରର ପୁଅମାନଙ୍କ ସହିତ ଆତ୍ମୀୟ ଝିଅମାନେ ମିଶି ଅଭିନୟ କରିଛନ୍ତି । 'ମାୟାର ଖେଳ'ର ପ୍ରାଥମିକ

ଅଭିନୟରେ ସଖୀସମିତିର ଝିଅମାନେ ସମୁଦାୟ ଭୂମିକାରେ ଅଂଶ ଗ୍ରହଣ କରିଥିଲେ । ଏକ ସମୟରେ କେବଳ ପୁଅମାନଙ୍କ ଅଭିନୟ ଉପଯୋଗୀ ମୁକୁଟ, ଶାରଦୋତ୍ସବ, ଅଚଳାୟତନ, ଗୁରୁ ପ୍ରଭୃତି ନାଟକ ରଚନା କରିଥିଲେ । ସେହିପରି କେବଳ ଝିଅମାନଙ୍କ ଉପଯୋଗୀ 'ଲକ୍ଷ୍ମୀର ପରୀକ୍ଷା' ଓ 'ନଟୀର ପୂଜା' ପ୍ରଭୃତି ଲେଖା ହୋଇଥିଲା । ଏକଥା ମଧ୍ୟ ଉଲ୍ଲେଖଯୋଗ୍ୟ ଯେ କବିଙ୍କର ଜୀବନ କାଳରେ, ତାଙ୍କର ପ୍ରଯୋଜନାରେ, ନୃତ୍ୟନାଟ୍ୟ 'ଚିତ୍ରାଙ୍ଗଦା'ର ଅର୍ଜୁନ ଭୂମିକାରେ ଅବତୀର୍ଣ୍ଣ ହୋଇଥିଲେ ଶ୍ରୀମତୀ ନିବେଦିତା । ସେହିପରି ଭାବରେ ପରିଶୋଧ ବା ଶ୍ୟାମାରେ ବଜ୍ରସେନ ବା ଉତ୍ତୀୟ ଭୂମିକା ଗ୍ରହଣ କରିଥିଲେ ଝିଅମାନେ । ଅର୍ଥାତ୍ ରବୀନ୍ଦ୍ରନାଥଙ୍କର ସଂସ୍କାର ବ୍ୟବସ୍ଥା ଯୁଗର ପରିବର୍ତ୍ତନ ସଙ୍ଗେ ତାଳ ଦେଇ ପରିବର୍ତ୍ତିତ ହୋଇଛି । ମନୁଷ୍ୟ ଚରିତ୍ର ସେ ବୁଝୁଥିଲେ, ଅଧିକାରୀ ଭେଦ ବିଷୟରେ ମଧ୍ୟ ଅବହିତ ଥିଲେ । ଏକଥା ନ ବୁଝି କବିଙ୍କର କାର୍ଯ୍ୟ ବା କଥାର ଅନୁକରଣ କରିଲେ ଜାତି ଅଗ୍ରସର ହେବା ଦୂରେ ଥାଉ, ଗୋଟିଏ ସ୍ଥାନରେ ସ୍ଥିର ହୋଇ ମଧ୍ୟ ରହି ପାରିବ ନାହିଁ ।

(୧୩୬)

ସ୍ଥିର ହେଲା ଯେ ନୃତ୍ୟନାଟ୍ୟ 'ଚିତ୍ରାଙ୍ଗଦା'ର ଦଳ ନେଇ କବି ଉତ୍ତର ଭାରତ ଭ୍ରମଣରେ ଯିବେ । ଉଦ୍ଦେଶ୍ୟ ବିଶ୍ୱଭାରତୀ ପାଇଁ ଅର୍ଥ ଉପାର୍ଜନ ଓ ବଂଗଦେଶର ନୃତ୍ୟଗୀତର ପ୍ରଚାର— ଦୁଇ କଥା ଏକସାଙ୍ଗରେ ହୋଇପାରିବ । ବିରାଟ ଏକ ବାହିନୀ ନେଇ କବି ପାଟନା, ଆହ୍ଲାବାଦ, ଲାହୋର ହୋଇ ଦିଲ୍ଲୀରେ ଉପସ୍ଥିତ ହେଲେ ।

ଦିଲ୍ଲୀରେ ଦଳ ଉପସ୍ଥିତ ହେବାପରେ ଗାନ୍ଧିଜୀ କବିଙ୍କ ସହିତ ସାକ୍ଷାତ କରିବାକୁ ଆସିଲେ । ଜାଣିବାକୁ ପାଇଲେ ଯେ

ବିଶ୍ୱଭାରତୀ ପାଇଁ ଅର୍ଥ ପ୍ରୟୋଜନ ହେଉଥିବାରୁ କବିଙ୍କୁ ଏ ବୟସରେ ମଧ୍ୟ ଘୂରିବାକୁ ପଡ଼ୁଛି । ଶୁଣିଲେ ଯେ ଷାଠିଏ ହଜାର ଟଙ୍କା ନଅଣ୍ଟ । ଗାନ୍ଧିଜୀ ସେହି ଟଙ୍କାର ବ୍ୟବସ୍ଥା କରି ଦେଇଥିଲେ ଓ କବିଙ୍କୁ ଏ ବୟସରେ ଏପରି ଭାବରେ ବୁଲିବା ପାଇଁ ବାରଣ କରିଥିଲେ । ମିରଟ୍‌ରେ ଆଗରୁ ଆୟୋଜନ ହୋଇଥିବାରୁ ଅଭି-ନେତୃଦଳ ନେଇ ସେଠାକୁ ଯିବାକୁ ହୋଇଥିଲା । ଏହାପରେ କଲିକତା ଫେରି ଆସିଲେ [୧୯୩୬] ।

(୧୯୩୭)

ଆଷାଢ଼ ମାସର ଶେଷଭାଗରେ ଶାନ୍ତିନିକେତନ ଆସିଲେ ସାହିତ୍ୟିକ ଶରତଚନ୍ଦ୍ର ଚଟ୍ଟୋପାଧ୍ୟାୟ, ଐତିହାସିକ ରାଧାକୁମୁଦ ମୁଖୋପାଧ୍ୟାୟ ଓ ରାଜନୀତିକ ତୁଳସୀ ଗୋସ୍ୱାମୀ । ସେମାନେ ଆସିଲେ କବିଙ୍କୁ କଲିକତା ନେବାକୁ—ସେଠାରେ ଏକ ଜନ-ସଭାରେ ବକ୍ତୃତା ଦେବାକୁ ହେବ । ପ୍ରଧାନମନ୍ତ୍ରୀ ମ୍ୟାକ୍‌ଡୋନାଲଡ-ଙ୍କର ସାମ୍ପ୍ରଦାୟିକ ବଣ୍ଟୁଆରା ନୀତି ବିରୁଦ୍ଧରେ ଜନମତ ଉଦ୍‌ବୁଦ୍ଧ କରିବା ଉଦ୍ଦେଶ୍ୟରେ ସଭା ହେଉଥାଏ । ନୂଆ ଚୁକ୍ତି ଅନୁଯାୟୀ ରାଷ୍ଟ୍ର ବ୍ୟବସ୍ଥାରେ ହିନ୍ଦୁମୁସଲମାନଙ୍କର ସଂଖ୍ୟାନୁପାତିକ କ୍ଷମତା ବଣ୍ଟୁଆରା ମାନି ନେବା ଫଳରେ ମୁସଲମାନ-ପ୍ରଧାନ ବଙ୍ଗ ଦେଶରେ ହିନ୍ଦୁମାନଙ୍କ ପକ୍ଷରେ ମୁସ୍କିଲ ବ୍ୟାପାର ହେଲା । ସଂଖ୍ୟାନୁପାତରେ ମୁସଲମାନମାନେ ପ୍ରତିନିଧିତ୍ୱ ଓ ଚାକିରି ପ୍ରଭୃତିରେ ବେଶୀ ଭାଗ ତ ପାଉଥିଲେ, ତାହା ଉପରେ ଏତେ କାଳ ଧରି ସେମାନେ ଶିକ୍ଷା ଦୀକ୍ଷାରେ ପଛୁଆ ହୋଇଥିବାରୁ ବିଦେଶୀ ସରକାର ମେହେର-ବାନୀ କରି ସେମାନଙ୍କୁ ଅଧିକ ଚାକିରି ବାକିରି ଦେବାର ସୁପାରିଶ କଲେ । ଏଥିରୁ ବେଶ୍ ବୁଝାଗଲା ଯେ ହିନ୍ଦୁମାନେ ରାଜନୀତି କ୍ଷେତ୍ରରେ ବରାବର ଉତ୍ପାତ ସୃଷ୍ଟି କରି ଆସୁଥିବାରୁ ସେମାନଙ୍କର ନ୍ୟାଯ୍ୟ ଜୀବିକା ହରଣ କରି ଅନ୍ୟ ସମ୍ପ୍ରଦାୟକୁ ସୁବିଧା ସୁଯୋଗ

ଦେଲେ; 'ଦୁଷ୍ଟ' ଦମନ ଓ ଶିଷ୍ଟପାଳନ ଛଡ଼ା ପରସ୍ପର ମଧ୍ୟରେ ଈର୍ଷାନଳ ସର୍ବଦା ଜଳାଇ ରଖିହେବ । ଏହାରି ନାମ ହିଁ 'ଭେଦ-ନୀତି ।' ଇଂରେଜ-ରାଜର ଏହି କୂଟନୀତି ବିରୁଦ୍ଧରେ ଜନସଭା ଆହୂତ ହୋଇଥିଲା—ମୁସଲମାନଙ୍କ ପ୍ରତି ଈର୍ଷାବଶତଃ ନୁହେଁ ।

ରବୀନ୍ଦ୍ରନାଥ କଲିକତା ଗଲେ । ଟାଉନହଲ୍‌ରେ ସଭା ହେଲା (୧୯୩୬ ଜୁଲାଇ ୧୫) । ସେ ତାଙ୍କର ଭାଷଣରେ ହିନ୍ଦୁସମାଜ ବା ଆତଙ୍କିତ ସବର୍ଣ୍ଣ ହିନ୍ଦୁଙ୍କର ସ୍ୱାର୍ଥ ଓ ପ୍ରତିପତ୍ତି ବଜାୟ ରଖିବା ପାଇଁ ଓକିଲାତି କଲେ ନାହିଁ; ସଂଖ୍ୟାଗରିଷ୍ଠ ମୁସଲମାନ-ମାନଙ୍କର ନ୍ୟାଯ୍ୟ ପାଉଣା ଉପରେ 'ଆହୁରି ଦିଅ' ଦାବୀର ପ୍ରତିବାଦ ମଧ୍ୟ କଲେ ନାହିଁ । ସେ କହିଲେ ଯେ ଧର୍ମ ତଥା ସଂପ୍ରଦାୟ-ନିରପେକ୍ଷ ରାଷ୍ଟ୍ରତନ୍ତ୍ର ଭାରତୀୟମାନଙ୍କର ଏକମାତ୍ର କାମ୍ୟ ହେବା ଉଚିତ । ସେ ଆହୁରି କହିଲେ ଯେ, ଏହି ସଂପ୍ରଦାୟଗତ ରାଜ୍ୟ-ଶାସନନୀତି ନିଃସନ୍ଦେହ ଭାବରେ ଆସନ୍ନ ବିପଦର ଅଶୁଭ ସଂକେତ—ଦୁଇଟି ପ୍ରତିବେଶୀ ସମ୍ପ୍ରଦାୟ ମଧ୍ୟରେ ସଂଘର୍ଷ ସୃଷ୍ଟି ହେବାର ପୂର୍ବାଭାସ । ଏହା କହିବା ଫଳରେ ବଙ୍ଗାଳୀର ରାଜନୈତିକ ଶକ୍ତି ଯେ କେବଳ ଖର୍ବ ହେବ ତାହା ନୁହେଁ, ଅର୍ଥ-ନୈତିକ ଉନ୍ନତିର ପଥ ମଧ୍ୟ ପ୍ରତିହତ ହେବ । କବିଙ୍କର ବାଣୀ ଭବିଷ୍ୟତ୍ ଦ୍ରଷ୍ଟାର ବାଣୀ । ଆଜି ଦୁଇ-ବଙ୍ଗଳାର ଅର୍ଥନୈତିକ ଅବସ୍ଥା ବିପର୍ଯ୍ୟସ୍ତ । କଲିକତାରେ ଦୁଇ ଗୃରଦିନ ରହିଲେ । ବିପ୍ଳବ ଛଅସ୍ତରୀ ହେଲେ ବି ନାନା ଲୋକଙ୍କର ନାନା ଦିଗରୁ ଟଣାଓଟରା—ତେବେ ଏଥର ଯେଉଁ ଆହ୍ୱାନ ଗୋଟିକ ଗ୍ରହଣ କଲେ, ତାହା ଖୁବ୍ ଅରୁଚିକର ନୁହେଁ । ଶରତଚନ୍ଦ୍ରଙ୍କ ଘରେ ଦିନେ ରବି-ବାସରୀୟ ଅଧିବେଶନରେ ଯୋଗ ଦେଇଥିଲେ (୧୩୪୩ ଶ୍ରାବଣ ୩) ।

ଶାନ୍ତିନିକେତନ ଫେରି କଂଗ୍ରେସ ସଭାପତି ଜବାହାରଲାଲ ନେହେରୁଙ୍କର ପତ୍ର ପାଇଲେ । ଭାରତର ସବୁଠି ବ୍ୟକ୍ତି-ସ୍ୱାଧୀନତା ବିପନ୍ନ । ମାନବର ସେହି ଜନ୍ମଗତ ଅଧିକାର ରକ୍ଷା ପାଇଁ ବ୍ୟକ୍ତି-ସ୍ୱାଧୀନତା ସଂଘ ଗଢ଼ା ହୋଇଥାଏ—କବିଙ୍କୁ ସେମାନେ ଏହି ସଂଘର ସଭାପତି କଲେ । ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେବା

ପରେ ବିଲାତର ସିଭିଲ ଲିବର୍ଟି ଇଉନିୟନର ଭାଇସ-ପ୍ରେସିଡେଣ୍ଟ ହିସାବରେ କବିଙ୍କୁ ମନୋନୀତ କରାଗଲା—ତାହା କଲେ ନେଭିନ୍‌ସନ ।

(୧୩୭)

ରବୀନ୍ଦ୍ରନାଥଙ୍କ ଜୀବନର ସମସ୍ତଟା କାବ୍ୟ ନୁହେଁ, ଧର୍ମ ବି ନୁହେଁ—ରାଜନୀତିର ଦମକା ପବନ ବେଳେ ବେଳେ ପାଲରେ ଲାଗେ । ନୌକା ଚହଲି ଯାଏ; କିନ୍ତୁ ନୌକାଡୁବି ହୋଇ ପାରେନା । କାରଣ ଶକ୍ତ ହାତରେ ଆହୁଲା ଧରିଥାନ୍ତି କବିଙ୍କର ଜୀବନ ତରୀର ନାୟକ ।

ଗୁରୁଗମ୍ଭୀର-ଦାର୍ଶନିକ-ତତ୍ତ୍ୱପୂର୍ଣ୍ଣ ମେଳହୀନ ଗଦ୍ୟ ଛନ୍ଦ ଲେଖାର ମଝିରେ ମଝିରେ ଦେଖାଦିଏ ଖାପଛଡ଼ା କବିତାର ଝୁଙ୍କି, ଦାୟମୁକ୍ତ ମନର ବଲ୍‌ଗାହୀନ କଳ୍ପନା । ସଙ୍ଗେ ସଙ୍ଗେ ଲେଖା ଚାଲିଥାଏ ଯଦୃଚ୍ଛା ଖିଆଲରେ, ବୁଝା-ଅବୁଝା ଜାଗ୍ରତ ସ୍ୱପ୍ନର ସୃଜନ— ଅଜସ୍ର ଅବାସ୍ତବ ରୂପ, ଅଦ୍ଭୁତ ଛବି, ଆଶ୍ଚର୍ଯ୍ୟ ନକ୍‌ସାର ଲିଖନ ।

‘ଖାପଛଡ଼ା’ କବିତା ଏକତ୍ର କରି (ନିଜେ ପ୍ରତ୍ୟେକ କବିତାର ଛବି ଅଙ୍କନ କରି ବା ଛବିପାଇଁ କବିତା ଲେଖି) ଉତ୍ସର୍ଗ କଲେ ଶ୍ରୀ ରାଜଶେଖର ବସୁଙ୍କୁ । କବି କେବଳ କାବ୍ୟ ଉତ୍ସର୍ଗ କଲେନାହିଁ, ରାଜଶେଖର ବସୁ ମହାଶୟଙ୍କୁ ବିଶ୍ୱଭାରତୀ ମଧ୍ୟକୁ ଟାଣିବାର ପ୍ରତ୍ୟାଶାରେ ଆଇ.ଏସ.ସି କ୍ଲାସର ଗବେଷଣାଗାର ଦରଜାରେ (ତିଣି ଘର) ପଥର ଫଳକରେ ‘ରାଜଶେଖର-ବିଜ୍ଞାନ ସଦନ’ ଲେଖାଇଥିଲେ ।

(୧୩୮)

ଶାନ୍ତିନିକେତନରେ ମନ ବିକ୍ଷେଇ ଉଠିଲେ କଲିକତା ଚାଲି ଯାଆନ୍ତି । ଏଥର ମହଲାନବିଶଙ୍କର ବରାହନଗରର ନୂତନ ଘରେ

ଅତଥି ହେଲେ । ସଭାସମିତର ଆହ୍ୱାନ ନଥିଲା, ଭାବଥିଲେ 'ଆରାମରେ ଦିନ ଯିବ ।' କନ୍ତୁ ଶାନ୍ତିନକେତନକୁ ଫେରି ଆସି ଲେଖିଥିଲେ—'ରାଜଧାନୀର ବହୁପୀଡ଼ନରେ ପ୍ରାଣ ମଥିତ ହେଲା, ପଳାଇ ଆସିଲି' ।

ପୂଜାଛୁଟି ଆସୁଥାଏ, କଛି ଗୋଟିଏ ଅଭିନୟ କରିବାକୁ ହେବ । ତେଣୁ 'କଥା ଓ କାହାଣୀ'ର 'ପରିଶୋଧ' ଗଳ୍ପଟିକୁ ନୃତ୍ୟନାଟ୍ୟ ରୂପ ଦେଲେ ଓ ଦଳବଳ ନେଇ କଲିକତାରେ ଉପସ୍ଥିତ ହେଲେ । ଅଭିନୟ ହେଲା ଆଶୁତୋଷ କଲେଜ ହଲରେ ।

ଏହି ସମୟରେ କଲିକତାରେ ଶରତଚନ୍ଦ୍ରଙ୍କର ଜୟନ୍ତୀ ପାଳିତ ହେଉଥାଏ । କବି ଜୟନ୍ତୀ ସଭାରେ ଉପସ୍ଥିତ ହୋଇ ଶରତଚନ୍ଦ୍ରଙ୍କ ପ୍ରତି ତାଙ୍କର ଗଭୀର ସ୍ନେହ ଓ ଶ୍ରଦ୍ଧା ଜଣାଇଥିଲେ । ଉଭୟଙ୍କ ମଧ୍ୟରେ ନାନା ମତଭେଦ ହୋଇଛି ସତ୍ୟ, କନ୍ତୁ ପରସ୍ପର ପ୍ରତି ଶ୍ରଦ୍ଧା ସେମାନେ ହରାଇ ନାହାନ୍ତି । ରବୀନ୍ଦ୍ରନାଥଙ୍କୁ ଶରତଚନ୍ଦ୍ର ଦେବତା ପରି ଭକ୍ତି କରୁଥିଲେ । ରବୀନ୍ଦ୍ରନାଥଙ୍କର ଜୀବନରେ, ମତାନ୍ତର ହେଲେ ବି କାହାରି ସହିତ ମନାନ୍ତର ହୋଇ ଥିବାର ଦେଖାଯାଇନ । କଲିକତାରେ ଥିବାବେଳେ ଆଉ ଦିନେ ନିଖିଳ ବଙ୍ଗ-ନାରୀ କର୍ମୀ ସମ୍ମିଳନୀରେ ଉଦ୍‌ବୋଧନ ଦେଇ କବି ଗୋଟିଏ ଭାଷଣ ଦେଇଥିଲେ । ପ୍ରଦତ୍ତ ଭାଷଣ 'ନାରୀ' ପ୍ରବନ୍ଧରେ ବର୍ତ୍ତମାନ ଯୁଗର ସ୍ତ୍ରୀଲୋକମାନଙ୍କର ବହୁ ସମସ୍ୟାର ଆଲୋଚନା ଦେଖିବାକୁ ମିଳେ ।

କବି କଲିକତାରୁ ଫେରି ଶ୍ରୀନିକେତନରେ ରହିଲେ । ସେଠାର ଛତାଳି କୋଠାରେ ଏକା ଥାନ୍ତି, ବେଶ୍ ଭଲ ଲାଗୁଥାଏ । ଆକାଶ ଖୁବ୍ ନିକଟରେ, କେଉଁଠି ଆଲୋକର ବାଧା ନାହିଁ; ଲୋକମାନେ ଆସି ବିରକ୍ତ ମଧ୍ୟ କରନ୍ତି ନାହିଁ ।

ଜବାହରଲାଲ ଆସିଲେ କବିଙ୍କ ସହିତ ଦେଖା କରିବାକୁ; ଉଭୟଙ୍କ ମଧ୍ୟରେ ଯେଉଁ କଥାବାର୍ତ୍ତା ହୋଇଥିଲା ତାହା କେହି ଲିପିବଦ୍ଧ କରି ରଖିନ କିମ୍ବା ରଖିଥିଲେ ବି ପ୍ରକାଶ କରିନାହିଁ ।

( ୧୩୯ )

କଲିକତା ବିଶ୍ୱବିଦ୍ୟାଳୟର ସମାବର୍ତ୍ତନ ଉତ୍ସବରେ ସ୍ନାତକୋତ୍ତର ଛାତ୍ରମାନଙ୍କୁ ଭାଷଣ ଦେବାପାଇଁ କବିଙ୍କୁ ଆହ୍ୱାନ ଆସିଲା । ସେତେବେଳେ ଉପାଚାର୍ଯ୍ୟ ଶ୍ୟାମାପ୍ରସାଦ ମୁଖୋପାଧ୍ୟାୟ । ବିଶ୍ୱବିଦ୍ୟାଳୟର ଅଶୀବର୍ଷର ଇତିହାସରେ (୧୮୫୭-୧୯୩୭) ତାହାର କର୍ତ୍ତୃପକ୍ଷମାନେ ବେସରକାରୀ କୌଣସି ବ୍ୟକ୍ତିଙ୍କୁ ଏପରି ସମ୍ମାନଜନକ ଆହ୍ୱାନ କେବେ ଦେଇ ନଥିଲେ । ରବୀନ୍ଦ୍ରନାଥ ମଧ୍ଯ ଅଭୂତପୂର୍ବ କାର୍ଯ୍ୟ କଲେ—ସେ ବଙ୍ଗଳାରେ ତାଙ୍କର ଭାଷଣ ପଢ଼ିଲେ । ଇତିପୂର୍ବରୁ କଲିକତା ବିଶ୍ୱବିଦ୍ୟାଳୟରେ ବା ଅନ୍ୟ କୌଣସି ବିଶ୍ୱବିଦ୍ୟାଳୟରେ ପ୍ରାନ୍ତୀୟ ଭାଷାରେ କେହି ଭାଷଣ ଦେଇ ନଥିଲେ । ରବୀନ୍ଦ୍ରନାଥ ଦେଖାଇଲେ ନୂତନ ପଥ ।

କଲିକତା ଆସିଲେ କବି ପ୍ରାୟ ବରାହନଗରରେ ପ୍ରଶାନ୍ତ-ଚନ୍ଦ୍ରଙ୍କର ଘରେ ରହନ୍ତି । ସେଠାରେ ଥିବାବେଳେ ଦିନେ ନୌକାରେ ଯାଇ ଚନ୍ଦନନଗରର ସାହିତ୍ୟ ସମ୍ମିଳନୀରେ ଉଦ୍‌ବୋଧନ ଦେଇ ଆସିଥିଲେ । ଆଉ ଦିନେ ଶ୍ରୀ ରାମକୃଷ୍ଣ ପରମହଂସ ଦେବଙ୍କର ଶତବାର୍ଷିକ ଉତ୍ସବ ଉପଲକ୍ଷେ ସର୍ବଧର୍ମ ସମ୍ମିଳନୀରେ ଭାଷଣ ଦେଇଥିଲେ । ଧର୍ମର ମୂଳତତ୍ତ୍ୱ ଓ ଧର୍ମ ମଧ୍ୟରେ ସାଂପ୍ରଦାୟିକତାର ବିଷକ୍ରିୟାର ବିସ୍ତୃତ ବିଶ୍ଳେଷଣ ଥିଲା ମୂଳକଥା— 'ଯେଉଁ ଧର୍ମ ଆମକୁ ମୁକ୍ତ ଦେବାକୁ ଆସେ ସେ ହିଁ ହୋଇ ଉଠେ ମୁକ୍ତ ଓ ସ୍ୱାଧୀନତାର ପ୍ରଚଣ୍ଡ ଶତ୍ରୁ । ସବୁ ବନ୍ଧନ-ଠାରୁ ଧର୍ମନାମାଙ୍କିତ ବନ୍ଧନ ଭାଙ୍ଗିବା ହିଁ ସବୁଠାରୁ କଠିନ । ସବୁ କାରାଗାର ଅପେକ୍ଷା ଜଘନ୍ୟତମ ତାହା ହିଁ, ଯାହା ଅଦୃଶ୍ୟ, ଯେଉଁଠାରେ ମଣିଷର ଆତ୍ମା ମୋହଜନିତ ଆତ୍ମପ୍ରବଞ୍ଚନାରେ ବନ୍ଦୀ ।' ବଙ୍ଗଦେଶ ଏହି ସମୟରେ ସାଂପ୍ରଦାୟିକତା ବିଷରେ ଜର୍ଜରିତ । ତେଣୁ କବିଙ୍କ ମନରେ ଏହି କଥା ବେଶୀ ଭାବରେ ଆଲୋଡ଼ନ ସୃଷ୍ଟି କରୁଥିଲା ।

ଶାନ୍ତିନିକେତନ ଫେରିଲେ ପ୍ରାୟ ମାସକ ପରେ (୧୯୩୭ ମାର୍ଚ୍ଚ ୬) । କିଛିଦିନ ପରେ କଲିକତାରୁ ଆସିଲେ ଚୀନବାସୀଙ୍କ

ସଦସ୍ୟଗଣ—ପ୍ରାୟ ଗୃଳିଶ ଜଣ । ଏହାପୂର୍ବରୁ ଏପରି ଭାବରେ ସାହିତ୍ୟିକ ବା ସାହିତ୍ୟାମୋଦୀମାନଙ୍କର ସମାବେଶ ହୋଇ ନଥିଲା । କବିଙ୍କର ଜୀବଦ୍ଦଶାରେ ଶାନ୍ତିନିକେତନରେ କେବେ କୌଣସି ସାହିତ୍ୟ ସମ୍ମିଳନୀ ମଧ୍ୟ ହୋଇନି ।

(୧୪୦)

୧୩୪୪ ସାଲ ନବବର୍ଷ ଦିନରେ ଶାନ୍ତିନିକେତନରେ ଚୀନ ଭବନ ଉଦ୍‌ଘାଟିତ ହେଲା । ଜବାହରଲାଲ ନେହେରୁଙ୍କର ଆସିବାର ଥିଲା; ଆସି ନପାରିବାରୁ କନ୍ୟା ଇନ୍ଦିରାଙ୍କ ହାତରେ ତାଙ୍କର ଲିଖିତ ଭାଷଣ ପଠାଇ ଦେଇଥିଲେ । ବିଷୟଟି ଶାନ୍ତିନିକେତନର ଇତିହାସ-ଅନ୍ତର୍ଗତ ଘଟଣା । ଏହା ବିଶେଷ ଭାବରେ ଉଲ୍ଲେଖ-ଯୋଗ୍ୟ ଯେ ରବୀନ୍ଦ୍ରନାଥ ଦେଶ ବିଦେଶ ସହିତ ଭାରତକୁ ମୈତ୍ରୀ ବନ୍ଧନରେ ବାନ୍ଧିବା ପାଇଁ ସର୍ବପ୍ରଥମେ ଚେଷ୍ଟା କରିଥିଲେ । ୧୯୨୧ ମସିହାରେ ଅଧ୍ୟାପକ ଲେଭିଙ୍କୁ ବିଶ୍ୱଭାରତୀ ଆଣିଲେ । ସେହି ଦିନରୁ ଚୀନା ଓ ତିବ୍ବତୀ ଭାଷା ଓ ସଂସ୍କୃତିର ଆଲୋଚନା ଆରମ୍ଭ ହେଲା—୧୯୩୭ ଖ୍ରୀ: ଅ:ରେ ଚୀନ ଭବନ ପ୍ରତିଷ୍ଠିତ ହେଲା ।

ବିଦ୍ୟାଳୟର ଗ୍ରୀଷ୍ମ ଛୁଟି ହେବା ପରେ କବିଙ୍କର ମନ ବାହାରକୁ ବୁଲିଯିବା ପାଇଁ ଉତ୍ସୁକ ହୋଇଉଠିଲା; ଏଥର କବି ବନ୍ଧୁ ପରିଜନଙ୍କ ସହ ଆଲମୋଡ଼ା ପାହାଡ଼କୁ ଗଲେ । ସଙ୍ଗରେ ଗଲା ଗଦି ଗଦି ବିଜ୍ଞାନ ପୁସ୍ତକ ଓ ନନ୍ଦଲାଲଙ୍କ ଅଙ୍କିତ ବହୁ କାର୍ଡ଼ ସ୍କେଚ୍ ।

ଆଲମୋଡ଼ାରେ ରହି ଲେଖିଲେ 'ବିଶ୍ୱପରିଚୟ' ଓ 'ଛଡ଼ାର ଛବି' । 'ବିଶ୍ୱପରିଚୟ' ବହିଖଣ୍ଡିକ ପ୍ରଥମେ ଲେଖିବାକୁ ଦେଇ-ଥିଲେ ବିଶ୍ୱଭାରତୀର ପଦାର୍ଥ ବିଜ୍ଞାନ ଅଧ୍ୟାପକ ଶ୍ରୀ ପ୍ରମଥନାଥ ସେନଗୁପ୍ତଙ୍କୁ । ପରେ କବି ନିଜେ ତାହା ଲେଖିବା ଆରମ୍ଭ

କରିଥିଲେ । କିନ୍ତୁ ଆଧୁନିକ ବିଜ୍ଞାନର ସବୁକଥା ସହଜବୋଧ ନୁହେଁ । ଏଥିପାଇଁ କବି ସେ ସମ୍ପର୍କରେ ବହୁ ବହି ପଢ଼ିଲେ, ବିଷୟଗୁଡ଼ିକ ସମ୍ପର୍କରେ ବିଶେଷ ଭାବରେ ଚିନ୍ତାକଲେ, ଅନ୍ୟମାନଙ୍କ ସହିତ ଆଲୋଚନା କରି ବିଷୟଗୁଡ଼ିକ ବୁଝି ନେଲେ—ତାହାପରେ ଲେଖା ଆରମ୍ଭ କଲେ । କବିଙ୍କର ବହୁଦିନର ଇଚ୍ଛା ଯେ 'ବିଶ୍ୱ-ବିଦ୍ୟା ସଂଗ୍ରହ' ନାମକ ସହଜବୋଧ୍ୟ ଜ୍ଞାନ-ବିଜ୍ଞାନ ଗ୍ରନ୍ଥମାଳା ଲେଖାଇ ସର୍ବସାଧାରଣଙ୍କ ମଧ୍ୟରେ ପ୍ରଚାର କରିବେ । ଅନେକ ବର୍ଷ ଆଗରୁ ଥରେ ଏହି ପରିକଳ୍ପନା କାଗଜରେ ମଧ୍ୟ ଛପା ହୋଇଥିଲା । କିନ୍ତୁ ସେଥର କାର୍ଯ୍ୟରେ ପରିଣତ ହୋଇ-ପାରିନି । ଏତେ ଦିନ ପରେ ବିଜ୍ଞାନ ବିଷୟକୁ ନେଇ ସେହି ଗ୍ରନ୍ଥମାଳାର ସୂତ୍ରପାତ ହେଲା । କାରଣ କବିଙ୍କର ବିଶ୍ୱାସ ଯେ ବୁଦ୍ଧିକୁ ମୋହ-ମୁକ୍ତ ଓ ସତର୍କ କରିବା ପାଇଁ ପ୍ରଧାନ ପ୍ରୟୋଜନ ବିଜ୍ଞାନଚର୍ଚ୍ଚା । ଏକଥା ସତ୍ୟ ଯେ ପ୍ରଥମେ ପ୍ରମଥନାଥ ଏ ବହିର ଖସଡ଼ା ନ କରିଥିଲେ କବିଙ୍କ ପକ୍ଷରେ 'ବିଶ୍ୱପରିଚୟ' ଲେଖିବା ସହଜ ହୋଇ ନଥାନ୍ତା । ଉତ୍ସର୍ଗ କରିଲେ ଶ୍ରୀ ସତ୍ୟେନ୍ଦ୍ରନାଥ ବସୁଙ୍କୁ ।

'ବିଶ୍ୱ ପରିଚୟ' ସଙ୍ଗେ ସଙ୍ଗେ ଲେଖା ଚାଲିଥାଏ ଶିଶୁ ଉପଯୋଗୀ କବିତା । ସେ ଗୁଡ଼ିକ ସଂକଳିତ ହେଲା 'ଛଡ଼ାର ଛବି' ପୁସ୍ତକରେ । ନନ୍ଦଲାଲଙ୍କ ସ୍କେଚ୍‌ଗୁଡ଼ିକ ଦେଖି ଯେଉଁ କଳ୍ପନା ଓ କାହାଣୀ ତାଂକ ମନରେ ରୂପ ପାଇଥାଏ, ତାହା ସ୍ୱଚ୍ଛନ୍ଦ ଭାଷାରେ, ହାଲ୍‌କା ଛନ୍ଦରେ ସୁନ୍ଦର କରି ଲେଖିଲେ । କର୍ମକ୍ଲାନ୍ତ ମନକୁ ଅବଗାହନ କରାଇଲେ ଶିଶୁ-ମାନସର ସ୍ନିଗ୍ଧ ସଲିଳରେ; ନିଜର ଶୈଶବ ଜୀବନର କଳ୍ପନାରେ ଆଉ ଥରେ ସନ୍ତରଣ କଲେ । ଏହି ଅଲମୋଡ଼ାରେ ବହୁ ବର୍ଷ ପୂର୍ବରୁ ଲେଖିଥିଲେ 'ଶିଶୁ' କବିତା । ଏଥର ମଧ୍ୟ ଲେଖିଲେ ଶିଶୁ ମାନଙ୍କ ପାଇଁ । ଲେଖା ଓ ପଢ଼ା ବ୍ୟତୀତ ଅବଶିଷ୍ଟ ସମୟ କଟେ ଛବି ଅଙ୍କିବାରେ । କେତେ ରୂପ, କେତେ ମୁହଁ—ଜଗତରେ ଯାହାର ଅସ୍ତିତ୍ୱ ନାହିଁ । ଆଙ୍କୁ ଆଙ୍କୁ ଛବି ରୂପ ପାଏ; ରୂପ ପରିକଳ୍ପନା କରି ଛବି ଅଙ୍କନ୍ତି ନାହିଁ । କୁମାୟୁନର ଶିବିକର

ମାନେ ଯେଉଁ ସବୁ ଦେଶୀ ରଙ୍ଗ ବ୍ୟବହାର କରନ୍ତି, କବି ସେ ସବୁ ରଙ୍ଗର ପରୀକ୍ଷା ମଧ୍ୟ କରିଛନ୍ତି ।

(୧୪୧)

ଦୁଇମାସ ପରେ ଆଲମୋଡ଼ାରୁ ଫେରିଲେ (୧୯୩୭ ଜୁନ ୩୦) । କବି ବେଶ ବୁଝି ପାରୁଥାନ୍ତି ଯେ ତାଂକର ଶରୀର ଅସ୍ତେ ଅସ୍ତେ ଦୁର୍ବଳ ହୋଇ ପଡ଼ୁଛି । ତେଣୁ ବୋଧହୁଏ ଶେଷଥର ପାଇଁ ପତିସର ମାହାଲ ବୁଲି ଆସିଲେ । ଏକମାତ୍ର ଉଦ୍ଦେଶ୍ୟ—ପୁରାତନଙ୍କୁ ଆଉ ଥରେ ଆଖିରେ ଦେଖି ଆସିବେ । ପତିସରରୁ ଫେରିବା ପରେ ଟାଉନ ହଲରେ ଏକ ଜନସଭାରେ କବିଙ୍କୁ ସଭାପତିତ୍ୱ କରିବାକୁ ହେଲା (୧୯୩୭ ଅଗଷ୍ଟ ୨) । ଏହି ସଭାର ଉଦ୍ଦେଶ୍ୟ ଥିଲା ଆଣ୍ଡାମାନରେ ଦ୍ୱୀପାନ୍ତରିତ ରାଜବନ୍ଦୀମାନଙ୍କ ଅନଶନ ଧର୍ମଘଟ ସଂପର୍କରେ ଜନଗଣଙ୍କର ସହାନୁଭୂତି ପ୍ରଦର୍ଶନ ଓ ଇଂରେଜ ସରକାରଙ୍କର ହୃଦୟହୀନ ମନୋବୃତ୍ତି ଓ ଆଚରଣର ପ୍ରତିବାଦ ଜ୍ଞାପନ । ସଭା ଶେଷରେ କବି ଆଣ୍ଡାମାନର ରାଜବନ୍ଦୀମାନଙ୍କ ନିକଟକୁ ଟେଲିଗ୍ରାମ କରି ଜଣାଇ ଦେଲେ ଯେ ଦେଶ ସେମାନଙ୍କର ପଛରେ ରହିଛି ।

ଶାନ୍ତିନିକେତନ ଫେରି ଆସିଛନ୍ତି । ବର୍ଷା ଆସିଛି । ଦୀର୍ଘଦିନ ବଙ୍ଗଳା, 'ଛଡ଼ା ଓ ଛବି' ମଧ୍ୟରେ ମନଥିଲା ନିବଦ୍ଧ । ବର୍ଷଣ ମୁଖର ଦିନରେ ଏଥର ଦେଖାଦେଲା ସଂଗୀତର ଆବେଦନ । ସଂଗୀତଗୁଡ଼ିକ ଏକତ୍ର କରି ବର୍ଷାମଂଗଳ ଉତ୍ସବ କରିବା ପାଇଁ କଲିକତା ଗଲେ । 'ଛାୟା' ପ୍ରେକ୍ଷାଗୃହରେ ଏହା ଅଭିନୀତ ହେଲା ।

କଲିକତାରୁ ଫେରି କବି ଦିନେ ସନ୍ଧ୍ୟାରେ କଥାବାର୍ତ୍ତା କରୁ କରୁ ମୂର୍ଚ୍ଛା ହୋଇ ପଡ଼ିଲେ (୧୩୪୪, ଭାଦ୍ର ୨୪) । ଦିନେ ଦୁଇଦିନ ମଧ୍ୟରେ ସୁସ୍ଥହେଲେ ସତ୍ୟ; କିନ୍ତୁ ନୂତନ ଅଭିଜ୍ଞତା ହେଲା ଅନ୍ତର୍ଜୀବନର । ସେହି ଅଭିଜ୍ଞତା ଫଳରେ ଯେଉଁ କେତୋଟି

କବିତା ଲେଖିଥିଲେ ତାହା 'ପ୍ରାନ୍ତିକ' ଗ୍ରନ୍ଥରେ ସଂକଳିତ ହୋଇଅଛି ।

ସୁସ୍ଥ ହେବା ପରେ ଯଥାବିଧି କାର୍ଯ୍ୟ ଆରମ୍ଭ କଲେ । ବିଶ୍ୱ-ପରିଚୟ ମୁଦ୍ରିତ ହୋଇ ପଡ଼ି ରହିଥିଲା, ତାହାର ଭୂମିକା ଲେଖିଲେ ଆଶ୍ୱିନ ଦୁଇ ତାରିଖରେ ।

ଶରୀର କ୍ରମେ ବିଗିଡ଼ି ଯାଉଥିବା କଥା କବି ବୁଝିପାରିଲେ । କଲିକତା ଗଲେ ଚିକିତ୍ସା ପାଇଁ, ରହିଲେ ପ୍ରଶାନ୍ତଚନ୍ଦ୍ରଙ୍କର ଘରେ । କଲିକତାରେ ସେତେବେଳେ ଖୁବ୍ ଉତ୍ତେଜନା; କଂଗ୍ରେସ କର୍ମୀମାନଙ୍କର ସଭା ବସୁଥାଏ । ଗାନ୍ଧିଜୀ ପ୍ରମୁଖ ସମସ୍ତ ନେତାମାନେ ଆସିଥାନ୍ତି । କବିଙ୍କ ସହିତ ଅନେକ ଦେଖା କରିବାକୁ ଆସିଲେ । କବିଙ୍କର ହଠାତ୍ ଅସୁସ୍ଥତା ଖବର ପାଇ ଗାନ୍ଧିଜୀ ମଧ୍ୟ କବିଙ୍କୁ ଦେଖିବାକୁ ଗଲେ ।

'ଜାତୀୟ ସଙ୍ଗୀତ' କ'ଣ ହେବ ସେ ବିଷୟ ନେଇ କଂଗ୍ରେସ ମଧ୍ୟରେ ବାକ୍‌ବିତଣ୍ଡା ଚାଲିଥାଏ । ଦଳେ 'ବନ୍ଦେ ମାତରଂ' ଗୀତ'ର ପକ୍ଷପାତୀ । ଜବାହରଲାଲ ପ୍ରଭୃତିଙ୍କ ମତରେ 'ବନ୍ଦେମାତରଂ'କେବେ ହେଲେ ସର୍ବଜାତି ପକ୍ଷରେ ଗ୍ରାହ୍ୟ ହୋଇପାରିବ ନାହିଁ । ରବୀନ୍ଦ୍ରନାଥ ଏହି ସମ୍ବନ୍ଧରେ ତାଙ୍କର ମତ କଂଗ୍ରେସ ସଭାପତି ଜବାହରଲାଲଙ୍କୁ ଲେଖି ଜଣାଇଲେ । କବି ସମସ୍ତ ଗୀତଟି ଜାତୀୟ ସଙ୍ଗୀତ ରୂପେ ଗ୍ରହଣ କରିବା ସପକ୍ଷରେ ମତ ଦେଇ ପାରିଲେ ନାହିଁ । ଏପରି ଅଭିମତ-ପ୍ରକାଶ ପାଇଁ କୌଣସି କୌଣସି ଉଗ୍ର ଜାତୀୟବାଦୀ ପତ୍ରିକା କବିଙ୍କୁ ଭୀଷଣଭାବରେ ଆକ୍ରମଣ କରିଥିଲେ । କେତେକ ଏପରି ମତ ବ୍ୟକ୍ତ କରିଥିଲେ ଯେ ରବୀନ୍ଦ୍ରନାଥଙ୍କର ସ୍ୱଦେଶ ସଙ୍ଗୀତ ବଙ୍ଗ ଦେଶକୁ କୌଣସି ପ୍ରେରଣା ଦେଇନାହିଁ । କହିବା ବାହୁଲ୍ୟ ଯେ କବି ଏହି ଦଳାଦଳିଠାରୁ ଦୂରରେ ଥିଲେ । କଂଗ୍ରେସର ଅଧିକାଂଶ ସଭ୍ୟଙ୍କ ମତାନୁଯାୟୀ 'ବନ୍ଦେମାତରଂ' ସଙ୍ଗୀତର ପ୍ରଥମ ସ୍ତବକଟି ଜାତୀୟ ସଙ୍ଗୀତରୂପେ ଗୃହୀତ ହେଲା (୧୯୩୭ ନଭେମ୍ବର) ।

(୧୪୨)

ଶାନ୍ତିନିକେତନ ଫେରିଆସିଲେ । ମନ ନାନା କାର୍ଯ୍ୟରେ ବ୍ୟସ୍ତ । 'ବଙ୍ଗଳା କାବ୍ୟ ପରିଚୟ' ସଙ୍କଳନ କରାଉଥାନ୍ତି । 'ଗୀତ ବିତାନ'ର ନୂତନ ସଂସ୍କରଣ ପାଇଁ ସହସ୍ରାଧିକ ଗୀତକୁ ବିଷୟାନୁସାରେ ସଜାଉ-ଥାନ୍ତି—ପୂର୍ବ ସଂସ୍କରଣର ବିଷୟସଜ୍ଜା ଥିଲା ସମୟାନୁଯାୟୀ । ନୂତନ-ଭାବରେ ସଜାଇବାରେ କବିଙ୍କର ପରିଶ୍ରମ କମ୍ ହୋଇନି । ତାହାର ପ୍ରମାଣ ସେହି ପୁସ୍ତକରୁ ହିଁ ମିଳେ ।

ଦେଶବିଦେଶରୁ ଚିଠିପତ୍ର ଆସେ, ଯଥାସାଧ୍ୟ ଉତ୍ତର ଦିଅନ୍ତି । ଏଥିମଧ୍ୟରୁ ଗୋଟିଏ ଚିଠି ଉଲ୍ଲେଖ ଯୋଗ୍ୟ; ତାହା ଖୋଲା ଚିଠିରୂପେ ବିଲାତରୁ ପ୍ରକାଶିତ ହୋଇଥିଲା । ୧୯୩୫ ମସିହା ନୂତନ ଶାସନ ବ୍ୟବସ୍ଥା ସଂପର୍କରେ ଭାରତୀୟମାନଙ୍କର ମତ କ'ଣ, ଏହାହିଁ ଥିଲା ପ୍ରଶ୍ନ । କବି ଉତ୍ତରରେ ଲେଖିଲେ ଯେ ଭାରତକୁ ଯେଉଁ ଧରଣର ସ୍ୱାୟତ୍ତ ଦିଆଯାଇଛି, ତାହା ଯଦି ଇଂରେଜମାନଙ୍କୁ ଦିଆଯାଇଥାନ୍ତା ତେବେ ସେମାନେ ଘୃଣାରେ ତାହା ସ୍ପର୍ଶ କରି ନଥାନ୍ତେ । ସେ ସ୍ପଷ୍ଟ କହିଥିଲେ ଯେ ଯେତେଦିନ ଇଂରେଜମାନେ ଭାରତକୁ ନିଜର ହାତ ମୁଠା ଭିତରେ ରଖିବାକୁ ଚାହିଁବେ ସେତେଦିନ ସେମାନଙ୍କ ପକ୍ଷରେ ଆମଠାରୁ ଶ୍ରଦ୍ଧା ବା ବନ୍ଧୁତ୍ୱ ଆଶା କରିବା ବୃଥା । ଦ୍ୱିତୀୟ ମହାସମର ହେବାକୁ ସେତେବେଳକୁ ଦୁଇ ବର୍ଷ ବାକି ଅଛି । କବି ୟୁରୋପର ଅଭ୍ୟନ୍ତରୀଣ ଅବସ୍ଥା ସଂପର୍କରେ ଠିକ୍ ଜାଣିଥିଲେ ସେଥିରେ ଲେଖିଲେ ଯେ ୟୁରୋପୀୟ ଜାତିଗୁଡ଼ିକ ପରସ୍ପର ମଧ୍ୟରେ ହଣାକଟାର ବିପୁଳ ଆୟୋଜନରେ ନିଯୁକ୍ତ ( Paving the path for mutual annihilation)— କଥାଟା ଦୈବବାଣୀ ପରି ସତ୍ୟ ।

ସାମୟିକ ବିଷୟରେ ଚିଠି ଲେଖିବା, ସଭା କରିବା, ବିଶ୍ୱଭାରତୀ କର୍ତ୍ତୃପକ୍ଷଙ୍କର ବିଭିନ୍ନ କାର୍ଯ୍ୟରେ ସାହାଯ୍ୟ କରିବା ଭଳି ନିତ୍ୟକର୍ମ ତ ଅଛି; ରସଲୋକର ନୂତନ ପ୍ରେରଣାରେ 'ଚଣ୍ଡାଲିକା'କୁ ନୃତ୍ୟନାଟ୍ୟ ହିସାବରେ ରୂପାୟିତ କରିବାକୁ ପ୍ରବୃତ୍ତ ହେଲେ । ଚଣ୍ଡାଲିକା ମୂଳତଃ ଥିଲା ଗଦ୍ୟରଚନା; ଏଥର ଗଦ୍ୟ ଛନ୍ଦରେ ସ୍ୱର ଯୋଗ କଲେ—ଏକ ଅଭିନବ ପରୀକ୍ଷା । ମେଲଡ଼ିନ କବିତାରେ ଏହା ପୂର୍ବରୁ ସ୍ୱର

ସଂଯୋଗ କରିଛନ୍ତି—ତା'ର ତାଲିକା ଅଳ୍ପ ନୁହେଁ । ପ୍ରଚଳିତ 'ଗୀତ ବିତାନ' ତୃତୀୟ ଖଣ୍ଡର ଶେଷରେ 'ଗ୍ରନ୍ଥ ପରିଚୟ' ଦେଖିଲେ ତାହା ଆଖିରେ ପଡ଼ିବ ।

ଦୋଳ ପୂର୍ଣ୍ଣିମାର ବସନ୍ତୋତ୍ସବ ଅନୁଷ୍ଠାନ ପରେ 'ଚଣ୍ଡାଳିକା' ଦଳ କଲିକତା ଗଲେ; କବିଙ୍କୁ ଯିବାକୁ ଦିଆଗଲା ନାହିଁ—ଡାକ୍ତରଙ୍କର ନିଷେଧ । କିନ୍ତୁ ନିଜର ସ୍ୱର ସୃଷ୍ଟି ନିଜର ପରିକଳ୍ପିତ ରୂପରଙ୍ଗରେ କିପରି ମଞ୍ଚସ୍ଥ ହେଉଛି ଦେଖିବା ପାଇଁ ମନ ବ୍ୟାକୁଳ ହୋଇ ଉଠିଲା । ଡାକ୍ତରଙ୍କର ନିଷେଧାଜ୍ଞାକୁ ଉପେକ୍ଷା କରି, ଜଣେ ସଙ୍ଗୀଙ୍କୁ ନେଇ କଲିକତା ଚାଲିଗଲେ । 'ଛାୟା' ପ୍ରେକ୍ଷାଗୃହରେ ଉପସ୍ଥିତ ହୋଇ ଦେଖି ଆସିଲେ ନିଜର ରୂପ ସୃଷ୍ଟି ।

(୧୪୩)

ଗ୍ରୀଷ୍ମକାଳରେ କାଲିମ୍ପଙ୍ଗ ଗଲେ । ପୂର୍ବରୁ ଏଠାକୁ ଆସି ନାହାନ୍ତି । କାଲିମ୍ପଙ୍ଗ ସହରଟି ସୁନ୍ଦର ମହକୁମାରେ ହେଲେ ମଧ୍ୟ, ଅଦୂରବର୍ତ୍ତୀ ଦାର୍ଜିଲିଂର ଦୁର୍ବାର ଆକର୍ଷଣ ବେଶୀ ହୋଇଥିବାରୁ ସୌଖୀନ ଲୋକଙ୍କର ବିଶେଷ ଭିଡ଼ ହୁଏ ନାହିଁ—ଗୋଳମାଳ ଓ ଉତ୍ତେଜନା ଅଳ୍ପ ଓ ସାମାଜିକତାର କ୍ଷେତ୍ର ଖୁବ୍ ସଙ୍କୀର୍ଣ୍ଣ । ତେଣୁ କବିଙ୍କୁ ଖୁବ୍ ଭଲ ଲାଗିଲା ।

ଜନ୍ମଦିନରେ ଭାରତୀୟ ଆକାଶବାଣୀ କେନ୍ଦ୍ରର ବିଶେଷ ବ୍ୟବସ୍ଥାରେ ଜନ୍ମଦିନ ସଂପର୍କରେ ଗୋଟିଏ କବିତା ପାଠ କରିଥିଲେ —ସମସ୍ତ ଦେଶ କବିଙ୍କର ମଧୁର ଗମ୍ଭୀର କଣ୍ଠସ୍ୱର ଘରେ ବସି ଶୁଣି ପାରିଲା ।

କାଲିମ୍ପଙ୍ଗରେ ଏକମାସ କଟିଲା—ଲେଖିଲେ 'ବଙ୍ଗ ଭାଷା ପରିଚୟ' । ଏପରି ସମୟରେ ମଂପୁର ମୈତ୍ରେୟୀ ଦେବୀ ନିମନ୍ତ୍ରଣ କଲେ । ସେ ଅଧ୍ୟାପକ ସୁରେନ୍ଦ୍ରନାଥ ଦାସଗୁପ୍ତଙ୍କର କନ୍ୟା; ତାଙ୍କର ସ୍ୱାମୀ ସିଂକୋନା ବଗିଚାର ବଡ଼ କର୍ମଚାରୀ—ମଂପୁରେ ରହୁଥାନ୍ତି ।

ସଂସ୍ପର୍ଶରେ ପ୍ରଥମଥର ପାଇଁ ଆସିଲେ । ଏହି ପରିବାର ସହିତ ଘନିଷ୍ଠତାର ପ୍ରଥମ ସୂତ୍ରପାତ । ମୈତ୍ରେୟୀ ଦେବୀ କବିଙ୍କର ବିଶେଷ ସ୍ନେହପାତ୍ରୀ ହୋଇ ଉଠିଲେ । ତାଂକର ଲେଖା 'ମଂପୁରେ ରବୀନ୍ଦ୍ରନାଥ' ନ ପଢ଼ିଥିବା ରବୀନ୍ଦ୍ର ସାହିତ୍ୟାମୋଦୀ ବୋଧହୁଏ ବିରଳ । ରବୀନ୍ଦ୍ରନାଥଙ୍କର କଥାବାର୍ତ୍ତା, ଭାବ ଓ ଭାବନା ସମ୍ପର୍କରେ ଅତି ସୁନିପୁଣ ଭାବରେ ଲେଖା ହୋଇଛି ।

(୧୪୪)

ଦୁଇମାସ କଟାଇ ଫେରିଲେ । ନାନା କାରଣରୁ ମନ ଖୁବ୍ ଉଦ୍‌ବିଗ୍ନ । ଉଦ୍‌ବେଗର ପ୍ରଧାନ କାରଣ ହେଉଛି ଚୀନ-ଜାପାନ ଯୁଦ୍ଧ । କବିଙ୍କ ନିକଟରେ ଚୀନ ଓ ଜାପାନ ଉଭୟ ପ୍ରିୟ । ତେଣୁ ଜାପାନ ଚୀନ ଉପରେ ଆକ୍ରମଣ କରୁଥିବାର ଦେଖି ମନରେ ଆଘାତ ପାଇଲେ । କିଛି ଦିନ ପୂର୍ବେ ଚୀନ ଉପରେ ଜାପାନର ଆକ୍ରମଣ ସମ୍ପର୍କରେ ଏକ କଡ଼ା ଚିଠି ଲେଖି ଚୀନ ପଠାଇ ଦେଇଥିଲେ । ତାହା ପ୍ରକାଶିତ ହେବା ପରେ ଜାପାନୀମାନେ କବିଙ୍କ ଉପରେ ଖୁବ୍ ବିରକ୍ତ ହୋଇଥିଲେ । ସେମାନଙ୍କର ମୁଖପାତ୍ର ହିସାବରେ ଜାପାନୀ କବି ୟୋନେ ନୋଗୁଚି ଭାରତୀୟ କବିଙ୍କର ମନ୍ତବ୍ୟର ପ୍ରତିବାଦ କରିଥିଲେ । ରବୀନ୍ଦ୍ରନାଥ ଉତ୍ତରରେ ଜାପାନର ରଣୋନ୍ମତ୍ତମାନଙ୍କୁ ଚେମ୍ବରଲେନଙ୍କ ସହିତ ତୁଳନାକରି କହିଲେ ଯେ ଜାପାନର ବ୍ୟବହାରରେ ସେ ମର୍ମାହତ ହୋଇଛନ୍ତି; କାରଣ ଜାପାନକୁ ସେ ବରାବର ଶ୍ରଦ୍ଧା କରି ଆସିଛନ୍ତି । କବିଙ୍କର ଭରସା ଯେ ଦିନେ ଚୀନ ଓ ଜାପାନ ଏହି ତିକ୍ତ ଘଟଣାବଳୀକୁ ଭୁଲିଯାଇ ପରସ୍ପର ସହିତ ହାତ ମିଳାଇବେ । ଏହି ମହାମିଳନ ଏସିଆରେ ମାନବିକତାର ନୂତନ ରୂପ ନେବ । ନୋଗୁଚିଙ୍କୁ ଲେଖିଥିବା ଶେଷପତ୍ରର ଶେଷଭାଗରେ କବି ଲେଖିଥିଲେ—ମୁଁ ଜାପାନୀବାସୀଙ୍କୁ ଭଲ ପାଏ, ସେମାନଙ୍କର

ଜୟ କାମନା କର ପାରବନ, ଅନୁଶୋଚନା ଭିତରେ ସେମାନଙ୍କର 'ପ୍ରାୟୁଶ୍ଚିତ' ହେଉ (Wishing your people, whom love not success but remorse)।

୧୯୩୮ ମସିହାରେ ୟୁରୋପରେ ଶାନ୍ତି ନାହିଁ—ଗୋଟିଏ ପ୍ରଳୟଙ୍କର ଯୁଦ୍ଧ ଯେ କୌଣସି ସମୟରେ ଯେ କୌଣସି ଦେଶରେ ଆରମ୍ଭ ହୋଇଯାଇ ପାରେ। ହିଟ୍ଲର୍ ଜର୍ମାନୀର ସର୍ବୋଚ୍ଚ କର୍ତ୍ତା, କ୍ରମେ କ୍ରମେ ମଧ୍ୟ-ୟୁରୋପ ଗ୍ରାସ କରୁଥାନ୍ତି। ୧୯୩୮ ସେପ୍ଟେମ୍ବର ମାସରେ 'ମ୍ୟୁନିକ୍ ପ୍ୟାକ୍ଟ' ହେଲା—ଯେକୋସ୍ଲୋଭାକିୟାର ସ୍ୱାଧୀନତା ଲୋପ ପାଇଲା। ଏହିସବୁ ଘଟଣାରେ କବିଙ୍କର ମନ ଖୁବ୍ ବିଷାଦଗ୍ରସ୍ତ—ନବଜାତକସ୍ଥ 'ପ୍ରାୟୁଶ୍ଚିତ' କବିତା ଲେଖିଲେ ସେହି ବେଦନା ଫଳରେ।

ପୌଷ ଉତ୍ସବ ସମୟରେ ଏଲ୍ମହାର୍ଷ୍ଟ ଆସିଲେ ବିଲାତରୁ—ଶ୍ରୀନିକେତନରେ ଏ ପର୍ଯ୍ୟନ୍ତ କି କାର୍ଯ୍ୟ ହୋଇଛି ଦେଖିପିବେ। ଏଣ୍ଡ୍ରୁଜ ଆସିଲେ ବହୁଦିନ ପରେ। ୧୯୩୯ ମସିହା ଜାନୁୟାରୀ ମାସର ଆଦ୍ୟଭାଗରେ ଜବାହରଲାଲ ନେହେରୁ ଆସିଲେ ହିନ୍ଦୀଭବନ ଉଦ୍ଘାଟନ ଉପଲକ୍ଷେ। କଂଗ୍ରେସ ପ୍ରେସିଡ଼େଣ୍ଟ ସୁଭାଷଚନ୍ଦ୍ର ବୋଷ ଆସିଲେ ଜବାହରଲାଲଙ୍କ ସହିତ ସାକ୍ଷାତ କରିବା ପାଇଁ। କବିଙ୍କ ଘରେ ଦୁଇଜଣଙ୍କର ସାକ୍ଷାତ ହୋଇଥିଲା। ଏମାନଙ୍କ ମଧ୍ୟରେ କେଉଁ ବିଷୟ ଆଲୋଚନା ହୋଇଥିଲା ଜଣା ଯାଇନି—ସମ୍ଭବତଃ ଏପର୍ଯ୍ୟନ୍ତ କେହି ତାହା ପ୍ରକାଶ କରି ନାହାନ୍ତି।

ଏହି ସମୟ କଂଗ୍ରେସ ପକ୍ଷରେ ଘୋର ସଙ୍କଟକାଳ। ଯଦିଓ ଆଠଟି ପ୍ରଦେଶର ମନ୍ତ୍ରୀ ସଭାରେ ଓ ବ୍ୟବସ୍ଥାପକ ସଭାରେ କଂଗ୍ରେସ ଦଳ ସଂଖ୍ୟାଧିକ୍ୟ ଯୋଗୁ ଶାସନ କ୍ଷମତା ପାଇଥିଲେ। କଂଗ୍ରେସ ସଭାପତି ନିର୍ବାଚନ ନେଇ ନିଜ ନିଜ ମଧ୍ୟରେ ଦଳାଦଳି ଆରମ୍ଭ ହୋଇଥିଲା। ସୁଭାଷଚନ୍ଦ୍ର ଉଗ୍ରପନ୍ଥୀ ହୋଇଥିବାରୁ ଗାନ୍ଧିଜୀ ପ୍ରମୁଖ ନେତାମାନେ ତାଙ୍କର ପୁନଃନିର୍ବାଚନ ପସନ୍ଦ କରୁ ନଥିଲେ।

(୧୪୫)

ଚୀନ ଜାପାନ ଯୁଦ୍ଧରେ ମନରେ ଉଦ୍‌ବେଗ, କଂଗ୍ରେସର ଅଭ୍ୟନ୍ତରୀଣ ଦଳା ଦଳିରେ ମନ ବିପନ୍ନ । କିନ୍ତୁ ଭସା ମେଘର କଳା ଛାଇ ପରି ମନରେ ଅନ୍ଧକାର ଆସେ ଯେପରି ଅପସରି ଯାଏ ସେହିପରି—ସୁଖର ବିଷୟ ଯେ ସ୍ଥାୟୀ ହୋଇନି । କଲିକତାରୁ ଆସି ଜାନୁୟାରୀ ମାସରେ (୧୯୩୯) ପରିଶୋଧ, ଚଣ୍ଡାଳିକା ଓ ତାସେର ଦେଶ ନାଟକ ତିନିଖଣ୍ଡି ସଂଶୋଧନରେ ଲାଗି ପଡ଼ିଲେ । ସ୍ଥିର ହୋଇଥାଏ କଲିକତାରେ ଅଭିନୟ ହେବ । 'ପରିଶୋଧ' ପରିବର୍ତ୍ତିତ ହୋଇ 'ଶ୍ୟାମା' ନାମରେ ରୂପ ପାଇଲା । 'ତାସେର ଦେଶ' ନୂତନ ସଂସ୍କରଣ ଉତ୍ସର୍ଗ କଲେ ସୁଭାଷଚନ୍ଦ୍ର ବସୁଙ୍କୁ । ସେତେବେଳେ ସୁଭାଷଚନ୍ଦ୍ର କଂଗ୍ରେସ ସଭାପତି । ରବୀନ୍ଦ୍ରନାଥ ଉତ୍ସର୍ଗ ପତ୍ରରେ ଲେଖିଥିଲେ—'ସ୍ୱଦେଶର ଚିତ୍ତରେ ନୂତନ ପ୍ରାଣ ସଞ୍ଚାର କରିବାର ପୁଣ୍ୟ ବ୍ରତ ତୁମେ ଗ୍ରହଣ କରିଛ । ସେହିକଥା ସ୍ମରଣ କରି ତୁମରି ନାମରେ 'ତାସେର ଦେଶ' ନାଟିକାଟି ଉତ୍ସର୍ଗ କଲି ।'

ଦିନ ଗଡ଼ି ଚାଲେ ନାନା କାର୍ଯ୍ୟରେ, ନାନା ଲେଖାରେ, ବିଚିତ୍ର ଛବି ଆଙ୍କିବାରେ, କଲିକତା ଯିବା ଆସିବାରେ । ଏଥର ଓଡ଼ିଶା ସରକାର ଗ୍ରୀଷ୍ମକାଳରେ କବିଙ୍କୁ ପୁରୀ ଯିବାପାଇଁ ଆହ୍ୱାନ କଲେ । ପୁରୀର ସର୍କିଟ ହାଉସ୍‌ରେ ତାଙ୍କର ରହିବାର ବ୍ୟବସ୍ଥା ହେଲା । ପ୍ରାୟ ପଚିଶବର୍ଷ ପୂର୍ବେ ପୁରୀ ଆସିଥିଲେ; ସମୁଦ୍ରର ସ୍ମୃତି ବହନ କରି ଲେଖିଥିଲେ 'ସମୁଦ୍ର ପ୍ରତି' କବିତା । ସେ ସବୁ କଥା କବିଙ୍କର ମନେ ପଡ଼ିଲା । ଏଥର କବିତା ଲେଖିଲେ ସତ, କିନ୍ତୁ —'ବର୍ତ୍ତମାନର ଲେଖାରେ ସେଦିନ ପରି ଉଦ୍‌ବେଳ ପ୍ରାଣର ଅଚିନ୍ତିତ ଗତିମତ୍ତତା ଥାଇ ନପାରେ । ହୁଏତ ଅଛି ଆତ୍ମସମାହିତ ମନରେ ଫଳ ଫଳାଇବାର ନିଗୂଢ଼ ଆବେଗ ।'

ପୁରୀରେ ତିନି ସପ୍ତାହ ଥିଲେ । କବିଙ୍କର ଜନ୍ମଦିବସ ତତ୍‌-କାଳୀନ ମୁଖ୍ୟମନ୍ତ୍ରୀ ବିଶ୍ୱନାଥ ଦାସଙ୍କର ଉଦ୍ୟୋଗରେ ମହା-

ସମାରୋହରେ ଅନୁଷ୍ଠିତ ହୋଇଥିଲା । ଏଣ୍ଡ୍ରୁଜ ଏହି ସମୟରେ ପୁରୀରେ ପହଞ୍ଚିବା ଫଳରେ କବି ଅଧିକ ଆନନ୍ଦିତ ହୋଇଥିଲେ ।

(୧୪୭)

ପୁରୀରୁ ଫେରି କବି ମଂପୁ ଗଲେ । ଗତଥର ସେଠାର ପ୍ରାକୃତିକ ପରିବେଶରେ ଯେପରି ଆନନ୍ଦ ପାଇଥିଲେ, ସେପରି ତୃପ୍ତି ପାଇଥିଲେ କଲ୍ୟାଣୀୟା ମୈତ୍ରେୟୀ ଦେବୀଙ୍କର ଯତ୍ନ ଫଳରେ । ଆତ୍ମୀୟ ପରିବେଷ୍ଟିତ ଶ୍ରୀ-ସୁଖ-ସମ୍ପନ୍ନ ପରିବେଶରେ ଯେଉଁ ସ୍ୱାଭାବିକ ଆନନ୍ଦ ଓ ସେବା ମିଳେ, ତାହାର ସ୍ୱାଦରୁ କବି ବହୁକାଳରୁ ବଞ୍ଚିତ । ମୈତ୍ରେୟୀ ଦେବୀଙ୍କର ପରିବାରରେ କବି ସତେ ଯେପରି ତାହା ଫେରି ପାଇଲେ । ମଂପୁରେ ପ୍ରାୟ ଏକମାସ ଆନନ୍ଦରେ କଟାଇଲେ ।

ବର୍ଷା ଆସିବା ପୂର୍ବରୁ ଫେରି ଆସିଲେ ( ୧୯୩୯ ଜୁନ ୧୭ ) । ଦେଶର ଆଭ୍ୟନ୍ତରୀଣ ସମ୍ବାଦ ଯେପରି ଦୁଃଖପୂର୍ଣ୍ଣ, ପଶ୍ଚିମ ସାଗର ପାରରେ ସେହିପରି ଘନଘଟାପୂର୍ଣ୍ଣ ସମର ଆୟୋଜନ ।

କଂଗ୍ରେସ ମଧ୍ୟରେ ବିରୋଧ ଭାବ ବଢ଼ିଛି — ସୁଭାଷଚନ୍ଦ୍ର ବୋଷ ଦ୍ୱିତୀୟଥର କଂଗ୍ରେସ ସଭାପତି ନିର୍ବାଚିତ ହେବା ଫଳରେ ଗାନ୍ଧିଜୀ ବିରକ୍ତ । ସେ ଚାହିଁଥିଲେ ଯେ ପଟ୍ଟାଭି ସୀତାରାମାୟା ସଭାପତି ହେବେ । ସୁଭାଷଚନ୍ଦ୍ର ଗାନ୍ଧିଜୀଙ୍କର ସର୍ବସହିଷ୍ଣୁ ନୀତିର ଅନୁମୋଦକ ହୋଇ ନଥିବାରୁ କଂଗ୍ରେସର ଉଚ୍ଚ କର୍ତ୍ତୃପକ୍ଷ ତାଙ୍କ ଉପରେ ରୁଷ୍ଟ । ଶେଷରେ ଅବସ୍ଥା ଏପରି ହେଲା ଯେ ସୁଭାଷଚନ୍ଦ୍ରଙ୍କୁ ବାଧ୍ୟ ହୋଇ ତ୍ରିପୁରୀ ଅଧିବେଶନ ପରେ ସଭାପତି ପଦ ତ୍ୟାଗ କରିବାକୁ ପଡ଼ିଲା । ଶେଷରେ କଂଗ୍ରେସରେ ବି ସେ ରହି ପାରିଲେ ନାହିଁ ।

ଏହିସବୁ ଘଟଣାରେ କବି ଖୁବ୍ ଉଦ୍‌ବିଗ୍ନ । ସ୍ୱରାଜଲାଭ ପୂର୍ବରୁ ସଙ୍ଘମାନଙ୍କର ଏ କେଉଁ ମୂର୍ତ୍ତି ! କଂଗ୍ରେସ ଆଠଟି ପ୍ରଦେଶ ଚଳାଉଥାନ୍ତି । କିନ୍ତୁ ବଙ୍ଗ ଦେଶର ଅବସ୍ଥା ମୁସଲିମ୍ ଲିଗ୍‌ର ଶାସନରେ କିପରି

ଆକାର ଧାରଣ କରିଥିଲା ତାହାର ବାସ୍ତବବୋଧ ଅନେକଙ୍କର ନଥିଲା । ରବୀନ୍ଦ୍ରନାଥ ଲେଖିଲେ, 'ପୃଥିବୀର ଯେଉଁ ଦେଶରେ ବା ଯେଉଁ ବିଭାଗରେ କ୍ଷମତା କେନ୍ଦ୍ରୀଭୂତ ହୋଇ ପଡ଼େ— ସେଠାରେ ଭିତରେ ଭିତରେ ସେ ନିଜର ମାରଣ-ବିଷ ଉଦ୍ଭାବିତ କରେ ।······କଂଗ୍ରେସର ଅନ୍ତଃସଞ୍ଚିତ କ୍ଷମତାର ତାପ ତାହାର ଅସ୍ୱାସ୍ଥ୍ୟର କାରଣ ହୋଇ ପଡ଼ୁଛି ବୋଲି ସନ୍ଦେହ ହୁଏ ।'

କଂଗ୍ରେସର ଦଳେ ମୂର୍ଖ ଭକ୍ତ ତ୍ରିପୁରୀ ଅଧିବେଶନରେ ଗାନ୍ଧିଜୀଙ୍କୁ ମୁସୋଲିନୀ ଓ ହିଟଲରଙ୍କ ସହିତ ତୁଳନା କରି ଜୟଧ୍ୱନି କରିଥିଲେ । ଏହାଦ୍ୱାରା ଗାନ୍ଧିଜୀଙ୍କୁ ବିଶ୍ୱସମକ୍ଷରେ କେତେ ଛୋଟ କରିଥିଲେ ସେ ଜ୍ଞାନ ସେମାନଙ୍କର ନଥିଲା ।

ବିଦେଶର ସଂବାଦ ଆହୁରି ଘାତ ପ୍ରତିଘାତମୟ ଓ ମର୍ମାନ୍ତିକ । ଚୀନ ଉପରେ ଜାପାନର ଅତ୍ୟାଚାର ସଂପର୍କରେ ମଂପୁରେ ଦିନେ କହିଥିଲେ—'ଇଚ୍ଛା ହୁଏନା ଖବରକାଗଜ ପଢ଼ିବା ପାଇଁ, ଇଚ୍ଛା ହୁଏନା ରେଡ଼ିଓରୁ ଖବର ଶୁଣିବା ପାଇଁ । କିନ୍ତୁ ନଶୁଣି ବି ରହି ପାରେନା । ଆଖି ବନ୍ଦ କଲେ ତ ବେଦନା ଉପଶମ ହୁଏନା । ଏ ଅତ୍ୟାଚାରର ଇତିହାସ ଅସହ୍ୟ ହୋଇ ଉଠୁଛି । ଆଉ ବଞ୍ଚି ରହିବାକୁ ଇଚ୍ଛା କରେନାହିଁ । ଏ ପୃଥିବୀ ବାସସ୍ଥାନର ଅଯୋଗ୍ୟ ହୋଇ ପଡ଼ୁଛି । ···ଏ ନୃଶଂସତା ଆଉ କେତେ ଦେଖିବି ?'

(୧୪୭)

କବି ମଂପୁରୁ ଫେରି ଶ୍ରୀନିକେତନ ଓ ଶାନ୍ତିନିକେତନରେ ଦୁଇମାସ କଟାଇଲେ । ଶ୍ରୀନିକେତନର କର୍ମୀମାନଙ୍କୁ ଡକାଇ, ସେଠା କାର୍ଯ୍ୟର ତାତ୍ପର୍ଯ୍ୟ ସମ୍ପର୍କରେ ସେମାନଙ୍କୁ ବୁଝାଇଲେ । ଏହି ହେଉଛି କବିଙ୍କର ଶେଷ ଶ୍ରୀନିକେତନ-ବାସ ।

ଏହାମଧ୍ୟରେ କଲିକତାସ୍ଥ ମହାଜାତି ସଦନର ଭିତ୍ତିପ୍ରସ୍ତର ସ୍ଥାପନ କରିବାପାଇଁ ସୁଭାଷଚନ୍ଦ୍ରଙ୍କ ନିକଟରୁ ଆହ୍ୱାନ ଆସିଲା ।

ସୁଭାଷଚନ୍ଦ୍ର କଂଗ୍ରେସର ସଭାପତି ଥିବାବେଳେ କଲିକତାରେ କଂଗ୍ରେସ ଭବନ ନିର୍ମାଣ କରିବାର ସଂକଳ୍ପ ଗ୍ରହଣ କରି ଅର୍ଥ ସଂଗ୍ରହ କରିଥିଲେ । ଗୃହ ନିର୍ମାଣ ପାଇଁ କର୍ପୋରେସନ ଜମି ଦାନ କରିଥିଲେ । ରବୀନ୍ଦ୍ରନାଥ ଏହି କଂଗ୍ରେସ-ଭବନର ନାମ ଦେଲେ ମହାଜାତିସଦନ—ଭିତ୍ତିପ୍ରସ୍ତର ସ୍ଥାପନ କଲେ ।

ପରଦିନ ଯୋଡ଼ାସାଁକୋରେ ଗୀତୋତ୍ସବ । ଜବାହରଲାଲ କଲିକତା ଦେଇ ଚୀନ ଯାଉଥିଲେ; ଶୁଣିଲେ କବି କଲିକତାରେ । ହାତରେ ସମୟ ଖୁବ୍ କମ୍, ତଥାପି କବିଙ୍କ ସହିତ ଦେଖା କରି-ଗଲେ—କାରଣ ଚୀନ ସହିତ ଘନିଷ୍ଠତାର ସ୍ୱପ୍ନ ଦେଖୁଥିଲେ ରବୀନ୍ଦ୍ରନାଥ । ଜବାହରଲାଲ ଦେଖାକରିବାକୁ ଆସିବାବେଳେ କବି ତାଙ୍କୁ କହିଥିଲେ, 'ମୁଁ ଆଶା କରେ ଯେ ତୁମେ ଚୀନ ଯାଇ ଭାରତର ସୁବମନର ଦୂତରୂପେ ଏସିଆର ଐକ୍ୟର ଐତିହାସିକ ତତ୍ତ୍ୱକୁ ସୁଦୃଢ଼ କରିବ ।' ପ୍ରାୟ ଦଶବର୍ଷ ବ୍ୟବଧାନରେ ଭାରତ ସ୍ୱାଧୀନ ହେବା ପରେ (୧୯୪୮) ଦିଲ୍ଲୀରେ ଯେତେବେଳେ ଏସିଆବାସୀଙ୍କର ସମ୍ମିଳନୀ ଆହୂତ ହୋଇଥିଲା, ସେ ଦିନର ସଭାରେ କେହି ରବୀନ୍ଦ୍ରନାଥଙ୍କୁ ସ୍ମରଣ କରିଥିଲେ କି ? ରବୀନ୍ଦ୍ର-ନାଥ ପୃଥିବୀ ସହିତ ଭାରତର ଐକ୍ୟ ବନ୍ଧନର ପ୍ରଥମ ଦୂତ ନୁହନ୍ତି କି ?

ମହାଜାତି ସଦନର କାର୍ଯ୍ୟ ଶେଷକରି ରବୀନ୍ଦ୍ରନାଥ ଶାନ୍ତି-ନିକେତନ ଫେରିଲେ । ଭାଦ୍ରବ ମାସର ଭରା ବର୍ଷା କାଳ । ଏପର୍ଯ୍ୟନ୍ତ ବର୍ଷାର ଆବାହନ ହୋଇନି । ଲେଖିବାକୁ ଆରମ୍ଭ କଲେ ସଙ୍ଗୀତ ଓ କବିତା—'ସାନାଇ' ଗ୍ରନ୍ଥର ଅନେକଗୁଡ଼ିଏ ରଚନା ଏହି ସମୟର ଲେଖା ।

(୧୪୮)

୧୯୩୯ ମସିହା ସେପ୍‌ଟେମ୍ବର ପହିଲାରେ ଦ୍ୱିତୀୟ ମହାଯୁଦ୍ଧ ଆରମ୍ଭ ହେଲା । ଜର୍ମାନୀ ପୋଲାଣ୍ଡ ଆକ୍ରମଣ କରିବାର ଦୁଇଦିନ

ପରେ ଇଂରେଜ ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କଲା ଓ ପନ୍ଦର ଦିନ ମଧ୍ୟରେ ସୋଭିଏଟ ଋଷିଆ ପୂର୍ବଦିଗରୁ ପୋଲାଣ୍ଡ ଉପରେ ଲମ୍ଫ ପ୍ରଦାନ କଲା । ପୋଲାଣ୍ଡବାସୀମାନେ କୋଡ଼ିଏ ବର୍ଷ ଧରି ବହୁ ଯତ୍ନରେ ଯେଉଁ ରାଜ୍ୟ ଗଢ଼ିଥିଲେ, ତାହା କେତେକ ଦିନର ବୋମା ବର୍ଷଣରେ ଧୂଳିସାତ୍ ହୋଇଗଲା ।

ରବୀନ୍ଦ୍ରନାଥ କଲିକତା ଆସିଥାନ୍ତି । ଶରତ କାଳଟି ସେଠାରେ କଟାଇବା ପାଇଁ ମଂପୁ ବାହାରିଲେ । କଲିକତା ଆସି ଦେଖିଲେ ଯେ ଯୁଦ୍ଧ ଘୋଷଣାର କେତେକ ଦିନ ମଧ୍ୟରେ ଦେଶର ରାଜନୈତିକ ଅବସ୍ଥା ଜଟିଳ ହୋଇ ଉଠିଥାଏ । ଜର୍ମାନୀ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ବ୍ରିଟିସ ସରକାର କହିଲେ ଯେ ଏହା ବ୍ରିଟିସ ସାମ୍ରାଜ୍ୟର ଯୁଦ୍ଧ, ଅତଏବ ଭାରତର ମଧ୍ୟ ଯୁଦ୍ଧ । ପ୍ରଶ୍ନ ଉଠିଲା ଯେ ଯାହା ଭାରତର ବୈଦେଶିକ ସରକାରଙ୍କର କର୍ତ୍ତବ୍ୟ, ତାହା କଣ ଭାରତବାସୀଙ୍କର ମଧ୍ୟ କର୍ତ୍ତବ୍ୟ ? ଭାରତ ସ୍ୱାଧୀନତା ଚାହିଁ ଆସିଛି; ଇଂରେଜ କି ପ୍ରତିଶ୍ରୁତି ଦେଇଛି ? ଦେଖାଯାଉଛି ଯେ ବ୍ରିଟେନ ପ୍ରତି ଭାରତର କର୍ତ୍ତବ୍ୟ ଯେତିକି ସ୍ପଷ୍ଟ, ଭାରତ ପ୍ରତି ବ୍ରିଟେନର କର୍ତ୍ତବ୍ୟ ସେତିକି ଅସ୍ପଷ୍ଟ । ଭାରତୀୟ ନେତାମାନେ ଘୋଷଣା କଲେ ଯେ ପୃଥିବୀରେ ଗଣତନ୍ତ୍ରର ସୁରକ୍ଷା ପାଇଁ ସ୍ୱାଧୀନ ଭାରତ ଯେପରି ସ୍ୱାଧୀନଭାବରେ ସବୁପ୍ରକାର ସାହାଯ୍ୟ କରି ପାରିବ, ସେଥିପାଇଁ ଇଂରେଜ ପ୍ରଥମେ ସ୍ୱଶାସନ ବା ସ୍ୱରାଜ୍ୟ ପ୍ରତିଷ୍ଠିତ କରିବାକୁ ଦେଇ ଭାରତ ସହିତ ଚିରସ୍ଥାୟୀ ବନ୍ଧୁତ୍ୱ କରିବା ଦରକାର । ଏହି ବିବୃତିରେ ବହୁ ନେତୃସ୍ଥାନୀୟ ଲୋକଙ୍କର ସ୍ୱାକ୍ଷର ଥିଲା—ସର୍ବୋପରି ଥିଲା ରବୀନ୍ଦ୍ରନାଥଙ୍କର ।

କଲିକତାରେ ଏହି ସକଳ ସମସ୍ୟା ମଧ୍ୟରେ କିଛିଦିନ କାଟିଦେଇ ରହି ସେପଟେମ୍ବର ୧୨ ତାରିଖରେ କବି ମଂପୁ ଯାତ୍ରା କଲେ । ସେଠାରେ ଦୁଇମାସ ଥିଲେ । ଶାନ୍ତିନିକେତନ ଫେରିଲେ ନଭେମ୍ବର ୧୧ ତାରିଖରେ । କବିତା ଲେଖୁଥାନ୍ତି, ରାଜନୀତି ସମ୍ପର୍କୀୟ ବହୁ ପତ୍ର-ପ୍ରବନ୍ଧ ନାନା ସାମୟିକ ପତ୍ରିକାରେ ପ୍ରକାଶ କରୁଥାନ୍ତି । ବହୁ ଦିନପରେ ଗୋଟିଏ ଛୋଟ ଗଳ୍ପ ଲେଖିଲେ— 'ଶେଷ କଥା' ।

(୧୪୯)

ମେଦିନୀପୁରରେ ବିଦ୍ୟାସାଗର ସ୍ମୃତିମନ୍ଦିର ନିର୍ମିତ ହୋଇଥାଏ । ରବୀନ୍ଦ୍ରନାଥଙ୍କୁ ଗୃହ ଉଦ୍‌ଘାଟନ କରିବା ପାଇଁ ଯିବାକୁ ପଡ଼ିଲା । ଶ୍ରୀ ବିନୟରଞ୍ଜନ ସେନ ସେତେବେଳେ ଏହି ଜିଲ୍ଲାର ଶାସନକର୍ତ୍ତା । ତାଙ୍କର ଚେଷ୍ଟାରେ ଗୃହ ନିର୍ମିତ ହୋଇଥାଏ— ବିଦ୍ୟାସାଗରଙ୍କର ଗ୍ରନ୍ଥାବଳୀ ପ୍ରକାଶ କରିବାର ବ୍ୟବସ୍ଥା ବି ହୋଇଥାଏ ।

କବି ବୋଲପୁରରୁ ଯାତ୍ରା କଲେ ମେଦିନୀପୁର—ହାଓଡ଼ା ଷ୍ଟେସନରେ ସ୍ପେଶାଲ୍ ଗାଡ଼ିରେ ରହିଲେ । ସହରକୁ ଯାଇ କର୍ପୋରେସନର ଖାଦ୍ୟପୁଷ୍ଟି ସମ୍ବନ୍ଧୀୟ ପ୍ରଦର୍ଶନୀରେ ବକ୍ତୃତା ଦେଇ ଆସିଲେ । ସେହିଦିନ ସୁଭାଷଚନ୍ଦ୍ର କବିଙ୍କ ସହିତ ଦେଖା କରିବାକୁ ଷ୍ଟେସନ ଆସିଥିଲେ ବୋଲି ଶୁଣାଯାଏ । ଏମାନଙ୍କର ଆଳାପ-ଆଲୋଚନାର ବିବରଣୀ ପ୍ରକାଶିତ ହୋଇନି । ମେଦିନୀ-ପୁରରୁ ଫେରି ରବୀନ୍ଦ୍ରନାଥ ଗାନ୍ଧିଜୀଙ୍କୁ ପତ୍ର ଦେଇ ଅନୁରୋଧ କଲେ ଯେ ସୁଭାଷଙ୍କ ଉପରୁ କଂଗ୍ରେସର ଶାସ୍ତି ବିଧାନ ପ୍ରତ୍ୟା-ହାର କରି ନିଆଯାଉ । ଗାନ୍ଧିଜୀ ଅଟଳ; ଜଣାଇଲେ ଯେ ତାହା ଅସମ୍ଭବ ।

ମେଦିନୀପୁରରେ କର୍ତ୍ତବ୍ୟ ଶେଷ କରି ପୌଷ ଉତ୍ସବ ପୂର୍ବରୁ ଆଶ୍ରମକୁ ଫେରିଲେ । ପୌଷ ସାତର ଭାଷଣ 'ଅନ୍ତର୍ଦେବତା' ପୂର୍ବରୁ ଛପାଇ ବାଣ୍ଟି ଦେଇଥିଲେ । ଏହାର କାରଣ ଥିଲି । ଏହି ଭାଷଣରେ ଦ୍ୱିତୀୟ ବିଶ୍ୱଯୁଦ୍ଧର କାରଣ ସମ୍ପର୍କରେ ବିଶ୍ଳେଷଣ କରା ଯାଇଥିଲା । ଯୀଶୁ ଖ୍ରୀଷ୍ଟଙ୍କର ଜନ୍ମଦିନରେ ଲେଖିଲେ ସଂଗୀତ—'ଏକଦିନ ଯାରା ମେରେଛିଲ ତାଁରେ ଗିଯେ, ରାଜାର ଦୋହାଇ ଦିଯେ ।' ଆହୁରି ମଧ୍ୟ କହିଥିଲେ—ଆଜି ସେହିମାନଙ୍କ ମଧ୍ୟରୁ କେହି ବୁଦ୍ଧ ବା କେହି ଖ୍ରୀଷ୍ଟଙ୍କ ନାମରେ ପ୍ରଣାମ ନିବେଦନ କରୁଛନ୍ତି ।

(୧୫୦)

୧୯୪୦ ଫେବୃୟାରୀ ୧୭ ତାରିଖ । ଗାନ୍ଧିଜୀ ଓ କସ୍ତୁରୀ ବାଈ କବିଙ୍କୁ ଦେଖିବା ପାଇଁ ଶାନ୍ତିନିକେତନ ଆସିଲେ । କବିଙ୍କର ଶରୀର ଯେ ଦ୍ରୁତ ଗତିରେ ଦୁର୍ବଳ ହୋଇ ପଡ଼ୁଛି ତାହା ସମସ୍ତେ ବୁଝି ପାରୁଥାନ୍ତି । ୧୯୧୫ ମସିହାରେ ଉଭୟ ଆସିଥିଲେ—ଗାନ୍ଧିଜୀ ଏକା ମଧ୍ୟ ଦୁଇଥର ଆସିଥିଲେ ।

ଗାନ୍ଧିଜୀ ପ୍ରାୟ ଦୁଇଦିନ ଆଶ୍ରମରେ ରହିଲେ । ପ୍ରତ୍ୟେକ ବିଭାଗ ବୁଲି ଦେଖିଲେ । ଆଶ୍ରମ ତ୍ୟାଗ କରିବା ପୂର୍ବରୁ କବି ତାଙ୍କ ହାତରେ ଖଣ୍ଡିଏ ପତ୍ର ଦେଇଥିଲେ; ସେଥିରେ ଲେଖାଥିଲା ଯେ ତାଙ୍କର ଅବର୍ତ୍ତମାନରେ ଗାନ୍ଧିଜୀଙ୍କ ଉପରେ ବିଶ୍ୱଭାରତୀର ଭାର ନ୍ୟସ୍ତ ରହିଲା । କଲିକତା ଯାଇ ଗାନ୍ଧିଜୀ ମୌଲନା ଆବୁଲ କଲମ ଆଜାଦଙ୍କୁ ପତ୍ରଖଣ୍ଡିକ ଦେଇଥିଲେ । ତାର ଦୀର୍ଘକାଳ ପରେ ୧୯୫୧ ମସିହାରେ ଭାରତ ସରକାର ବିଶ୍ୱଭାରତୀର ଭାର ଗ୍ରହଣ କଲେ—ସେତେବେଳେ ରବୀନ୍ଦ୍ରନାଥ ନାହାନ୍ତି, ଗାନ୍ଧିଜୀ ବି ନାହାନ୍ତି ଓ ମୌଲନା ସାହେବ ହୋଇଥାନ୍ତି ଭାରତର ଶିକ୍ଷାମନ୍ତ୍ରୀ ।

ଗାନ୍ଧିଜୀ ଚାଲିଯିବାର କିଛି ଦିନ ପରେ ଦିନକ ପାଇଁ କବି ସିଉଡ଼ି ବୁଲି ଆସିଲେ—ସେଠାରେ ମେଳା ଉଦ୍‌ଘାଟନ କରିବା ପାଇଁ ନିମନ୍ତ୍ରିତ ହୋଇଥିଲେ ।

ପ୍ରାୟ ସପ୍ତାହକ ପରେ ଗଲେ ବାଙ୍କୁଡ଼ା । ଖାନା ଜଙ୍କସନ୍‌ରୁ ମଟରରେ ଗଲେ—ରାସ୍ତାର ଦୁଇ ପାଖରେ ଗ୍ରାମଲୋକେ ଠିଆହୋଇ କବିଙ୍କୁ ସମ୍ବର୍ଦ୍ଧନା ଜଣାଇଥିଲେ । କୌଣସି କୌଣସି ସ୍ଥାନରେ ଭିଡ଼ ସମ୍ଭାଳିବା କଷ୍ଟକର ହୋଇଥିଲା । ବାଙ୍କୁଡ଼ାରେ ବିବିଧ ଅନୁଷ୍ଠାନ—ପ୍ରଦର୍ଶନୀର ଦ୍ୱାର ଉଦ୍‌ଘାଟନ, ପ୍ରସୂତି ସଦନର ଭିତ୍ତିସ୍ଥାପନ, ମେଡ଼ିକାଲ ସ୍କୁଲ ପରିଦର୍ଶନ, କଲେଜରେ ଅଭିଭାଷଣ ପ୍ରଭୃତି ।

ବାଙ୍କୁଡ଼ାର ଛାତ୍ରମାନଙ୍କୁ କବି ଯେଉଁ ଭାଷଣ ଦେଇଥିଲେ ତାହା ଆଜି ବି ସ୍ମରଣ ଯୋଗ୍ୟ । ସେ କହିଥିଲେ, 'ଯେଉଁମାନେ ଅକୁଣ୍ଠିତ ମନରେ ନିୟମ ଭାଙ୍ଗିବାକୁ ଚାହାନ୍ତି, ସେମାନେ କୌଣସି ଦିନ

ନିଯ୍ୟମ ଗଢ଼ି ପାରିବେ ନାହିଁ । ଏହି ଭାଙ୍ଗିବା ମନୋବୃତ୍ତି ସାଙ୍ଘାତିକ ଭାବରେ ବିସ୍ତାର ଲାଭ କରୁଛି...ଦଳାଦଳି ଯୋଗୁ ଫାଟ ଦେଖା ଦେଇଛି ଆଶ୍ରୟ ସୌଧରେ...ସଭା ଭାଙ୍ଗିବା, ଦଳ ଭାଙ୍ଗିବା, ସ୍କୁଲ ଭାଙ୍ଗିବା, ମୁଣ୍ଡ ଫଟାଇବା ସମସ୍ତ ଏହାର ଅନ୍ତର୍ଭୁକ୍ତ ।' ଏ କଥା ବିଶେଷଭାବରେ କହିବାର କାରଣ—କଂଗ୍ରେସ ଓ ଅକଂଗ୍ରେସ ମଧ୍ୟରେ ବିରୋଧ ଦେଖା ଦେଇଥାଏ—ସୁଭାଷଙ୍କର ଦଳ କଂଗ୍ରେସର ପ୍ରଚଳିତ ନୀତି ବିରୁଦ୍ଧରେ ଠିଆ ହୋଇଥାନ୍ତି । ଏହି ମତଭେଦ ଯୋଗୁଁ ଗୃହଆଡ଼େ ଅଶାନ୍ତି; ଏହାଛଡ଼ା ବଂଗଳାରେ ଲୀଗ୍ ମନ୍ତ୍ରୀମଣ୍ଡଳର ଦୌରାତ୍ମ୍ୟ । ବାଙ୍କୁଡ଼ାରୁ କଲିକତା ହୋଇ ଶାନ୍ତିନିକେତନ ଆସିଲେ । ସେତେବେଳେ କଲିକତାରେ ଏଣ୍ଡ୍ରୁଜ୍ ପୀଡ଼ିତ ଅବସ୍ଥାରେ ଆରୋଗ୍ୟ ସଦନରେ; କବି ତାଙ୍କୁ ଦେଖିବାକୁ ଯାଇ ନଥିଲେ ବୋଲି ସମାଲୋଚିତ ହୋଇଥାନ୍ତି । ହାସପାତାଲ, ଜେଲଖାନା ପ୍ରଭୃତି ଯେଉଁ ସ୍ଥାନରେ ମନୁଷ୍ୟକୁ ବାଧ୍ୟ ହୋଇ ରହିବାକୁ ପଡ଼େ, ସେ ସବୁ ସ୍ଥାନକୁ ଯିବା ପାଇଁ କବିଙ୍କୁ ଖୁବ୍ ଖରାପ ଲାଗେ । ତାଙ୍କର ନିଜ ଶରୀର ବି କ୍ରମଶଃ ଖରାପ ଆଡ଼କୁ ଯାଉଥିଲା ।

କବିଙ୍କର ଦିନ କଟୁଛି ଗତାନୁଗତିକ ଭାବରେ । ଶରୀର ଅଶକ୍ତ, କାନକୁ ଖୁବ୍ କମ୍ ଶୁଭୁଛି, ଆଖିକି ଦେଖାଯାଉଛି କମ୍; କିନ୍ତୁ ମନ ଏବେ ବି ସବଳ ସୁସ୍ଥ । ମନର ଖୋରାକ୍ ମିଳୁନି । ଅମିୟଚନ୍ଦ୍ର ଚକ୍ରବର୍ତ୍ତୀଙ୍କୁ ଲେଖିଲେ—'ମୁଁ ମୁସ୍କିଲରେ ପଡ଼ିଛି, ଦେହ କ୍ଳାନ୍ତ, ତାହାଠାରୁ ବେଶି କ୍ଳାନ୍ତ ମୋର ମନ; କାରଣ ମନ ସ୍ଥାଣୁ ହୋଇ ଯାଇଛି, ବୁଲିଚଲି ବନ୍ଦ । ତୁମେ ଥିଲେ ମନ ମଧ୍ୟରେ ସ୍ରୋତର ଧାରା ବହେ—ତାହାର ପ୍ରୟୋଜନ ଯେ କେତେ ତାହା ପାଖ ଲୋକ ବୁଝିପାରନ୍ତି ନାହିଁ ।'

ମନ ନିଜକୁ ସମ୍ପୂର୍ଣ୍ଣ ଭାବରେ ପ୍ରକାଶ କରିବାକୁ ଅକ୍ଷମ, ଦେହ ଯଥେଚ୍ଛା ବିଚରଣ କରିବାକୁ ଅଶକ୍ତ, ନିଜକୁ ଦେଖି ହସ ମାଡ଼େ । ମନର ସେହି ଅବସ୍ଥାରେ 'ଖାପଛଡ଼ା' କବିତା ଲେଖନ୍ତି, ମନକୁ ସତେଜ କରିବା ପାଇଁ । 'ପ୍ରହାସିନୀ' କାବ୍ୟଲକ୍ଷ୍ମୀ ନୂତନ ହସର ପାଥେୟ ବହନ କରି ଆସିଲେ । ନିଜ ଆନନ୍ଦରେ 'ଛଡ଼ା' ଲେଖନ୍ତି—'ମନ ମଧ୍ୟରେ ଯେଉଁ ଶିଶୁ ଭୋଳାନାଥ' ଅଛି ତାକୁ ହିଁ ଭୁଲାଇବାପାଇଁ

ଓ ତାହାର ସାହଚର୍ଯ୍ୟରେ ଭୁଲିବା ପାଇଁ ବିଷଯ୍ୱୀର ବିଷମ-ବିପୁ-ଚାଲିତ ଗରଳ-ମଥିତ-ବିଶ୍ୱସଂସାର ।

(୧୫୧)

୧୩୪୭ ନବ ବର୍ଷରେ ଜନ୍ମୋତ୍ସବ ପାଳିତ ହେବାର କିଛିଦିନ ପରେ ବାହାରିଲେ କାଲିମ୍ପଙ୍ଗ ପାହାଡ଼କୁ । କାଲିମ୍ପଙ୍ଗରେ ରଥୀନ୍ଦ୍ରନାଥ ପ୍ରଭୃତିଙ୍କର ପହଞ୍ଚିବାକୁ ଡେରି ଥିବାରୁ କବି ମଂପୁ ଗୁଲିଗଲେ । ସେଠାରେ କବିଙ୍କର ଜନ୍ମୋତ୍ସବ ହେଲା । କବି ଲେଖିଛନ୍ତି—

'ବୁଦ୍ଧେର ନେପାଲୀ ଭକ୍ତ ଏସେଛିଲ ମୋର ବାର୍ତ୍ତା ଶୁନେ···
ଅପରାହ୍ନେ ଏସେଛିଲ ଜନ୍ମବାସରେର ଆମନ୍ତ୍ରଣେ
ପାହାଡ଼ିଆ ମତ ।'

ପରଦିନ ସଂବାଦ ପାଇଲେ ଯେ କଲିକତାଠାରେ ସୁରେନ୍ଦ୍ରନାଥ ଠାକୁରଙ୍କର ମୃତ୍ୟୁ ହୋଇଛି । ସୁରେନ୍ଦ୍ରନାଥ ଦୀର୍ଘକାଳ ଅସୁସ୍ଥ ଥିଲେ —କବି ଏହି ସଂବାଦ ପାଇଁ ପ୍ରସ୍ତୁତ ଥିଲେ । କିନ୍ତୁ କାଳୀମୋହନ ଘୋଷଙ୍କର ଆକସ୍ମିକ ମୃତ୍ୟୁ ସଂବାଦ ପାଇଁ ମନ ପ୍ରସ୍ତୁତ ନ ଥିଲା; ଏ ଖବର ପାଇଲେ କାଲିମ୍ପଙ୍ଗରୁ ଫେରିବାର କିଛିଦିନ ପରେ ।

ଦେଶ ମଧ୍ୟରେ କ୍ଷୁଦ୍ର ଦଳାଦଳି, ଲୁଟତରାଜ, ସାଂପ୍ରଦାୟିକ ଦଙ୍ଗାହେଙ୍ଗାମ, ନାରୀ-ହରଣ ଓ ନାରୀ-ଉତ୍ପୀଡ଼ନ; ଦେଶର ବାହାରେ ବିଶ୍ୱବ୍ୟାପୀ ଯୁଦ୍ଧ—ଏହିସବୁ ଖବର ନିତି ଶୁଣନ୍ତି ଓ ଆହତ ମନକୁ ହାଲୁକା କରିବାପାଇଁ 'ଛଡ଼ା' ଜରିଆରେ ବିଦ୍ରୂପ କରନ୍ତି—

ସିନ୍ଧୁପାରେ ମୃତ୍ୟୁ ନାଚ୍ୟେ ଚଲଛେ ନାଗ୍ନାଚ,
ବାଂଲା ଦେଶର ତେଁତୁଲ-ବନେ ଭୈଁକୀବାରେର ହାଁଚ ।

ଆନ୍ତର୍ଜାତିକ ପରିସ୍ଥିତି ସଂପର୍କରେ ମନ୍ତବ୍ୟ କରନ୍ତି, ଜାତିଗତ ଅନାଚାର ବା ଅତ୍ୟାଚାର ବିରୁଦ୍ଧରେ କବିତା ଲେଖି ଧିକ୍କାର କରନ୍ତି—ଏହାଛଡ଼ା ଏ ବୟସରେ କଣ ବା କରି ପାରନ୍ତେ ? ମାର୍କିନ

ରାଷ୍ଟ୍ରପତି ରୁଜ୍‌ଭେଲ୍‌ଟଙ୍କୁ ଏକ କେବଲ୍‌ ବାର୍ତ୍ତାରେ ଜଣାଇଲେ ଯେ ସେ ଏହି ବିଶ୍ୱ ଧ୍ୱଂସ ବିରୁଦ୍ଧରେ ଠିଆ ହୋଇ ପୃଥିବୀରେ ଶାନ୍ତି ସ୍ଥାପନ କରନ୍ତୁ । ହାୟ୍ କବିଙ୍କର ପ୍ରତ୍ୟାଶା !

କିନ୍ତୁ କ୍ଳାନ୍ତ ଦେହ ମନର ସମସ୍ତ ଶକ୍ତି ବିଶ୍ୱ ସମସ୍ୟାର ଭାବନାରେ ନଷ୍ଟ ହେଉନାହିଁ । ଅତୀତକୁ ଦେଖୁଥାନ୍ତି ମନଶ୍ଚକ୍ଷୁରେ । ମୁଖ ଫେରାଇ ଅସ୍ତାଚଳଗାମୀ ରବି, ନବାରୁଣକୁ ଦେଖୁଥାନ୍ତି ଓ ପରିଷ୍କୃତ ଭାଷାରେ ଅଙ୍କନ କରି ଦେଖାଉଥାନ୍ତି ଅନ୍ୟମାନଙ୍କୁ—ଏହି ବହି ଖଣ୍ଡିକର ନାମ 'ଛେଲେବେଲା' ।

କାଲିମ୍ପଙ୍ଗରୁ ଜୁନ୍ ୧୯ ତାରିଖରେ କଲିକତା ଫେରି ଜୁଲାଇ ତିନି ତାରିଖରେ ଶାନ୍ତିନିକେତନ ଫେରିଲେ । ଯେଉଁ କେତେ ଦିନ କଲିକତାରେ ଥିଲେ ସେ ମଧ୍ୟରେ ଅନେକ ସମସ୍ୟା ଦେଖା ଦେଇଥିଲା । ସୁଭାଷଚନ୍ଦ୍ର ଦେଖା କରିବାକୁ ଆସିଲେ (୧୯୪୦, ଜୁଲାଇ ପହିଲା) । କି ବିଷୟରେ କଥାବାର୍ତ୍ତା ହୋଇଥିଲା ଜଣାନାହିଁ । ତେବେ କିଛିଦିନ ପରେ ଦୈନିକ ଖବର କାଗଜରେ କବିଙ୍କର ଗୋଟିଏ ବିବୃତି ପ୍ରକାଶିତ ହୋଇଥିଲା । ସେଥିରେ ସେ କହିଥିଲେ— 'ସ୍ୱଦେଶୀ ଯୁଗର ସ୍ମୃତି' ନାମରେ ଯେଉଁ ସାକ୍ଷାତ-ବିବରଣୀ ଦୁଇମାସ ଆଗରୁ ପ୍ରକାଶିତ ହୋଇଥିଲା; ତାହା ମଧ୍ୟରେ ସେ ସୁଭାଷଙ୍କୁ ନିନ୍ଦାବାଦ କରି ନାହାନ୍ତି । ଭ୍ରମ ସଂଶୋଧନ କାଗଜରେ ଛପା ହେଲା; କିନ୍ତୁ ସୁଭାଷ ତାହା ଦେଖିଲେ ଜେଲ୍‌ ଭିତରେ ! କବିଙ୍କ ସହିତ ସୁଭାଷଙ୍କର ଆଉ ଦେଖା ହୋଇନି ।

ଶାନ୍ତିନିକେତନ ଫେରି ନାନା କାମରେ ବ୍ୟସ୍ତ – ଅନ୍ୟ ଲେଖକଙ୍କର ବହିର ଭୂମିକା ଲେଖୁଥାନ୍ତି, କାହାର ଗ୍ରନ୍ଥର ପ୍ରଶଂସା କରୁଥାନ୍ତି, ବୟସ୍କ ପିଲାମାନଙ୍କର ଅଧ୍ୟାପନା ବି କରୁଥାନ୍ତି—ଅବସର ସମୟରେ ସହକର୍ମୀଙ୍କ ସହିତ ମୃଦୁ ହାସ୍ୟ ପରିହାସ ଚାଲିଥାଏ ।

(୧୬୨)

୧୯୪୦ ମସିହା ଅଗଷ୍ଟ ୭ ତାରିଖରେ ଶାନ୍ତିନିକେତନରେ ଏକ ଆଡ଼ମ୍ବରପୂର୍ଣ୍ଣ ଅନୁଷ୍ଠାନ କରି ଅକ୍‌ସଫୋର୍ଡ଼ ବିଶ୍ୱବିଦ୍ୟାଳୟ

କବିଙ୍କୁ ଡକ୍ଟର ଉପାଧି ଦେଲେ । ଭାରତର ଫେଡେରାଲ କୋର୍ଟର
ପ୍ରଧାନ ବିଚାରପତି ସାର୍ ମରିସ୍ ଗୟାର ଉକ୍ତ ବିଶ୍ୱବିଦ୍ୟାଳୟ ପକ୍ଷରୁ
ମାନପତ୍ର ପଢ଼ିଲେ । ଅକ୍ସଫୋର୍ଡର ଦେଶୀ ଓ ବିଦେଶୀ ବହୁ
ପୁରାତନ ଛାତ୍ର ସେଦିନ ଶାନ୍ତିନିକେତନ ଆସିଥିଲେ । ୧୯୧୨
ମସିହାରେ ଗୀତାଞ୍ଜଳି ପ୍ରକାଶିତ ହେବାପରେ ଅକ୍ସଫୋର୍ଡ ବିଶ୍ୱ-
ବିଦ୍ୟାଳୟ ପକ୍ଷରୁ କବିଙ୍କୁ ଉପାଧି ପ୍ରଦାନ କରିବାର ପ୍ରସ୍ତାବ
ହୋଇଥିଲା; ଶୁଣାଯାଏ ବାଧା ଦେଇଥିଲେ ଲର୍ଡ କର୍ଜନ ।

ଦିନଗୁଡ଼ିକ କଟେ ମନ୍ଥର ଗତିରେ । ଶରୀର ଦୁର୍ବଳ ହୋଇ-
ପଡ଼ୁଛି—ବୁଲିବାକୁ କଷ୍ଟ ହେଉଛି, ଠେଲାଗାଡ଼ିରେ ବୁଲୁଥାନ୍ତି,
ଦୃଷ୍ଟିଶକ୍ତି ଆହୁରି କମିଯାଇଛି, କାନରେ ବି କମ୍ ଶୁଭୁଛି, । ତାହା ସତ୍ତ୍ୱେ
ଛୋଟବଡ଼ କାର୍ଯ୍ୟପାଇଁ ଲୋକ ଆସନ୍ତି, ଲେଖାର ତାଗିଦା ବି ଆସେ ।
ସେହି ତାଗିଦା ଫଳରେ ଲେଖିଲେ 'ଲ୍ୟାବରେଟରି' ଗଳ୍ପ,
ଏହାପରେ ଲେଖିଲେ 'ବଦନାମ୍' । ଏହି ଗଳ୍ପଗୁଡ଼ିକ ପଢ଼ିଲେ
ମନେହୁଏ କବି ବୟସ ଅନୁସାରେ ଆଧୁନିକ ହୋଇ ପଡ଼ୁଛନ୍ତି ।
ଜଣେ ପ୍ରତିଭାବାନ ସମାଲୋଚକ କହିଥିଲେ, 'ସାଧାରଣତଃ ବୟସ
ସଙ୍ଗେ ସଙ୍ଗେ ଲୋକଙ୍କର ରକ୍ଷଣଶୀଳତା ବଢ଼େ; କିନ୍ତୁ ରବୀନ୍ଦ୍ରନାଥ-
ଙ୍କର ହୋଇଛି ଠିକ୍ ଓଲଟା । ଯେତିକି ବୟସ ବଢ଼ିଛି, ସେତିକି
ସେ ମୁକ୍ତ ହୋଇଛନ୍ତି ।... ନୀତି ଅପେକ୍ଷା ସତ୍ୟକୁ ବଡ଼ କରି
ଦେଖିଛନ୍ତି, ରୀତି ଅପେକ୍ଷା ଜୀବନକୁ ।' ଜବାହରଲାଲ ମଧ୍ୟ ତାଙ୍କର
'ଭାରତ ଆବିଷ୍କାର' (Discovery of India) ପୁସ୍ତକରେ ଠିକ୍
ଏହି କଥା କହିଛନ୍ତି, ରବୀନ୍ଦ୍ରନାଥଙ୍କର ଦୃଷ୍ଟିଭଙ୍ଗୀ ଓ ମତାମତ
ବୟୋବୃଦ୍ଧି ସଙ୍ଗେ ସଙ୍ଗେ ସତେ ଯେପରି ବେଶୀ ପ୍ରଗତିବାଦୀ—
ସଚରାଚର ଯାହା ଘଟେ ତାହାର ବିପରୀତ ।

ଶାନ୍ତିନିକେତନରେ ମନ ଲାଗିଲା ନାହିଁ । କଲିକତା
ଆସିବାରୁ ବୁଲାଚଲା ସଂପର୍କରେ ଡାକ୍ତରମାନେ ସାବଧାନ କରି-
ଦେଲେ । କିନ୍ତୁ ଥରେ କବି ଇଚ୍ଛା କଲେ, ସେବକମାନଙ୍କ ପକ୍ଷରେ
ତାଙ୍କୁ ସେଥିରୁ ନିବୃତ୍ତ କରିବା କଷ୍ଟକର । ଏହି ସମୟରେ
ରବୀନ୍ଦ୍ରନାଥ ଜମିଦାରୀ ଦେଖିବାକୁ ଯାଇଥାନ୍ତି । ପ୍ରତିମା ଦେବୀ
କାଲିମ୍ପଙ୍ଗରେ—କବି କାଲିମ୍ପଙ୍ଗ ଗଲେ । ଯାତ୍ରା ପୂର୍ବରୁ ଅମିୟ-

ଚନ୍ଦ୍ରଙ୍କୁ ଲେଖିଛନ୍ତି, 'କିଛିଦିନ ହେବ ମୋର ଶରୀର କ୍ରମଶଃ ଦୁର୍ବଳ ହୋଇ ପଡ଼ୁଛି, ଦିନଗୁଡ଼ିକ ବହନ କରିବା ଅସାଧ୍ୟ ବୋଧ ହେଉଛି । ତଥାପି କାର୍ଯ୍ୟ କରିବାକୁ ହୁଏ—ସେଥିରେ ଏତେ ଅରୁଚିବୋଧ ଯେ ସେ କଥା କହି ପାରୁନି । ଭାରତବର୍ଷରେ ଏପରି ଜାଗା ନାହିଁ ଯେଉଁଠାରେ ଯାଇ ରହି ହେବ । ଭିତରର ଯନ୍ତ୍ର-ଗୁଡ଼ିକ କୌଣସି କୌଣସି ସ୍ଥାନରେ ବିକଳ ହୋଇ ଯାଉଛି ।··· ବିଧାନ ରାୟ କାଲିମ୍ପଙ୍ଗ ଯିବାକୁ ନିଷେଧ କରିଥିଲେ । ମନ ବିଶ୍ରାମ ପାଇଁ ଏପରି ବ୍ୟାକୁଳ ହେଉଛି ଯେ ତାଙ୍କର ନିଷେଧ ମାନିବା ସମ୍ଭବ ହେଲ ନାହିଁ । ଗୃହଲି ଆଜି କାଲିମ୍ପଙ୍ଗ ।' ସାତଦିନ ମଧ୍ୟରେ କଲିକତାକୁ ଖବର ଆସିଲ ଯେ କବି ଅକସ୍ମାତ୍ ଅଜ୍ଞାନ ହୋଇ ଯାଇଛନ୍ତି । ପ୍ରଶାନ୍ତଚନ୍ଦ୍ର କଲିକତାରୁ ଡାକ୍ତର ନେଇ କାଲିମ୍ପଙ୍ଗ ଗଲେ । ପ୍ରତିମାଦେବୀ ସେଠାରେ ଏକା—ଭାଗ୍ୟକୁ ମୈତ୍ରେୟୀ ଦେବୀ ସେହି ଦିନ ଆସି ପହଞ୍ଚିଲେ । ରଥୀନ୍ଦ୍ରନାଥ ଜମିଦାରୀରେ ବୁଲୁଥାନ୍ତି; ରେଡ଼ିଓଗ୍ରାମରେ ତାଙ୍କ ନିକଟକୁ ଖବର ପଠା ହେଲ ।

କଲିକତାକୁ ଅଣାହେଲେ ଅଜ୍ଞାନ ଅବସ୍ଥାରେ । ମାସେ ଶଯ୍ୟାଶାୟୀ ହେଲେ । ଶୋଇ ଶୋଇ କବିତା ଡାକନ୍ତି, ପାଖ ଲୋକ ଲେଖି ନିଅନ୍ତି । 'ରୋଗଶଯ୍ୟା' କବିତା ସଙ୍କଳନରେ ଏଗୁଡ଼ିକ ସଙ୍କଳିତ ହୋଇଛି । ନଭେମ୍ବର ୧୮ ତାରିଖରେ ଶାନ୍ତିନିକେତନ ଫେରିଲେ, ତାହାପରେ ଯେଉଁ ଆଠମାସ ସେଠାରେ ଥିଲେ ରୋଗୀ ଭାବରେ ହିଁ ଦିନ କଟିଥିଲ—

'ସଜୀବ ଖେଳନା ଯଦି ଗଢ଼ାହୁଏ ବିଧାତାର କର୍ମଶାଳେ,
କି ତାହାର ଦଶା ହୁଏ ତାଇ କରି ଅନୁଭବ ଆଜି ଆୟୁଶେଷେ ।'

ଅନ୍ୟର ସେବା ଜୀବନରେ ଖୁବ୍ କମ୍ ଗ୍ରହଣ କରିଛନ୍ତି, କେବେ ଦୀର୍ଘକାଳ କଠିନ ପୀଡ଼ା ଭୋଗି ନାହାନ୍ତି । ଅତି ଅସହାୟ ଭାବରେ ନିଜକୁ ଛାଡ଼ି ଦେବାକୁ ହୋଇଛି ସେବକ—ସେବିକାମାନଙ୍କର ହାତରେ । ଏହି କଥା ଲେଖିଛନ୍ତି ଏକ କବିତାରେ—

ବହୁଲୋକ ଏସେଛିଲ ଜୀବନେର ପ୍ରଥମ ପ୍ରଭାତେ···
ଆଜ ଯାରା କାଛେ ଆଛ ଏ ନିଃସ୍ୱ ପ୍ରହରେ,
ପରିଶ୍ରାନ୍ତ ପ୍ରଦୋଷେର ଅବସନ୍ନ ନିସ୍ତେଜ ଆଲୋୟ
ତୋମରା ଆପନ ଦୀପ ଆନିୟାଛ ହାତେ
ଖେୟା ଛାଡ଼ିବାର ଆଗେ ତୀରେର ବିଦାୟ ସ୍ପର୍ଶ ଦିତେ ।

ରୋଗଶଯ୍ୟାରେ ଦିନ ଯାଏ—କେତେବେଳେ ଚେୟାରରେ ଚ କେତେବେଳେ ବିଛଣାରେ । ରବି କହେ କେତେବେଳେ ଅନିଦ୍ରାରେ, କେତେବେଳେ ବିଚିତ୍ର ଭାବନାରେ । ଏହାରି ମଧ୍ୟରେ ସୃଜିଥାଏ ସାହିତ୍ୟ ସୃଷ୍ଟି—କେଉଁଟି ଗମ୍ଭୀର, କିଏ ବା ଲଘୁ । କବିଙ୍କର କେତୋଟି ଉତ୍କୃଷ୍ଟ କବିତା ଏହି ସମୟର ଲେଖା । ଉଦାହରଣ ସ୍ୱରୂପ କୁହାଯାଇପାରେ 'ଐକତାନ' କବିତାର କଥା । 'ବିପୁଲ ଏ ପୃଥିବୀର କତଟୁକୁ ଜାନି ।' ଆଜି ଜୀବନ ସନ୍ଧ୍ୟାରେ ଅନୁଭବ କରୁଛନ୍ତି—

ଆମାର କବିତା ଜାନି ଆମି,
ଗେଲେଓ ବିଚିତ୍ର ପଥେ ହୟ ନାହିଁ ସେ ସର୍ବତ୍ରଗାମୀ ।

ପୌଷ ଉତ୍ସବ ଆସିଲା । 'ଆରୋଗ୍ୟ' ନାମକ ଭାଷଣଟି ଆଗରୁ ମୁହେଁ ମୁହେଁ କହିଯାଇଥାନ୍ତି, ଅନ୍ୟ ଲୋକ ଲେଖି ନେଇଥାନ୍ତି । ଉତ୍ସବ ଦିବସରେ ସେହି ଭାଷଣଟି ପଢ଼ାହେଲା । କବି କହିଥିଲେ, 'ମୁଁ ଆଶ୍ରମରେ ଉପସ୍ଥିତ ଅଛି । ଅଥଚ ପୌଷ ସାତ ଉତ୍ସବରେ, ଆସନ ଗ୍ରହଣ କରି ପାରୁନି, ଏ ରକମ ଘଟଣା ଆଜି ପ୍ରଥମ ହେଲା ।' ସ୍ୱାଧୀନତା ଦିବସର ସଂକଳ୍ପ କଥା ହୁଏତ କବିଙ୍କର ମନେ ଥିଲା; ରାଜ-ଜାତିକୁ ସ୍ମରଣ କରାଇବାକୁ ସେହି ଜାନୁୟାରୀ ୨୪ ତାରିଖରେ ଲେଖିଥିଲେ—

ସିଂହାସନ ତଲ ଛାୟେ ଦୂରେ ଦୂରାନ୍ତରେ
ଯେ ରାଜ୍ୟ ଜାନାୟ ସ୍ପର୍ଦ୍ଧା ଭରେ
ରାଜାୟ ପ୍ରଜାୟ ଭେଦ ମାପା,
ପାୟେର ତଲାୟ ରାଖେ ସର୍ବନାଶ ଚାପା ।

ବ୍ରିଟେନ୍ ବିଶ୍ୱଯୁଦ୍ଧରେ ଜଡ଼ିତ ହୋଇ ଭାରତର ସହାୟତା ଚାହିଁଛି । କିନ୍ତୁ କିଏ ସାହାଯ୍ୟ କରିବ ? ଭାରତକୁ ଇଂରେଜ କି ଦୁର୍ବଳ, ଅସହାୟ, ହୀନ କରି ନ ରଖିଛି !

ଏହି ବର୍ଷ ମାଘୋତ୍ସବ ଦିନ ରବୀନ୍ଦ୍ରନାଥଙ୍କ ଭାଷଣ ମନ୍ଦିରରେ ପଠିତ ହେଲା । ଜୀବନର ଶେଷ ଭାଷଣରେ କବି ରାଜା ରାମମୋହନଙ୍କ ପ୍ରତି ତାଙ୍କର ଅକୃତ୍ରିମ ଶ୍ରଦ୍ଧା ନିବେଦନ କରିଥିଲେ ।

କବି-ମନର ଅନ୍ୟ ଏକ ଦିଗରୁ ଉତ୍ସାରିତ ହୋଇଛି, 'ଗଳ୍ପ-ସଳ୍ପ'—ଗଦ୍ୟ ଓ ପଦ୍ୟରେ । ଅବସାଦଗ୍ରସ୍ତ ମନ ଓ ଅସୁସ୍ଥ ଦେହର କୌଣସି ଚିହ୍ନ ସେ ରଚନାରେ ନାହିଁ । 'ଗଳ୍ପସଳ୍ପ' ଲେଖିବା ମୂଳରେ ଥିଲା ଶିଶୁମାନଙ୍କ ପାଇଁ ଦ୍ରୁତ-ପାଠ୍ୟ ସରସ ଭାବରେ ଯୋଗାଇବାର ପ୍ରେରଣା । 'ଗଳ୍ପସଳ୍ପ'ର ଶେଷ ରଚନା ଲେଖିଛନ୍ତି ୧୯୪୧ ମସିହା ମାର୍ଚ୍ଚ ୧୨ ତାରିଖ—

ସାଙ୍ଗ ହୟେ ଏଲ ପାଲା
ନାଟ୍ୟ ଶେଷେର ଦୀପେର ମାଲା
ନିଭେ ନିଭେ ଯାଚ୍ଛେ କ୍ରମେ କ୍ରମେ···ଇତ୍ୟାଦି ।

ଜୀବନର ଶେଷ ନବବର୍ଷ ଆସିଲା ୧୩୪୮ ବଙ୍ଗାବ୍ଦରେ । 'ଜନ୍ମଦିନର' ସର୍ବଶେଷ ଭାଷଣ 'ସଭ୍ୟତାର ସଙ୍କଟ' ସେ ଦିନ ପଠିତ ହେଲା । ମହାମାନବର ଆହ୍ୱାନ ସଙ୍ଗୀତ ରଚନା କରି ସ୍ୱର ସଂଯୋଗ କଲେ; ସେ ଦିନ ତାହା ଗାନ କରାହେଲା ।

ରବୀନ୍ଦ୍ର ଜୀବନର ଶେଷ ପଚିଶ ବୈଶାଖ ଅନାଡ଼ମ୍ବର ଭାବରେ ଉଦ୍‌ଯାପିତ ହେଲା । ଶେଷ ଜନ୍ମଦିନରେ କବିତା ଲେଖି ପଠାଇ-ଥିଲେ ଅନ୍ନଦାଶଙ୍କର ରାୟଙ୍କୁ, ବାଙ୍କୁଡ଼ା—

ଆମାର ଏ ଜନ୍ମଦିନ-ମାଝେ ଆମି ହାରା
ଆମି ଚାହି ବନ୍ଧୁଜନ ଯାରା
ତାହାଦେର ହାତେର ପରଶେ
ମର୍ତ୍ତ୍ୟେର ଅନ୍ତିମ ପ୍ରୀତି ରସେ
ନିୟେ ଯାବ ଜୀବନେର ଚରମ ପ୍ରସାଦ
ନିୟେ ଯାବ ମାନୁଷେର ଶେଷ ଆଶୀର୍ବାଦ ।

କିଛିଦିନ ପରେ ନିପୁର ରାଜଦରବାରରୁ ପ୍ରତିନିଧିମାନେ ଆସି କବିଙ୍କୁ 'ଭାରତ ଭାସ୍କର' ଉପାଧି ଅର୍ପଣ କଲେ । ଜୀବନର ପ୍ରତ୍ୟୁଷରେ ଏହି ରାଜଦରବାରର ପ୍ରତିନିଧି ଆସି ତରୁଣ କବିଙ୍କୁ ଅଭିନନ୍ଦନ ଜଣାଇଥିଲେ,ଆଜ ଜୀବନ-ସାୟାହ୍ନରେ ସେଠାରୁ ଶେଷ ଅଭିନନ୍ଦନ ଆସିଲା । ଭୟଙ୍କର ଗରମ, ଗ୍ରୀଷ୍ମ ଛୁଟିରେ ଆସିଲେ ସପରିବାରେ ଅଧ୍ୟାପକ ବୁଦ୍ଧଦେବ ବସୁ । କବିଙ୍କ ସହିତ ସାହିତ୍ୟ ନେଇ ନାନା ଆଲୋଚନା ହେଲା; ସେ ଗୁଡ଼ିକ ପତ୍ରିକାରେ ପ୍ରକାଶିତ ହୋଇଥିଲା ଓ ପରେ 'ସାହିତ୍ୟ ସ୍ୱରୂପ' ଗ୍ରନ୍ଥରେ ସ୍ଥାନ ପାଇଛି । ସାହିତ୍ୟ ସମ୍ପର୍କରେ ଏଗୁଡ଼ିକ କବିଙ୍କର ଶେଷ କଥା ।

ଏହି ସମୟରେ କଂଗ୍ରେସର ସବୁ ନେତା ଜେଲ୍‌ରେ । ବିଶ୍ୱଯୁଦ୍ଧର ଉଦ୍ଦେଶ୍ୟ ସମ୍ପର୍କରେ ଭାରତୀୟ ନେତୃବୃନ୍ଦ ଏକ ସ୍ପଷ୍ଟ ଘୋଷଣା ଚାହିଁଥିଲେ । ଭାରତକୁ ସ୍ୱାଧୀନତା ଦେବାର ପ୍ରତିଶ୍ରୁତି ସେମାନେ ଚାହିଁଥିଲେ । ଏ ପ୍ରକାର ଦାବୀ ଭାରତବାସୀଙ୍କ ପକ୍ଷରେ ଅକୃତଜ୍ଞତା ବୋଲି କହି ମିସ୍ ରାଥ୍‌ବୋନ ଭାରତୀୟ ନେତୃବୃନ୍ଦ ଓ ବିଶେଷଭାବରେ ଜବାହରଲାଲଙ୍କୁ ନିନ୍ଦା କରି ଏକ ପ୍ରବନ୍ଧ ଲେଖିଲେ । ମିସ୍ ରାଥ-ବୋନ୍ ବ୍ରିଟିସ ପାର୍ଲାମେଣ୍ଟରେ ବିଶ୍ୱବିଦ୍ୟାଳୟ ତରଫରୁ ପ୍ରତିନିଧି, ଖ୍ୟାତନାମା ମହିଳା । ତାଙ୍କର ଏହି ଆକ୍ରମଣର ପ୍ରତିବାଦ କଲେ କବି; କୃଷ୍ଣ କୃପାଳନୀଙ୍କୁ ତାହାର ଖସଡ଼ା କରିବାକୁ କହିଥିଲେ । ଏହି ଲେଖା କବିଙ୍କର ଭାରତ ସ୍ୱାଧୀନତା ଦାବୀ ସମ୍ପର୍କୀୟ ଶେଷ ରଚନା (୧୯୪୧ ଜୁନ ୫ତାରିଖ) । କିନ୍ତୁ ଦେହ ଅଚଳ—ଚିକିତ୍ସା ଓ ସେବାରେ ତ୍ରୁଟିନାହିଁ ।

ଶେଷରେ ଡାକ୍ତରମାନେ ପରାମର୍ଶ କରି ଠିକ୍ କଲେ ଯେ ଅପରେସନ୍ ଛଡ଼ା ଉପାୟ ନାହିଁ । ଜୁଲାଇ ୨୫ ତାରିଖରେ କବିଙ୍କୁ କଲିକତା ନିଆଗଲା । ଶାନ୍ତିନିକେତନ ସହିତ ସତୁରିବର୍ଷର ସ୍ମୃତି ଜଡ଼ିତ । କବି ବୁଝି ପାରିଥିଲେ ଯେ ଏହି ତାଙ୍କର ଶେଷଯାତ୍ରା । ଯିବା ସମୟରେ ଆଖିରେ ରୁମାଲ ଦେଇଥିବାର ଦେଖାଯାଇଥିଲା ।

ଜୁଲାଇ ୩୦ ତାରିଖରେ ଯୋଡ଼ାସାଁକୋ ଘରେ କବିଙ୍କର ଶରୀରରେ ଅସ୍ତ୍ରୋପଚାର ହେଲା । ତାହାର କିଛି ସମୟ ପୂର୍ବେ ତାଙ୍କର ଶେଷ କବିତା ରଚନା କରିଥିଲେ—

'ତୋମାର ସୃଷ୍ଟିର ପଥ ରେଖେଛ ଆକୀର୍ଣ୍ଣ କରି
ବିଚିତ୍ର ଛଲନା ଜାଲେ ହେ ଛଲନାମୟୀ ।' …

(ସାଢେନ'ଟା ୧୯୪୧ ଜୁଲାଇ ୩୦)

ଚିକିତ୍ସକମାନେ ଅସ୍ତ୍ରୋପଚାର କଲେ, ତାହା ନିଷ୍ଫଳ ହେଲା । ଅବସ୍ଥା ଦ୍ରୁତଗତିରେ ଖରାପ ଆଡ଼କୁ ଗଲା । ଜ୍ଞାନ ହରାଇଲେ । ଶେଷ ନିଶ୍ୱାସ ତ୍ୟାଗକଲେ ରାଖୀ ପୂର୍ଣ୍ଣିମାର ମଧ୍ୟାହ୍ନରେ— ୧୯୪୧ ମସିହା, ଅଗଷ୍ଟ ୭ ତାରିଖ ।



ପ୍ରଥମ ଦିନର ସୂର୍ଯ୍ୟ
ପ୍ରଶ୍ନ କରିଥିଲା
ସତ୍ତାର ନୂତନ ଆବିର୍ଭାବେ—
କିଏ ତୁମେ ?
ମିଳିନି ଉତ୍ତର ।

ବର୍ଷ ବର୍ଷ ବିତିଗଲା
ଦିବସର ଶେଷ ସୂର୍ଯ୍ୟ
ଶେଷ ପ୍ରଶ୍ନ ଉଚ୍ଚାରିଲା
ପଶ୍ଚିମ ସାଗର ତୀରେ
ନିସ୍ତବ୍ଧ ସନ୍ଧ୍ୟାରେ—
କିଏ ତୁମେ
ପାଇଲି ଉତ୍ତର ।

ଯୋଡ଼ାସାଁକୋ । କଲିକତା
ସକାଳ, ୧୯୪୧-ଜୁଲାଇ ୨୭

# ବଂଶ ଲତା

- ଦ୍ୱାରକାନାଥ ୧୭୯୪-୧୮୪୬
- ଦିଗମ୍ବରୀ ଦେବୀ —? ୧୮୩୯
  - କନ୍ୟାସନ୍ତାନ ଅଲ୍ପାୟୁ
  - ଦେବେନ୍ଦ୍ରନାଥ ୧୮୧୭-୧୯୦୫
  - ସାରଦା ଦେବୀ
    - କନ୍ୟାସନ୍ତାନ ୧୮୩୮ ଅଲ୍ପାୟୁ
    - ଦ୍ୱିଜେନ୍ଦ୍ରନାଥ ୧୮୪୦-୧୯୨୬
    - ସତ୍ୟେନ୍ଦ୍ରନାଥ ୧୮୪୨-୧୯୨୩
    - ହେମେନ୍ଦ୍ରନାଥ ୧୮୪୪-୧୮୮୪
    - ବୀରେନ୍ଦ୍ରନାଥ ୧୮୪୫-୧୯୧୫
    - ସୌଦାମିନୀ ୧୮୪୭-୧୯୨୦
    - ଜ୍ୟୋତିରିନ୍ଦ୍ରନାଥ ୧୮୪୯-୧୯୨୫
    - ସୁକୁମାରୀ ? ୧୮୫୦-୧୮୬୪
    - ପୁଣ୍ୟେନ୍ଦ୍ରନାଥ ? ୧୮୫୧-୧୮୫୭
    - ଶରତ୍କୁମାରୀ ୧୮୫୪-୧୯୨୦
    - ସ୍ୱର୍ଣ୍ଣକୁମାରୀ ? ୧୮୫୬-୧୯୩୨
    - ବର୍ଣ୍ଣକୁମାରୀ ୧୮୫୮-୧୯୪୮
    - ସୋମେନ୍ଦ୍ରନାଥ ୧୮୫୯-୧୯୨୨
    - ରବୀନ୍ଦ୍ରନାଥ ୧୮୬୧-୧୯୪୧ (ମୃଣାଳିନୀ ଦେବୀ)
    - ବୁଧେନ୍ଦ୍ରନାଥ ୧୮୬୩-୧୮୬୪
  - ନରେନ୍ଦ୍ରନାଥ ଆୟୁ ୩ବର୍ଷ
  - ଗିରୀନ୍ଦ୍ରନାଥ ୧୮୨୦-୧୮୫୪
  - ଯୋଗମାୟା ଦେବୀ
  - ଭୂପେନ୍ଦ୍ରନାଥ ୧୮୨୬-୧୮୩୯
  - ନଗେନ୍ଦ୍ରନାଥ ୧୮୨୯-୧୮୫୮
  - ତ୍ରିପୁରାସୁନ୍ଦରୀ ଦେବୀ

- ରବୀନ୍ଦ୍ରନାଥ
  ୧୮୬୧-୧୯୪୧
  ମୃଣାଳିନୀ ଦେବୀ
  - ମାଧୁରୀଲତା
    ୧୮୮୬-୧୯୧୮
    ଶରତ୍‌ଚନ୍ଦ୍ର ଚକ୍ରବର୍ତ୍ତୀ
  - ରଥୀନ୍ଦ୍ରନାଥ
    ୧୮୮୮
    ପ୍ରତିମା ଦେବୀ
    - ନନ୍ଦିନୀ
      (ଗୃହୀତା କନ୍ୟା)
  - ରେଣୁକା
    ୧୮୯୦-୧୯୦୩
    ସତ୍ୟେନ୍ଦ୍ରନାଥ ଭଟ୍ଟାଚାର୍ଯ୍ୟ
  - ମୀରା (ଅତସୀ)
    ୧୮୯୨
    ନଗେନ୍ଦ୍ରନାଥ ଗଙ୍ଗୋପାଧ୍ୟାୟ
    - ନୀତୀନ୍ଦ୍ରନାଥ
      ୧୯୧୨-୧୯୩୨
    - ନନ୍ଦିତା
      ୧୯୧୬
      କୃଷ୍ଣ କୃପାଳନୀ
  - ଶମୀନ୍ଦ୍ର
    ୧୮୯୪-୧୯୦୭

---

# କାଳକ୍ରମିକ ଗ୍ରନ୍ଥପଞ୍ଜୀ

୧୮୭୮—କବିକାହିନୀ (କାବ୍ୟ)—ଗ୍ରନ୍ଥାକାରରେ ମୁଦ୍ରିତ ପ୍ରଥମ ପୁସ୍ତକ ।

୧୮୮୦—ବନଫୁଲ (କାବ୍ୟୋପନ୍ୟାସ)-କବିକାହିନୀର ପରେ ମୁଦ୍ରିତ ହୋଇଥିଲେ ବି ଦୁଇବର୍ଷ ପୂର୍ବରୁ ରଚିତ ।

୧୮୮୧—ବାଲ୍ମୀକି ପ୍ରତିଭା (ଗୀତିନାଟ୍ୟ), ଭଗ୍ନ ହୃଦୟ (ଗୀତିକାବ୍ୟ), ୟୁରୋପ ପ୍ରବାସୀର ପତ୍ର (ପତ୍ରାବଳୀ) ।

୧୮୮୨—ସନ୍ଧ୍ୟା ସଂଗୀତ (କବିତା), କାଳ ମୃଗୟା (ଗୀତିନାଟ୍ୟ) ।

୧୮୮୩—ବୌ-ଠାକୁରାଣୀର ହାଟ (ଉପନ୍ୟାସ), ପ୍ରଭାତ ସଂଗୀତ (କବିତା) ବିବିଧ ପ୍ରସଙ୍ଗ (ପ୍ରବନ୍ଧ) ।

୧୮୮୪—ଛବି ଓ ଗାନ (କବିତା), ପ୍ରକୃତିର ପ୍ରତିଶୋଧ (ନାଟ୍ୟକାବ୍ୟ), ନଳିନୀ (ନାଟ୍ୟ), ଶୈଶବ ସଂଗୀତ (କବିତା), ଭାନୁସିଂହ ଠାକୁରେର ପଦାବଳୀ (କବିତା) ।

୧୮୮୫—ରାମମୋହନ ରାୟ (ପ୍ରବନ୍ଧ), ଆଲୋଚନା (ପ୍ରବନ୍ଧ), ରବି ଛାୟା (ସଂଗୀତ) କଡ଼ି ଓ କୋମଳ (କବିତା) ।

୧୮୮୭—ରାଜର୍ଷି (ଉପନ୍ୟାସ), ଚିଠିପତ୍ର (ପରେ ଗଦ୍ୟ ଗ୍ରନ୍ଥାବଳୀର 'ସମାଜ' ଖଣ୍ଡର ଅନ୍ତର୍ଭୁକ୍ତ-୧୯୦୮) ।

୧୮୮୮—ସମାଲୋଚନା (ପ୍ରବନ୍ଧ), ମାୟାର ଖେଳା (ଗୀତିନାଟ୍ୟ) ।

୧୮୮୯—ରାଜା ଓ ରାଣୀ-(ନାଟକ ପରେ ଏହି ଆଖ୍ୟାନ ଭାଗ ଅବଲମ୍ବନରେ ଗଦ୍ୟାକାରରେ 'ତପତୀ' ନାଟକ ମୁଦ୍ରିତ ହୋଇଛି) ।

୧୮୯୦— ବିସର୍ଜନ (ନାଟକ-ରାଜର୍ଷି ଉପନ୍ୟାସର ପ୍ରଥମାଂଶକୁ ଏହି ନାଟକ ଆକାରରେ ରୂପାୟିତ କରିଥିଲେ), ମନ୍ତ୍ରୀ ଅଭିଷେକ (ବକ୍ତୃତା) ମାନସୀ (କବିତା) ।

୧୮୯୧—ୟୁରୋପ-ଯାତ୍ରୀର ଡାଏରି (କବିଙ୍କର ଇଂଲଣ୍ଡ-ଯାତ୍ରାର ଭୂମିକା) ।

୧୮୯୨—ଚିତ୍ରାଙ୍ଗଦା (କାବ୍ୟ), ଗୋଡ଼ାୟ ଗଲଦ (ପ୍ରହସନ—ଏହାର ଅଭିନୟୋପଯୋଗୀ ସଂସ୍କରଣ 'ଶେଷରକ୍ଷା' ନାମରେ ୧୯୨୮ରେ ମୁଦ୍ରିତ) ।

୧୮୯୩—ଗାନେର ବହି ଓ ବାଲ୍ମୀକି ପ୍ରତିଭା (ସଂଗୀତ ଓ ଗୀତିନାଟ୍ୟ—ନୂତନ ଓ ପୁରାତନ ସମସ୍ତ ସଂଗୀତ ସହିତ ବାଲ୍ମୀକି ପ୍ରତିଭା ନାଟକ ଏକଖଣ୍ଡରେ ମୁଦ୍ରିତ), ୟୁରୋପ-ଯାତ୍ରୀର ଡାଏରୀ (୨ୟ ଖଣ୍ଡ)।

୧୮୯୪—ସୋନାର ତରୀ (କବିତା), ଛୋଟ ଗଳ୍ପ (ଗଳ୍ପ ସଂକଳନ), ବିଚିତ୍ର ଗଳ୍ପ (ପ୍ରଥମ ଭାଗ), କଥା ଚତୁଷ୍ଟୟ (ଗଳ୍ପ)।

୧୮୯୫—ଗଳ୍ପ ଦଶକ (ଗଳ୍ପସଂକଳନ ।

୧୮୯୬—ନଦୀ (କବିତା—ପରେ 'ଶିଶୁ' ଗ୍ରନ୍ଥର ଅନ୍ତର୍ଭୁକ୍ତ ହୋଇଛି), ଚିତ୍ରା (କବିତା)।

୧୮୯୭—ବୈକୁଣ୍ଠେର ଖାତା (ପ୍ରହସନ), ପଞ୍ଚଭୂତ (ପ୍ରବନ୍ଧ)।

୧୮୯୯—କଣିକା (କବିତା)।

୧୯୦୦—କଥା (କବିତା), କାହିଣୀ (କବିତା, ନାଟ୍ୟକାବ୍ୟ ଓ ଲକ୍ଷ୍ମୀର ପରୀକ୍ଷା ପ୍ରହସନ), କଳ୍ପନା (କବିତା), କ୍ଷଣିକା (କବିତା)।

୧୯୦୧—ନୈବେଦ୍ୟ (କବିତା), ଉପନିଷଦ ବ୍ରହ୍ମ (ପ୍ରବନ୍ଧ)।

୧୯୦୩—ଚୋଖେର ବାଲି (ଉପନ୍ୟାସ)।

୧୯୦୫—ଆତ୍ମଶକ୍ତି (ପ୍ରବନ୍ଧ), ବାଉଲ (ସଂଗୀତ)।

୧୯୦୬—ଭାରତବର୍ଷ (ପ୍ରବନ୍ଧ), ଖେୟା (କବିତା), ନୌକାଡୁବି (ଉପନ୍ୟାସ)।

୧୯୦୭—ବିଚିତ୍ର ପ୍ରବନ୍ଧ (ଗଦ୍ୟ ଗ୍ରନ୍ଥାବଳୀ ୧ମ ଭାଗ—ଏହି ସମୟରୁ ରବୀନ୍ଦ୍ରନାଥଙ୍କର ଗଦ୍ୟରଚନା 'ଗଦ୍ୟ ଗ୍ରନ୍ଥାବଳୀ' ନାମରେ ମୋଟ ଷୋଳଖଣ୍ଡରେ ମୁଦ୍ରିତ ହୁଏ), ଚରିତ୍ରପୂଜା (ପ୍ରବନ୍ଧ), ପ୍ରାଚୀନ ସାହିତ୍ୟ (ପ୍ରବନ୍ଧ—ଗଦ୍ୟ ଗ୍ରନ୍ଥାବଳୀ ୨ୟ ଭାଗ), ଲୋକସାହିତ୍ୟ (ପ୍ରବନ୍ଧ—ଗଦ୍ୟ ଗ୍ରନ୍ଥାବଳୀ ୩ୟ ଭାଗ), ସାହିତ୍ୟ (ପ୍ରବନ୍ଧ—ଗଦ୍ୟ ଗ୍ରନ୍ଥାବଳୀ ୪ର୍ଥ ଭାଗ), ଆଧୁନିକ ସାହିତ୍ୟ (ପ୍ରବନ୍ଧ—ଗଦ୍ୟ ଗ୍ରନ୍ଥାବଳୀ ୫ମ ଭାଗ), ହାସ୍ୟ କୌତୁକ (କୌତୁକ ନାଟ୍ୟ—ଗଦ୍ୟ ଗ୍ରନ୍ଥାବଳୀ ୬ଷ୍ଠ ଭାଗ), ବ୍ୟଙ୍ଗ କୌତୁକ (କୌତୁକ ନାଟ୍ୟ ଓ ନିବନ୍ଧ—ଗଦ୍ୟ ଗ୍ରନ୍ଥାବଳୀ ୭ମ ଭାଗ)।

୧୯୦୮—ପ୍ରଜାପତିର ନିର୍ବନ୍ଧ (ଉପନ୍ୟାସ—ଗଦ୍ୟ ଗ୍ରନ୍ଥାବଳୀ ୮ମ ଭାଗ; ଏହି ଉପନ୍ୟାସ ଅବଲମ୍ବନରେ 'ଚିରକୁମାର ସଭା' ନାଟକର ସୃଷ୍ଟି), ସଭାପତିର ଅଭିଭାଷଣ (ଭାଷଣ—ପରେ 'ସମୂହ' ଗ୍ରନ୍ଥର ଅନ୍ତର୍ଭୁକ୍ତ), ରାଜା ପ୍ରଜା (ପ୍ରବନ୍ଧ—ଗଦ୍ୟ ଗ୍ରନ୍ଥାବଳୀ ୧୦ମ

ଭାଗ), ସମୂହ (ପ୍ରବନ୍ଧ—ଗଦ୍ୟ ଗ୍ରନ୍ଥାବଳୀ ୧୧ଶ ଭାଗ), ସ୍ୱଦେଶ (ପ୍ରବନ୍ଧ—ଗଦ୍ୟ ଗ୍ରନ୍ଥାବଳୀ ୧୨ଶ ଭାଗ), ସମାଜ (ପ୍ରବନ୍ଧ—ଗଦ୍ୟ ଗ୍ରନ୍ଥାବଳୀ ୧୩ଶ ଭାଗ), ଶାରଦୋତ୍ସବ (ନାଟକ—ଏହାର ଅଭିନୟ ଯୋଗ୍ୟ ରୂପାନ୍ତର 'ଋଣ ଶୋଧ' ନାମରେ ୧୯୧୨ରେ ମୁଦ୍ରିତ), ଶିକ୍ଷା (ପ୍ରବନ୍ଧ—ଗଦ୍ୟଗ୍ରନ୍ଥାବଳୀ ୧୪ଶ ଭାଗ), ମୁକୁଟ (ନାଟିକା—'ବାଲକ' ପତ୍ରିକାରେ ପ୍ରକାଶିତ 'ମୁକୁଟ' ନାମକ କ୍ଷୁଦ୍ର ଉପନ୍ୟାସର ନାଟକ-ରୂପ)।

୧୯୦୯—ଶବ୍ଦତତ୍ତ୍ୱ (ପ୍ରବନ୍ଧ—ଗଦ୍ୟଗ୍ରନ୍ଥାବଳୀ ୧୫ଶ ଭାଗ, ପରେ ଏହା ପରିବର୍ଦ୍ଧିତ ହୋଇ 'ବାଂଲା ଶବ୍ଦତତ୍ତ୍ୱ' ନାମରେ ପ୍ରକାଶିତ ହୋଇଛି), ଧର୍ମ (ପ୍ରବନ୍ଧ-ଗଦ୍ୟ ଗ୍ରନ୍ଥାବଳୀ ୧୬ଶ ଭାଗ), ଶାନ୍ତିନିକେତନ ୧-୮ (ଅନୁଲିଖିତ ଭାଷଣ), ପ୍ରାୟଶ୍ଚିତ୍ତ (ନାଟକ-'ବୌ-ଠାକୁରାଣୀର ହାଟ'ର ନାଟ୍ୟରୂପ, ପରେ ଭିନ୍ନ ରୂପରେ 'ପରିତ୍ରାଣ' ନାମରେ ମୁଦ୍ରିତ-୧୯୨୯), ବିଦ୍ୟାସାଗର ଚରିତ (ପ୍ରବନ୍ଧ), ଶିଶୁ (କବିତା)।

୧୯୧୦—ଶାନ୍ତିନିକେତନ ୯-୧୧ ଭାଗ (ଅନୁଲିଖିତ ଭାଷଣ), ଗୋରା (ଉପନ୍ୟାସ), ଗୀତାଞ୍ଜଳି (କବିତା ଓ ସଂଗୀତ), ରଜା (ନାଟକ)।

୧୯୧୧—ଶାନ୍ତିନିକେତନ ୧୨-୧୩ ଭାଗ (ଭାଷଣ)।

୧୯୧୨— ଡାକ ଘର (ନାଟକ), ଗଳ୍ପ ଗୁଚ୍ଛ, ମାଲିନୀ (ନାଟକ—'କାବ୍ୟ ଗ୍ରନ୍ଥାବଳୀ'ର ଅଙ୍ଗୀଭୂତ ହୋଇ ପ୍ରକାଶ ପାଇଥିଲା ୧୮୯୬ରେ) ଚୈତାଳି (କବିତା—କାବ୍ୟ ଗ୍ରନ୍ଥାବଳୀ'ର ଅଙ୍ଗୀଭୂତ ହୋଇ ପ୍ରଥମେ ପ୍ରକାଶ ପାଇଥିଲା ୧୮୯୬ରେ), ବିଦାୟ ଅଭିଶାପ (ନାଟ୍ୟକାବ୍ୟ), ଜୀବନ-ସ୍ମୃତି (ଆତ୍ମଜୀବନୀ), ଛିନ୍ନପତ୍ର (ପତ୍ର ସଂକଳନ), ଅଚଳାୟତନ (ନାଟକ—ଏହା ଅଭିନୟ ଯୋଗ୍ୟ ସଂସ୍କରଣ ଭାବରେ 'ଗୁରୁ' ନାମରେ ୧୯୧୮ରେ ପୁନର୍ବାର ମୁଦ୍ରିତ)।

୧୯୧୪—ସ୍ମରଣ (କବିତା), ଗୀତିମାଲ୍ୟ (କବିତା ଓ ସଂଗୀତ), ଗୀତାଲି କବିତା ଓ ସଂଗୀତ)।

୧୯୧୫—ଶାନ୍ତିନିକେତନ ୧୪ଶ ଭାଗ (ଭାଷଣ)।

୧୯୧୬—ଶାନ୍ତିନିକେତନ ୧୫ଶ-୧୭ଶ ଭାଗ (ଭାଷଣ), ଫାଲ୍ଗୁନୀ (ନାଟକ), ଘରେ ବାହାରେ (ଉପନ୍ୟାସ), ସଞ୍ଚୟ (ପ୍ରବନ୍ଧ),

ପଞ୍ଚଶସ୍ୟ (ପ୍ରବନ୍ଧ), କଳ୍ପନା (କବିତା), ଚତୁରଙ୍ଗ (ଉପନ୍ୟାସ)
ଗଳ୍ପ ସପ୍ତକ ।

୧୯୧୭—କର୍ତ୍ତାର ଇଚ୍ଛାୟ କର୍ମ (ପ୍ରବନ୍ଧ—ପରେ ୧୯୩୭ରେ 'କାଳାନ୍ତର' ଗ୍ରନ୍ଥର ଅନ୍ତର୍ଭୁକ୍ତ ହୁଏ) ।

୧୯୧୮—ଗୁରୁ (ନାଟକ), ପଳାତକା (କବିତା) ।

୧୯୧୯—ଜାପାନ ଯାତ୍ରୀ (ଭ୍ରମଣ ବୃତ୍ତାନ୍ତ) ।

୧୯୨୦—ଅରୂପ ରତନ (ନାଟକ-'ରଜା' ନାଟକର ଅଭିନୟଯୋଗ୍ୟ ସଂକ୍ଷିପ୍ତ ସଂସ୍କରଣ) ପଯ୍ୟଲା ନମ୍ବର (ଗଳ୍ପ) ।

୧୯୨୧—ଋଣଶୋଧ (ନାଟିକା-'ଶାରଦୋତ୍ସବ'ର ଅଭିନୟଯୋଗ୍ୟ ସଂସ୍କରଣ) ।

୧୯୨୨—ମୁକ୍ତଧାରା (ନାଟକ), ଲିପିକା (କଥିକା), ଶିଶୁ ଭୋଲାନାଥ (କବିତା) ।

୧୯୨୩—ବସନ୍ତ (ଗୀତିନାଟ୍ୟ—ପରେ ୧୯୨୭ରେ 'ଋତୁ ଉତ୍ସବ'ର ଅନ୍ତର୍ଭୁକ୍ତ ହୁଏ) ।

୧୯୨୫—ପୂରବୀ (କବିତା), ଗୃହପ୍ରବେଶ (ନାଟକ—'ଶେଷେର ରାତ୍ରି' ଗଳ୍ପର ନାଟ୍ୟ ରୂପ), ପ୍ରବାହିଣୀ (ସଂଗୀତ) ।

୧୯୨୬—ଚିରକୁମାର ସଭା (ନାଟକ), ଶୋଧ ବୋଧ (ନାଟକ—'କର୍ମ ଫଳ' ଗଳ୍ପର ନାଟ୍ୟରୂପ), ନଟୀର ପୂଜା (ନାଟକ), ରକ୍ତ କରବୀ (ନାଟକ) ।

୧୯୨୭—ଲେଖନ (ବଙ୍ଗଳା କବିତା ଓ କବିଙ୍କ କୃତ ତାହାର ଇଂରେଜୀ ଅନୁବାଦ) ଋତୁରଙ୍ଗ (ଗୀତିନାଟ୍ୟ) ।

୧୯୨୮—ଶେଷରକ୍ଷା (ପ୍ରହସନ) ।

୧୯୨୯—ଯାତ୍ରୀ (ଏଥିରେ ପଶ୍ଚିମ ଯାତ୍ରୀର ଡାଏରୀ ଓ ଜାଭାଯାତ୍ରୀର ପତ୍ର ମୁଦ୍ରିତ), ପରିତ୍ରାଣ (ନାଟକ—'ପ୍ରାୟଶ୍ଚିତ୍ତ' ନାଟକର ପରିବର୍ତ୍ତିତ ରୂପ), ଯୋଗାଯୋଗ (ଉପନ୍ୟାସ), ଶେଷେର କବିତା (ଉପନ୍ୟାସ), ତପତୀ (ନାଟକ), ମହୁୟା (କବିତା) ।

୧୯୩୦—ଭାନୁସିଂହର ପତ୍ରାବଳୀ ।

୧୯୩୧—ନବୀନ (ଗୀତିନାଟ୍ୟ), ରସିଆର ଚିଠି, ବନବାଣୀ (କବିତା ଓ ସଂଗୀତ), ଶାପ ମୋଚନ (କଥିକା ଓ ସଂଗୀତ) ।

୧୯୩୨—ପରିଶେଷ (କବିତା), କାଲେର ଯାତ୍ରା (ନାଟ୍ୟ ସଂଳାପ), ପୁନଶ୍ଚ (ଗଦ୍ୟ କାବ୍ୟ), Mahatmaji and the Depressed Humanity (ଭାଷଣ—ଏଥିରେ ଛଅୋଟି ବଙ୍ଗଳା ଭାଷଣ

ମଧ୍ୟ ମୁଦ୍ରିତ ହୋଇଛି ଓ ପରେ ୧୯୪୮ରେ ଏହା 'ମହାତ୍ମା-ଗାନ୍ଧୀ' ଗ୍ରନ୍ଥର ଅନ୍ତର୍ଭୁକ୍ତ ହୋଇଛି) ।

୧୯୩୩—ଦୁଇ ବୋନ (ଉପନ୍ୟାସ), ମାନୁଷେର ଧର୍ମ (କଲିକତା ବିଶ୍ୱବିଦ୍ୟାଳୟରେ ପ୍ରଦତ୍ତ କମଲା ନେଚହରୁ ବକ୍ତୃତାମାଳା), ବିଚିତ୍ରିତା (କବିତା), ଚଣ୍ଡାଳିକା (ନାଟିକା), ତାସେର ଦେଶ (ନାଟିକା—'ଏକଟା ଆଷାଢ଼େ ଗଲ୍ପ'ନାମକ ଗଳ୍ପର ନାଟ୍ୟରୂପ), ବାଂଶରୀ (ନାଟକ), ଭାରତ ପଥିକ ରାମମୋହନ ରାୟ (ପ୍ରବନ୍ଧ) ।

୧୯୩୪—ମାଲଞ୍ଚ (ଉପନ୍ୟାସ), ଶ୍ରାବଣ ଗାଥା (ଗୀତିନାଟ୍ୟ), ଚାର ଅଧ୍ୟାୟ (ଉପନ୍ୟାସ) ।

୧୯୩୫—ଶାନ୍ତିନିକେତନ (ପ୍ରଥମ ଖଣ୍ଡ ଓ ଦ୍ୱିତୀୟ ଖଣ୍ଡ କବିକର୍ତ୍ତୃକ ମାର୍ଜିତ ଓ ନୂତନ ସଂଯୋଜନା-ଯୁକ୍ତ), ଶେଷସପ୍ତକ (ଗଦ୍ୟ କାବ୍ୟ), ସୁର ଓ ସଙ୍ଗତି (ଧୂର୍ଜଟି ପ୍ରସାଦ ମୁଖୋପାଧ୍ୟାୟଙ୍କ ସହିତ ପତ୍ରାଳାପ), ବୀଥିକା (କାବ୍ୟ) ।

୧୯୩୬—ନୃତ୍ୟନାଟ୍ୟ ଚିତ୍ରାଙ୍ଗଦା (ଚିତ୍ରାଙ୍ଗଦା ନାଟ୍ୟକାବ୍ୟର ନୃତ୍ୟୋଭିନୟ ରୂପ), ପତ୍ରପୁଟ (ଗଦ୍ୟକାବ୍ୟ), ଛନ୍ଦ (ପ୍ରବନ୍ଧ), ଜାପାନେ-ପାରସ୍ୟେ (ପୂର୍ବତନ ଜାପାନ ଯାତ୍ରୀ ଓ ନୂତନ ପାରସ୍ୟ ଭ୍ରମଣ ଏକତ୍ର ଗ୍ରଥିତ), ଶ୍ୟାମଳୀ (ଗଦ୍ୟକାବ୍ୟ), ସାହିତ୍ୟେର ପଥେ (ପ୍ରବନ୍ଧ), ପ୍ରାନ୍ତିକ (ଅଭିଭାଷଣ ସଂଗ୍ରହ) ।

୧୯୩୭—ଖାପଛଡ଼ା ('ଛଡ଼ା' ସଂଗ୍ରହ), କାଲାନ୍ତର (ପ୍ରବନ୍ଧ), ସେ (ଗଳ୍ପ) ଛଡ଼ାର ଛବି (କାବ୍ୟ), ବିଶ୍ୱପରିଚୟ (ବିଜ୍ଞାନ ବିଷୟକ ପ୍ରବନ୍ଧ) ।

୧୯୩୮—ପ୍ରାନ୍ତିକ (କାବ୍ୟ), ଚଣ୍ଡାଳିକା ନୃତ୍ୟନାଟ୍ୟ (ଚଣ୍ଡାଳିକା ନାଟକର ନୃତ୍ୟୋପଯୋଗୀ ରୂପାନ୍ତର) ପଥେ ଓ ପଥେର ପ୍ରାନ୍ତେ (ଶ୍ରୀମତୀ ରାଣୀ ମହଲାନବୀଶଙ୍କୁ ଲିଖିତ ପତ୍ରାବଳୀ), ବାଂଲା ଭାଷା ପରିଚୟ (ପ୍ରବନ୍ଧ) ।

୧୯୩୯—ପ୍ରହାସିନୀ (କାବ୍ୟ), ଆକାଶ ପ୍ରଦୀପ (କାବ୍ୟ), ଶ୍ୟାମା (ନୃତ୍ୟ ନାଟ୍ୟ—'ପରିଶୋଧ' କବିତାକୁ ପ୍ରଥମେ 'ପରିଶୋଧ' ନୃତ୍ୟ ନାଟ୍ୟ ରୂପ ଦେଇଥିଲେ, ପରେ ଏହା 'ଶ୍ୟାମା' ନାମରେ ରୂପାନ୍ତରିତ ହୋଇଥିଲା), ପଥେର ସଞ୍ଚୟ (ବିଲାତ ଯାତ୍ରା ପ୍ରସଙ୍ଗ ।)

୧୯୪୦—ନବ ଜାତକ (କାବ୍ୟ), ସାନାଇ (କାବ୍ୟ), ଛେଲେ ବେଲା (ବାଲ୍ୟ ସ୍ମୃତି), ଚିତ୍ରଲିପି (କବିଙ୍କ ଅଙ୍କିତ ଚିତ୍ର-ସଂଗ୍ରହ ସହିତ

ଚନ୍ଦ ବିଷୟକ କବିତା ଓ ତାହାର ଇଂରେଜୀ ଅନୁବାଦ), ଛନ୍ଦ ସଙ୍ଗୀ (ଗଳ୍ପ), ରୋଗ ଶଯ୍ୟାୟ (କାବ୍ୟ) ।

୧୯୪୧—ଆରୋଗ୍ୟ (କାବ୍ୟ), ଜନ୍ମଦିନେ (କାବ୍ୟ), ଗଲ୍ପସଲ୍ପ (ଗଳ୍ପ ଓ କବିତା ଏକତ୍ର ମୁଦ୍ରିତ), ସଭ୍ୟତାର ସଙ୍କଟ (ଅଭିଭାଷଣ), ଆଶ୍ରମେର ରୂପ ଓ ବିକାଶ (ପ୍ରବନ୍ଧ) ।

୧୯୪୧ ଅଗଷ୍ଟ ସାତ ତାରିଖ ପରେ ମୁଦ୍ରିତ ଗ୍ରନ୍ଥାବଳୀ-

୧୯୪୧—ସ୍ମୃତି (ମନୋରଞ୍ଜନ ବନ୍ଦ୍ୟୋପାଧ୍ୟାୟଙ୍କୁ ଲିଖିତ ପତ୍ର), ଛଡ଼ା (କାବ୍ୟ), ଶେଷ ଲେଖା (କାବ୍ୟ) ।

୧୯୪୨—ଚିଠିପତ୍ର-୧ମ ଖଣ୍ଡ (ମୃଣାଳିନୀ ଦେବୀଙ୍କୁ ପତ୍ର), ଚିଠିପତ୍ର-୨ୟ ଖଣ୍ଡ (ରଥୀନ୍ଦ୍ରନାଥ ଠାକୁରଙ୍କୁ ଲିଖିତ ପତ୍ର), ଚିଠିପତ୍ର-୩ୟ ଖଣ୍ଡ (ପ୍ରତିମା ଦେବୀଙ୍କୁ ଲିଖିତ ପତ୍ର) ।

୧୯୪୩—ଆତ୍ମପରିଚୟ (ପ୍ରବନ୍ଧ), ଚିଠିପତ୍ର-୪ର୍ଥ ଖଣ୍ଡ (ମାଧୁରୀ ଲତା, ମୀରା, ନନ୍ଦିତା, ନୀତୁ ଓ ନନ୍ଦିନୀଙ୍କୁ ଲିଖିତ ପତ୍ର) ।

୧୯୪୫—ସ୍ଫୁଲିଙ୍ଗ ('ଲେଖନ'ର ସଂଯୋଗ, ୧୯୨୭ରେ ପ୍ରକାଶିତ; ଏଥର କିନ୍ତୁ ଇଂରେଜୀ ରଚନା ନାହିଁ), ଚିଠିପତ୍ର ୫ମ-ଖଣ୍ଡ (ଦ୍ୱିଜେନ୍ଦ୍ରନାଥ, ଜ୍ଞାନଦା ନନ୍ଦିନୀ ଦେବୀ, ଜ୍ୟୋତିରିନ୍ଦ୍ରନାଥ, ଇନ୍ଦିରା ଦେବୀ ଓ ପ୍ରମଥ ଚୌଧୁରୀଙ୍କୁ ଲିଖିତ ପତ୍ର) ।

୧୯୪୮—ମହାତ୍ମା ଗାନ୍ଧି (ପ୍ରବନ୍ଧ ଓ ଅଭିଭାଷଣ), ମୁକ୍ତିର ଉପାୟ (ନାଟକ—ମୁକ୍ତିର ଉପାୟ ଗଳ୍ପର ନାଟ୍ୟରୂପ) ।

୧୯୫୧—ବିଶ୍ୱଭାରତୀ (ପ୍ରବନ୍ଧ), ଶାନ୍ତିନିକେତନ ବ୍ରହ୍ମଚର୍ଯ୍ୟାଶ୍ରମ (ପ୍ରତିଷ୍ଠା ଅବସର ଉପଦେଶ ଓ ପ୍ରଥମ କାର୍ଯ୍ୟ ପ୍ରଣାଳୀ), ବୈକାଳୀ (ସଂଗୀତ ଓ କବିତା), Chitralipi-2 (କବିଙ୍କ ଅଙ୍କିତ ଚିତ୍ରର ସଂଗ୍ରହ) ।

୧୯୫୪—ସମବାୟ ନୀତି (ପ୍ରବନ୍ଧ), ଚିତ୍ର ବିଚିତ୍ର (କବିତା) ।

୧୯୫୫—ଇତିହାସ (ପ୍ରବନ୍ଧ) ।

୧୯୫୬—ବୁଦ୍ଧଦେବ (କବିତା ଓ ପ୍ରବନ୍ଧ) ।

୧୯୫୭—ଚିଠିପତ୍ର-୬ଷ୍ଠ ଖଣ୍ଡ (ଜଗଦୀଶଚନ୍ଦ୍ର ବସୁ ଓ ଅବଳା ବସୁଙ୍କୁ ଲିଖିତ ପତ୍ର) ।

## ରବୀନ୍ଦ୍ର ରଚନାବଳୀର ପ୍ରକାଶ ସମୟ—

୧୯୩୯—ପ୍ରଥମ ଓ ଦ୍ୱିତୀୟ ଖଣ୍ଡ ।
୧୯୪୦—ତୃତୀୟ, ଚତୁର୍ଥ, ଅଚଳିତ ସଂଗ୍ରହ (୧ମ) ଓ ପଞ୍ଚମ ଖଣ୍ଡ ।
୧୯୪୧—ଷଷ୍ଠ, ସପ୍ତମ, ଅଷ୍ଟମ, ଅଚଳିତ ସଂଗ୍ରହ (୨ୟ) ଓ ନବମ ଖଣ୍ଡ ।
୧୯୪୨—ଦଶମ, ଏକାଦଶ, ଦ୍ୱାଦଶ ଓ ତ୍ରୟୋଦଶ ଖଣ୍ଡ ।
୧୯୪୩—ଚତୁର୍ଦ୍ଦଶ, ପଞ୍ଚଦଶ ଓ ଷୋଡ଼ଶ ଖଣ୍ଡ ।
୧୯୪୪—ସପ୍ତଦଶ ଓ ଅଷ୍ଟାଦଶ ଖଣ୍ଡ ।
୧୯୪୫—ଊନବିଂଶ ଓ ବିଂଶ ଖଣ୍ଡ ।
୧୯୪୬—ଏକବିଂଶ ଓ ଦ୍ୱାବିଂଶ ଖଣ୍ଡ ।
୧୯୪୭—ସଞ୍ଚୟନ (କବିତା ସଙ୍କଳନ), ତ୍ରୟୋବିଂଶ ଓ ଚତୁର୍ବିଂଶ ଖଣ୍ଡ ।
୧୯୪୮—ପଞ୍ଚବିଂଶ ଖଣ୍ଡ, ଷଡ଼୍‌ବିଂଶ ଖଣ୍ଡ ।

